ଭିଖାରୀର୍ ବାପା ଚେରେଷ୍ଟା ଥିଁ ଅଛନ୍, କେହେନି ବଡ଼୍ ଆଁଏଖି ଡ଼ାକ୍ତରକେ ଦେଖାଲେଁ ହେତା । କାଣା ଭାଏଲ୍ କିଏ କହେତା କାଏଁ ? ଇଟା କି ସେଟା କଲେଁ ଆଏଁଖି ଦିଶ୍‌ତା । ସଂଯୋଗ୍ କେ ସେ ସହରେଁ ଜଲା କାଢ୍‌ବାର୍ କାଯେଁ ଆଏଁଖି ଶିବିର୍‌ଟେ ହଉଥିଲା । ତାର୍ ଉଯୋଗ୍ ଥିଁ ଥିବାର୍ ଲୁକେ ବଡ଼େ ଆଏଁଖି ଡ଼ାକ୍ତର୍‌ମାନ୍‌କୁଁ ଠୁଲେଇ ଥାଆନ୍ । ଭିଖାରୀର୍ ବାପା ଜାନ୍‌ଲେ ଯେ ବୁର୍ଲା ବଡ଼୍ ଡ଼ାକ୍ତରଖାନାର୍ ସବୁନୁ ବଡ଼୍ ଆଏଁଖି ଡ଼ାକ୍ତର୍ ଆସିଛନ୍ । ତାହାକୁଁ ଦେଖାଲେ । ସାନୁଜର ସୁତର୍ ପାତର୍ ଚେହେରା, ସୁଧାର୍ କଥାବାର୍ତା, ପାଠ୍‌ପଢ଼ା, ଖେଲ୍‌ଖେଲାର୍ ପରଶଁସା ସବ୍ ଶୁନି ବଡ଼୍ ଆଏଁଖି ଡ଼ାକ୍ତର ବି ସାନୁଜ୍ କେ ସୁଖି ପାଇଁ ବସ୍‌ଲେ । କହେଲେ "ଚରେଷ୍ଟା କଲେଁ ହେତା ; ଆଶା ଆଏଁଖି ଦିଶିଁ ଯାଏତା । ହେଲେଁ ବଡ଼୍ ଅପରେସନ୍ ଲାଗ୍‌ବା, ଆର୍ ବନିହାଁ ପଏସା ବି ଲାଗିପାରେ । କମ୍ ସେ କମ୍ ଆଠ ଦଶ ହଜାର୍ ନୁ କମ୍ ନୁହେ । " ଭିଖାରୀର୍ ବାପାର୍ କିରାନୀ ମୁଡ଼୍ କାମ୍ ନାଇଁ କଲା । ଭିଖାରୀ କହେଲା "ଅରଜି ଟେ ଲେଖି ବନ୍‌ଏ ଲୋକକୁଁ ଯାଇଁ ସାନୁଜ୍ ଭେଟ୍ ହେଲେଁ ହେତା କାଏଁ ?" ସାନୁଜ୍ କେ ଇଟା ଶୁନି କାଲ୍ ମାଡ଼ି ବସ୍‌ଲା । ରେଲେଁ ମଟରେଁ ସହରର୍ ଗଲି ମାନ୍‌କେଁ କଣା ଅଁଧା ଯେନ୍ ଭିକ୍ ମାଗ୍‌ସନ୍ ସେଥିରୁଁ ତ ଇଟା ତଫାତ୍ ନୁହେ । ଭିଖାରୀ ବି ନାପସନ୍ଦ୍ କଲା । ସାରା କୁଟୁମର୍ ଚିନ୍ତା ସେ କଥାକେ ମେରିଖମ୍ କରି କିନ୍ତେଇ ହଉଛେ । ମାତର୍‌କ ଭିଖାରୀର୍ ମାଁର୍ କାନ୍‌କେ ଇ କଥା ଗଲା କି ସେ କହେଲେ "ଯେନ୍ତା ହଉ କର୍‌ମା ; ଆମର୍ କୁଟୁମର୍ ଜନ୍‌ଏ ପରଲେଁ ଆମେ ନାଇଁ କର୍‌ତା କାଏଁ ? ସାନୁଜ୍ କାଏଁ ପରର୍ ଆଏ ? ମୋର୍ ଚାଏର୍ ଛୁଆ ଥିଲେ ପାଁଚ୍ ହେଲେ ; ମୁଇଁ ଭାବି ନେଇଛେଁ ଭିଖାରୀ ଆର୍ ସାନୁଜ୍ ମୋର୍ ଯଥାଁଲା ଜିଆ ଆ'ନ୍ ।" ତାକର୍ ବନିହାଁ ଦିନୁ ସାଏତୀ ରଖିବାର୍ ଆଏ ଅଲଙ୍କାର୍, ସାଙ୍ଗେ ଶସ୍ତର୍ ପୁଟ୍‌ଲିଟେ କରି ଭିଖାରୀର ବାପାର୍ ହାତ୍‌କେ ବଢ଼େଇ ନେଲେ ।

ଅପରେସନ୍ ସର୍‌ଲା, ଡ଼ାକ୍ତର୍ କହେଲେ ଉପ୍‌ଚାର୍‌ଟା ସାଫୁଲ୍ ହଇଛେ ଲେଖେଁ ଲାଗୁଛେ ।

ସାତ୍‌ଦିନ ପରେଁ ପଟି ଖୁଲା ହେଲା । ଭିଖାରୀର୍ କୁଟୁମ୍ ସାଙ୍ଗେଁ ସହରର୍ ତାକର୍ ଭାବ୍ ବିଶ୍ୱାସ୍ ବି ବନିହାଁ ଲୋକ୍ ଜମିଛନ୍ । ଡ଼ାକ୍ତର୍ ପଚ୍‌ରାଲେ "କେନ୍ତା ବାବୁ ! ବନ୍‌ଏ ଦିଶୁଛେ ?" ହଁ କରି ମୁଡ଼୍ ହଲାଲା ସାନୁଜ୍ ଆର୍ ଭିଖାରୀର୍ ମାଁର୍ ଆଗେଁ ଖାଲି କାନ୍ଦି ବସ୍ ଲା । ଆଖିଁ ଲହ୍ ଗଦେଇଁ ହେଲା । ।ସାନୁଜର୍ ଭିତରେ ବାହାର୍ ସବୁ ତରଲି ଲହ ପାଲଟିଁ ଯାଇଛେ । ସାନୁଜ୍‌କେ ଲାଗୁଛେ ଇ ସଂସାର୍‌ଟା ଆନନ୍ଦର୍ ଘର୍ ଆଏ । ଆନନ୍ଦ୍‌ଟା ସରଗ୍ ଆଏ । ମୁନୁଷ୍ ମୁନୁଷ୍ ଭିତରର୍ ଭାବ୍ ନାବ୍ ଦିଆ ନିଆଟା ଅମ୍‌ରତ୍ ଆଏ । ଅମ୍‌ରତ୍

ଗଛେଁ ଖୁଟେଁ ନାଇଁ ଫଲେ କି ଦୂକାନେ ବଜାରେଁ ନାଇଁ ମିଲେ । ଯେ ନିଜର୍ ନୁହେ ତାହାକେ ନିଜର୍ କରିପାର୍‌ଲେଁ ଅମ୍‌ରତ୍ ଲୁକେଇ ହେସି ; ଯାହାକେ ଯେତେ । ଆଏଁଖେ ନାଇଁ ଥାଇ, ନାଇଁ ଦେଖୁଥାଇଁ । ସଂସାର୍ ସାରା ସଭେ କାଏଁ ଅଂଧା ଆ'ନ୍ । ଅମର୍‌ତ୍ ଦେଖି ନାଇଁ ପାରନ୍, ଚାଖି ନାଇଁ ପାରନ୍, ମାଖି ନାଇଁ ପାରନ୍ । ପର୍‌କେ ନିଜର୍ ନାଇଁ କରି ପାରନ୍ । ପାର୍‌ଲେଁ ଜାନ୍‌ତେ ଅମରତ୍ ଏତେ ପାଶେଁ ।

# ମାଁ କେ ଦେଖ୍-ଗାଁ କେ ଦେଖ୍

ଦେବରାଜ୍ ବାବୁ । ରାଏଜର୍ ଅର୍ଥ ବିଭାଗର୍ ବଡ଼୍ ଅଧିକାରୀ ଭିତ୍ରୁଁ ଜନ୍‌ଏ । ପିନ୍‌ସିନି ପାଏଲେ କି ଗାଁ କେ ଆସିଛନ୍ । ଗାଁ ନ ଦୁଇ ବଖ୍ରା ଖପ୍‌ରେଲ୍ ଘର୍ ବାଏର୍ ଖଣ୍ଡେ ଜମି ଏକର୍ ଦୁ, ସାଙ୍ଗେ ବୁଢ଼ୀ ମାଁ । କୋର୍ ଚାରେ ବଛର୍ ବଏସ୍ ହେଲେଁ ବି, ମାଁ ନିଜେ ନିଜେ ଚାଲିପାରୁଛନ୍ ; କାହାକେ ଆଶ୍ରା କରା ନିହା ଲାଗେ । ଦେବ୍‌ରାଜ୍ ବାବୁ ଘର୍ ଜମିବାଡ଼ି ସବୁକେ ତାକର୍ ରହେଲାଠାନ୍‌କେ ନେଇଁ ସାରତେନ ଯେ, ବୁଢ଼ୀ ମାଁକେ ନାଇଁ ନେଇ ପାର୍‌ବାର୍ ବଲିଁ ସବୁ ଅଛନ୍ । ଶେଷଥର ଲାଗିଁ ଆଇଛନ୍ ; ମାଁ କେ ଦେଖିବେ ବୁଝେଇ ସୁଝେଇ, ଆର୍ ଗାଁ କେ ବି ବନ୍‌ଏ କରି ଦେଖିକରି ଯିବେ, ନିରଖି କରିଯିବେ । ଆର୍ କେନ ଆଉଛନ୍ ଯେ ଗାଁ ଭୂଇଁକେ, ଘରେଁ ମାଁକେ କହେଲେ 'ଇ ଥର ଚାଲ୍ ମା ! ଭୁବ୍‌ନେଶରେଁ ରହେମା, ଘର ବନା ସର୍‌ଲା ନ ; ତୋର୍ ନାତି ତ ଦିଲ୍ଲୀନେ ଘର୍ କରବାର୍ ଚେରେଷ୍ଟା କରୁଛେ । ସେ ଭୁବ୍‌ନେଶର୍ କେ ବି ମନ୍ ନାଇଁ କର୍‌ବାର୍ ନ ।" ମାଁ କହେଲା, ନାଇଁରେ ବାବୁ ! ମତେ ଇନେ ଭଲ୍ ଲାଗ୍‌ସି । ସହରର୍ ପେଁ ପାଁ ଭେଁ ଭାଁ କେଁ କାଁ ଅଏନ୍ ନାଇଁ ଲାଗେ । ସେ ଥର ଯାଇଥିଲିଁ ଯେ ସହରର୍ ଘରମାନେ ଖରାଦିନେ ଚଟ୍ କରସି ଆର୍ ଶୀତେଁ ପଟ୍ ଚେଁ । ଇ ନେ ବଲୁଛୁ, ଇ ମାଟିର୍ ଘରେଁ ଖରାଥିଁ ଧୁକ୍‌ନା ଲାଗେ ନାଇଁ କି ଶୀତେଁ ଉରହନା ଲାଗେ ନାଇଁ । ମୋର୍ ହାତ୍ ଗୋଡ଼୍ ଚଲୁଥିବାର୍ ଚକ୍ ମତେ ନାଇଁ ନେ ବୁଆ ! ନାଇଁ ପାର୍‌ଲେଁ ଆର୍ କାଁ କରମି ? ନେବୁ ନ ।

ଗାଁ ଖୁଏଲ୍‌କେ ବାହାର୍‌ଲେ ଦେବରାଜ୍ ବାବୁ । ଗାଁ କେ ଟିକେ ଦେଖିବେ ; ନାଇଁ ଆର୍ ଦେଖିଛନ୍ କାଏଁ ଗାଁକେ ; ଇନେ ଜନ୍‌ମି, ଖେଲି ବୁଲି ପଢ଼ି ଉଢ଼ି ମୁନୁଷ୍ ମାକର୍ ହଇଛନ୍ । ହେଲେଁ ଏଛନି । ଦେଖିବେ ଠିକ୍ ଦେଖିଲା ଲେଖେଁ ।

ଗାଁର୍ ଡ଼ଁଡ଼ା ଖୁଏଲ୍ । ବାଏଲ୍ ସର୍‌ସର୍, ଛୁଆ ଗୁଡ଼ାଦୁ ଖେଲୁଛନ୍ ନାକ୍‌ମାନକେଁ ଲୁଥା ଲୁଥା ଭଟକି ; ମୁଡ଼୍ ମାନେ ଲୁଖ୍‌ରା । କା'ର୍ କାର୍ ହାତେଁ ମୁରିହି ଟୁପ୍‌ଲି ତ କା'ର୍ ହାତ୍ ଛୁଛା । ଛୁଛା ହତିଆ ଛୁଆର୍ ନଜର୍ ଟୁପ୍‌ଲିଧରା ଛୁଆର୍ ମୁରହି ଗରସାକେ ସିଧା ଧର୍‌ସେଇଛେ । ପର୍‌ଲା ମୁର୍ ହିର୍ ଉଧେଁ କୁକ୍‌ରାଚିଆଁ ଗୁଡ଼ାଦୁ ପାଶେଁ ପାଶେଁ ଚିଁ ଚିଁ କରୁଛନ୍ । ପାଶେ ଗାଁର୍ ଦୁକାନ୍ ଟେ । ଲୋକ୍ ମାଏଝି ଛୁଆ ବୁଢ଼ାର୍ ଆନା ଯାନାର୍ ଥାକ୍ ନାଇଁ । ତପନ ନାଏକ ଶିଘୁଁ ଖସିର୍‌ଲା ଲେଖେଁ ଚେହେରା ଯଦ୍‌ରି ଓ ବଏସ ଶିଘ୍ ଭରୁଛେ ; ଦେବରାଜ୍ ବାବୁକେ ଦେଖିଁ କହେଲା, "କେଭେଁ ଆଏଲୁ ଦଦା ! ବନ୍‌ଏ ବନ୍‌ଏ ତ ?" ଦେବ୍‌ରାଜ୍ କହେଲା "କାଏଲ୍ ଆଏଲିଁ ଗା, ତୁଇଁ କେନ୍ତା ଅଛୁ ?" ତପନ୍ ମୁହଁକେ ଟିକେ ଖିସାଲା ବାଗିର୍ କରି କହେଲା "ଆମର୍ କଥା ଛାଡ଼୍ ଦଦା !

ଆମର୍ କପାଳେଁ କେବେଁ ଭଲ ଥିସି ?" ପିଲାଟା ତୋର କେନ୍ତା କରୁଛେ? ଦେବ୍‌ରାଜର୍ ପଚରାବାରେଁ ତପନ୍ କହେଲା 'ହେଁ ଥିଁ ପରେ ଘଁଟି ସା'ନି ହଙ୍ଗ ମରି ଯାଉଛେଁ । ପିଲାଟା ଲାଏକ୍ ନାଇଁ ବାହାରଲା ବୋ ! ଗାଁର୍ ଇସ୍କୁଲ୍ ବି ପାସ୍ ନାଇଁ କରି ପାରଲା । ଆମର୍ ହେଁ ଏମି ସ୍କୁଲ୍ ବନାଲା ବେଲ୍‌କେ ଯେତ୍‌କି ବାଏଲ୍ ପଥର୍ କରି ଦୁହାରିଛେଁ ଯେତ୍‌କି ବିଗାଡ଼ି ବୁତା କରିଛେଁ, ପାସ୍‌ଟେ କରିଥିଲେଁ ସବୁ ସୋଜ୍ ଯାଇଥିତା ଯେ ସମ୍‌କର୍ ମୁଡ଼େଁ ବିଦୁଆ ନାଇଁ ଥାଏ ଦଦା ! କାଁ କରମା ? ପାଠ୍ ନାଇଁ ପଢ଼ଲା ତ ନାଇଁ । ଆଯୋ ବାଜୋ ବାଏବି ପିଲାକର୍ ସାଙ୍ଗ୍ ଧରି ପିଁଢ଼ାପିଁଢ଼ା ବସି ଗଁଜେଇ, ମୁଦକ୍, ତାସ, ଜୁଆ କରି ବସ୍‌ଲା । ଘର୍ ବସ୍‌ଲେଁ ଭାଏଲ୍‌ମନେ ପଡ଼ବା, ଦାଏରେଁ ଆଏବା ବଲିଁ ବିହାଟେ କରି ନେଲିଁ ଯେ ତାହିଁ ବି ନିସ୍‌ତାର୍ ନାଇଁ । ବିଡ଼ି, ପାନ୍, ଗଁଜେଇ, ମୁଦକ୍, ଭୂଷନ୍ କଲା । କମାନି କୁଠାନିର୍ ନାଁ ନାଇଁ । ତାର୍ ବିହାବେଲେଁ ସାଏକଲ୍‌ଟେ ଦେଇଥିଲେ ଯେ କେଭୁଁ କେଭୁଁ ଗହନା ପକେଇ ନେଇଛେ । ତାର୍ ଆଏ ଶାଶ୍ ବୁଢ଼ୀ କୁଟନି ପସ୍‌ରାଟେ କରି ଯେନ୍ ଦୁଇ ପଏସା ଛଁଟିଥିଲା ସେଥିଁ ବୁଢ଼ୀ ସାଏକଲ୍‌ଟେ ଦେଇଥିଲା ବିହା ବେଲ୍‌କେ । ଦେଖି ସେ ବୁଢ଼ୀ ଆଏଜ୍ ଆସି କେନ୍‌ଆଡୁ ଉତ୍‌ରିଛେ, ଇ ଆଶ୍ କରିଁ ଯେ, ନାଏତ୍ ଜଏଁ ତାର୍ ଘର୍‌କେ ପୁହଁଚେଇ ନେବା ସାଏକଲେଁ । ବୁଢ଼ୀ ଘରେ ଟାକିଛେ ଆର୍ ପିଲା ଆମର୍ ଶନୁ ସେ' ନୁ ହଉଛେ । ଯାହାକେ ଗହନା ଦେଇଛେ । ତାହାକେ ଘାଏ ମାଗ୍‌ଲା ଯେ ସେ କାହିଁ ଶୁନ୍‌ତା ? ମୁଇଁ ବି ଟାଙ୍ଗର୍ ହଗା ବିକେଇ ବାଗିର୍ ଇଆଡ୍ ସେଆଡ୍ ହଉଛେଁ । ଯାଏସିଁ ଦଦ୍ ! କିଛି ହଉ ବନ୍‌ବସ୍ କରମି ।'

ଦେବ୍‌ରାଜ୍ ଦେଖି ଆସିଛେ ଜନମୁଁ ଯେ ଗାଁର୍ ଉପରିଆ ରୂପଟା ଦିଶିଛେ ଏବ୍‌ତକ ; ଗାଁ କାଁଣା ଏତେ ତଲ୍‌କେ ଗଲା ନ । ତା'ର୍ ମାହିର୍ ନାଇଁ । ଭାବୁଛେ ଗାଁର୍ କଥା । ଦୁକାନ୍ ଠାନେ ଟିକେ ଘିଚାଟନା କଥା ଥିଁ ରଡ଼ାକିର୍ଲା ବାଗିର ହେଲା କି ତାର୍ ଭାବ୍‌ନା ଭାଙ୍ଗ୍‌ଲା । 'ମୁଖୀ' ମଝ ବଏସଏନ୍ ମାଏଝୀ ଟେ ଧାନ୍ ଧରି ଘିନି ଆସିଥିଲା ଚିନି । ଧାନ୍‌କେ ଦୁକାନ୍ ଦାର୍ ରୁକି ନଉଥିଲା ଯେ କହେଲା ଯୁଖିବାକେ, ଯେ ଯୁଖିଲା । ହେଲା ଦୁଇକେଜି ଧାନ୍ । ଚିନି ଦେଲା ଡ଼େଢ଼୍‌ପା । ମୁଖୀ ପଚରାଲା, "କେଜି ଚାଏର୍, ସଭେ ଦଉଛନ୍ ।" ମୁଖୀ କହେଲା ଧାନ୍ ବସ୍ତା ତ ସାଢ଼େ ତିନ୍ ଶ ଉପ୍‌ରେଁ ହଇଛେ । କେଜି ଚାଏର୍ ଲେଖା ହେଲେଁ ଧାନ୍ ବସ୍ତା ତିନ୍‌ଶ ହେବା କାଏଁ ନ । ଗରିବ୍ ଲୁକର୍ ମୁଡ଼୍ ମାଏଲେଁ କେତେ ପାଏବେ ରେ ବୁଆ । ହାତୀ ଲୁଟ ଯେ ପେଟ୍ ପୂର୍‌ବା ଅଁଟା ଭର୍‌ବା ।" "ତୋର୍ ଧାନ ନେଦୁ ତ ନେଇଁ ଯା, ତୋର୍ ଲାଗିଁ ଗୁଟେ ଅଲଗ୍ ଦର ଭାଉ ହେବା? ସମ୍‌କୁଁ ଯାହା ଦଉଛେଁ ତତେ ଦେମି ନା ।" ଦୁକାନୀର୍ ଇ କଥା ପଦ୍‌ଦୁ ଶୁନି ମୁଖୀ ଚିନି

ଧରି ଛିନ୍ ଛାନ୍ ପଲାଲା କହି କହି ଦେ' ବୁଆ, ଯାହା କରୁଛୁ କର୍ ନ ସହି ସଂଭାଳି କର୍‌ଯେ ଦଏବୀ ଯେନ୍ତା ସହେବା ।

ଦେବ୍‌ରାଜ୍ ଶୁନୁଥିଲା ସବୁ ; ଅନ୍ନିଯେ ତ ହଉଛେ ତାର ବିରୋଧ୍ ବି ହଉଛେ । ଜହ ଧୂର୍‌କେ ଶୁଭ୍‌ଲା ଟୁଣେ ହଉଛେ ।

ଘାଏ ନୁହେ ଯାଏ, କହି କହି ଆଏଲା ପାଏନ୍‌ବୁଚ୍ଚୁ, ଉପର୍ ପଡ଼ାର୍ ସିଆନ୍ ବର୍ଲି ମାନ୍‌ସନ୍ ତାହାକେ ତ ନିଯେ ଅନ୍ନିଯେ କହି ପକାସି ବେଧଡ଼କ୍ "ଏ ବୁଆ, କା'ଣା ହେଲା ଇଟା ? ତିନ୍ ତିନ୍‌ଟା କୁଟାର୍ ଚାଉଲ୍ ଦେଖାନାଇଁ, କେନ୍ତା ହିଁ ଚଲି ହେସି ? ସର୍କାର୍ ତ ଦଉଛେ, ଇ ସରପଂଚ୍‌କେ ହାତୁଁ ଦେଲା ଲେଖେଁ ଲାଗୁଥିବା କାଏଁ ? ନାଇଁ ଦିଏନ ମେତାଲ୍ ଲାଗୁଛେ ।"

'କେନ୍‌ନୁ ଆନି ଦେବା ବୋ ? " ପୁଝାରୀ ପିଲା ଗୁଡ଼ିନୁ ଫିରୁଥିଲା, ଶୁନ୍‌ଲା କି କହିପକାଲା । "ଆନ୍‌ସନ୍ ଠାନେ ନ ବିକି ନେଇଛେ, ବିକି ନେଇଛେ ଜହ ଦାମେ ପରେ ; କଲବ୍ ପିଲାମାନେ ଏମେଲେ ନିକେ ଯାଇଥିଲେ ଯେ ସେ କହେଲା "ଛାଡ଼ ସେ କଥା ; ଦୁସ୍‌ରା ଜରୁରି କଥା ମାନେ ଅଛେ ଧର ।" ତେଡ୍‌କେଁ ହେଁ କଲବ୍ ପିଲାମାନେ କୁହାକୁହି ହଉଛନ୍ "ଦୁଇଟା କୁଟାପରେ ହେ ସର୍କାରୀ ଦଲ୍‌କେ ଚାନ୍ଦାଦେଇଛେ ଆର୍ ଗୁଟେ କୁଟା ବିକିଁ ସରପଂଚ୍ ତାର୍ ବହନିର୍ ବିହାନେ ଲଗେଇଛେ । ହେଁଟା କିଏ ନାଇଁ ଜାନି ? ଏମେଲେ, ସର୍‌ପଂଚ୍, ସପ୍‌ଲେ, ବିଡ଼ିଓ ସମ୍‌କର୍ ଭାଗ ଅଛେ କାହାକେ କହେବ ?" ଜଟା ଉପର୍ ପରାର୍ ଉଆର୍ଡ୍ ମେମ୍ବର୍ । ଇ ସବ୍ ଶୁନି କହେଲା "କେନ୍ କଥାଟା ସତ୍ ଧରମ୍ ଥିଁ ଚଲୁଛେ ଯେ ? ଦେଖ ତ ଇ ଆଂଗନ୍ ଛାଡ଼ି କଥା, ପାକେଟ୍ ପାକେଟ୍ ମକା ଗୁଣ୍ ବିକାହଉଛେ । ଇ ଆଡ଼େଁ ଦରମ୍‌ହାଁକେ ଦରମ୍‌ହାଁ ସେ ଆଡ଼େଁ ମକାଗୁଣ୍ । ସେକେଷ୍ଟେରି ତେଲ୍ ଟିକେ ନାଇଁ ପାଇଥାଇଁ ମୁଡ୍‌କେ । ଯ' ତ ଦେଖିବ ସିନୋ ପାଉଡ଼ର୍ ରକମ୍ ରକମ୍, ଭାଶାଡ଼ୀ ଖେଚ୍ ପଡ଼ିଛେ ଘରେଁ । ପାଶେଁ ଥିଲା ପରଖିତ । ସେ କହି ପକାଲା "ତତେ ଭାଗ୍ ନାଇଁ ମିଲ୍‌ବାର୍ ଯେ କହୁଚୁ । ଇସ୍କୁଲ୍ କମିଟିର୍ ମେମ୍ବର୍ ହଇଛୁ ପରେ । ହେଁନିର୍ ମଏଧାନ୍ ଭୁଜନର୍ ଚାଉଲ୍ ଦାଏଲ୍ କେନ୍ତା ହଉଛେ ? ମାଷ୍ଟର୍ ମାନ୍‌କର୍ ରୋଜ୍ ରୋଜ୍ ଚାହା ଜଲଖିଆ, ଇସ୍‌କୁଲ ଇନିସେପେଟର୍ ଆଏଲେଁ ଶିକାର୍ ଭାତ, ଇସ୍‌କୁଲ୍ କମିଟିର ମାସ୍‌କିଆ ଭୁଜିଭାତ କେନୁ ହେସି ? କିହେ ନାଇଁ କହ ।" "ହେଥିର୍ ସାଙ୍ଗେ ଗାଁର୍ ଇଟା କରମା ସେଟା କରମା କହି ଗାଁ ପାଣ୍ଠିର୍ ନାଏଁ କୁଟିଆ ଭାଟି ଆର ଘୁଡ଼ଘୁଡ଼ି ପଟିର୍ ପଏସା କେନ୍‌କେ ଯାଏସି କିହେ ନାଇଁ ଜାନନ୍ ।" କହେଲା ପରଖିତର୍ ସାଂଗ୍ ଧନ୍‌ଏ ।

ଦେବ୍‌ରାଜ୍‌ର କାନେ ଈ ସବୁ ଗବି ଯାଉଥାଏ । ସୋର୍ କର୍‌ଲା, ଦୁହି ପରା ନ ଦୁଇଟା କଲବ ଘର୍ ହଇଛେ । ସେତେବେଲେଁ ସେ ସର୍କାରୁଁ ଭିଁ ପଏସା କରେଇ ନେଇଛେ ; ଅଫିସର୍ ମାନ୍‌କୁଁ କହି ବୁଲିଁ ଦରି, ଲାଇଟ୍, ଟେଲିଭିଜନ୍ ମଗେଇ ନେଇଛେ । ସେତେବେଲେଁ ସେ ଭାବୁଥିଲା, ସଭେ କହୁଥିଲେ ଭି "କଲବ୍ ଘର୍‌କେ ରୋଜ୍ ରୋଜ୍ ଖବର୍‌କାଗଜ ଆଏବା, ସଭେ ପଢ଼୍‌ବେ । କଲବ୍ କେ ଆବ୍‌ରି ଥିବା ଆର୍ ଆଦ୍‌ରି ଥିବାର୍ ଯୁବକ୍-ସଘ ଗାଁର ଭଲ କଥା, ଉନ୍ନତିର୍ କଥା ମାନ୍‌କୁଁ ମନ୍‌ଦେବେ । ଗାଁର୍ ଲୋକ ସଂଖ୍ୟା, ପଶୁ ପକ୍ଷୀ ସଂଖ୍ୟା, ଗାଁର୍ ମୋଟ୍ ଜମିକେତେ, ଜଲଚର୍ ଜମି କେତେ, ଗୋଚର୍ ଧରସା ସବୁଥିର୍ ହିସାବ । ଯେତ୍‌କି ବଂଧ୍ କଟା ରଖ୍‌ବେ ମୁଡ଼ା ବଂଧ୍‌ଲିର୍ ଆଏର୍ ପାଏର୍ ନୁ ଗଛ୍ ଜଗାବେ । ଗାଁ ଥିଁ କେନ୍‌ସି ଅନ୍ନିୟେ ହଇ ନାଇଁ ଦିଅନ୍, ଗାଁର୍ ଜଗୁଆ ଲେଖେଁ କାମ୍ କର୍‌ବେ । ଏଭେଁ ଜାନୁଛେ ନ ଯେ କଲବ୍ ଘର୍ ଦୁହିଟା ଗଁଜେଇ ଆଖ୍‌ଡ଼ା ଆର୍ ତାସ୍‌ଖେଲା ଘର୍ ହଇଛେ । ଟେଲିଭିଜନ୍‌ଥି ଖାଲି ଚିତ୍ରଗୀତି ଚିତ୍ରହାର୍ ଆର୍ କ୍ରିକେଟ୍ ଖେଲ୍‌ମାନ୍ ଦେଖା ହେସି । ସମାଚାର୍ କି ସଂସଦ୍ ସମାଚାର୍, ପିଲାକର୍ ପଢ଼୍‌ବାର୍ ଶିଖ୍‌ବାର୍ ଲାଏକ ଯାଁ ଯାଣା ଦେଖା ହେଲା ବେଲ୍‌କେ ଟେଲିଭିଜନ୍ ଖୁଲା ବି ନି ହୁଏ । ଦେବ୍‌ରାଜର୍ ଭାବ୍‌ନା-ବାଟେଁ କଁଟା ଗୁଁଦ୍ଧି ହେଲା । ମାଁର୍ ଆଡ଼୍‌କେ ମନ୍ ଗଲା । ମାଁଟା ଇହାଦେ ସିନା ନୁକୋ ଦିଶୁଛେ । ବେମାର୍ ସେମାର୍ ତ ହେବା । ବଏସ୍ ତ ତାର୍ କଥା କହୁଛେ । ତାର୍ କଥାକେ ଅନ୍‌ଶୁନା କରି କେତେଦିନ୍ ରହେବା ? ଈ ବଏସେଁ ମୁଠେ ରାଁଧିକରି ଖାଏବାର୍‌ଟା କେତେ କାଏତ୍ ଆଏ ଅନ୍‌ମାନ୍ କଲା । ଦିହ୍‌ଟେ ପାହାଟେ ଅଛେ । ଆଏଜ୍ ନଶ୍‌ଲେଁ କାଏଲ୍ ଅଟଲ୍ । ପଡ଼ିଁ ଉଡ଼ିଁ ଗଲେ ଘାଆ ଦାଆ । ଯତନ୍ ସଁଖଲ୍ ଠିକ୍ ନାଇଁ ହେଲେଁ ପୋଜ୍ ରକତ୍ ପୋକ୍ ମାଛି । ତାର୍ ଆଖିଁ ଦିଶିଗଲା, ଗୁଟେ ବୁଢ଼ୀଟେ ଛିଡ଼ା ଖଟ୍‌ଟାକେଁ ପଡ଼ିଛେ ; ଦିହ୍‌ଯାକ ଘା'ବଦ୍‌ବଦେଇ ଯାଉଛେ ; ମାଛି ଭନ୍‌ଭନେଇ ଯାଉଛନ୍, ପୋକ୍ ସଲ୍‌ସଲେଇ ଯାଉଛନ୍ ; ଦେଖିଥିଲା କେନ୍ ସିନେମା କି ସିରିଏଲ୍ ଟାକେଁ ଭୁବ୍‌ନେଶରେଁ, ତାର୍ ଭାବ୍‌ନା ଅଟ୍‌କିଁ ଗଲା । ଭାବ୍‌ଲା ତାର୍ ମାଁ କେ ଈ ଅବସ୍ଥା କେ ଯିବାର୍‌କେ ଆର୍ କେତେ ସମିଆ ଲାଗ୍‌ବା ? ଭାବନାକେ ସେ'ନେ ଛାଡ଼ି ଆଏଁଖି ମାନ୍‌କୁଁ ନେଲା ଫେର୍ ସେ ଗାଁ ଖୁଏଲ୍‌କେ । ତାର୍ ଜନା ଶୁନା ସନାତନ୍ କକା ବଲଦ୍ ଫନ୍ଦା ଯୁତା ପଟ୍‌କେଁ ଢେ଼କ୍‌ଟିଟେ ଫାନ୍ଦି ପାଏନ୍ ନଉଛେ । ଗୋଡ଼୍ ମାନ୍ ଥାବେଁ ନାଇଁ ପର୍‌ବାର୍, ପାଏନ୍‌ଟିକ ଛଲ୍‌କିଁ ଛଲ୍‌କିଁ ଅଧା ହଇଁଗଲାନ । ଦୁହିଁ ପାହା ଫୁଲି ଦୁମ୍ ଦିଶୁଛେ । ଦିହେଁ ଥିବାର୍ କରିଆ ଦୁହି ଖଣ୍‌କ ମଏଲା କଟ୍‌କଟ୍ ହଇଁ କଲା ସର୍‌କା ଲେଖେ ଦିଶୁଛେ । ଦେବ୍‌ରାଜ୍‌କେ ଦେଖିଁ ସନାତନ୍ କହେଲା, ରାନ୍ଧିଁ ଖାଉଛେଁ ପୁତ୍‌ରା, ପାଏନ୍‌ଟିକର୍ ବି ଆଶ୍‌ରା ନାଇଁ, କିହେ ଆନି ନାଇଁ

ନିଥିନ୍ ; ଖାଏବା ପିଇବାକେ ଦେବାର୍ କଥା ଛାଡ୍ । ଦୁଇ ଦୁଇଟା ବହ ; ବଙ୍କା ଦୁଲା କରି ଘରକେ ଭୁକେଇ ଥିଲି । ପାଁଚ ପାଲି ଡ଼କ୍‌ରା ପରିଥିଲା । ପୁଓ ମାନ୍‌କର୍ ଲାଗିଁ ପାଁଚ୍ ପାଁଚ୍ ଏକର୍ ଅବଲ୍ ଜମି କରିନେଲିଁ । ସାଙ୍ଗେ ଦୁଇ ବଖ୍‌ରା ପକା ଘର୍ । କା'ଣା ନୈ କରିଁ ପୁଓକର୍ ଲାଗିଁ । ତୋର୍ କାକୀ ଆଏଁଖ୍ ମୁଜ୍‌ଲା ଦିନୁ ଧରମ୍ ବି ମୋର୍ ଆଡ଼୍‌କେ ଆଏଁଖ୍ ମୁଜିନେଲା ବୁଆ । ମୋର୍ ଅବସ୍ଥା ଇଟା ଆଏ ବେଟା । ମରି ଗଲେଁ ଫାବି ଯାଏତିଁ ଯେ ଶଳା ଯମର୍ ବି ବିଚାର୍ ବୁଧି ନାଇଁନ । ପୁଓକେ ଫେର୍ ପୁରାନ୍ ମାନେ ଧରମ୍‌ରାଜ୍ ଧରମ୍ ଦେବ୍ ନାଁ ଦେଇଛନ୍ । ପେଟ୍‌ଟାକ ଅଛେ, ଭୋକ୍ ଅଛେ, କେନ୍‌ସି ଭି ମିତ୍‌ରେଁ ତାହିଁ ଗୁଁଡ଼େ ଗର୍‌ସେ ପକାବାକେ ପର୍‌ବା ତ ; କାଁ କର୍‌ମି ? ମଲା ପରେଁ ପୁଏ ବଡ଼ ବଡ଼ ମେଲ୍‌ଛା ଘିନି ଜାଏତ୍ ଖାଏଦ୍ ଦେବେ । ବଂଧୁ ବାଂଧବ ଗୋତ୍ କୁଟୁମ୍ ଗୁଟ୍‌ରିଁ କାମ୍ କାରଯ୍ କରବେ ।' ଦେବରାଜ୍ କା'ଣା କହେଲା ଯେ ବୁଢ଼ା କେ ନ ଶୁନୁଛେ ? ତାର୍ କାନ୍ ଭି ତ ପୁଓକର୍ ଆଗୁଁ ତାହାକେ ସାହେଯ୍ କର୍‌ବାର୍ ଛାଡ଼ି ନେଇଛେ ।

ଦେବ୍‌ରାଜ୍ କେ ଶୁନେଇଁ ଗଲା କାଏଁ ସନାତନ୍ କକା ତା'ର୍ ମା'ର୍ ଭବିଷ୍ୟତ୍ କଥା । ସଥେଁତ୍ ମୋର୍ ମାଁକେ ଇ ମଲାକାଲ୍‌କେ ଯତନ୍ ସଁଖଲ୍ ନାଇଁ କରି, ପଛେଁ କାମ୍ କାରଯ୍ କେ ଗୁଡ଼୍‌ଦୁ ଲୋକ୍ ଦେଖା ଆଡ଼ମ୍ବର୍ କଲେଁ କାଁ ହେବା ? ନାଇଁ ନାଇଁ, ମୁଇଁ ହେଁ ସବ୍ ନାଇଁ ହଇ ଦିଏଁ ଭାବି ଭାବି ଦେବର୍‌ରାଜ୍ ତର୍‌ତରାନୁ ଘର୍‌କେ ଫିର୍‌ଲା ବାଟ୍ ମୁହଁନୁ ଡ଼ାକ୍ ଦେଲା "ଶଶିର୍ ମା' ଶୁନୁଛ, ଭୁବ୍‌ନେଶ୍ୱର୍ ଯିବାର୍ ବନ୍ଦ ହେଲା । ନାଇଁ ଯାଉଁ ନ ।"

ଆଶ୍ରିଯ୍ ହେଲା ଲେଖେଁ କହେଲେ ଶଶିର ମା, "ଏ ବୁଆ କାଣା ହେଲା ? ଏଛନି ହର୍‌ବର୍‌ଉଥିଲ ସଜବଜ୍ ନୁହେ ହ ତାଏଲ୍ ବଲିଁ । ମୁଇଁ ଯେ କେତେ ହରୋ ବଟୋ ହଇଁ ମା ବନ୍ଧରେଇ ନେଇଥିବାର୍ ଅରୁଆ ଉଷ୍‌ନା ଚାଉଲ୍ ଯୁଗ୍‌ରେଇ ସାଏଲିଁ ନ । ଗୁର୍ ଉଖ୍‌ରା ଆମୁଲ୍ ତେଁତେଲ୍ ଦୁରାକ ସଜ୍ କରୁଛେଁ କାଁ କାଁ ଥିଁ ନିଏଁ ବଲିଁ । ତମେ ଫେର୍ କହେଲ ନ ଯେ ନାଇଁ ଯାଉଁ ନ ।"

ଦେବ୍‌ରାଜ ପର୍ଛିର୍ ଖଟେଁ ବସିଁ କହେଲା "ମା, ଚାଉଲ୍ ଗୁର୍ ଉଖ୍‌ରା ଏବ୍‌ତକ୍ ଦେଇ ଆଉଛେ ଆମେ ନେଉଛୁଁ, କାଁ କାଁଣା ଆମ୍‌କୁଁ ମାଗୁଛେ କେଭେଁ କିଛି କାଁଣା ଦଉଛୁଁ ? ତାର୍ ନ ଯାହା ଥିଲା ସବୁ ଦେଇଛେ । ପେଟ୍ ଚିରିଁ ଜନମ୍ ଦେଇଛେ, ଛାତି ଚିରିଁ ଗୁରସ୍ ପିଏଇଛେ, ହୁରୁଦ୍ ଫାରି ରୁକି ନେଇଛେ କେତେ ସେନ୍‌ହୋ, କେତେ ମମ୍‌ତା । ଆମେ ଦେତାଁ କା'ଣା ? ଏଛନି ଯେତେବେଳେଁ ତାହାକେ ସବୁ ଦର୍‌କାର୍ ଆମେ ତାର୍ ଭାବେଁ ତାହାକେ ଛାଡ଼ି ଭାଗ୍‌ବାର୍ ଉଯୋଗ୍ ଥିଁ ଅଛୁଁ । ନାଇଁ, ମାଁ କେ ଆର୍ ଛାଡ଼ିଁ ଯିବାର୍ ନାଏଁନ ; ସେ ଯାହିଁ ଆମେ ତାହିଁ ।"

"ଆର୍ ଦେଖ ତ" ଦେବ୍‌ରାଜ୍ କଲେଁ କଲେଁ ହେଲେଁ ବି ଟିକେ ବର୍କସ୍ କରି କହେଲା "ଗାଁ ଭି ମାଁ ଆଏ । ସେ ଭି ଆଏଜ୍ ସରବ୍ ହରା ସର୍ବାର୍ ଭୁଖେଇ ସରବ ନଙ୍ଗ୍‌ଲା ହଇଁ ପରିଛେ ସରବ୍ ମଙ୍ଗ୍‌ଲା ଗାଁ ମାଁ । ଭୁବନେଶରେଁ ଆମର୍ କିଏ ଅଛେ ? କା'ଣା ଅଛେ ? ଇ ଗାଁନେ ଜନମ୍ ନେଇଛୁଁ ଇ ଗାଁ ନେ ମରମା । ଗାଁର୍ ଆଏଜ୍ ଶିକ୍ଷା ଦୀକ୍ଷା ପାଠ୍‌ଶାଠ୍ ଧନ୍ ମନ୍ ସବୁ ଜରୁରତ୍ ଅଛେ । ସେ ସବୁ ଦେବାକେ ପରବା । ଆମେ ଧନ୍ ଦରବ୍ ଯଶ୍ ପଉରଷ୍ ପାଠ୍ ଶାଠ୍ ବିଦ୍ୟା ବୁଦ୍ଧି ଯାହା ଅରଜିଛୁଁ ସେ ସବୁ ଇ ଗାଁ ମାଁର୍ ଅଁଟେ ଉଲ୍‌ଦି ନେବାକେ ପରବା । ମୋର୍ ଭିତରର୍ ମୁନୁଷ୍ କହୁଛେ, ମା' କେ ଦେଖ୍, ଗାଁ କେ ଦେଖ୍ । ଦେବ୍‌ରାଜ୍‌କେ ଆଏଜ୍ ତାର୍ ନିଜର୍ ସ୍ୱରୂପ ଦକ୍‌ଦକ୍ ଦିଶୁଛେ । ସେ ଇ ରାଏଜର୍ ଅର୍ଥନୀତି ଜାନ୍‌ନେ ବାଲା ଆଏ । କିଏ କଲା ତାହାକେ ଏଡ଼େ ପଣ୍ଡିତ ଏଡ଼େ ଜ୍ଞାନୀ ? କିଏ ପଢ଼ାଲା ପାଠ ? ଆଜିରର୍ ଇ ଗରିବ୍ ଭୁଖା ଦେଶର୍ ଲୋକ୍ ତ । ଏତ୍‌କି ଦିନ ମୁଇଁ କହି ଆଏଲିଁ ଆମର୍ ଗରିବି ପାଏନ୍ ଛାଏଡ଼୍ ଫସଲ୍ ହାନି କାଯେଁ ବଲି । ଫସଲ୍ ହେଲେଁ ଭି ଲୋକ୍ ଖାଇ ନାଇଁ ଜାନ୍‌ବାର୍ ମଦ୍ ଜୁଆ ବିହା ବର୍‌ପନର ଲୋକ୍-ଦେଖା ବଡ଼୍‌ଲୋକିର୍ ଧାରେ ଉହୁଲାଇ ନଉଛନ୍ । ଲାଁଚ୍ ଦୁର୍ନୀତିର୍ ଶସ୍ତର୍ ଧାର୍ ନିର୍ବିଚାର୍ ଆର୍ ନିର୍ବିକାର୍ ଭାବେଁ ହାନି ଚାଲିଛେ । ମୋର ଦେଶର୍ ଲୋକ୍ ଚାଲି ନାଇଁ ଜାନ୍‌ବାର୍ ବୁଲି ନାଇଁ ଜାନ୍‌ବାର୍ । ପାଠ ନାଇଁ କି ଶାସ୍ତର ନାଇଁ ସଭେ ମୂରୁଖ୍ । ଯେନ୍ ମାନେ ପାଠ୍ ପଢ଼ିଥିବାର୍ ଢ଼ମ୍ ଦେଖାସନ୍ ସେ ଟା କାଏଁ ପାଠ୍ ଆଏ ? ଯେନ୍ ପାଠେଁ ପରର୍ ଲାଗିଁ ଟିକେ ଦରଦ୍ ନାଇଁ, ସେଟାକେ ପାଠ୍ କହେଲେଁ ଅପାଠ୍ କେନ୍‌ଟାକେ କୁହାଯିବା ? ଯଦରପି ସେ'ଟା ବି କିଏ ପଢ଼ିଛେ ତ ସେ କେନ୍‌ସି ନଉକିରି କି ବେପାର୍ ବାହାନା ନେଇ କେନ୍ ସହରେଁ ଦାଖଲ୍ । ଯେ ବି ରହିଯାଇଛେ ଗାଁଏଁ, ସେ ଗାଁ ପୁଡ଼ିଥିଁ ପାଏନ୍ ମଠିଏ ଧରି ନିଜର୍ ଘର ବଅଁଚାବାର୍ ଚେରେଷ୍ଟା କରୁଛେ, ଗାଁ ପୁଡୁଛେ ପୁଡୁଥିବା । ମୁଇଁ ଯେନ୍ ମାନ୍‌କର ଧରମୁଁ ପାଠ୍ ପଢ଼ଲିଁ ପଣ୍ଡିତ୍ ହେଲି ସେମାନ୍‌କୁଁ କା'ଣା ଦେଇଛେଁ ବଦ୍‌ଲା ଥିଁ । ମୋର୍ କବାର୍ କମ୍ ଦରମହାଁ ଜହ୍ନ, ନିୟମ୍ ନେ ଯେତ୍‌କି ନେବାର୍ କଥା କଡ଼ା କ୍ରାନ୍ତି ହିସାବ୍ କରି ଦେଶର୍ ଗରିବ୍ ଖଜନାଖାନା କେ ନିଶେଷ୍ କରି ଶୁଷିଛେଁ । ଆଏଜ୍ ବି ମୋର୍ ପଏସାର୍ ଶୋଷ୍ ନୁହେ ମେଟେ । ଆର୍ କେନ୍ ରକ୍‌ମେ ପଏସା ଏଁଠ୍‌ମି ଚେରେଷ୍ଟା ନେ ଅଛେଁ ।

ନାଇଁ ; ଆଏଜ୍ ମୋର ଅନ୍‌ମୁନ୍‌ଷିଆ ମନର୍ ଟେଁଟି ଚିପି ଶେଷ୍ କରମି । ମତେ ମୋର୍ ଗାଁ କେ ଦେଶ୍‌କେ ତାର୍ ହଜ୍‌ଲା ଦରବ, ଫିରାବାକେ ପଡ଼୍‌ବା । ମୋର୍ ଭିତରର୍ ମୁନୁଷ୍ ଉଟୁସ୍ ପୁଟୁସ୍ ହଇଁଯାଉଛେ, ରଡ଼ି କିର୍ଲଉଛେ 'ମାଁ କେ ଦେକ୍ ଗାଁ କେ ଦେଖ୍ ।'

# ଝାଉ

ତରାସ ନାଁ ଥିଁ ଟୁକେଲ୍ ଟେ । ବର୍ଜର୍ ପିଲାକାଲର୍ ବନିହାଁ ଦିନ୍ ତାର୍ କକାଘର୍ ଗାଁ ଥିଁ କରିଥିଲା ତ, ସେ ଗାଁର୍ ଆଏ । ବଏସେଁ ତାର୍ ନୁ ବଛର୍ ଦୁଏ ବଡ଼୍ ଆଏ । ଗୁଦୁଲ୍ ଗାଦୁଲ୍ ଦିହ, ଗୁରୀ ବରନ୍ । କଥା ଭାଷା ପର୍ଛା, ନିଜର୍ କକା ଲେଖେଁ । ଗାଁର୍ ମାଏନ୍ ଥିଁ ବରଜ ତାର କକା ହେବା । କଥା ଭାଷା ବି ନିଜର୍ ଘରର୍ କକା ଲେଖେଁ । ସେ ଯୁଆନ୍ ହେଲା ; ବିହା ହଇଁ କେନ୍ ଝାର୍ ଭିତରର୍ ଗାଁଟାକେ ଖଟିଗଲା । ବର୍ଜର୍ ସୋର୍ ଭିତ୍‌ରୁଁ ସେ ଉଭିଁ ଯାଇଥିଲା ନ କେତେ ଦିନୁ । ତରାସର୍ ଜନମ୍ ଗାଁ କେ ଭି ତ ସେ ନାଇଁ ଯିବାର୍ ନ ; ଶାଶ୍ ଘର୍ ଗାଁକେ ଯିବା କା'ଣା ? କେନ୍ ଗାଁଥିଁ ପରିଛେ ତାହା ବି ସେ ଜାନି ନାଇଁ ।

ଆଏଜ୍ ଇ ଝାଉ ଖରାର୍ ଦିନେ ; ବୁଡ୍‌ହା ସମରର୍ ଝାର୍ ଝର୍‌ନା ଭିତରେର୍ ତାହାକେ ଅଜନା ଅଦେଖା ଗାଁଟାକେଁ ତାର ଦେଖା ପାଏବା, ତାର୍ ମନେ ଗିଆନେ ନାଇଁ ଥାଇ । ଅକ୍ଷି ତୃର୍ତୀଆ ଏ'ଦେ ଏ' ଯାଇଛେ । ବଏଶାଖର୍ ତାଲୁ ଫଟା ବଝା ଖରା ମାଡ଼ି ଆଇଛେ ଝାଏଁ କରୁଥିବାର୍ ଇ ଝାର୍‌ମଝାର୍ ଗାଁ ମାନ୍‌କେଁ ; ଯାହିଁ ପାଏନ୍ ଟା ଅମରତ୍‌ଠାନୁ ବି ମହଙ୍ଗା ଆଏ । ତ'ବି କେନ୍ ଝେସ ସାହୁ ଲେଖେଁ ମନ୍ତୀର୍ ଦୟାନୁ କେ ନେ କେନ୍ତା ଗୁଟେ ଗୁଟେ ବୁରିଙ୍ଗ୍ ଚୁଆଁ ; ସବୁ ତ ନାଇଁ ଚଲେ, ଯେନେ ଚଲ୍‌ସି ସେ ପାଏନ୍ ଭଲୁଁ ଭଲା ଜାଗାନେ ପିଇ ହେସି । ନେ ହେଲେଁ ବନିହାଁଠାନେ ପଟ୍ ନୁନିଆଁ ; ପିଇଲେଁ ପିଶାବ୍ ପୁଡ଼୍‌ସି, ଚାହା ଛିଡ଼୍‌ସି, ଦାଏଲ୍ ନାଇଁ ସିଝେ, ଭାତ୍ ଫାଟ୍‌ସି । ବର୍ଜ ସର୍‌କାରୀ ଅଫିସର୍ ; ସର୍‌କାରୀ କାମ୍‌କେ ଲୋକ୍‌ମାନ୍‌କର୍ କାମ୍, ଭଗବାନ୍‌କର୍ କାମ୍ ନଜ୍‌ରେଁ ଦେଖ୍‌ସି । ସେ ଟା ଫେର୍ ଗୁଟେ ଇସ୍‌କୁଲ୍ କାମ୍ ଆଏ ; ବର୍ଷା ଆଗୁଁ ନାଇଁ ସାଏଲେଁ ପଢ଼ା ହୁଏ ବର୍ଷାଦିନେ ଅଥୋଥାଲି ହେବେ । ଯାଇଥିଲା ଦେଖି । ହର୍‌ବରାଇ ଆଏଲା ବଏଶାଖ୍ ପୁନି ଆଗୁଁ ସାର୍‌ବାକେ । ଝାର୍ ପତ୍‌ରାର୍ ବାଟ୍ । ଖାଲ୍ ଢ଼ିପ୍ କଁଟା ପଥରର୍ ଧର୍‌ସା ରାସ୍ତା । ଖରାର୍ ତାତି ଥିଁ ସାଏକଲ୍ ନୁ ତପିଁ ଯାଉଛେ । ବ୍ଲକ୍ ଅଫିସ୍‌କେ ପୁହୁଁଚିସି କେନ୍ ରକ୍‌ମେ । ଝାଲ୍ ସରସର୍ ଦିହ, ପିଁଧିଲା କପଡ଼ା ଦିହେଁ ଲଟ୍‌କି ଯାଉଛେ । ଶୁଷେଁ ଥୁକ୍ ବଟି ହଉଛେ । ଖରାକେ ତାଲୁ ତେତେଲ୍ ଲାଗି ଗଲାନ । ଯେନ୍ତା କଲେଁ ବି ଯାଇ ନାଇଁ ହଏନ । କେନ୍‌ସି ନ ବି ଘାଏ ଥାକିଫୁଟି ପାଏନ୍ କାଏଁଜ୍ ଟିକେ ପିଇଲେଁ ଯାଇ ଚଲେ । ସାଏକଲ୍ ବି ଚଲେଇ ନାଇଁ ହେବାର୍ ନ । ଆଗ୍ ଆଡୁଁ ଝାଉ ପିଟୁଛେ । ତତ୍‌ଲା ପବ୍‌ନେ ମୁହଁ ପୁଡ଼ି ଯାଉଛେ ।

ବାଟେଁ ବାଟେଁ କୁରିଆ ଗୁଟାହୁର୍ ଗାଁ । ମଝା ମଝି ପିଲ୍ ବର୍‌ଗଛ୍ ଟେ । ଲୁଭ୍‌ଲୁଭାନି ଛଏରା । ପାଶେଁ ଘର୍‌ଟାକର୍ ପୁଆଲ୍ ଛିଆନିର୍ ପର୍‌ଛିଟେ । ଲାଗନୁ ବୁରିଙ୍ଗ୍‌ଚୁଆଁ । ହେଣ୍ଡଲ୍ ଲାଗିଛେ । ସାଏକଲ୍‌ଟାକ ପର୍ଛିର୍ କାଁଥ୍ ଥିଁ ଡେ଼ରି ଆକୁଲ ବିକୁଳ ହଇଁ ଧାଇଁଗଲା କଲ୍‌ଚୁଆଁ ନିକେ । ପାଏନ୍ ଯୁରା ଧରି ଉଦାସର୍‌ସର୍ ଦିହେ ଆଉଥିଲା ଭର୍‌ତି ବଏସର୍ ମାଏଝିଟେ । କହି ପକାଲା "ଆଙ୍ଗା ! ହେ ପାଏନ୍ ନି ପିଁ ହଏ । ଆସ ମୁଇଁ ପାଏନ୍ ଦେମି ପିଇବ । ଆମେ ପାଏନ୍‌ଖିଆ ଜାଏତ୍ ଆଉଁ । ଡୁରାଲା ବୁକା ଲେଖେଁ ବର୍‌ଜ ଲମି ଆଏଲା ତାର୍ ପଛା ପଛ୍ ସେ ପର୍ଛିକେ, ଯେନେ ତାର୍ ସାଏକଲ୍ ଡେ଼ରିଥିଲା ! ସେ ଡୁର୍‌ତି ଖଟ୍‌କେ ପାଏ ନାଇଁ କି ଖଟ୍‌ଲି କେ ପାଏ ନାଇଁ, ଖଟ୍ ଛୁଆଟେ ଆନି ପକେଇ ଦେଲା । ପାଏନ୍ ଗଡେ଼ ଥୁଇ କହେଲା "ଗୋଡ୍ ହାତ୍, ଧୁଅ ; ପିଇବାର୍ ପାଏନ୍ ଦଉଛେଁ ।" କହି ପାଏନ୍ ଖୁରେ ଆନି ଥୁଇଲା । "ଝାଲ୍‌ଟିକେ ମାର, ଆର୍ ପାଏନ୍ ପିଇବ" କହି ଏକସ୍‌ରେଁଟି ଦେଖୁଛେ ଇ ପେଁଟ୍ ସାଟ୍ ପିନ୍ଧା ବର୍‌ଜକେ । କହେଲା "ଆଙ୍ଗା କେନ୍‌କେ ଯିବ ? ପଦମ୍‌ପୁର କାଏଁ ? ବାଟ୍ ଦୁଇକୋଶ୍ ଆଏ ଯେ ଇ ଖରାକେ ଚାହେଁଲେଁ ଚାଏର୍‌କୋଶ୍‌ନୁ ବି ଜହ ଲାଗ୍‌ବା ।" କଥାର୍ ସାଙ୍ଗେଁ ତାର୍ ଦେଖିବାର୍‌ଟାବି ଚାଲିଛେ ; ଦେଖୁଛେ ଯେ ଦେଖୁଛେ । କା'ଣା କହେତା କହେତା ହଉଛେ ଯେ ଦମ୍ ନାଇଁ କର୍‌ବାର୍ ।

ଷେଷେଁ କହେଲା "ଆଙ୍ଗା ! ତମକୁଁ ଚିହ୍ନଲା ଲେଖେଁ ଲାଗୁଛେ ଯେ, ହେବ ନାଇଁ ହେବ ହଇଁ ନାଇଁ କହି ହବାର୍ । ତୁମେ ଆମର୍ ପିପଲ୍‌ପଦରର୍ ବାହ୍ମନ୍ ବୁଢ଼ାର୍ ପୁତ୍‌ରା ବର୍‌ଜ ବାଗିର୍ ଦିଶୁଛ ଯେ । ଅ'କାଏଁ ? ପିଲାଦିନର୍ ଦେଖା ତ ଭର୍‌ସି କରି କହି ନାଇଁ ହେବାର୍ ।" ବର୍‌ଜ ଏତ୍‌କେଁ ତାର୍ ଆଡ଼୍‌କେ ଦେଖି କହେଲା "ହଁ ଠିକ୍ ଚିହ୍ନଲ ଗୋ ! ଆଏଁ ।" କେନେ ବନ୍ଦ୍ ହଇଯାଇଥିବାର୍ ପାଏନ୍ ଧାର୍ ବାଟ୍ ପାଏଲା ଲେଖେଁ କହି ଉଠ୍‌ଲା, "ଏ ବୁଆ ! ଦେଖ ତ, ତମେ ମତେ ନାଇଁ ଚିହ୍ନବାର୍ କାଏଁ ? ମୁଇଁ ହେଁ ଗାଁର୍ ଝି ଆଏଁ, ତରାସ ; ଫଟା ବୁଢ଼ାର୍ ଝି । ଆମର୍ ବାରିଁ ଯେନ୍ ବଡ଼ ବୁରୋଗଛ୍ ଥିଲା । ଛୁଆ ଦିନେ କେତେ ଖାଉଁ । ଛୁଆ ଦିନର୍ ସେ କାଁଚିକୁଢ଼ି ଖେଲ୍ ତୋର୍ (ଆର୍ ତୁମେ ତାମେ ନାଇଁନ, ନିଜର୍ ପନିଆଁ ତୁଇଁ ତାଁକେ ଆନି ଆଏଲା) ନାନି ମାନ୍‌କର୍ ସାଙ୍ଗେଁ । ସୋର୍ କଲେଁ, ସେ ଗାଁ ଭୂଇଁ ସେ ଦିନ୍ ବଏସ୍ କେ ଘୁଚିଁ ଯାଇ କେତେ ଉଷତ୍ କେତେ ଅଏନ୍ ଲାଗ୍‌ସି କକା ! ସେ'ନୁ ଆ' ମେତାଲ୍ ନାଇଁ ଲାଗେ । ତୁଇଁ ଇ ପଦମ୍‌ପୁରେଁ କାଁ ଅଫ୍‌ସର୍ ଅଛୁ ? କେତେ ଦର୍‌ମ୍‌ହାଁ ପାଏସୁ ? ମୋର୍ କାକୀ କେନ୍ତା ଅଛନ୍ ? ଛୁଆପିଲା କେତେଟା ?" ଘାଏକେଁ କେତେ ପଚରା ଉଚରା । ସେ ଭିତରେଁ ବର୍‌ଜର୍ ଜୀବନ୍ ଛଡ଼ା ଶୋଷ୍ ପାଏନ୍ ଖୁରିକ ପେଟ୍‌କେ ପଠେଇ ଅଥାବ୍ ଆକୁଲ୍ ଅଥାଳିଆ ଜୀବନ୍‌ଟା ଥାବେଁ

ରଖିଲା । ତରାସର୍ ପିଲା ଛୁଆ ନାଇଁ । ମାମୁଁ ମାଇଁ ଦୁହି ପରାନୀ ନ । ତରାସର୍ ବଏସର୍ ଝଲକ୍ ମଏଲେନ୍ ନାଇଁ ପରି କି ଦିହର୍ ଗଠନ୍ ବନ୍ଧନ୍ ହୁରଗୁଲା ନାଇଁ ହଇଁ । ହେଲେଁ ବି ବଏସର୍ ବଡ଼୍ପନି ନାଇଁ କି ଦିହର୍ ଉବ୍ଡ଼େଗ୍ରି ଭାବର୍ ଚିହ୍ନାନାଇଁ । ତରାସ ତର୍ତରାନୁ କହେଲା "କକା ଏଛନି ଯିବାର୍ ନାଆଁ ନି ପକାବୁ । ମୁଇଁ ମୁଠେ ଡ଼େକ୍ଚି ପିତଲ୍ ଥିଁ ବସେଇ ନଉଛେଁ, ଉଲ୍ହାବୁ । ଗରିବ୍ ଘରେଁ ବାଏଣା କୁନୁଆଁ ।"

ବରଜର୍ ହଁ ନାଇଁ କେ ନାଇଁ ଟାକି ଚାଉଲ୍ ମୁଠେ କାଣ୍ଡେଇ ଆନି ଡ଼େକ୍ଚିଟାକେଁ ବସାଲା ! କେନ୍ କୁରିନେ ବିହ୍ନନ୍ ମୁଗ୍ ରଖିଥିଲା କାଏଁ ସେ ପଷେ ମିତାଲ୍ ଭାଜିଁ ଦଲିଁ ଛରି ଆନ୍ଲା ନିମିଷ୍‌ଟାକେଁ । ଦୁଆରର ମଠିଆ ରଖିସି ନେ କଦେଲ୍ ବୁଟାଟେ ବୁର୍ଷାଲ୍ ହଇଁ ବଢ଼ିଛେ । ତାହିଁ ବନ୍ଏ କେଁଡ଼ାଟେ ପକେଇଛେ ! ବଟିର୍ଲା କଦେଲ୍ ଗୁଟାଦୁ ତୁଲିଁ ପୁଡ଼େଇଁ ଛାଲି ଛଡ଼େଇଁ ନୁନ୍ ଦେଇ ଚଟ୍କି ତେଲ୍ ସୁରଷୋ ଉଏଲ୍ ଦେଇ ପରଝି ନେଲା । ପିଁଢ଼ାଟେ ପକେଇ ପାଏନ୍ ଗଡ଼େ ଥୁଇଁ କହେଲା "ଭାତ୍ ତୁନ୍ ହେବାନ କକା ! ଉଲେ୍ହଇ ପକା । ଥାଲି ପତ୍ରେଁ ଗିନାଟେ ଥୁଇ ନେଇଛେଁ, ବାଢ଼ ଖାଇପକା, ଗୁଡ଼୍ଦୁ ବେଲ୍ ହେଲା ନ । ତରାସର୍ ଯୁଗାଡ଼୍ ପାତି ଥିଁ ଯେନ୍ ଗହେରର୍ ମନ୍ଟେ ସାନି ହଉଛେ ସେଥିଁ ତରଲିଁ ହଜିଁ ଯାଇଛେ ବରଜ ନିଜେଁ ନିଜର୍ ଭିତ୍ରେଁ ।

"ନୁନି ! ତୁଏଁ ପିଲା କାହିଁ ଯାଇଛନ୍ ସେ ?" ବରଜ ପଚରାତେ ସାଏର୍ କହେଲା ତରାସ "ଆଉଥିବେ କକା ! ସମିଆ ହେଲା ନ" କହିନୁହେ ସାରେ ଯୁଆନ୍ ମୁନୁଷ୍‌ଟେ ଘରକେ ପୁହୁଁଚି ଉଦାକରିଆ ପିଁଧି ଠିଆ ହଇ ଇ ଦୁହିକୁଁ ଡ଼ଗ୍ ଡ଼ଗ୍ ମଗ୍ ମଗ୍ ଦେଖୁଛେ । ତାର୍ ତ ଏନ୍ତା ବଂଧୁ ବାଂଧବ୍ କି ଚିହ୍ନାର୍ ଜନାର୍ କିହେ ନାଇଁ ନ । କେନିର୍ ଇ କୁନୁଆଁ ? ମନେ ମନେ ଭାକୁର୍ କୁଟୁର୍ ହଉଛେ । ତରାସ ତାର୍ ମୁନ୍ଷର୍ ମନର୍ କଥା ବୁଝିଲା ବାଗିର୍ କହେଲା "ମୋର୍ କକା ଆଏ ; ଆମର୍ ଗାଁର୍ ଆମର୍ ବାଟ୍ ମୁହଁର୍ ବାହ୍ମନ୍ ଘରର୍ ବରଜ ; ବାହ୍ମନ୍ ବୁଢ଼ାର୍ ପୁତ୍ରା । ଯୁହାର୍ କର ।

ନକୁଳର୍ ହାଉ୍ ଦୁହିଟା ତାର୍ ତାର୍ ଯୁରିଁ ହେଲା । ନକୁଳର୍ ମାଗୁର୍ ମାଛ୍ ବର୍ନର୍ ଦିହ, କଁଟା କଁଟା ମେଛା, ମୁଡ଼ର୍ କୁଟ୍କୁଟି କଲା ମିସ୍ ମିସ୍ ବାଲ୍ ଆର୍ ମୁରି ମୁରି ହେଇଥିବା ଡ଼େନା ଦେଖି କବିର୍ ଲୋଭ୍ ଲହ ଲହ୍ ଆଏଁଖି ଆର୍ କୁନ୍ଦାର୍ ନିଜବଦ୍ ନିଶବଦ୍ ମୁହଁ ନେଇ ଠିଆ ରହେଲା । କହେଲା "କେ ନ ଥିଲ ବୁଆ ! ଇ ଠାଡ଼ ମଏଧାନ୍ ତକ୍ ?" ତରାସ୍ ନକୁଳ କେ କହି ନେଇଁ ଦେଇ ନିଜେଁ କହେଲା, "ଜୁନ୍ହାଁ ଗଁଡିଆ ଘରେ ହଲିଆ ଅଛନ୍ କକା ! କମିହାଁ ବୁତା ସାରି ଆସ୍ଲା ବେଲ୍‌କେ ଉଛୁର୍ ହେସି"। ବରଜ କିଛି ନାଇଁ କହି ଖାଲି ଦେଖି ବସଲା ଦୁହିକୁଁ ଏକ୍ ସର୍ ଲଗ୍ । ମନେ

ମନେ ଭାବ୍‌ଲା, କେତେ ସରଲ୍ କେତେ ଖୁଲା ଇ ଗଅଁଲିଏନ୍, ଅପଢ଼୍ ଅଲେଖା କାଗଜ୍ ଟୁକ୍‌ରା ଲେଖେଁ ଇ ଟୁକେଲ୍‌ଟାକ । ତାର୍ ମନ୍ ଭିତରର୍ କୁହୁ କୁହୁ ଅଁଧାର୍‌ର୍ କନ୍ଦି ବିକନ୍ଦି କେ ପର୍ଛା ଖୁଲା କରିନେଲା ; ମେଲାକରିନେଲା ସବୁ କବାଟ୍ ଜାଲ୍‌ନା ; ଢ଼ାପ୍‌ନି ନାଇଁ, ଆବ୍‌ରନ୍ ନାଇଁ ; ଯେ ଯେନ୍ ଆଡ୍ଁ ଦେଖିବ ଦେଖ, ସବୁ ଫଟିକ୍ ଦିଶୁଛେ । ତରାସ କହି ଚାଲିଥାଏ,"ଆମର୍ ବିହା ବେଲ୍‌କେ ମୋର୍ ଶଶୁର୍ ପରେ ଟଂକା ଶ'ଦୁ କୁନ୍‌ହାଁ ଗଁଡିଆଠାନୁ ଆନିଥିଲେ । ବଛର୍ ଭର୍‌ନା ନାଇଁ ହଉନୁ ସେ ମରିଗଲେ । ଗଁଡିଆ କହେଲା "ପଏସା ଶୁଝ୍‌ବାର୍ ତକ୍ ତତେ ହଲିଆ ରହେବାକେ ପଡ଼୍‌ବା ଗା । ବନିହାଁ ଲୋକ୍ କହେଲେ କାହିଁର୍ ହଲିଆ ରହେବୁ ? ଯେ ମଲା ସେ ଗଲା । ଜୀବନ୍ ଯିବାର ସାଙ୍ଗେ ଲାଗ୍ ବି ଗଲା । ହେଲେଁ ମୁଇଁ ଭାବ୍‌ଲିଁ, ହେଁଟା କାଁଏ ବନ୍‌ଏ କଥା ଆଏ ? ହକ୍ ଦେଇଛେ ନେବା ନାଇଁ କାଏଁ ? ଲାଗ୍ ତ ବାଗ୍ ଆଏ । ଇ ଜନ୍‌ମେ ନାଇଁ ହେଲେଁ ଆର୍ କେନ୍ ଜନ୍‌ମେ ହେଲେଁ ଶୁଝ୍‌ବୁ । ମହାପ୍ରୁ ମୁନୁଷ୍ ଜନମ୍ ଦେଇଛେ । ଇ ଜନ୍‌ମେ ନାଇଁ ଶୁଝ୍‌ଲେ ପଛେଁ ଗୋରୁ ଗାଏ କି ଘୁଡ଼ା ହାତୀ ହଇଁ ଶୁଝ୍‌ବାକେ ପଡ଼୍‌ବା । ମୁଢ଼ାଲେ ଯେ ଏ'ଦେ ଶୁଝିନେଲେ ନ । ଏସ୍‌ରେ ନ କକା ! ଦିନମୁଡ଼୍ ପାଏଲା ବେଲ୍‌କେ ଲାଗର୍ ଲେଶ୍ ନାଇଁ ଥାଏନ ।" "କଥାର୍ ସୁରେଁ ନାଇଁ ଜନା ପରବାର୍ ସିନା, ପଚ୍ଛିର୍ ତଲ୍‌କେ ଗଲା ନ ଛାଏ ; କକା ! ବାଢ଼ ତ ଖାଇ ପକା ।" ତରାସର୍ କଥା ଶୁନି ବର୍‌ଜ କହେଲା "ସଭେ ଖାଏମା, ବୁଆ ବି ବସ୍‌ବେ, ସାଙ୍ଗେଁ ତୁଇଁ ବି ବସ୍ । ଚାଉଲ୍ ପଷେ ଲଗେଇ ଥିଲେଁ ଚଲିଥିତା ; ତୁଇଁ ତ ଅଢ଼େ ମେତାଲ୍ ଚାଉଲ୍ ଲଗେଇଛୁ ଯେ ଢ଼େଙ୍ଗ୍ ସିର୍‌ନୁ ଢ଼େକ୍‌ଚେ ଭାତ ହଇଛେ । ଦାଏଲ୍ ଭି ଖୁରେ ମେତାଲ୍ ହେବା ।" ଅଁର୍‌ରା ପିଲେ, ଦୁହେ ଖାଇ ବସ୍‌ଲେ । ତରାସ କହେଲା "ତୁମେ ସାଏଲେଁ ମୁଇଁ" ଖାଏମି ନ ।

ବର୍‌ଜ ଅନ୍‌ମାନ୍ କରୁଥିଲା ତିନ୍‌ସାର୍ ବର୍ତନ୍ ନାଇଁ ନ ; ସାରେ ଧୁଇଲେଁ ଯାଇ ଜନ୍‌ଏ ଖାଇ ପାର୍‌ବା । ତରାସ କେ ଦେଖିଲା ଯେନ ଉଦାକପ୍‌ଟା ପିଁଧିଥିଲା ସେ'ଟା ତାର୍ ଦିହେଁ ଦିହେଁ ଶୁଖିଗଲା ନ, ନାଇଁ ପାଲ୍‌ଟି ନ । ସେ ଘର ବଖରାକର୍ ସବୁ ଆଡ଼େଁ ନଜର୍ ଦଉଡ଼େଇ ଆନ୍‌ଲା ଯେ ଦୁସ୍‌ରା କପ୍‌ଟା ନାଇଁନ । ଯେନ୍ ଖଣ୍‌କ ଶୁଖାଲା ଛଁଛେଁ ଅଢ଼ାନ ଉହ୍ଲୁଛେ, ସେ'ଟା ଲୋକ୍ ନାଇଁ ଥିଲା ବେଲ୍‌କେ ଭାଏଲ୍ ଦିହ୍‌କେ ଯାଉଥିବା !

ଖିଆ ପିଆ ସର୍‌ଲା । ନକୁଲ ଆର୍ ବର୍‌ଜ ତାଲ୍ ପତରର୍ ଧୁକ୍‌ନାଟେ ଲେଖା ଧରି ଦୁଇଟା ଖଟେଁ ପର୍‌ଲେ ତ ତରାସ ଖଜୁର ପଟିଟାକେଁ ତଲେଁ ପରି ପିପଲ୍‌ପଦର୍ ଗାଁର୍ କଥା ହଉଛେ । ତାକେର୍ ଗାଁର୍ ଡ଼ାଲ୍‌ଖାଇ, କର୍‌ମା, କାର୍ତିକ ଗଧୁଆର୍ ସଜନୀଗୀତ୍, ମାଘ୍ ପୁନିର୍ ନାମଯଜ୍ଞ, କେଢ଼େ ଅଏନ୍ । ପିଲା ଦିନର୍ ମହୁଲ୍ ବେଟା, ଚାର୍‌ଭଙ୍ଗା, ଟୋଲ୍ ପିଟା,

ଭେଲୁଆଁ ଖିଆ, ଖଜୁର୍ ଝୁନା, ତାଲ୍ ସଜ୍ ଖିଆର୍ ମଧୁର୍ ମଧୁର୍ କଥାଭିତରେଁ ମଏଧାନ୍ ଗଳିଁଗଲା, ଗରିଁଗଲା । ନକୁଳ୍ ବାହାରଲା ନ ସା' ଘରର୍ ବୁଢ଼ାକେ, କମିହାଁ ବରଗୋ ବେଲା ନ । ବରଜ ବି ବାହାରଲା ପଦମ୍‌ପୁର୍ ଫିର୍‌ବା । ତରାସ କହେଲା, 'ର କକା ! ଖରା ଉହୁରି ଦେ, ବରଜ କହେଲା, "ତୋର୍ କାକୀ ଅଥାବିଥା ହଇଁଯିବା ନ ଘରେଁ ; କେନେ ଝାଉ ମାରିନେଲା ନ କାଏଁ ବଲି ଲୋକ୍ ନୁରେଇ ପଠଉ ନାଏଁନ । ଏସୁର୍ ଯେନ୍ ଖରା ଯେ ଚାଲ୍‌ତି ବାଟେଁ ଲୋକ୍ ଝାଉମରା ଥିଁ ମରିଯାଉଛନ୍ । ଆଉଛେଁ ନନୀ, ଦୁହେ ଘାଏ ଯିବ ଆମର୍ ଘର୍‌କେ । ବଲକ୍ କଲୋନିନେ ବରଜ ବାବୁର୍ କୁଆଟର୍ ବଏଲେଁ ଯେ ହେଲେଁ ବତେଇ ନେବେ ।" ବରଜ ସାଏକଲ୍ ଧରି ବାହାରଲା । ତରାସ ଆର୍ ନକୁଲ୍‌କେ ତାକର୍ ଘରେଁ ଛାଡ଼ି ଆଏଲା ସିନା, ସେମାନେ ନାଇଁ ଛାଡ଼ି ନ ; ତାକର୍ ହଁସ୍ ହଁସ୍ ମୁହୁଁ, ମନର ଖୁଲାପନ୍, କେତେ ଜନ୍ମର୍ ଚିହ୍ନାର୍ ଲେଖେଁ ନିଜର୍ କର୍‌ବାର୍ ଭାବ୍ ତାର୍ ସାଏକଲ୍‌ର୍ ଆଗେଁ ଆଗେଁ ଦଉଡୁଛନ୍ ବାଗିର୍ ଲାଗୁଥାଏ, ବରଜକେ । ପଦମ୍‌ପୁର୍ ପୁହୁଁଚି ଘରେଁ ସବୁକଥା କହେଲା । "ତମେ ଘରେଁ ଯାଁ ଯାଣା ଦେଇ ଯେତେ ମେହେନତ୍ କରି ରାନ୍ଧଲେଁ ବି ଆଜିର୍ ମେତାଲ୍ ଭାତ୍ ତୁନ୍ କେଭେଁ ସୁଆଦ୍ ନାଇଁ ଲାଗେ । ଆଜିରର୍ ସେ ଭାତ୍ ତୁନେ ନିଜେଁ ନିଜର୍ କର୍‌ବାର୍ ଭାବ ସହିତେଁ ଗୁଲି ହଉଥିଲା ତ ସେ ସୁଆଦ୍‌କେ ଅମ୍‌ରତ୍ କାହିଁ ପାର୍‌ବା ? ସେମାନ୍‌କୁଁ ଆମର୍ ଘର୍‌କେ ଆଏବାକେ କହିଛେ, ଆଏଁଲେ ଅମାନ୍ତି ନାଇଁ କର୍‌ବ କି ବଡ଼୍‌ଲୁକି ନାଇଁ ଦେଖାବ ।"

ଦିନା ଚାରେ ଯାଇଛେ କି ନାଇଁ ନକୁଳ ଆର୍ ତରାସ ଆଏଲେ ବରଜ ଘରକେ । ସକାଳ୍ ବେଲା ; ଖରା ନାଇଁ ବଜ୍‌ରିଥାଇଁ ନ । ଛୁଟିଦିନ୍ ଥିଲା ବଲିଁ ଛୁଆମାନେ ବି ସଭେଁ ଘରେ ଥିଲେ । ସେମାନେ ଆନି ଥିବାର୍ ଲେଡି ବୁଟକା, ଖିର୍ଶା ଖୁର୍ଜା, ପାଚଲା ଚାର୍, କେନ୍ଦୁ ଭେଲୁଆଁ, ତାଲ୍‌ସଜ୍ ଆର୍ ଚାର୍ ମଂଜି ଖଜା ଛୁଆମାନ୍‌କୁଁ ଘିନିନେବାକେ ଘଡ଼େ ନାଇଁ ଲାଗ୍‌ଲା । ସଭେ ତରାସକେ ନାନି ନାନି ବଲିଁ ଘେରି ରଖ୍‌ଲେ । ତରାସ ବି ଛୁଆ ପୁତାର୍ ସେନ୍‌ହେ ସୁହାଗର୍ ଭୁଖେଇ ଥିଲା ତ ନିଜର୍ କର୍‌ବାକେ ଛନ୍‌ଏ ବି ସମିଆ ନାଇଁ ନେଲା । ଘରର୍ ଇନେ ସେନେ ପଡ଼ିଥିବାର୍ ଖାଏଲା ପିଇଲା ବାସନ୍ ମାନ୍ ଧୁଇଁ ମାଜିଁ ଘର୍‌କେ ରୁଖିଁ ରୁଖିଁ ବର୍ନ୍‌ହାଇଁ ନୁଆଁ କାକିର୍ ମନ୍‌କେ ବି ଚୁମ୍ବକ୍ ଲେଖେଁ ଘାଏକେଁ ଟାନି ରଖ୍‌ଲା । କାକୀ ବି ଝିଆରୀ ଆର୍ ଝିଆରି ଜୁଏଁର୍ ମାଏନ୍ ଗୁନ୍‌କେ ନିଜର୍ ଥିଁ ଅଏଧିକା କରିନେଲେ । କହେଲେ "ଇ ଟୁକେଲ୍ ତ ମାଁ ଘର୍‌କେ ଝି ଆଏଲା ଲେଖେଁ ନାଇଁ ଆସିଁ, ଝିଁ ଘର୍‌କେ ଦେଖି ଆଏଲା ଲେଖେଁ ହଜାରେ ଦରବ୍ ଧରି ଆସିଛନ୍ । ଏ ନୁନି !, ଦିନାଦୁ ରହ, ଯିବାକେ ନାଇଁ ହର୍‌ବରାବ ।" "ନାଇଁ କାକୀ ! ହଳିଆ ଅଛନ୍ ଅପ୍‌ନେ, ଦିନକର୍ ମାଏନ୍ କହି ବୁଲିକରି ଆଇଛୁଁ ; ଏଛନି ଇ ବେଲ୍ ଉହୁରିଆ କାକ୍‌ରେଁ କାକ୍‌ରେଁ

ପଲେଇ ଯିମୁ । ହାଟରେ ଦିନ୍ ଆଏତ । ହେଁ ଗାଁର୍ ଲୋକ୍ ବି ଆଇଛନ୍, ସାଙ୍ଗ୍ ସାଙ୍ଗ୍ ହଇଁ ପଲେଇଯିମୁ । ଆମ୍‌କୁ ନାଇଁ ରଖ ନ । ଘଡ଼େ ରହେଲେଁ ଯାହା ମାସେ ରହେଲେଁ ବି ତାହା । ଆଏଲିଁ ଯେ ମା'ର୍ ସେନ୍‌ହେ ଆଦର୍ ପାଏଲିଁ, ମା ନାଇଁ କି ଛୁଆ ନାଇଁ ଯେ ଛୁଆର୍ ଗେଲ୍ ସୁହାଗ୍ ପାଏଲିଁ । ମାଁ ଘର୍ କଲିଁ ପରେ,

ଆଏବାର୍ ଯିବାର୍ କାଏଁ ଥରକେଁ ସର୍‌ବା ?" ଏତ୍‌କି କହି ତରାସ ଆର୍ ନକୁଲ ବାହାରି ବସ୍‌ଲେ । ଛୁଆମାନେ ଛାଡ଼ନ୍ ନାଇଁ । ଦିହେଁ ମୁଡ଼େଁ ଲମ୍‌ବାର୍ ତକ୍ ଉଲେଇ ହଉଛନ୍ । ତରାସ ବି କାହାକେ ଚୁମା ଦେଇନଉଛେ ତ କା'ର୍ ଦିହମୁଡ଼ ସୁଆଁଲି ଆନୁଛେ । ତାର୍ ନିଜର୍ କର୍‌ବାର୍ ଭାବ୍ ଯେତ୍‌କି ବାଆଁଟୁଛେ ଟୁଟେ ନାଇଁ ; ଆହୁରି ଆହୁରି ବଢୁଛେ ।

ବର୍‌ଜ କପ୍‌ଟା ଖଣ୍‌ଏ ଆର୍ ଧୂତି ହଜ୍‌ରି ଯଥେ ଜରିମୁନାଟାକେଁ ଭରି ତରାସକେ ଧରେଇଁ କହେଲା "ନାଇଁ ରହ ହେଲେଁ ନୁନି ! ଯା' ନ । ଖରାକେ ଦଶ୍‌ରାକେ ଆସୁଥିବୁ, ନାଇଁ ଅପ୍‌ସର୍‌ବୁ ।" ତରାସ ଜରିମୁନା ଧଏଲା । କପ୍‌ଡ଼ା ଲତା ହିଟେଇ ନକୁଲକେ ଦେଖାଲା । ତାର୍ ବଡ଼ ବଡ଼ ଆଖିଁ ପାଏନ୍ ତରା ତରା ହଇ ଶେଷେଁ ଉହୁଲି ଆଏଲା ତାର୍ ଫଗୁଆ ଫୁଲ୍‌କୁ ଫୁଲ୍‌କୁ ଗାଲ୍ ମାନକୁଁ । ଜରିମୁନାଟାକ ବର୍‌ଜର୍ ଗୋଡ଼୍ ତଲେଁ ଥୁଇ ନିଜେ ସେନେ ଗୋଡ଼୍‌ଶାଲେଁ ପରି ତରାସ କହେଲା "ତୁଇଁ କକା ! ବାହ୍ମନ୍ ଦେବ୍‌ତା ଆଉ । ତତେ ତ କେଭେଁ କିଛି ଦେଇ ନି ପାରୁଁ ; ତୋର୍ ନୁ ନେମୁ କାଣା ? ମତେ ଯେନ୍ ସେନ୍‌ହେ ଆଦର୍ ଦେଲୁ ; ଇ ଧୂତି କପ୍‌ଡ଼ା କା'ଣା ସଂସାରର୍ କେନ୍‌ସି ବି ଚିଜ୍ ତାର୍ ପାଶ୍‌କେ ନାଇଁ ଯାଏ । ତୋର୍ ଝି ହଇଁ ରହେଲିଁ, ହେଁଟା ମୋର୍ ଲାଗି କେତ୍‌ନି କେତେ ଆଏ ।" ଦୁହି ପରାନୀ କକା କାକୀକେ ପାହେଁ ପରି ବାହାର୍‌ଲେ । ଛୁଆମାନେ ପଛ୍ ପଛ୍ ହେଉଥାଆନ୍, ଛାଡ଼ନ୍ ନାଇଁ । କହୁଥାନ୍ ଫେର୍ କେଭେଁ ଆଏବୁ ନାନି ! ଚାରମଜିଁ ଖଜା ଆନ୍‌ବୁ ଏକା । ପଛକେ ଲେହେଁଟି ଲେହେଁଟି ଦେଖିଦେଖି ସେମାନେ ଗଲେ । ସହର୍‌କେ ବାହାର୍‌କେ ଗଲେ କି ନକୁଲ୍ କହେଲା, ଧୂତି କପ୍‌ଡ଼ା ନାଇଁ ଆନ୍‌ଲାଁ ଯେ କକା କାକୀ କେତ୍‌ନି ଦୁଖ୍ ମନା ହଉଥିବେ । "ହଁ, ହଉଥିବେ ତ" କହେଲା ତରାସ୍, "ଆମେ ହେଁ ସବ୍ ଆନିଥିଲେଁ ବି ଆମ୍‌କୁଁ ଦୁଖ୍‌ମନା ଲାଗିଥିତା । ଦିହେଁ କେବେ ଘା'ଟେ ଥିଲେଁ ତ ଦିହସୁହା ହଇ ଯାଇଥିସି । କିଛି ନାଇଁ ଲାଗେ । କିଏ ଯଦରି କେଡ଼େଟେ ଘା'ରେ, ଆହା କେତେ ଦୁଖ୍ ପାଉଥିବା, କହି ସୁଆଁଲି ଆନ୍‌ଲେଁ ଚାହାଁରିଲା ଲେଖେଁ ଯେନ୍ ଚିଆସି, ସେ ଦୁଖ୍ ମର୍ମେ ମର୍ମେ ଭେଦି ଯାଏସି । ଆମର୍ ଗରିବି ଘା'କେ ହେନ୍ତା ଇଟା ଚାହାଲିଲା ଲେଖେଁ ଲାଗିଥିତା । କକା କାକୀର୍ ହୁର୍‌ଦେଁ ଆମର୍ ଲାଗି ଦରଦ୍ ଛଲକୁଛେ । ମହାପ୍ରୁ ତାକର୍ ବନ୍‌ଏ କରୁ, ବଡ଼୍‌ତି କରୁ ।"

ଇ ଆଡ଼େଁ ବର୍‌ଜ ଘର୍ ଦୁହି ପରାନୀର ମନ୍ ସୁଖ୍ ନାଇଁ । ବର୍‌ଜ କହେଲା "ଇ ତରାସ ଭାରତ୍‌ର ସତର ଝି ଆଏ । ତାର୍ ଗାଁନେ ମତେ ଝାଡ ମାରୁଥିଲା ଯେ ମତେ ତ ବର୍ଥିଚେଇ ନେଲା । ମାତର୍‌କ ସେ ନିଜେଁ ଆଏଜ୍ ଯେନ୍ ଝାଡ ହାବ୍‌ଡ଼େଁ ମତେ ପକେଇ ନେଲା, ସୋର୍ କଲେଁ ଶୀତ୍ ଦିନେ ବି ଝାଲ୍ ମୁଡ଼୍ ମୋର୍ ଫିଟି ଯାଉଥିବା ।"

## ଲେଖକଙ୍କର ଆଉ କେତୋଟି ରଚନା

- ମହାରଥୀ କର୍ଣ୍ଣ (ନାଟକ)
- ଶବରୀ ସଂଦେଶ
- ସତର୍ ସତୀ ବୃନ୍ଦାବତୀ
- ରାମ ରାହା
- ପ୍ରତୀକ୍ଷା (ନାଟକ)
- ନୂନୀ
- କଥାନି ସତ ସତାନି
- ଶରତ ରାସ
- ରାଧା ସନ୍ୟାସ
- ବିଶ୍ୱାସ (ନାଟକ)

**ଲେଖକଙ୍କର ଆଉ କେତୋଟି ରଚନା**

- ମହାରଥୀ କର୍ଣ୍ଣ (ନାଟକ)
- ଶବରୀ ସଂଦେଶ
- ସତର୍ ସତୀ ବୃନ୍ଦାବତୀ
- ରାମ ରାହା
- ପ୍ରତୀକ୍ଷା (ନାଟକ)
- ନୂନୀ
- କଥାନି ସତ ସତାନି
- ଶରତ ରାସ
- ରାଧା ସନ୍ୟାସ
- ବିଶ୍ୱାସ (ନାଟକ)

# କଥାନିସତ୍‌ସତାନି

♦

ଲେଖକ :-
ଶ୍ରୀ ହେମଚନ୍ଦ୍ର ଆଚାର୍ଯ୍ୟ
ଗର୍ଭଣା-୭୬୮୦୩୩
ଜି : ବରଗଡ଼୍

♦

ପ୍ରକାଶକ୍ :-
ନିସାନ ସାହିତ୍ୟ ସଂସଦ୍
ସମଲପୁର୍

♦

ଦ୍ୱିତୀୟସଂସ୍କରଣ :- ୧୯୯୪

♦

ଛାପା :-
ଆର୍ଟ ଏଣ୍ଡ ଆର୍ଟିଷ୍ଟ ପ୍ରେସ୍
ଝାଡ଼ୁଆପଡ଼ା, ସମଲପୁର୍-୧

♦

ଦାମ୍ - କୁଡ଼େଟଙ୍କା ନ

# ସୂଚୀପତ୍ର

କଥାନି

ପୃଷ୍ଠା

## 'କଥାନିସତ୍‌ସତାନି'ର୍
## ପଛର୍‌ସଂସ୍କରଣ୍‌ଲାଗି

'କଥାନିସତ୍‌ସତାନି' ଅଠ୍‌ଚାଲିଶ୍ ପୃଷ୍ଠାନେଇକରି
ଆଗୋ ଛପାହଇଥିଲା । କେତେ ଅସୁବିଧା ଥିଲାବଲିସବୁ
କଥାନିସେଥିଁଠାନ୍ ନାଇଁ ପାଇଥାଇ । ଏଛନିସବୁ
କଥାନି କେନେଇ ଛପାହେଲା ।

ଆମର୍ ଇ ଅଂଚଲର୍‌ଭାଷାଥି କଥାନି ବହିଟେ ବାହାର୍
କର୍‌ବାର୍‌ଟା ବନ୍‌ଏ କଡ଼ା କଦାର୍‌ଟେ ଆଏ । ଇ କାମେ
ଶ୍ରୀମାନ୍‌କେଶବଚନ୍ଦ୍ରବେହେରାଭାଷା-ମାଁର ସେବାର୍ ଲାଗି
ବନିହାଁସାହେଯ୍‌କରିଥିବାର୍‌ଜାନିତାହାକୁଁ ଧଏନ୍ ଧଏନ୍
କର୍‌ମି କାଏଁନ । ହେଲେଁହେତ୍‌କି ନେ ତାକର୍‌ଲାଗ୍ ଶୁଝି
ନୈ ହଏ, ରହେଲା ।
ଇ ବହି ପଢ଼୍‌ଲା ପରେଁ ତାର ଭଲ୍‌ମନ୍ଦ୍ ନେଇମତାମତ୍
ପାଏଲେଁ ଉଷତ ହେମି ।

**ହେମଚନ୍ଦ୍ର ଆଚାର୍ଯ୍ୟ**
**ଗର୍ଭଣା ୨-୧୨-୯୩**

# ମୋର୍ କଥାଟା କଥାନି ଆଏ

"ଛଟ୍‌ନାଏ ପାତଲ୍‌ଘିଁଟା ?" ଆଶ୍ଚିଜ୍ ହେଲା ବାଗିର୍‌କହି ପକାଲା ମଙ୍ଗ୍‌ଲୁ ।

"ହଁ, ଛଟ୍‌ନ୍‌ଏବାହାରଲା; ପହେଲା ତୁଲା ଥିଁ ଏତ୍‌କି ବାହାର୍‌ବା ବଲି ମୋର୍ ବି ଆଶା ନାଇଁ ଥାଇ ।" ପାତଲ୍‌ଘିଁଟା ଛଟ୍‌ନାଟା ତଲେଁ ଥୁଇ ବନିହା ବୋଧ୍ ଆଏଁ ଝି ଥି ଦେଖୁଥିଲା ଲୁଚ୍‌ନା, ମଙ୍ଗ୍‌ଲୁର୍ କନିଆଁ ।

"ଯା ଶୁନ୍‌ଅ ତ", ଫେର୍ କହି ବସ୍‌ଲା ଲୁଚ୍‌ନା,"ଗଲାରାତିଁ ଛୁଆ ଦୁହିଟା କିଛି ନାଇଁ ଖାଉଁ ବଲି ହେନ୍ତା ଶୁଇ ପଡ୍‌ଲେ । ଆମର ଅଢ଼ିଆ ନାଇଁଥିବାର୍ ସେମାନଙ୍କୁ କେତେଦିନ୍ ଭାଏଲ ଲୁକେଇ ହେବା ? ସେମାନେ ଜାନ୍‌ଲା ବାଗିର୍ କହେଲେ, 'ଆଜିର୍ ଭୋକ୍ ନାଇଁ କର୍‌ବାର୍ ମା !' ତବି ମୁଁଇ ମୁର୍‌ହି ଆଉର୍ ଲାଲିଚାହା ଟିକେ ଟିକେ ଦେଲି, ଶୁଇ ପଡ୍‌ଲେ । ତମେ ଭି ତ ସେନ୍ତା ଶୁଖା ଶୁଖା ଶୁଇଲ । ଗୁଟେ କଥା କର; ଆଜିର ଶଏନ୍‌ବାର୍ ହାଟ୍ ତ, ଯ ପାତଲ୍‌ଘିଁଟା ଦୁଟାକ ଭିଁଜାଇ ଆନ । ଗାଁ ଥିଁ ସବୁ ମହଙ୍ଗା । ହେଁ ଆଡ୍ରୁ, ଚାଉଲ୍, ଦାଏଲ୍ କରି ଘିନି ଆନ୍‌ବ । ତମେ ଆଏଲେ, ଯାଇ ଜୁଏ ଜାଲ୍‌ମି, ଅଁ ଧାନ୍ ଦେମି । ଆ'ଦେ, ଟଁକାଟେ ଅଛେ ନିଅ, ମଟରେଁ ପଳେଇଯିବ ଯେ ଟପୋ କଲା ଆସି ପାର୍‌ବ । ଖେତ୍ରୁଁ ଆଏଲା ବେଳେଁ ସମଲାଇ କଁଟାନେ ଦୁଇଟା ଚଢ଼େଇ ନେଇଛ, ଆର ମହାପ୍ରୁଗୁଡ଼ିର୍ ପୁଝାରୀ ଘରେଁ ଦୁଇଟା ଦେଇ ଆଇଁଛେ; ଦେବ୍‌ତା ବାହ୍ମନ୍ କଥା ସରଲା । ପହେଲା ଫଲ୍ ଦେବାକେ ହେସିତ ।"

ମଙ୍ଗଲୁ କହିପକାଲା, 'ପହିଲ୍ ପହିଲ୍‌ଟା ଛୁଆକର୍ ଲାଗି ବି ଦୁଇଟା ରଖ୍ । ଏ'ଦେ ମୁଁ ବାହାରଲିଁ, ଟଁକାଟା ବି ରଖ, ଫେର ଚାହା ମୁର୍‌ହି କରି ଛୁଆକୁଁ ଦେ । ବାଟ୍, କୁଶ୍‌କର କଥାତ, ମୁଇଁ ଏ'ଦେ ପଳେଇ ଆଉଛେ । ଫିର୍‌ଲା ବେଲେଁ ପଛେ ପାରମି ବଏଲେଁ ମଟ୍‌ରେଁ ପଳେଇ ଆଏ୍ ମି ।"

"ମୁଇଁ ବଲୁଥିଲିଁ କି" ଲୁଚ୍‌ନା ମୁଡ଼ର୍ ହୁର୍ଗୁଲା ଖୁଷାକେ ଗଏଁଠ୍ ଦଉନ୍ ଦଉନ୍ କହେଲା, "ଗଲାହାଟେଁ ପରେ କେଜି ପାଁଚ୍‌ଟଙ୍କା ଥିଲା; ଇ ହାଟେଁ ଟଁକେ ସୁକେ କମିଥିବା କି ବଢ଼ିଥିବା ।ଛଟ୍‌ନାଟା ଆମର ପନ୍ଦ୍ର ଷୁଲ୍‌ହ କେଜି ଧର୍‌ସି । ମୁଲିଆଁ ଦେବ ବଏଲେଁ ଭିତିନ୍ କୋରନୁ କମ୍ ହେଲେଁ ନାଇଁ ଦେବ । ବଡ଼ା ଦୁଖର୍ କମାନି; ଘିନିଖିଆ ଅଁଟ୍‌କୁରେ ତ ଛାଏତଲେଁ ବସି ଶସ୍ତା ନୁର୍‌ସନ ।"

"ହେଲା ହେଲା", ମଙ୍ଗ୍‌ଲୁ ତାର୍ ଫଟା ଚାଏରହାତୀ ଖଣ୍ଡେକ ଅଡ଼ାନୁ ଉଲି ଆନ୍‌ଲା ।ଆର୍ ଖନ୍ଦେଁ ପକେଇକହେଲା,"ତୁଇଁ କହୁଥିବୁ ଆର୍ ମୁଇଁ ଶୁନୁଥିମି ତ ଘରେଁ ବେଲା ହେବା; ବାହାର୍‌ଲିଁ ।

ମେଲା ପାତଲ୍‌ଘଁଟା ଛଟ୍‌ନାର୍ ମୁହେଁ ଚିରହା କପଡ଼ା ଟିକେ ଢ଼ାପି-ନେଇ ଲୁଚ୍‌ନା କହେଲା "ନଙ୍କେର ପଡ଼୍‌ସି, ନଜର୍ ନିଆଁ ହେଲେ ଜିନିଷ ବିକ୍‌ରି ନାଇଁ ହଏ । ହଁ, ଆଉର୍ ଗୁଟେ କଥା, ନନୀକେ ଆମର୍ ବାର ଯାଇ ତେର ପଣ୍ଡଲା ନ, କୁର୍‌ତାଟା ଫଟା । ତାର୍ ସାଙ୍ଗର୍ ଟୁକ୍‌ଲେ ତିନ୍ ହାତି ଖଣ୍ଡେ ଖଣ୍ଡେ ଛାତିଥିଁ ପକେଇ ଗାଧି ବାହାର୍‌କେ ଯାଉଛନ୍ । ନନୀକେ ଖେଳେ ବୁଲେ ଘିନେଇ ପଠାଲେଁ ବି ହେଥିର୍ ଲାଗି ହଦିର୍‌ସି । ତାର ଲାଗି ତିନି ହାତୀ ଖଣ୍ଡେ, ଆଉର୍ ତମର୍ ଚାର୍‌ହାତୀଟା ବି କଲ୍‌କୁଲା ହଇ ଫାଟିଗଲାନ, ତମର୍ ଲାଗି ଚାଏର୍‌ହାତୀ ଖଣ୍ଡେ ଆନ୍‌ବ । ପାତଲ୍ ଘଁଟା ବାହାର୍‌ଲାନ,ତ ଆଉର୍ ଅଢ଼ିଆ ପାଏନ୍ ନାଇଁ ଖଙ୍ଗେନ୍ ।"

ଛୁଆ ଦୁହିଟା ଏତ୍‌କିବେଲେଁ ପାଶ୍‌କେ ଆସିଗଲେନ୍ । ପୁଓ ରୁପଧର ତାର୍ କଥା ନାଇଁ ପଡ଼୍‌ବାର୍ ଜାନି ନିଜର୍ ହକ୍ ଜାରି କର୍‌ବାର୍ ଢ଼ଙ୍ଗେ କହେଲା "ବା ଗୋ ! ଆମର୍ ଆଗ୍ୟାଁ ସବୁଦିନେ ଇସ୍‌କୁଲେଁ ଗାଲି ଦଉଛନ୍ । ଖାତା ଆଉର୍ କଲମ୍ ଲାଗି । ମୋର୍ ଲାଗି ଖାତା ଖଣ୍ଡେ ଆର୍ କଲମ୍‌ଟେ ଆନିଥିବୁ ।"

ମଙ୍ଗ୍‌ଲୁ ପାହା ବଢ଼େଇ କହି ପକାଲା "ଆରେ ବାବୁ ! ପଏସା ହେଲେଁ ତ ତୋର୍ ମାଁର ଲାଗି ଆଗୋ କପ୍‌ଟା ଖଣ୍ଡେ ଆନ୍‌ତିଁ । ନାଇଁ ଦେଖୁଛେଁ କାଏଁ, ଖଣ୍ଡେ କପ୍‌ଟାକେ ଧୁଇ ଶୁଖେଇ ପିନ୍ଧୁଛେ; ହଉ ଆର ପାଲି ଦେଖ୍‌ମା ।" ମଙ୍ଗଲ୍ ଘରେଁ ଘରେ ଅଭାବ ସାଙ୍ଗ ପୁଓ ମାଏପୋ ଛାଡ଼ି ଛଟନେ ପାତଲଘଁଟା ଆର୍ କେତେ ଛଟ୍‌ନା ଆଶା ଖନ୍ଦେଇ କରି ଏକ୍‌ମୁହାଁ ହଇ ଧାଏଁ ଲା ଶଏନବାର ହାଟର ବାଟେଁ ।

ଆଏଜ୍ ରାସ୍ତାର ଗଛ୍ ଖୁଟ୍ ସବୁ ଜଲଦି ପଛ୍ ପଡ଼ୁଛନ୍ ବାଗିର ଲାଗୁଛେ । ମଙ୍ଗ୍‌ଲୁ ନିଜେଁ ନାଇଁ ଜାନି ପାର୍‌ବାର୍ ଯେ ସେ ଚାଲୁଛେ କି ଦଉଡ଼ୁଛେ । ମଙ୍ଗ୍‌ଲୁକେ ସବୁଦିନର୍ ଚାଲଲା ବାଟ୍ ଆଏଜ୍ ପାଶ୍ ବାଗିର ଲାଗୁଛେ । ହେଲେଁ ତାର୍ ମୁଡ଼େଁ ଆଶାର୍ ନଲିଆଟା ଭି ଖଏଣ୍ ଟପା ଖାଇଁ ଦଉଡ଼ୁଛେ । କେତେ କେତେ ସୁଖର ଭାବନାମାନେ ଚଢ଼େନ୍ ମାଛ ମେତାଲ ମନା ନାଇଁ ମାନ୍‌ବାର । ଆର ପାଲିକେ ଦୁଇ ଛଟ୍‌ନା ବାହାର୍‌ବା ତ ଭାର୍ କରି ଆନ୍‌ବା । ତାର ଆର ପାଲି ତିନ୍ ଛଟ୍‌ନା, ନିଜେଁ ଭାରେ ଆର୍ ଲୁଚ୍‌ନା ଛଟ୍‌ନ୍‌ଏ ନେଇ ହାଟ୍‌କେ ଆସ୍‌ବେ । ଲୁଚ୍‌ନାର ସାଙ୍ଗେ ମନ୍‌କେ ମନ୍ କପ୍‌ଟା ଆର ତାର୍ ଲାଗି ଚାଏରହାତୀ ଘିନ୍‌ବେ । ପାତଇଘଁଟା ଖପ୍‌ଲେଁ, ହେଁ ବଏର୍ଛାନେ ମୁଲା ଦେଇନେବା, ମୁଲାର୍ ବିକ୍‌ରି ଭି ପହେଲା ପହେଲା କମ୍ ନୁହେଁ । ମୁଲା ବୁପ୍‌ରୀ ବି କେ'ନ ଜହଦିନ୍ ରହେସି ? ବେଶୀ ହେଲେ ଦୁଇ ମାସ୍ । ତାର୍ ପଛେଁ ଆଲୁ...

"ମଙ୍ଗ୍‌ଲୁ ଦଦା ଜୁହାର୍" ପାଲି ଗାଁର ନୀଲ ପଧାନ୍‌ର୍ ରାଗ୍ ବାଆରୀ ହଉଛେ । ମଙ୍ଗ୍‌ଲୁରୁ ଭାବ୍‌ନାର ନଳିଆଥି ବନ୍ଧନ୍‌ଟେ ପଡ଼ିଗଲା ।ମଙ୍ଗ୍‌ଲୁ ଟିକେ ହସି ପକାଲା । "କେନ୍ତାଗାଁ ନୀଲ ! ।ତୁଇଁ ବି ହାଟ୍‌କେ ବାହାରିଛୁ ?ତୋର୍ ବାଏରଟା ତ ବନ୍‌ଏ ଉପ୍‌କି ଥିଲା ବୋ ! ପାତଲଘଁଟା ଉହୁରିଲାନ୍ ଭାଏଲ୍ ବା; ସୋଜ୍ ହାତେ ହାଟ୍‌କେ ଯାଉଛୁ ଯେ...ଢ଼େବିରି ହାତ୍‌ଟା ନୀଲ୍‌ର ଆଡ଼୍‌କେ ପେସ୍‌ରେଇ ନେଲା ।

ଭାଙ୍ଗ୍‌ଡ଼ବିଟା ମଙ୍ଗ୍‌ଲୁର ଆଡ଼୍‌କେ ବଢ଼େଇ ନଉନ୍ ନଉନ୍ ନୀଲ କହେଲା " ନାଇଁ ବୋ ଦାଦା ! ପାତଲଘଁଟା ତ ଭରଦରେଇଛେ ଏଛନି; ହେଲେ ନାଇଁ ଆନି ନ । ଗଲାପାଲି ଭାରେ ଆନିଥିଲିଁ ଯେ ବିକ୍‌ରି ବି ବନ୍‌ଏ ଥିଲା ତ; ଯାହା ବିକ୍‌ଲି ଦୁର୍ଗାଚାନ୍ଦା ଥିଁ ଗଲା । ସୋଜ୍ ହାତେଁ ଘରକେ ଫିର୍‌ଲିଁ । ଚାହା ଜୁକେ ନାଇଁ ପିଇ କି ଛୁଆପୁତାର୍ ଲାଗି ପକୋଡ଼ି କି ମିନ୍‌ଚି ଚାଏର୍ ଅନାର୍ ବି ନେଇ ନୈପାର୍‌ଲି । ଇ ପାଲି କୁଟନିକେ ଦେଇନେଲି ହାଏନ୍ ଲାଭ୍ କରି । ହାଟ୍‌କେ ଆନି ନିର୍ମାମୂଲ୍ ଦେଇ କରି ହେଲେଁ କେତେ ଯିବୁ ବୋ !"

ମଙ୍ଗ୍‌ଲୁର୍ ଦିହରୁ ଗହନ୍ଦ୍‌ଧାର୍ ବର୍ଢ଼ିଗଲା । ତାର୍ ଧର୍ ଏତ୍‌କି ବେଲ୍‌ତକ୍ ଯେନ୍ ଉତ୍‌କି ଆସିଥିଲା । ଫେର୍ ସକ୍ ସକ୍ ବସିଗଲାନ ।

ହାଟ୍‌ଟା ବି ତ ଆର୍ ଜହ ଧୂର୍ ନାଏନ; ତଥାପି କେନ୍ତାକରି ଯାଏ ସଁ ବଲି ଚିନ୍ତା କଲା । ଯାହା ବି ହଉ ମଙ୍ଗ୍‌ଲୁ ପହୁଁଚିଲା ହାଟ୍ ପଦାକେ । ତାର୍ ଲାଲ୍ ଟହ ଟହ ପାତଲ୍‌ଘଁଟା ଛଟ୍‌ନାଗ ଯେ ଦେଖୁଛେ ଲହଁପି ପଉଛେ । ଦୁଇ ଚାଏର୍ ଲୋକ ତାର ଛଟ୍‌ନାଟାକ ଧରି ପକାଲେ "ଇ ଦୁଟାକ ତ ଅଧେ ଚଲ୍‌ବା ପୂଜା କରୁଥିବା ବ୍ରାହ୍ମନ୍ ମାନ୍‌କର ଆର୍ ପୂଜା କମିଟୀର୍ ମେମ୍ବରମାନଙ୍କର୍ ହବିଷ୍ ଥିଁ ।" କହୁଥିଲେ ସେମାନେ । ମଙ୍ଗ୍‌ଲୁର୍ ପାତଲଘଁଟା ଛଟନାକ ଧରି ସେମାନେ ଗଲେ, ପଛେଁ ପଛେଁ ମଙ୍ଗ୍‌ଲୁ ଆର୍ ତାର୍ ପଛେଁ ମଙ୍ଗ୍‌ଲୁର୍ ଆଶା ଭରସା ସବୁ ।

"ଭାଇ ! ମୋର୍ କଥା ଟିକେ ଶୁନ୍‌ଅ । ମୁଇଁ ଇଟା ବିକିଭାଁଜି କରି ନେଲେଁ ମୋର ଘରେଁ ଚୂଏଲ୍ ଜଲ୍‌ବା, ଅଁଧାନ ବସ୍‌ବା ।" ମଙ୍ଗ୍‌ଲୁର କଥା ସେ ହାଟରେ ହୋ ହାଲ୍ଲା ଭିତ୍‌ରେ ହଜି ଯାଉଥାଏ, ମଙ୍ଗ୍‌ଲୁ ଦେଖିଲା ପାଖେଁ ଠାନ୍‌ଟାକେଁ ଚଉକି ପକେଇ ବନ୍‌ଏ ଲୋକ୍‌ମାନେ ବସିଛନ୍, ସେ ଭିତ୍‌ରେଁ ଅଛନ୍ ସମିତିର୍ ଚେଆରମେନ୍, ଏମେଲେ । ଇମାନେ ଆମର୍ ଗାଁ ଥିଁ ସଭା କରି ଗରିବ ମାନ୍‌କର୍ କଥା, ଚାଷୀମାନକର କଥା, ହରିଜନ୍ ଆଦିବାସୀମାନଙ୍କର୍ କଥା କହି ବନିହାଁ ଆ-ହା-ଚ-ଚ କରୁଥିଲେ। ଇମାନ୍‌କୁ କହେଲେ ମୋର୍ କଥା ଶୁନ୍‌ବେ, ସାହା ହେବେ, ଇଟା ବିଚାର ଥିଲା। ବିଚ୍‌ରା ମଙ୍ଗ୍‌ଲୁର୍ । ଯାଇକରି ହାତ୍ ଯୁଡ଼ିକରି କହେଲା ମଙ୍ଗ୍‌ଲୁ ତାର ଦଶା । ଏମେଲେ କହିଲେ "ହଏ ବୋ" ! ଲୋକ୍ ଶହ୍ ଶହ୍ ଟଁକା ଦୁର୍ଗା ଚାନ୍ଦା ଦଉଛନ୍ ଆର୍ ତମେ ପାତଲ୍‌ଘଁଟା ଦୁଟାକେ

ମୁରଛି ନାଇଁ ପାରବାର । ଏ ପିଲେ ! ଆନ୍‌ଅ ଆନ୍‌ଅ ଟଁକା ପାଁଚ୍‌ଟା ଆର୍ ତାରୁ ଛଟ୍‌ନାଟା ଆନିନିଅ ।" । ମଙ୍ଗ୍‌ଲୁର୍ ଆଶା ସବୁ ପାଏନ୍ ଫାଟିଗଲା । କୁହୁରି ଉଠ୍‌ଲା ତାର୍ ଭିତର୍, ଗୁଡ୍‌ମୁଡ୍‌କେ ଥରଥରେଇ ଗଲା - "ଥାଉ ଆଗୋ ଟଁକା ପାଁଚ୍‌ଟା ହେଲେଁ କାଏଁ ନେମି ? ତମେ ସବୁ ବାବୁ ଭାୟା ଚାହା ପାଏନ୍ କରବ, ରଖିଥ"କହି ସେଠାନ୍ ଛାଡ୍‌ଲା । ମୁଡ୍ କିନ୍ଦ୍ରେଇ ଯାଉଛେ । ଗଲା କାଲ୍‌ହିର୍ ଭୋକ୍ ଏହ୍‌ନିକା ବାଧୁଛେ । ଏତିକି ବାଟ୍ ଏକସ୍‌କଟି ଚାଲି ଆସ୍‌ବାର୍ ଗୋଡ୍ ଦୁଖା ଇହାଦେ ଜନା ପଡୁଛେ । ଦୁର୍ଗା ମଣ୍ଡପଥିଁ ବଜା ଦୁଲ୍‌ଦୁଲେଇ ଯାଉଛେ । ମାଇକ୍ ଥିଁ ବାହ୍ମନ୍‌କର୍ ମନ୍ତର ମାନେ କାନ୍ କିଲ୍‌କିଲେଇ ଯାଉଛେ । ତାର ଅମାନ୍‌ତି ଗୋଡ୍ ଦୁଇଟା ତାହାକେ ଦୁର୍ଗା ମଣ୍ଡପ୍‌କେ ନେଇଗଲା। ଦୁର୍ଗାର ମୁରତି କେତେ ସାଜ୍ ସଜାଥିଁ କେତେ କାଗଜ୍ କେତେ ଜରି ଭିତରେ ଖୁଁଟ୍ ବାଗିର୍ ବସିଛେ । ଚାହିଁକରି ବି ମଙ୍ଗ୍‌ଲୁର ହାତ୍ ଯୁଡ଼ି ନୈହେଲା । କାନ୍ଦ୍‌ବାର ମନ୍ ଥିଲେଁ ବି କାନ୍ଦି ନୈ ପାରବାର୍ । ମନେ ମନେ ଖାଲି କହେଲା "ମା ଦୁର୍ଗା ! ତୁଇଁ ସବୁ ଜାନୁଛୁ, ତତେ କା'ଣା ଜନାମି ? ମୋର୍ ତକ୍ ପହୁଁଚି ପାରବୁ କି ନି ବଲି ତୋର୍ ନିକେ ଆଏଲିଁ ; ତୁଇଁତ ସୁତ୍‌ଲିନେ ବଁଧା ହଇଛୁ, ତତେ ଯେ ବାଁଧିଥିବା କେତେ ପଏସା ନେଇଥିବା, ତତେ କା'ଣା ଦେମି ମା ? ମୋର୍ ଯାହା ଥିଲା ତୋର୍ ପୁଝାରୀମାନ୍‌କୁଁ ନିଅଁଟ । ଯାଉଛେଁର ମା ! ତୁଇଁବି ଗରିବ୍‌ରୁ ନୁହୁ । ଗରିବର୍ କିହେ ନାଇଁ ଥିଲେ ତୁଇଁଥିବୁ ବଲି ଭାବୁଥିଲି, ତୁଇଁବି ଆଜିର୍ ସଂପଦ୍ ଥି, ଖେମ୍‌ତା ଥିଁ ବଁଧା ହଇଛୁ ।

ଦୁର୍ଗା ମଣ୍ଡପ୍ କେତେବେଳେଁ ଛାଡ୍‌ଲା, କେନ୍ ସୁରେଁ ମଙ୍ଗ୍‌ଲୁର ଘର୍ ମୁହାଁ ଦଉଡ଼ିଛେ, ସେ ନିଜେଁ ଜାନି ନାଇଁ ପାରବାର । ଗୋଡମାନେ କାଦୋ ସର୍‌ସର୍, ଦିହିଟା ସାରା ଝାଲେଁ ଗାଧି ଗଲାନ । ଦଶରା ମାସର୍ ବାଦ୍‌ଲିଆ ଖରା ବଜ୍‌ରି ଆଉଛେ, ଖାଲି ତାର୍ ।ଗି ବଲି ଭାବୁଛେ ମଙ୍ଗ୍‌ଲୁ । ଘରେଁ ତାର୍ ପୁଓ ଝି ଆର୍ ଲୁଚ୍‌ନା ଟାକିକରି ବାଟ୍ ଦେଖୁଛନ୍ । ଲୁଚ୍‌ନା ଦୁଆରର୍ ମଠିଆନୁ ପାଏନ୍ ଗଡ଼େ ଢ଼ାଲି ଆଗତୁରା ଥୁଇନେଲା ନ ତାର କାଦୋ ସର୍‌ସର୍ ଗୋଡ୍‌କେ ଦେଖି, ନନୀ ତାର୍ ଲାଗି ତିନ୍‌ହାତୀ କେନ୍ତାଟା ଆନିଥିବା କେନ୍ ରଙ୍ଗର୍ ଥିବ ବଲି ଦେଖିବାର୍‌କେ ଭୋକ୍ ପାଶରି ଠିଆ ହଇଛେ, ରୂପଧର ଖାତା ଆଉର୍ କଲମ୍ ଆନି ନେଇଥିବା ଯେ ପାଏଲାକି ଚର୍‌ଚର୍ ଲେଖି ପକାବା । ପଢ଼େଲା 'ଆହେ ଦୟାମୟ ବିଶ୍ୱବିହାରୀ, ବଲିଁ ସଜ୍‌ବଜ୍ ହଇ ତିଆର୍ ଅଛେ । ଲୁଚ୍‌ନାର ଅଁଧାନ୍ ଗରଜି ଉଠୁଛେ ଚାଉଲ୍ ଲଗାବା ବଲିଁ । ମଙ୍ଗଲୁ ଗୋଡ୍ ଧୁଆଁ ପାୟନ୍ ଗଡ୍‌କ ଢ଼କ୍ ଢ଼କ୍ ପିଇ ନେଲା ଯେ, ନାହିନୁ ଟିଁଟି ତକ୍ ଲୁହୁରା ଧୁକ୍‌ନା ଲେଖେଁ ଧପ୍ ଧପ୍ ହଉଛେ । ଲୁଚ୍‌ନା ପଚାରଲା "କା'ଣା ହେଲା ?"

ମଙ୍ଗ୍‌ଲୁର ଗୁଟେ କଥା "କହି ନେଇଁ ହଏ, ମୋର୍ କଥାଟା କଥାନି ଆଏ ।"



# ଚଂଘ୍‌ରାଥି ମଙ୍ଗ୍‌ଲା

ବେଲ୍ ବୁଡ୍‌ଲୁ ବୁଡ଼ି ଯାଉଥାଏ୍ ଆର୍‌ଉଡ଼ି ଉଡ଼ି ଯାଉଥାଆନ୍ ଚରେ। ବେଲ୍‌ବୁଡ଼ତି ଆକାଶ୍ ଦିଶୁଥାଏ ଲାଲ୍ ଗଲ୍ ଗଲ୍ ପର୍ଛା । ପାଚ୍‌ଲା ପାଟଲ୍‌ଘଁଟା ବାଗିର୍ । ସେ ଲୁଭ୍‌ଲୁଭାନି ରଙ୍ଗ୍‌କେ ମନ୍‌ଭର୍ ମାଖି ନଉଛନ୍ ବର୍ଷାକୁଛି ବାଦ୍‌ଲର୍ ଦଲ । ସେମାନେ ଦିଶୁଛନ୍ ଗୁଟେ ରକ୍‌ମର୍, ଯେ ଯାହା ନୁହେଁ ତାହା ହେବାର ଲାଗି ଚେରେଷ୍ଟା କର୍ଲେ ଯେନ୍ତା ଦିଶ୍‌ଶନ୍ । ଦିନ୍ ଗୁଟାକର୍ ସାଙ୍ଗ୍ ସୁଖ୍ ଭାବ୍ ରଙ୍ଗ୍ ଛାଡ଼ିଯାଉଛେ ବେଲ୍, ମନେ ଟିକେ ବି ଦୁଖ୍ ନାଇନ । ହଁସି ହଁସି ପଶିଯାଉଛେ ପଛିମ୍ ଆକାଶର୍ କଲା ମିସ୍ ମିସ୍ ଡ଼ବାଘର୍ ଭିତର୍‌କେ । ସେ ହଁସଟିକ କେଡ଼େ ସୁନ୍ଦର, କେଡ଼େମଧୁର, କେତେ ସୁରୁତ୍ ଲାଗୁଛେ ସତେଁ । ହେନ୍ତା ତିନ୍ କୋର୍ କି ଚାଏର୍ କୋର୍ ବଛରର୍ ସାଙ୍ଗ ସୁଖ୍ ଛାଡ଼ି ଆଏଜ୍ ଚାଲିଗଲା ବାହ୍ମନ୍ ବୁଢ଼ା । ଆଜିର୍ ଇ ବେଲ୍‌ବୁଡ଼ତି ଆକାଶ୍‌ର ରଙ୍ଗ ଧରିଛେ ତାର୍ ଶଅ । ଜଲୁଛେ ଧକ୍ ଧକ୍ ଧକ୍ ଧକ୍ । ଶଅର୍ ଗୁଟେ ଫାର୍କେ ନରଦି ଯାଉଛେ ନଲିଆର୍ ସୁରୁ ସଁପରୁ ଧାର୍ ଖୁଲ୍‌ଖୁଲ୍ । କା'ଣା କହୁଛେ ସେ ନଲିଆ ନିଜେଁ ବୁଝୁଛେ, ଉଁଜିଆ କାହାରିର୍ ସେ ଆଡ଼୍‌କେ କାନ୍ ନାଇଁ । ଯେତ୍‌କି ଦିନୁ ସେ ବୁହିଲାନ ଏନ୍ତା କେତେ ଲୋକ୍ ଇଠାନେ ପୁଡ଼ା ହଇଛନ୍ ତାର୍ ହିସାବ୍ ଭାଏ୍‌ଲ କରୁଛେ ନଲିଆଟା ତାର୍ ମନକେ ମନ୍ । କହୁଁଛେ ଭାଏଲ୍ ଆଜିର ଜଲୁଥିବା ଇ ମୁନୁଷ୍‌ଟା କେତେଥର ଇନକେ ଆଇଛେ, କାଠି କରିଛେ, ପାଏନ୍ ଛୁଇଁଛେ, ଗାଧିଛେ, ବୁଡ଼ିଛେ, ଆଉର୍ କେତେଥର୍ ମୁର୍ଦ୍ଦାର୍ ବି ପୁଡ଼େଇ ଆଇଛେ । ଆଏ୍‌ଜ୍ ତାର୍ ମୋର୍ ସତେଁ ଶେଷ ଦେଖାଚାହାଁ । ଇତାର୍ ପର୍ଛେ ସେ ଆଉର୍ କେବେଁ ନାଇଁ ଆସେ ନ । ନଲିଆଟା ହଁସୁଛେ କି କାନ୍ଦୁଛେ କିଏ ବୁଝ୍‌ବା ବା ତାର୍ ଭାଷା ? ହଁ ତାର୍ ଲାଗି କାଏଁ ହଁସି କାନ୍ଦି ସୁଖ୍‌ଦୁଖ୍ ଆର୍ ତାର୍ କାଏଁ ଜନମ୍ ମୁର୍ତୁ ? ଜନ୍‌ମିଲା ଦିନୁତ ଚାଲିଛେ ଯେ ଚାଲିଛେ । ତାର୍ ସେ ଚାଲିର୍ ଶେଷ୍ ନାଁ ଅଁ ତ୍ ନାଇଁ ।

ଶଅର ଆର ଫାର୍କେ ଟିକେ ଢ଼ିପ୍ ଠାନ୍ ଦେଖ୍ ଗୁହୁଡ଼େ ଲୋକ ଟୁପୁର୍ ଟାପର୍ ଭୁଟ୍ ଭାଟ୍ ହଉଛନ୍ । ସତେଁ ଇ ମୁନୁଷ୍ ଜାଏତ୍‌ଟା କେ କାନେ କେନ୍ତା ଯେ କାହିଁ ଦୁନ୍‌ପରି ବସି ନାଇଁପାରେ । ଏନ୍ତାକି ଏକ୍‌ଲା ଥିଲେ ବି ନିଜେଁ ନିଜେଁ ମନେମନେ ଭୁଟୁର୍ ଭାଟୁର୍ ହଉଥିସି । ଶୁଇଁଲେଁ ବି ନାଇଁମାନେ, ଯାବ୍‌ତିଆ କଥା ଭର୍ମୁଥିସି । ଆଗର୍ ମୁରଦାର ଦିନେ ଜୀଇଁଥିଲା ଆଉର୍ ଆଜିର୍ ଜୀଇଁଥିବାର ମୁନୁଷ୍ ବି କାଲିର୍ ମୁର୍ଦ୍ଦାର ହେବା ଇ କଥା କିଏ ନାଇଁ ଜାନି ? ହେଲେ ଯେନ୍‌ମାନେ ଜୀଇଁଛନ୍ ସେମାନେ ଭାବୁଛନ୍ ସତେଁ ଯେନ୍ତା ତାଙ୍କର୍ ମୁର୍ତୁ ନାଇନ ।

"ଆଜିର୍ ମୁନୁଷ୍ କାଏଲ ନାଇଁ" ପଧାନ ବୁଢ଼ା ଆଁଠୁଥି ବନ୍ଧା ହଇଥିବା କରିଆ ଫସ୍କାଇ ବନେକରି ବସ୍‌ଲା ।

"ଦଦା ! ଗାଆଁର ବନ୍‌ଏ ଲୋକ୍‌ଟେ ଚାଲିଗଲା ବୋ !" ପଧାନ୍ ବୁଢ଼ାର କଥାକେ ଲମାବାର୍ ହିସାବ୍ ଥିଁ ପାଶେ ବସିଥିବା ଝଗ୍ରୁ ସା କହେଲା ।

"ମୁର୍‌ଧଉନି ବଲ୍, ଗାଁର୍ ମୁରୁଧୁନି ଲୋକ୍‌ଟେ ଚାଲିଁଗଲା ଗାଁ" ପଧାନ ବୁଢ଼ା କହେଲା ।

ଝଗ୍ରୁ ସା ପଧାନ୍ ବୁଢ଼ା ପାଖ୍‌କେ ମୁହଁ କରି କହେଲା "ଦଦା ! ତୋର୍‌ଠାନୁ ସାନ୍ ହଇଥିବା ତ, ହେଲେଁ ବନିହାଁ ବୁଢ଼ା ପାଉଥିଲା ।"

ପଧାନ୍ ବୁଢ଼ା ଫେର୍ ତାର୍ କରିଆକେ ଅଁଟା ଆର୍ ଆଁ ଠୁକେ ଫସେଇ ଗଏଁଠ୍ ପକଉନ୍ ପକଉନ୍ କହେଲା "ହଁ, ବଛର୍ ତିନ୍‌କର ସାନ୍ ଆଏ । ଖାଏଲା ପୋ ତୁର୍‌ତି ବୁଢ଼ା, ଟିକେ ବଡ଼୍‌ଠାଟିଆ ଥିଲା ତ, ହେଁଥିର୍ ଲାଗି ଜଲ୍‌ଦି ବୁଢ଼ାଟିଆ ପାଏଲା ।"

ଝଗ୍ରୁ ସା ସାଙ୍ଗେ ଆଉର୍ ଆଉର୍ ଲୁକେ ମିଶି ଯାଇଥିଲେ । କେ କହୁଥିଲା ବନ୍‌ଏ ଲୋକ୍‌ଟେ ଥିଲା, କେ କହୁଥିଲା ତାର୍ କଥାବାରତା ବିଚାର୍ ଆଚାର୍ ଭିନ୍‌ଏ, କିଏ କହୁଥିଲା ବିପଦ୍ ଆପଦ୍ ପଡ଼୍‌ଲେଁ ଶତ୍‌ରୁର୍ ଘରେଁ ବି ହାଜର୍ । କିଏ ସାଙ୍ଗେ ସାଙ୍ଗେ କଥା କାଟି କହୁଥିଲା ତାର ଶତ୍‌ରୁ ହେଲେଁ କିଏ ଥିଲା ବୋ ?

ଆଜିର ସଭେ ମଲା ଲୋକ୍‌ଯାର୍ ଭଲ୍‌ଗୁନ୍ ସବୁ ଗାଉଛନ୍ ସତେ ସେ ଯେନ୍ତା ତାର ଜୀବନ୍ କାଲ୍ ଭିତ୍‌ରେ ଖରାପ୍ କାମ୍ କିଛି ନାଇଁକରି, ମଲା ଲୁକର୍ ଲାଗି ଟିକେ ଦରଦ୍ ଦେଖାବାର୍, ତାର୍ ଭଲ୍‌କଥା ଯେତେ ଉଖାର୍‌ବାର ବାଗିରୁ ନୁକୋ ଗୁନ୍‌ଟେ ବନିହାଁ ଲୁକର୍ ଥିସି ।

"ତୁମେ ସବୁ ଛୋଟ୍ ଛୋଟ୍ କଥା କହୁଛ; ବୁଢ଼ାର୍ ଅସଲ୍ ଗୁନ୍‌ଟା ଯାହାଥିଲା ସେଠା ତମର୍ କାହାରିର୍ ଆଁଖି କି କାନେ ନାଇଁ ପଡ଼ି କାଏଁ ? ବୁଢ଼ା ବଢ଼ିଆ ଲେଖୁଥିଲା ଗୀତ୍ କି କଥାନି କହ ଆଉର୍ ଯା' ଯାଣା ବଲ୍ ।" କହେଲା କିଶୋର ବାରିକ୍ । କିଶୋର୍ ବାରିକ୍ ଗାଁଆର ପଢ଼ା ପିଲାମାନକର୍ ଭିତରେ ନାମ୍‌ଯାଦା, ବନ୍‌ଏ ପଢୁଥିଲା । ଏଛନି କଲେଜ୍ ଇସ୍କୁଲେଁ ମାଷ୍ଟର ଅଛେ । ବିହା ନୁହେଁ ହଏ । ସାଫ୍ ସୁତର୍ ପିଁଧନ୍ ଉଢ଼ନ୍ । ଗୋଲ୍ ଗୁରା ମୁହଁକେ ସଁପୁର୍ ମେଛା ଧାରକ୍ ବନଏ ଭିର୍‌ସି । ଚେହେରା ବନ୍‌ଏ । କଥାବାର୍ତା ଭି ହେନ୍ତା ହିଁ ଅସ୍‌କଟ୍ ନୁହେଁ । ହେଲେଁ ତାର୍ କଥା ପଡ଼୍‌ଲେ ତାହାହେ କଲେଜ୍ ଥିଁ ମାଷ୍ଟର ହଇଛେ, ପଢ଼ାର୍ ଇମ୍ପ୍ରୁଡ୍ ସେମ୍ପୁଡ୍ ଫାଷ୍ଟ ହଉଥିଲା ବଲି ନେ କହେଲେଁ ଟିକେ ଦୁଖ୍‌ମନା ହେସି ।

"ସତେଁ ଗା ! ବୁଢ଼ାର୍ ବାଁଧ୍‌ଲା ଗୀତ୍‌ମାନେ ଗାଉଥା ବାଗିର୍ ଲାଗ୍‌ସି ।" କହେଲା ଝଗ୍ରୁ ସା । ତାର୍ କଥାକେ ମାଥ୍‌ବରି ଦେବାର୍ ଲାଗି ନୀଲ ଭୁଏ ବଏଲା, "ନାଚ୍

କୀର୍ତନ, ପାଲା, ସଂଚାର ଯେନ୍ ଗୀତ୍ ବଲ୍‌ବ ସେ ଗୀତ୍ ସାଙ୍ଗେ ସାଙ୍ଗେ ଲେଖେ । କହେବାର୍ ବେଲେ, କଲମ୍ ଧଏଲା କି ଲେଖ୍‌ଲା; ହରିହାଟ୍ ହଇଥାଉ କି ଛିନା ଜାଗା ହଇଥାଉ, କିଛି ଫରକ୍ ନାଇଁ ।ପଡେ।"

କିଶୋର ବାରିକ୍ କହେଲା।" ଗୁଟ୍‌ଠେ ବି ଏକା କେଭେଁ ଛପା ନାଇଁ ହେଲା"

"ଛପା ହେବାର୍ ଥିଁ କାଁଣା ଥିସି ହୋ ! ଯା'ର ପଏସା ଅଛେ ସେ ଛପା କର୍‌ବା । ବାହ୍ମନ୍ ବୁଢ଼ାର୍ ପଏସା ଥିଲେଁ ଛପା କରି ଥାଏତା। ନୈ ଥାଇଁ କା'ଣା କର୍‌ବା ? କହିପକାଲେ ଗାଁ ଇସ୍କୁଲ୍‌ର ମିଶ୍ର ମାଷ୍ଟର ! ମିଶ୍ର ମାଷ୍ଟର୍ ଦିହଟା ଯେନ୍ତା ଢ଼େଙ୍ଗ୍ ନୁହେଁ କି ବାଙ୍ଗର୍ ନୁହେଁ, ମୁଟା ନୁହେଁ। କଥା ସାଫ୍ ସୁତର; ସମିୟା ଜାନି ଟଙ୍ଗିଆ ଛିଡ଼ା କଥା କହେସନ ବଲି ଇସ୍‌କୁଲ୍ କମିଟିର୍ ଲୁକେ ଭି ହେତେ ଭଲ୍ ନାଇଁ ପାଆନ୍ । ଉଁଢିଆ ଗାଆଁର ଲୋକ, ମାଷ୍ଟର ଚାକ୍‌ରି ଥିଁ କିନ୍ଦି କିନ୍ଦ୍ରି ଆସି ଇ ଗାଁନ୍ ପହୁଁଚିଛନ୍, ତଥାପି କଥା ପଡ଼୍‌ଲେ ଲୁକେ କହେସନ୍ ବାହାରର୍ ଲୋକ ଆସି ଗାଁ ଥିଁ ପଲ୍‌ଟିସ୍ କରୁଛନ୍ । କାହାରିର୍ ସୋଜ୍ କଥା ଥିଁ ଟୁଣ୍ ନାଇଁ ଲମାନ୍; ଆଲମାଲ ଟୁଣ୍ ଦେଲେଁ ଆର ନାଇଁ ଘୁଚନ୍ ।

"ଆଜିର ଇ ପୁଡୁଥିବାର ବାହ୍ମନ୍ ବୁଢ଼ାର୍ ଲେଖାମାନେ ଛପା ନାଇଁ ହେବାର୍ ଲାଗି ବୁଢ଼ାକେ ଦୋଷ ଦେଇ ହେବା କାଏଁ ? ପଚ୍‌ରାବାର୍ ଭଙ୍ଗୀନେ କହିଲେ ମିଶ୍ର ମାଷ୍ଟ୍ରେ । "ଝନ୍‌ଏକେ ଲେଖ୍‌ବାର ବାଗିର୍ ଶକ୍ତି ଦେଲେ ମହାପ୍ରୁ, ତାହାକେ ସେ ବିଚ୍‌ରା ଦେଖାଲା, ଯାହା ପାର୍‌ଲା ଲେଖା ଲେଖି କଲା । ଗୀତ୍ ବାଁଧିଲା, ନାଟ୍ ବାଁଧିଲା । ଯେନ୍‌ମାନେ ଶୁନ୍‌ଲେ ସେମାନଙ୍କୁଁ ଭଲ ଲାଗ୍‌ଲା ତ ସେ ସବୁକେ ବନିହାଁ ଲୁକ୍‌କର ସାମ୍‌ନାକେ ଆନ୍‌ବାର କାମ୍ ସେମାନ୍‌କର ଆଏ । ଆଗେଁ ପୂର୍ବେ କବିମାନକର୍ ଲେଖାକେ ଲୋକକର ସାମ୍‌ନାକେ ଆନୁଥିଲେ ରଜାମାନେ; ଛପାଖାନା ନାଇଁ ଥାଇ ବି ତଥାପି ତାଲ୍‌ପତରଥି ଲେଖେଇ ଏକ୍‌କେ ଅନେକ୍ କରଉଥିଲେ; କେଡ଼େ କଡ଼ା କାମ୍ । ରାଜା ବିକ୍ରମ ନାଇଁଥିଲେ କାଳିଦାସ୍ ବାଗିର୍ କବିକେ ଭାଏଲ କିଏ ଜାନିଥିତା ?" ମାଷ୍ଟ୍ରେ ଟିକେ୍ ଥାକଲେ ।

ମିଶ୍ର ମାଷ୍ଟଁକର କଥା ସବୁ ନିଜର୍ ଉପର୍‌କେ ଆଉଥିବାର୍ ଭାବି କିଶୋର ବାରିକ୍ ତାଲି ଦେଲା, "ହେଥିର୍ ଲାଗି ମୁଇଁ କହୁଛେ, ସେତେବେଲେଁ ରଜାମାନେ ଥିଲେ, ଏଛନି ମନ୍ତ୍ରୀମାନେ ଅଛନ୍, ଧନୀଲେକ୍‌ମାନେ ଅଛନ୍, ବୁଢ଼ା ସେମାନଙ୍କୁଁ ଧରି ଛପା କରେଇ ପାରିଥିତେ ।"

"ଖୁସାମତ୍ କରିଥିତେ ବଲ୍" ଟପୋ କଲା କହି ପକାଲା ଅଲେଖ୍ ପାତର । ଅଲେଖ୍ ପାତରେ, ଗାଁରେ ଚଲିବୁଲି ଯାଉଥିବା ଘରର୍ ପିଲା । ବାପର୍ ଗୁଟେ ବଲି ପୁଓ, ଟିକେ ଗେଲିହା । କିଶୋର୍ ବାରିକ୍ ସାଙ୍ଗେ ପଢୁଥିଲା, ମେଟ୍ରିକ୍ ନ ରହିଗଲା । ଖେଟୁଁ ଖଲୁଁ କିନ୍ଦ୍ରି ଆଏଁଲେ ପେଟ୍ ପୁର୍‌ବା, ଆମର୍ ନଉତ୍ରି କର୍‌ବାର ନାଇଁନ ବଲି କହେଲା ପାତର୍ ବୁଢ଼ା,

ଅଲେଖର ବାବୁ । ସେଦିନୁ ଅଲେଖ୍ ଗାଁଆନ । ଗାଁଆନ୍ ନାଟେଁ ରାଜକୁମାର ବାହାର୍‌ସି; ପାଟ୍ ଯାହା କରୁ, ରାଜକୁମାର ବେଶ୍‌ଟା ନୁକୋ ଖୁଲ୍‌ସି, ସତେ ରାଜକୁମାର ମେତାଲ ଚେହେରା । ତାର ବହି ପତର ଧରମ୍ କିଶୋର ଆଜିର ମନୁଷ୍ ଆଏ, କିଶୋର୍‌କେ ତାର କେନ୍ ଡ଼ର ଅଛେ । ଗେଜେଟ୍ ପାଏଲେଁ କି ବହିପତର୍ ପାଏଲେଁ ପଢ଼୍‌ସି, ନାଇଁ ଘିନ୍‌ଏ ଏକା । ପିଲା ଭିଲିଁ କେନ୍‌ସି କଥା ପଡ଼୍‌ଲେଗୁଡା ଉଚାର୍‌ଥିଁ ଭାଗ୍ ନେସି । ଆଜିର ଇ କଥା ଥିଁ ବି ଭାଗ୍ ନେଲା ବାଗିର କହି ପକାଲା ।

"ଖୁସାମତ୍ ବଲୁଛୁ ବୋ ଅଲେଖ୍ !" ସାଙ୍ଗେ ସାଙ୍ଗେ ଲଟ୍‌କି ପର୍‌ଲା କିଶୋର । "ଖୁସାମତ ନାଇଁ କରି କିଏ ଅଛେ ? ଜନ୍‌ଏ ଅଧିକର୍ ହେଲେ ନାଆଁ କହତ । ଚପ୍‌ରାଶିଠାନୁ ରାଷ୍ଟ୍ରପତି ତକ୍ ବିନା ଖୁସାମତ୍ କରି କିହେ ଚଲି ନାଇଁ ପାରନ୍ । ବେପାରୀ ବଲ୍ ସମକୁ ଖୁସାମତ୍ କର୍‌ବାକେ ପଡୁଛେ । ଆଉର୍ ଆମର୍ ଗାଁ ଗଅଁଲିରୁ ଚଷ ଭୁଷାକର୍ କଥା ଛାଡ଼୍ ।"

ଟିକେ ଖାସିକରି ତତାପନା ହଇ ପଧାନ୍ ବୁଢ଼ା କହେଲା, "ଗୁଡି କୁଠିଆକୁଁ ଖୁସାମତ୍ କର୍‌ବାର୍ କଥା ଛାଡ଼୍, ଗାଏ ବଲଦ୍‌କୁଁ ଭି ଖୁସାମତ୍ ନାଇଁ କଲେ କୁଁଡ଼ା ନାଇଁ ଖାଏବାର ବଲ୍ ବବା ।"

କିଶୋର ଟିକେ ସଁଭ୍‌ରି ବସ୍‌ଲା। ସଭେଁ ଇନୁ ଇଆଡ୍ କେ ଦଁତିବସ୍‌ବେ ଗୁତା ଉଚାର୍ ଥିଁ । ପଧାନ ବୁଢ଼ାର୍ କଥା ପଦକ୍ କିଶୋର୍‌ର ପଟିଆ ଯାଉଥିବାର ଜାନି ଅଲେଖ୍ ଘୁଚି ବସ୍‌ଲା, ଯେନ୍ତା ପାଏନ୍ ପହଁରା ଶିଖି ନେ ଥିବାର୍ ଛୁଆ ପାଦେ ପାଏନ୍ କେ ଡ଼େଗି ଫେର୍ ବଁଧି ଆଏର୍‌କେ ଘୁଁଚି ଥାଏସି । ହେଲେଁ ମିଶ୍ର ମାଷ୍ଟର ଦବି ଯିବାର୍ ଲୋକ୍ ନୁହନ୍ ।

"ଗଙ୍ଗାଧର୍ ମେହେର ଲେଖିଲେ ପରେ, 'ତୋଷାମଦୀ ହୋଇ ଯୁଗେ ବଂଚୁଥିଲେ ମରିଯିବା ସଙ୍ଗେ ସରି ।" ମିଶ୍ର ମାଷ୍ଟ୍ରେ କହେବାର୍ ମୁଳ୍ କଲେ "ନିଜର ପେଟ୍ ଲାଗି, ଜୀବ୍‌କା ଲାଗି ଖୁସାମତ୍ କର, ଭିଖ୍‌ମାଗ ଚଲ୍‌ବା । ହେଲେଁ, ନିଜର ଲେଖାଲେଖିକେ ନେଇ ମହାପୁରୁ ଦେ'ନ କେ ଭିକ୍‌ଝୁଲି କରି ଭିଖ୍ ମଗାନୁ ହୀନ୍ କଥା କିଛି ନାଇଁ । ବୁଢ଼ା କାହାକେ ଖୁସାମଦ୍ କରି ବହି ଛପେଇ ଥିଲେଁ ତାକ୍‌ର ଇଜତ୍ ବଢ଼ିଥିବା ବଲି ମୁଇଁ ନାଇ ଭାବ୍‌ବାର ।" ମିଶ୍ର ମାଷ୍ଟଁକର୍ କଥା ବାକି ଲୁକ୍‌କୁଁ ବି ଭଲ୍ ଲାଗୁଥିଲା । ସଭେ ମିଶ୍ର ମାଷ୍ଟଁକର ଆଡ଼୍‌କେ ମୁହଁ କରି ଆର୍ କା'ଣା କହେବେ ଶୁନ୍‌ବାର ଲାଗି ମନ୍ ଥିବାର ଜନା ପରୁଥିଲା । ମିଶ୍ର ମାଷ୍ଟଁକର କଥାଥିଁ ବଫୁ ପାଇ ଅଲେଖ୍ କହି ବସ୍‌ଲା-

"ହୟ ବୋ କିଶୋର ! ସଭେ ବଢ଼ିଆ କାମ୍ ନାଇଁ ଜାନନ୍, ସଭେ ପୁତ୍‌ଲା ଲେଖି ନାଇଁ ଜାନନ୍, ସଭେ ମୁର୍ଦୁଙ୍ଗ କି ତବ୍‌ଲା ବଜେଇ ନାଇଁ ଜାନନ୍ । ଯେନ୍‌ମାନେ ଜାନ୍‌ସନ୍

ସେତାକୁଁ ସେ'ଟା ମହାପୁର୍ ଦେ'ନ ବଲି ଭାବ୍‌ସନ୍ । ଆର୍ ସେ ଗୀତ୍ କି କଥାନି ଲେଖିଲା ତ ଆଉର୍ ଟିକେ ଉଚା ଦରଜାର୍ ଦେ'ନ ବଲି ଧରସନ୍; ସେତାକେ ନେଇ ମଗା ଯଚାଟା କାହିଁ ସୁନ୍ଦର ଲାଗ୍‌ବା?"

ପଧାନ ବୁଢ଼ା କିଶୋର ଆଡ଼୍‌କେ ମୁହଁ କରି କହେଲା "ହେଲେଁ ବବା! ଅଲେଖି ଯେନ୍ କହେଲା ବଢେଇ ହଉ କି ପୁତ୍‌ଲା ଲିଖା ହଉ, ଆର୍ ଭାଏଲ୍ ଇ ବାହ୍ମନ୍ ବୁଢ଼ାର ଗୀତ୍ ଲେଖା କଥା ହେଉ, ଇସବୁ ସିର୍ଜନା ଶକ୍ତି ଆଏ। ସିରଜନା କରବାର୍ ଲୋକ୍ ମହାପ୍ରୁ ଆଏ । ତାର୍ ଇ ସିର୍ଜନା କରବାର ଶକ୍ତିଟିକ କାର୍ କପାଲେଁ ଟିକେ ଅଧେ ପଡ଼ିଥିସି । ସେମାନେ ଉଁଜିଆ ଲୁକରନୁ ନିଶ୍ଚେ ଟିକେ ବଡ଼୍ ଆ'ନ୍ । ହେଲେଁ ଆମେ ସେମାନକୁଁ ବଡ଼୍ ବଲି କେ'ନ ମାନ୍‌ସୁଁ? ମାନୁଥିଲେଁ ବୁଢ଼ାର୍ ଲେଖାମାନକୁ ଡ଼ିଆଁ ଖାଉଥିବାର୍ କେ'ନନ ଦେଖି ପାରତାଁ । ହଉ, ଛାଡ଼୍ ସେ ସବୁ । ରାଏତ୍ ଛିତି ବସ୍‌ଲାନ୍, ଦେଖ ମୁର୍ଦ୍ଧାର ପୁତବାର୍ କେତେଦୂର୍ ଗଲା? ସର୍‌ଲାନ ବଏଲେଁ ପଁଚ୍ ଲକଡ଼ି ଦିଅ, ଗଧାବୂଡ଼ା କର ଘରକେ ଯିମା ।" ସମକର ସୋର୍ ବସ୍‌ଲା।

ବୁଢ଼ାର୍ ଜାତିର ଲୋକ୍ ବଏଲେ "ସରି ଆସଲାନ ଆସ, ପଁଚ୍ ଲକଡ଼ି ଦିଅ ।"

ସଭେ ଗାଁକେ ଫିର୍‌ଲେ, ହେଲେଁ କିଶୋର ବାରିକ୍‌ର ମନ୍‌ଟା ନାଇଁ ଫିର୍‌ଲା ସେଠାନୁ, ଯେନ୍‌ଠାନ୍‌କେ ମିଶ୍ର ମାଷ୍ଟଁକର କଥାନେଇ ଯାଇଥିଲା । ରାତିଁ ଭି ବନଏ କରି ଶୁଇ ନାଇଁ ପାର୍‌ଲା କିଶୋର । ସକାଲ୍ ପୁଆ ଆଡ଼୍‌କେ ନିଦ୍ ଲାଗୁଥିଲା । ଖରା ପଡ଼ି ଆ'ଏଲାନ । କିଶୋର୍‌ର ମାଁ ଡ଼ାକ୍ ପକାଲେ "ଏ ବୁଆ! କିଶୋର ଉଠ୍ ବନିହା ବେଲ୍ ହେଲାନି, କଲେଜ୍‌କେ ନାଇଁ ଯାଉ ଭାଏଲ?"

କିଶୋର୍ ଉଠି ପଡ଼୍‌ଲା, ଦେଖିଲା ଯେ ଘଡ଼ିଥିଁ ଆଠ୍ ବାଜିଗଲାନ । ଘରର୍ ବାଟ୍ ଦୁଆରେଁ ମାଏ୍ ଝି ଗୁଟେ ଭିଖ୍ ମାଗୁଛେ । ଚଙ୍ଗ୍‌ରା ଟାକର୍ ଭିତରେଁ ମଙ୍ଗଲାର୍ ପୁତ୍‌ଲାଟେ ଧରି କହୁଛେ "ମା! ମୁଠେ ଦିଅ ।"

କିଶୋରର ମାଁ କହୁଛନ୍, "ହୟ ଗୋ ବୁପ୍ରି! ହାତ୍ ଗୋଡ଼୍ ଜାଙ୍ଗଲ ଧରି ଭିଖ୍ ମାଗୁଛୁ ତ ମାଗୁଛୁ, ହେଲେଁ ମଙ୍ଗଲାର ପୁତଲାଟେ ଧରି ମଗାଟା କାଏଁ ଢ଼ଙ୍ଗର୍ କଥା? ଇଟା କାଏଁ ଚଲନ୍ ଆୟ? ମଙ୍ଗଲାର୍ ବି ଇଜ୍ଜତ୍ ନେଉଛୁ, ଅର୍ ଯେନ୍‌ମାନେ ମଙ୍ଗ୍‌ଲାକେ ମାନ୍‌ସନ୍ ତାକର୍ ବି ଇଜ୍ଜତ୍ ନେଉଛୁ ।"

କିଶୋର ମିଶ୍ର ମାଷ୍ଟଁକର୍ କଥା ସବୁ ସୋର୍ କମି ମୁହଁ ଧୁଉଥାୟ, ଆର୍ ତା'ର ମନ ଭିତରେଁ ବାହ୍ମନ୍ ବୁଢ଼ାର୍ ସେ ଚେହେରା ସେ'ନ୍ତା ଥାଇ ତାର୍ ଆଗେ ଠିଆ ହଇକରି ଏକ୍‌କେରିଆ ହଁସୁଥାୟ୍ ।



# ପିନ୍‌ଚୁଡ୍ଡୁ

ପିନ୍‌ଚୁଡ୍ଡୁ; ଛେଲପିଲାଟେ, ମେଲଛା ଛୁଆ । ଲମ୍ କଲମ୍, ଡ଼ଉଲ୍ ଡ଼ାଉଲ୍ । ବଢ଼ୋଲ୍ ପାଏନ୍, ଛନ୍‌କୁଛେ । ଗୁରିଆ ଦିହିଥିଁ ଧୋବ୍ ବୁନ୍ଦିମାନେ ମଗଶୀରର୍ ଗୁର୍‌ବାରିଆ ଝୁଁଟି ବାଗିର୍ ଦକ୍ କରୁଛେ । ବଛର୍ ପୁରିଥିବା କି ନି କେଜାନ୍‌ଏ । ତଥାପି ଲୁଭ୍‌ଲୁଭାନି ଗୋଲ୍‌ଗାଲ୍ । ଯେ ହେଲେଁ ବଲ୍‌ବା ଚିଥଲ୍ ଛୁଆଟେ ଝାଗୁଁ ପଲେ ଆଇଛେ । ସୁନ୍ଦର ଯେନ୍ତା ସୁତର୍ ସେନ୍ତା, କେତେ ପୋଷ ମାନିଛେ, ସର୍କସ୍‌ବାଲେ ଦେଖିଲେ କାହିଁ ଛାଡ଼୍‌ତେ। ସୁରୁ ଖମାରୀ ସରପଁଚ୍ ବସିଥିଲେଁ ତାକର୍ ଦେହେ ଉପର୍‌କେ ଚଢ଼ି ଆ'ଯ ସି, ଖେଦ୍‌ଲେଁଭି ନାଇଁ ଯାଯ । ହାତେଁ ଛେଲିକରି ଖମାରୀ ଅଲ୍‌ଗୈଇ ନେସନ୍,ଗାଲି ବି ନାଇଁ ଦିଅନ୍, ପିଟାମରା ତ ଦୂରର୍ କଥା । ସରପଁଚ୍ ବୁଢ଼ାର୍ ପୁଓ ହରିବଂଶ ପିନ୍‌ଚୁଡୁ କେ କିଏ ପିଟିନେଲେଁ କାନ୍ଦି ପକାସି, ହଟ୍ କର୍‌ସି ନାଇଁ ଖାଏ ।

ହରିବଂଶ ସୁରୁ ଖମାରୀକର୍ ପୁଓ । ବୟସ ଗଡ଼ିଗଲା ବେଲର୍ ଛୁଆ । କେତେ ଉପାସ୍ ବଲା କରିଥିଲେ ସୁମୁଖୀ, ସୁରୁ ଖମାରୀକର୍ କନିଆଁ । କେତେ ଦାନ୍ ଦପାନ୍, କେତେ ପୂଜା ଧଜା ସବୁ ପାଏନ୍ ଫାଟିଗଲା । ଶେଷେଁ ହରିବଂଶ୍ ବସାଲେ । ପୁରାନ୍ ବଢ଼୍‌ବାର୍ ବଛର୍ ନୈ ପର୍‌ନୁ ସନ୍ତାନ୍ ହେଲା । ସେ'ଟା ଫେର୍ ପୁଓ । ଖମାରୀ ଘର୍ ଖାଲି ନୁହେଁ ଗାଁ ସାରା ସଭେ ଉଷତ୍ ଆନନ୍ଦ୍ । ଏକ୍‌ଶିଆ ଦିନର୍ ସତ୍‌ନାରେନ୍ ପୂଜା, କୀର୍ତନ, ଭାଗବତ୍ ଆର ପ୍ରସାଦର୍ କଥା ଲୋକ ନୁହେଁ ପାଶରନ୍ । ଯେ ଯାହା ନାଆଁ ଦେଲେ ସବୁ କଟିଗଲା; ପିଲାର୍ ନାଆଁ ରହେଲା ହରିବଂଶ । ଟଲିଗଲା ବେଲର୍ କାଯଁ ତେଜ୍ ? ଉଡ଼ିଗଲା ବୟସର୍ ପିଲାତୀ ଖମାରେନ୍ କେ କାହିଁର୍ ଗୁରସ୍ ହେତା ? ଗାଏଗୁରସ୍, ଡ଼ବା ଗୁରସ୍, ଯା'ଶା ପିଆଲେଁ ବି ଛୁଆର୍ ଦିହ କେଭେଁ ବନ୍‌ଏ ନୁହେ, ଆଏଜ୍ ହଗାତ କାଏଲ ଜ୍ୱର୍, ପରଦିନ କେ ଖାସି । ଗାଁର୍ ଭଁଡ଼ାରେନ୍ ବୁଢ଼ୀ ବଏଲା ଛେଲ୍ ଗୁରସ୍ ପିଆଲେ ନୁକୋ । ସୁରୁ ଖମାରୀ ନୁରିଖୁଜି ଆନ୍‌ଲେ ଛେଲ୍ ପଟେ;ପଏସା ସିନେ ଜହ ଦେଲେ, ହେଲେଁ ଗୁରସ୍‌ଟା ଯେତେତେତେ। ଛୁଆର୍ ପେଟ୍ ପୁର୍‌ଲା ଭଁଡ଼ାରେନ୍ ବୁଢ଼ୀର କହନ୍ତି କଥା ଟପୋକଲା ଲହେଲା; ଛୁଆ ନିଖୁନ୍। ଛେଲ୍ ପଟ୍‌କ ଆହୁରି ବେତ୍‌ହୁଏ କଅଁଲାଲା। ଶେଷ୍ ବେତର୍ ଛୁଆ ଇ ପିନ୍‌ଚୁଡୁ । ବୁଢ଼ୀଛେଲ୍ ମରିଗଲା,ତାର୍ ଗୁନ୍ ଶୁଝି ନାଇଁ ହଏ ବଲି ଖମାରୀ ତାର୍ ହାଡ଼୍ ରଖିଛନ୍, ଗଙ୍ଗା ନେବେ । ଆର୍ ଗଲା ସଲା ବେଲର୍ ଛୁଆ ଇ ପିନ୍‌ଚୁଡ଼୍‌କେ ଘଡ଼େ ନୈ ଦେଖିଲେ ପାଁଚ୍ ବର୍‌ଷର ପିଲା ହରିବଂଶ ଉଛନ୍ । ବେଲାକେ ନାଇଁ ଦେଖିଲେଁ ଖାଏଁ ନାଇଁ, ବେଲ୍‌ବୁଡ଼େଁ ନୈ ଦେଖିଲେଁ ଶୁଏନାଇଁ । ପିନ୍‌ଚୁଡ଼୍‌କେ

ପାଏଲା ଦିନୁ ହରିବଂଶର୍ ବଲ୍, ପିପି, ପୁତ୍‌ଲା, ସାଙ୍ଗ ସର୍‌ସା କିଛି ନୂରା ନାଇଁ । ପିନ୍‌ଟୁଡ୍ ଅଛେ ତ ହରିବଂଶର୍ ମା' ବାପ୍‌କେ ବି ସୋର ନାଇଁ । ପିନ୍‌ଟୁଡ୍ ଭି ହରିବଂଶକେ ନୈ ଦେଖ୍‌ଲେ ମେଁ ମେଁ ହଉଥିସିନ୍ । ଖମାରେନ୍ କହେସନ୍ , ଦୁଇଦିନର୍ ଲାଗି ତାର୍ ମାମୁଁ ଘର୍‌କେ ମାଁ ପୁଓ ଯାଇଥିଲେ ଯେ ପିନ୍‌ଟୁଡୁ ଖିଆପିଆ ଛାଡ଼ି ତନର୍ ତନ୍ ହଜି ଯାଇଥିଲା । ଛେଲ୍ ପିଲାଟେ ବଏଲେଁ କା'ଣା ହେବା ମୁନ୍‌ଷର୍‌ନୁ ଭି ଇତିକରି ସେନ୍‌ହୋ ସରାଗ୍ ତାର୍ । ହରିବଂଶ ଯାହିଁ, ପିନ୍‌ଟୁଡୁ ତାହିଁ । ମୁର୍ ହି ଦଇଟା ଖାଏଲେଁ ଭି ପିନ୍‌ଟୁଡୁର୍ ଭାଗ୍ ସେଥିଁ ।

ହରିବଂଶକେ ଚାଏର୍ ପୁରି ପାଁଚ୍ ଲାଗ୍‌ଲା । ଇସ୍‌କୁଲକେ ଯିବାର ନାଆଁ ନାଇଁ ପକାବାର୍ । ବୁଝେଇ ଶୁଝେଇ ଅଥା ହଇଗଲେନ୍ ସରପଂଚ, ଖମାରୀ । ଇ ପିନ୍‌ଟୁଡୁର୍ ଲାଗି ମାଏ୍ଟ ହଇ ଯାଏସି ନ କାଏଁ ପିଲାଟା ।ସୁରୁ ଖମାରୀକୁଁ ଇ ଚିନ୍ତା ଘାର୍‌ଲାନ । ହରିବଂଶର୍ ସାଙ୍ଗେ ସାଙ୍ଗେ ରନ୍ଧାଘର୍‌ନୁ ଡ଼ବାଘର୍ ତକ୍ ସବୁଆଡ଼େଁ ପିନ୍‌ଟୁଡ୍‌ର ଯା'ଆସ୍ । ଯେନ୍ ଘରେଁ ଦେଖିବ ଛେଲ୍‌ଲେଁଡ଼ି । ଖମାରେନ୍ ଭି ଅଥା ବର୍‌ହେଇ । ଘାୟ ଘାୟ୍ ବିର୍‌କତ୍ ହଇଯାଏ ସନ୍; ପିନ୍‌ଟୁଡୁକେ ଶଁପିକାଟି ପକାସନ୍, ହେଲେଁ ହରିବଂଶର୍ ଡ଼ରେଁ ପିଟିମାରି ନାଇଁ ପାରନ୍ ।

ସୁରୁ ଖମାରୀ ସର୍‌ପଂଚ୍ । ଇସ୍‌କୁଲ୍ କଲେଜ୍‌ର ସାର୍ଟିଫିକେଟ୍ ନାଇଁ ଥିଲେଁ ବି ବୁଧି ଶୁଧି ବିଚାର ଆଚାର୍ ସବୁଦିଗେଁ ଭଲ୍ । ଉଞ୍ଚିଆ ସର୍‌ପଂଚମାନ୍‌କର ଲେଖେଁ ପଏସାଲୁଭିଆ ନୁହନ୍ । ତାକର୍ କାଏଁ ଧନ୍ ସଂପତିର୍ ଉନା ଅଛେ ? ଉନା ଥାଉ କି ନୈ ଥାଉ ବୁଢ଼ାକାଲେଁ ପୁଓ ପାଇଛନ୍, ଅନ୍ନିୟେ କଲେଁ, ଅଧରମ କଲେଁ ପିଲାକେ କାଲେଁ ବିପଦ୍ ଆପଦ୍ ପଡ଼୍‌ବା । କାଏଁ କର୍‌କାର ? ତାକର୍ ଯେତ୍‌କି ଅଛେ ହରିବଂଶର ପୁଅ ନାତି ତକ୍ ନାଇଁ ସାରି ପାରନ୍ । ସତେଁ ଧର୍ମେ ଥିଲେ ଆପଦ୍ ବିପଦ୍‌କେ କାଏଁ ଡ଼ର୍ ? ସେଥିର୍ ଲାଗି ପଂଚେତ୍ ପଏସାର୍ ହିସାବ କିତାବ୍ ଅଗି ଜିଭେଁ ଅଛେ, ସେଥିର୍ ଲାଗି ବିଡୁବଲ୍ କି ଏସ୍‌ଡୁ ବଲ୍ କି ପଂଚେତ୍ ଅଫିସର୍ ବଳ ଯେ, ଆୟଁଲେଁ ସନ୍ତୋଷ । ଉଞ୍ଚିଆ ପଂଚେତର୍ ଲୁକେ ଲୁଭେଁ ହେସନ୍ ତାକର୍ ପଂଚେତକେ । ଏନ୍ତା ସର୍‌ପଂଚ୍‌ଟେ ହେତା କାଏଁରେ ! ସରଗ୍ କିରିନେତେ ପଂଚେତ୍‌ଟାକେ । ରାଜନୀତି ଦଲ୍‌ମାନକର ବି ଲାଲ୍ ଥିପି ପରସି, ଖମାରୀ ସରପଂଚ ବାଗିର୍ ଲୋକ୍ ତାକର୍ ଦଲେଁ ରହେଲେଁ ଗୁଟେ ପଂଚେତର୍ ଭୋଟ୍ କମ୍ ସେ କମ୍ ସଲିଡ଼୍ । ସୁରୁ ଖମାରୀ ପଂଚେତ୍‌ଟାକେ ନିଜର୍ କୁଟୁମ୍ ବାଗିର୍ ରଖିଛନ୍ । କିଏ କେତେବେଳେଁ ବେମାର୍ ସେମାର୍ ପଡ଼୍‌ଲା ତ ଡ଼ାକ୍ତର ଡ଼କୈ ଉଷୋକଷା କରାସନ୍ଦ । ବନ୍‌ଏ ଡ଼ାକ୍ତର ଯେଆୟ୍ , ଫିଜ୍‌ପତର୍ ନାଇଁ ନଉଁ ବଲି କହେସନ୍, “ଇଥିର୍ ଲାଗି ତ ଖମାରୀ ବାବୁ ଆମେ ସକାର୍‌ନୁ ଅଲ୍‌ଗା ପାଏଁସୁ ।”

"ଫଟ୍‌ଫଟିଥି ଆଇଛନ୍ ଆଜ୍ଞା ! ହେଟା ଆର୍ ପାନିଁ ଚଲସି କାଏଁ ? ତେଲ ମୁବିଲ୍ ଲାଗି ଆଜ୍ଞା" ଟଙ୍କା ଦଶ୍ କୁଡ଼େ ପକେଟ୍ ଥିଁ ଭରି ନେସନ୍ ଖମାରୀ । କିଏ କେନ୍ତା କହେସନ୍ ଦୁସୁରା ସରପଂଚ୍‌ମାନେ ଭୟ ବନ୍ଧୁର୍ ନାଁଥି ଠିକା ଆନି ମାଏଟ୍ ଗୁଗଡ଼ି କି ଇସ୍‌କୁଲ୍ ମରାମତି କାମ୍‌ମାନେ କରି ଦୁଇ ପଏସା ନାଇଁ ଭିଆଉଛନ୍ କାଏଁ ? ହେନ୍ତା କଲେଁ ପରର୍ ଲାଗି ଯେନ୍ ଆଯୋବାକୋ ଖର୍ଚ୍ଚାଟା ହଉଛେ ଭର୍‌ନା ହେତା ତ । ହାତୁଁ ପନ୍‌ତୁଁ ସବୁବେଲେଁ ଦେଇ ହେବା ହେଲେଁ ? ସାଙ୍ଗେଁ ସାଙ୍ଗେ ଖମାରୀ କହେସନ୍ ପର କିଏ ଆଏ ବୋ ? କା'ଣା ଆମର୍ ପଂଚେତର୍ ଗରିବ୍ ଦୁଖୀ ଲୁକ୍‌କୁଁ ଆମର୍ ବଲି ଆମେ ନାଇଁ ଭାବ୍‌ଲେଁ ବିଲାତ୍ ଆମ୍ରିକାର୍ ଲୋକ୍ ଆମର୍ କର୍‌ବେ ? କା'ଣା ହେଲେ ମୁଁ ଦେଇ ପକୌଛେଁ ଯେ ଇଟା ବି ଧରମ୍ ଆଏତ । ଅଧରମ୍ କଲେଁ ଯଦ୍‌ରି ବିପଦ୍ ପଡ଼୍‌ସି ଧରମ୍ କଲେ ସଂପଦ୍ ହେବାର୍ କଥା । ଉଲ୍‌ଟା ପଂଚେତ୍ କାମର୍ ଠିକାଦାର୍ ବଲକ୍‌ନୁ ପଏସା ପାଏବାର୍ ବିଲମ୍ ହେଲେଁ ହାତୁଁ ଦେଇ ଚଲେଇ ନେସନ୍ । ବିଲ ପାଏବାର୍ ଲାଗି ଓଭରସିଅର୍‌କେ, ଅଫିସ୍ ବାଲାଁକୁ କାହାକେ ବାସ୍‌ନା ଚାଉଲ୍ ତାମ୍‌ଦୁ ତ କାହାକେ ମୁଗଫଲି ଗୁଡ଼ାଦୁ ଦେଇ ମନେଇ ନେସନ୍ । ପଂଚେତ୍ କାମ ଆଏ ପାଁଚ୍‌ଲୁକିଆ କଥା, କିଏ କର୍‌ବା ଆଉର୍ ? ପଂଚେତ୍ କାମ୍‌ନୁ ପଏସେ ଅଧିଲେ ପାଏବାର୍ ଆଶା କର୍‌ବାର୍‌ଟା ସପ୍‌ନେ ବି ନାଇଁ ଭାବନ୍ । ବଲ୍‌ସନ୍ ପାଁଚ୍‌ଲୁକିଆ ପଏସା କିଏ ଖାଏବା ହେଟା ! ହେଁଟା ଗୁହୁ ଆଏ, ଅଗ୍‌ବା ବିଷ୍ଟା । ହେଁଥି ବଅଁଶ୍ ରହେସି ? ବଅଁସ୍ ବୁଡୁନ୍ ବୁଡୁନ୍ ଠହରି ଯାଇଛେ; ହରିବଂଶ ଥିଲେଁ ମୋର୍ ସବୁ ଅଛେ । ପଏସା ପତର୍ ଧନ୍ ସଂପଦ୍ ଦୁଇଦିନିଆଁ କଥା, ଆଏଜ୍ ଅଛେ କାଏଲ ନାଇଁ । ଗାଁର ନିଯେ ନିଶାପ୍ ଖମାରୀ ନୈ ଥିଲେଁ ହଏ ନାଇଁ । ଦୁଇ ପକ୍ଷର୍ ଲୋକ ଖୁସ୍ । ପାଖ୍‌ପାତର୍ ନାଇଁ କି ରିଶମ୍ ନାଇଁ । ବୁଝେଁ ଶୁଝେଁ କରି ମେଶାଗୁଲା କରେଇ ନେସନ୍ । ସୁରୁ ଖମାରୀ କର୍ ଥାଆତେକେଁ ପଂଚେତ୍‌ନୁ ଗୁଟେ ବି କଥା ଥାନା କଚ୍‌ରିକେ ଯାଇ ନୈ ପାରେ ।

ଖମାରେନ୍ ବି କମ୍ ନୁହନ୍ । ସରପଂଚ୍ ପଠୈଛନ୍ ବଲି ପଂଚେତ୍ ପିଅନ୍ ରଝୋ ଗଉର୍ ଆୟଲେଁ ସୁମୁଖୀ ଜାନି ପକାସନ୍ । ଆଏଜ୍ କିଏ ଆଉଛେ୍ କାଏଁ ? କେତେଜନ୍ ଆଏବେ ? କା କାଣା ଲାଗ୍‌ବା ? ଟପୋ ଟପୋ ପଚାରି ନେଇ ବାସ୍‌ନା ଚାଉଲ୍, ଛର୍‌ଲା ଦାଏଲ୍, ତୁନ୍ ଶାଗ୍, ଆଚାର୍ ଆମୁଲ୍, ଗୁରସ୍ , ଦହି, ଘି କରି ନିମିଷ୍‌ଟାକେ ଯୁଗାଡ଼୍ କରି ପଠାସନ୍ । ତାର୍ ଉପ୍‌ରେ ତାହିକେ ଚାହିଁ ପଏସା; କୁକ୍‌ରା ଚିଙ୍ଗ୍‌ରା ଲାଗି । କେବେଁ କେବେଁ ସରପଂଚ୍ ଘରେଁ କିଏ ଖାଏବେ ବଲି ଜାନ୍‌ଲେ ଛ'ତୁନ୍ ନ'ଭଜା କରି ଖୁଆସନ୍ । ଗାଁଥି ବିହା ବର୍‌ପନ୍ କାମ କାରଜ୍ ହେଲେଁ ଧାନ ଦୁଇ ଖଣ୍ଡି ତ ପହେଲା ଥୁଆ । ଗାଁଥି ଯା'ର୍ ଯେତେବେଲେଁ ଯାହା ଖଙ୍ଗ୍‌ଲା ଖମାରନ୍ ପାଖେଁ ହାଜର୍ । ଇସ୍ ନୈ କରନ୍ ।

କାହାରିର୍ ନିରାଶ୍ ହଇ ଫିରବାର୍ କିହେଁ ନାଇଁ ଜାନିଁ । ଲୋକ ସନ୍ତୋଷ ଥିଲେ ମୋର୍ ହରିବଂଶର ଆଏସ ବଢବା। ହରିବଂଶକେ ମେରୁଖମ କରି ଖମାରେନ୍‌ର୍ ମନ୍, କାମ, ବିଚାର ସବୁ । ମାଡ଼େନର୍ ବଳଦ୍ ବାଗିର୍ ଦୁହେ କିନ୍ଦ୍‌ରୁଛନ୍ । ମୂଳ ବଳ କି ଶେଷ୍ ସବୁ ହରିବଂଶ।

ଥରେ ଅଧେ ସରପଂଚ୍ ଭୋଟ୍‌ଥିଁ ଜନ୍‌ଏ ପଟେ ଖମାରୀକର୍ ବିପଖ୍ ଥି ଠାଡ଼୍ ହେଲେ, ହେଲେଁ ଫରଫିଟ୍ । ଖମାରୀ କେନ୍‌ସି ଦଲର୍ ନୁହନ୍ । ଯେନ୍ ଦଲର୍ ଯେ ଯେ ଆଏଁଲେଁ ଭି ମନାଗୁନା ଉତତମ୍ । କାହାରିର୍ ନିନ୍ଦା ବଦ୍‌ନାମ୍ କାହାରି ଠାନେ ନାଇଁ । ସବୁ ଦଲର ଲୋକ୍ କହେସନ୍ "ଖମାରୀ! ଆମର୍ ଦଲେଁ ରହ।

"ସବୁ ଦଲେଁ ଅଛେ ଆଜ୍ଞା! ମୁଇଁ କେନ୍ ଦଲ୍‌କେ ଛାଡ଼୍‌ମି । ଝାରର୍ ଜଁତୁ କି ଆକାଶର୍ ଚଁରେ ତ ଆଜ୍ଞା ଦଲ୍ ନାଇଁ ଛାଡ଼େ, ଆମେ ତ ମୁନୁଷ୍ ଆଉ । ଦଲ୍ ଛାଡ଼ି ରହି ପାରମା।?" କହେସନ୍ ଖମାରୀ ।

ହେଲେଁ ଏମେଲେ ପଧାନ୍ ବାବୁର୍ ଜାଲ୍‌ନେ ପଡ଼୍‌ବାର୍ ପଡ଼୍‌ବାର ବାଗିର୍ ହଇଗଲେନ୍ ସୁରୁ ଖମାରୀ । ଗଲାଥରର୍ ଏମେଲେ ଭୋଟ୍ ଥିଁ ପଧାନ ବାବୁ ଜିତିଗଲେ ସିନା, ଖମାରୀ ସରପଂଚର୍ ପଂଚେତ୍‌ନେ ତାକର୍ ବିପଖଥିଁ ପଡ଼ିଥିବର୍ ଭୋଟ୍ ଦେଖି ତାଜୁବ୍ । ପଧାନ ଏମେଲେ ପାଉର ଥିଁ ଥିବା ଦଲର୍ ଲୋକ । ଲୋକ୍ ବାକ୍, ଖର୍ଚ୍ଚା ବର୍ଚ୍ଚା, ଲୋଭ୍ ଲାଲଚ୍, ଡ଼ରା ଧମ୍‌କା କେନ୍‌ସି କଥାର୍ କାମ ନାଇଁ ଥାଇ । ତଥାପି ଛ ଗୁଟେ ପଂଚେତର୍ ଲୋକ ସବୁ ଭୋଟ୍ କାଗଜ୍ ଥିଁ ଏକ୍‌ଲା ଝନ୍‌ଏ ମୋହର୍ ମାଏଲା ମେତାଲ୍ । ଛାଡ଼୍,ଦୁଇଚାଏରଟା ମାରା ଯାଇଥିବା, ନହେଲେଁ ସବୁ ଭୋଟ୍ ତାକର୍ ବିପଖ୍ ଥିଁ । ସେଦିନୁ ଏମେଲେ ପଧାନ୍ ବାବୁର୍ ଆଏଁଖି ସୁରୁ ଖମାରୀ ଆଡ଼େଁ । ପଧାନ୍ ବାବୁ ସୁରୁ ଖମାରୀ ସାଙ୍ଗେ ଭେଟ୍ ପଡୁନ୍ ପଡୁନ୍ ଆଗୋ ହାତ୍ ଟେକି ଯୁହାର କର୍‌ସନ୍ । ତାକର୍ ପଂଚେତର୍ କେନ୍‌ସି ଭି କଥା ପଡ଼୍‌ଲେ ଓଭରସିଅର୍‌କେ, ବିଡ଼ିଓକେ କହିକରି ଜଲ୍‌ଦି କରେଇନେସନ୍ । ଖମାରୀକର ଗାଁ କେ ଆୟ୍‌ଲେଁ ଖମାରୀ ଘରକେ ଯାଇ ଚାହା ପିଇସନ୍, ଆର୍ ହରିବଂଶର୍ ଲାଗି ବିସ୍‌କୁଟ୍ ତବେ ବି ଆନ୍ ବାକେ ନାଇଁ ପାଶରନ୍ । ଦୁସ୍‌ରା ଏମେଲେ ମାନେ ଯେନ୍ ପଂଚେତ୍‌ଥିଁ ଭୋଟ୍ ନାଇଁ ପାଇଥାଅନ୍ ସେ ପଂଚେତ୍‌କେ ହିର୍‌କି ନାଇଁ ଦେଖନ୍, ମାତର୍‌କ ପଧାନ ବାବୁ ଉଲ୍‌ଟିଆ। ଧୀରେ ଧୀରେ ସୁରୁ ଖମାରୀ ଏମେଲେ ପଧାନ୍ ବାବୁର୍ ହାତ୍ ଘେଁସ୍‌ରା ବାଗିର୍ ହଇଁଗଲେନ୍ । ଲୋକ୍ ବି କହୁଛନ୍, ପାଉଁର୍‌ଥିଁ ଆସନ୍ ଆର୍ ଶାସନ୍ ଥିଁ ଥିବାର୍ ଦଲର୍ ଆଏଁଖି ଯେନ ପଡ଼୍‌ବା ସେନିର କଥା ଦୁସ୍‌ରା; କପାଲ୍ ସଲ୍‌ଖିଲା ବଲ । ଯେ ଯେନ୍ତା କୁହାବୁଲା ହେଲେ ଯେ ସରପଂଚ୍ ଭୋଟ୍ ଚେଆରମେନ୍ ଭୋଟ୍ ଆର ଜହ

ଧୁର୍ ନାୟଁନା । ଜଲ୍‌ଦିଁ ଲୋକ୍ ବାଛି ବସ୍‌ଲେନ କେ'ନ କାହାକେ ସରରପଂଚ ଥିଁ ଥୁଇବେ। ପଧାନ୍ ବାବୁ ତାକର୍ ଦଲେଁ କଥା ପକାଲେ ନ ଯେ ସୁରୁ ଖମାରୀକୁଁ ତାକର୍ ଦଲର୍ ଚେୟାରମେନ୍ କେଣ୍ଡିଡ଼େଟ୍ କରବେ । ସୁରୁ ଖମାରୀକର୍ ଆଗ୍‌ମୁଡ଼େଁ କଥା ପଡ଼୍‌ଲେଁ କହୁଛନ୍ "ନୀତି ନେି ଥାଇ କାଏଁ ରାଜ୍ ନୀତି ?" ଆର୍ ସୁରୁ ଖମାରୀ ବୟଁଲେ ଖାଲି ନୀତିନୁ ଗୁଟେ ଚଲ୍‌ତା ଫିର୍‌ତା ମୁର୍ତି ବୟଲେଁ ଭି ଚଲ୍‌ବା । "କାହିଁ ଚେୟାରମେନ୍ ପଦ୍ ଆର କାହିଁ ମୁଁ ଆଗ୍ୟାଁ ? ଗୁଟେ ପଂଚେତର କଥା ବୁଝ୍‌ଲା ବେଲ୍‌କେ ଅକଲ୍ ଗୁଡ୍‌ମ୍ । ଇଟା ଫେର୍ ଷ୍ଟୁଲ୍‌ହ ସତ୍ରଟା ପଂଚେତର୍ କଥା ଫେର୍ ସବୁ କାଗଜ୍ ପତର୍ ଇଂଲିଶ୍‌ନେ । ମୁଁ ବନ୍‌ଏ କରି ଉଡ଼ିଆ ପଢ଼ି ନାଇଁ ପାରେଁ ଆଗ୍ୟାଁ । ମତେ ଚେଆରମେନ୍ କରମୁ ବଲି ନାଇଁ କହ ଆଗ୍ୟାଁ, ଦୁସ୍‌ରା ଢ଼ଙ୍ଗେ ଖିଆଲ୍ ମସ୍‌କୁଲ୍ କର୍‌ବାର୍ ଅଛେ ବଏ୍‌ଲେଁ କର ।" ସୁରୁ ଖମାରୀ କହି ହଁସି ପକଲେ।

ହେଲେଁ ପଧାନ କାଣା ସହଜେଁ ଛାଡ଼୍‌ବାର୍ ଲୋକ ? "ହଏ ହୋ। ଖମାରୀ ଆଜ୍ଞା। ଇ ଆଠ୍ ତାରିଖ୍ ଆଉଛନ୍ ପଂଚେତ୍ ବିଭାଗର୍ ମନ୍ତ୍ରୀ, ତାକର୍ କଥା ଜାନିଛ ? ସେ ସରରପଂଚ୍ ଥିଲେ, ତେତ୍‌କେଁ ଚେଆର୍‌ମେନ୍, ତେହେଁରୁ ଉପର୍‌କେ ଉପର୍‌କେ ଏମେଲେ, ମନ୍ତ୍ରୀ । ଆଉର୍ ତମର୍ ଲେଖେଁ ଇଂଲିଶ୍ ନାଇଁ ଜାନିଥିବାର୍ ବନିହାଁ ଲୋକ ତ ଏମ୍‌ପି ଅଛନ୍; ତମେ ହିଁ ବଲ୍ ତ, ଫେର୍ ସବୁ ତାର୍ ସୁଖେଁ ହେବା ।"

ସୁରୁ ଖମାରୀ ବନିହାଁ ଟିକେ ଭାବିତ୍ ରହେଲେ; ଉଁ ସୁଁ ନାଇଁ ବନ୍‌ଏ ଘଡ଼େ ତକ୍ । "ନାଇଁ ପଧାନ୍ ଆଗ୍ୟା। ମତେ ହେ ଧନ୍ଦାଥିଁ ନେି ପକଉନ୍, ମୁଁ ବନ୍‌ଏ କି ମୋର୍ ପଂଚେତ୍ ବନ୍‌ଏ ।" କହେଲେ ଖମାରୀ କଷାପିତା ହୁକି ।

ପଧାନ୍ ଏମେଲେର୍ ଜାଲ୍ ହେତେ ଢ଼ିଲା ନୁହେଁ ଯେ, ସହଜେଁ କିଏ ପିଛ୍‌ଲି ଯିବା । ସୁରୁ ଖମାରୀ ତ ସୁତର୍ ପତର୍ ସତ୍‌ଲୋକ ଆନ। ସେ ଜାଲର୍ ଆଦି ଅଂତ୍ ସେ କାହିଁ ମାହିର୍ କରି ପାର୍‌ବେ । ହରିବଂଶକେ ମେରଖମ୍ କରି କିନ୍ଦ୍‌ରୁଥିବାର ସୁରୁ ଖମାରୀର୍ ମନ୍‌ମାନ୍‌କୁଁ ପଧାନ ଆଗୁଁ ନିଘା କରି ଆସିଛନ୍, ଆଏ୍‌ଜ୍ ସେମାନଙ୍କୁ ଛାପ୍‌କିଲେ । କହେଲେ, "ଖମାରୀ ଆଗ୍ୟାଁ। ତମର୍ ଦିନ୍‌କାଲ୍ ତ ଏତ୍‌କେଁ ସର୍‌ବା, ତମେ ତମର୍ ଭର୍‌କ ନାଆଁ ଯଶ୍ କମେଇ ନେଲ । ମାତର୍‌କ ହରିବଂଶର୍ କଥା ଭାବିଛ ? ସେ କାଁ ବଲି ଲୁକ୍‌କର ମଝିଁ ଚିନ୍‌ହେି ହେବା ? ସୋଜ୍ ସୁରୁ ଖମାରୀର୍ ପୁଓ ବୋଲି ? ମୋର୍ ବାବୁ ଚେଆର୍‌ମେନ୍ ଥିଲା, ମୁଇଁ ଏମେଲେ ହେମି ମନ୍ତ୍ରୀ ହେମି । ଇ ଭାବ୍‌ନାଟା ତାର୍ ମନ୍‌କେ ଢୁକାବା ? ଇଟା ଛୁଆଦିନ୍ ତାର, ମୁଡ଼୍‌ଟା ତାର୍ କଚା ହାୟଁଡ଼୍ ଲେଖେଁ; ଯେନ୍ତା ଗାର୍ କାଟ୍‌ବ ସେଟା ବୁଢ଼ାକାଲ୍ ତକ୍ ରହେବା । ଦେଖ ଭାଇ। ମୁଇଁ ହରିବଂଶର୍ ଅଗତ୍ କଥା ଭାବି କହୁଛେ ।"

ସୁରୁ ଖମାରୀଙ୍କର ହାବ୍‌ଭାବ୍ ବଦ୍‌ଲିବାର୍ ଜନା ପର୍‌ଲା । କଥାବାର୍ତ୍ତା ବି ପର୍ଛା । 'ନାଇଁ'ନୁ ଟିକେ ଟିକେ 'ହଁ' ଆଡ୍‌କେ ମୁହାଁଲା । ଟିକେ ଖାସି କରି ଖମାରୀ କହେଲେ "ପଧାନ୍ ବାବୁ ଠିଆ ବି ହଇ ଯାଏତିଁ ଯେ, ଟେଆରମେନ୍ ଭୋଟ୍‌ଟା ତ ନିର୍ବାଚନ୍ ନୁହେଁ ଆଗ୍ୟା । ନିଲାମ୍ ଆଏ । ମୁଇଁ କାହିଁ ପାଏମି ପଯସା ? ପାଏଲେଁ ହେଲେଁ ହେନ୍ତା ଫାଲ୍‌ତୁ ଖର୍ଚ୍ଚ କାହିଁ କରିହେବା ?

"ତମେ ଖାଲି ହଁ ବଲ୍ ଖମାରୀ ଆଜ୍ଞା । ବାକି କଥା ଆମେ ବୁଝ୍‌ମୁ । ପାଟି ବୁଝ୍‌ବା । ହଁ ଆଠ୍ ତାରିଖ ଆର୍ ଜହଦନ ତ ନାଇଁନ । ହେଁ ଦିନେ ପଂଚେତ୍ ମନ୍ତ୍ରୀ ଆଉଛନ୍ । ସେ ଗୁଟେ ପଂଚେତ୍ ଦେଖିବାର୍‌କେ କହୁଛନ୍ । ଏସ୍‌ଡ଼ିଓ ତୁମ୍ ପଂଚେତ୍‌କେ ବାଛିଛନ୍ ଦେଖିବାର ଲାଗି । ସାଙ୍ଗେଁ ତ ଜିଲ୍ଲା ସଭାପତି ବି ଥିବେ । ହେଁ ଦିନେ ସବୁକଥା ପଟିଯିବା ।" କହେଲେ ଏମେଲେ ପଧାନ ବାବୁ । ହଁ ଟିକେ ଉବେଲ୍ ହଇପାରେ, ଲୋକ୍ ନାଇଁ ଛାଡ୍‌ନ୍‌ତ, ଯେନ୍ ନିକେ ଗଲେଁ ଆସୁନ୍ ଆସୁନ୍ ବିଲମ୍ ହଇଯାଏସି ।" ଆଉର୍ ଟିକେ ଘୁରିନେଲେ ପଧାନ ବାବୁ । ମୁଡ୍ ଖୁଜାଇ ଖୁଜାଇ କହେଲେ ଖମାରୀ "ଆଗ୍ୟାଁ । କାଣା କର୍‌ବାକେ ପଡ୍‌ବା ?"

ପଧାନ୍ ଉଠୁନ୍ ଉଠୁନ୍ କହେଲେ "କିଛି ନାଇଁ ହୋ । ଖାଲି ଚାହା ପାଏନ୍ ଟିକେ ବନ୍‌ବସ୍ କରିଥିବ । ରାତିଁ ତ ବର୍‌ଗଡ୍‌ ନେ ଖାଏବେ ବଲି ତାକର୍ ପ୍ରୋଗାମ୍ ଅଛେ ।" ପଧାନ ବାବୁ ଉଠିଗଲେ । ଖମାରୀ ଖାଲି କହୁଥିବାର୍ ଶୁନା ଯାଉଥିଲା "ବର୍ଷାଦିନ୍, ଫେର୍ ରାଏତ୍ ବିକାଳ ହେଲେଁ ଅଡୁଆ ।"

ଆଠ୍ ତାରିଖ୍ ଆସ୍‌ଲା । ସରପଂଚ୍ ସୁରୁ ଖମାରୀ ତାକର୍ ଉଆଡ୍ ମେମ୍ବରମାନଙ୍କୁଁ, ପଂଚେତ୍ ସେକେଟ୍ରେରୀକେ, ପିଅନ୍ ଚଉକିଦାର୍‌କେ ସମ୍‌କୁଁ କହି ଖମାରେନ୍ କୁଁ ଭି କହେବାର୍‌ଟା ନାଇଁ ପାଶ୍‌ରିଁ । ଖମାରେନ୍ ହରିବଂଶକେ ଧରି ମାଁ ଘର୍‌ରେ ଯାଇଛନ୍ ଦିନ୍‌ଏ ଅଧିକର ଲାଗି । ତାକର ମାଁ ବେମାର୍ ଅଛନ୍ । ବୁଢ଼ାବୁଢ଼ୀ ଲୋକ୍, ବଯସର୍-ବେଲ୍ ବୁଡ଼ି ବୁଡ଼ି ଆଏଲାନ, କିଛି ହଇଁଗଲେଁ ପଛେ ପସ୍ତେଇ ହେବେ । ଘରର୍ ଧନ୍ଦା ଛାଡ଼ି ହଏ ନାଇଁ । ପିନ୍‌ଟୁଡୁକେ ଛାଡ଼ି ହରିବଂଶର୍ ଯିବାର ମନ ନାଇଁ । ହରିବଂଶକେ ଛାଡ଼ି ଖମାରେନ୍ ହେଲେଁ କେତ୍‌କେଁ ଯାଏସନ୍ ? ପାଶର୍ ଗାଁ ମଝି ଯୋର୍ ନଲିଆ କିଛି ନାଇଁ । ଯିବେ ଦିନ୍‌ଏ ଆଏବେ ଦିନ୍‌ଏ । ତଥାପି ମନ୍ତ୍ରୀ ଆଏଲେଁ , ସାୟତ୍ ରନ୍ଧାବଢ଼ା ଲାଗିଯିବା ବଲି ଚାଉଲ୍ ଦାଏଲ୍ ଅବଡ୍ ଜବଡ୍ କରି ସବୁ ରଖି ନେଇଛନ୍ ।

ପଂଚେତ୍‌ନେ ସଭେ ବସିଛନ୍ । ସରପଂଚ ସେକେଟ୍ରେରି, ଉଆଡ୍‌ମେମ୍ବର୍ ଆର ଭି ଗାଁର୍ ବନଏ ବନ୍‌ଏ ଲୋକମାନେ । ରାଏତ୍ ହେଲାନ, ନୁହେଁ ଆସନ୍ ମନ୍ତ୍ରୀ । ମଟର୍‌ଟେ ଘୁର୍ କଲେଁ ସମ୍‌କରର୍ ନିଘାଁ ସେଆଡ଼େଁ ।ଚତୁର୍ଦ୍ଦିଗ୍ ମେଘ ଘୁଟ୍ ଘୁଟେଆ ଆନ୍‌ଲାନ ।

ଯେନ୍ ମେଘ୍ ଦିଶୁଛେ ଯେ, ବର୍ଷା ହେଲେଁ କେ ଜାନ୍‌ଏ ବଢ଼େତେ ବଏଜ୍ ପକାଉ ନାଇନ। ମୁହଁର୍ କଥା ମୁହେଁ ଅଛେ ପାଏନ୍ ପରଲା, ଆର୍ ତିନ୍ ତିନ୍‌ଟା ମଟର୍ ଆସି ପଂଚେତ୍ ପଂଚେତ୍ ଅଫିସ୍‌ର ଆଗ୍‌ମୁଡ଼େଁ ବିରେକ୍ ଦେଲେ । ମଟରର୍ ଲୋକ ସବୁ ଚଟାପଟା ହଇ ପଂଚେତ୍ ଘର୍‌କେ ଢୁକ୍‌ଲେ, ଆଉର୍ ଇଆଡ଼େଁ ମେଘ୍ ଭି ଉପ୍ରୋଧ୍ ନାଇଁ ରଖି ରୁକ୍‌ଲା । ରୁକୁଛେ ତ ରୁକୁଛେ; ପଂଚେତ୍ ଟିନ୍ ଛାଦନ୍ ଟା ଫାଟି ପଡ୍‌ଲା ବାଗିର୍ ଲାଗୁଛେ ।

ଏମେଲେ ପଧାନ ବାବୁ ମନ୍ତ୍ରୀ, ସଭାପତି ସମ୍‌କୁଁ ସୁରୁ ଖମାରୀକର୍ ସାଙ୍ଗେ ଚିହ୍ନା ପର୍‌ଚେ କରେଇ ନେଲେ । ଏସ୍‌ଡ଼ିଓ ସାହେବ, ପଂଚେତ୍ ଅଫିସର ବିଡ଼ିଓ ସାହେବ ଆର୍ ମନ୍ତ୍ରୀକୁଁ ଜୁଗ୍‌ବାର ଲାଗି ଆସିଥିବାର୍ ପୋଲିସ୍ ବାଲେ ଫଂଚେତ୍ ଘରେଁ ଠାନେ୍‌କେଁ । ହେତେ ଚଉକି କେ'ନ ମିଲ୍‌ବା? ପଂଚେତ୍ ପିଅନ୍ ରଙ୍ଖୋ ଗଉର୍ ପଂଚେତ୍ ଦରିଟା ପେସେରେଇ ନେଲାନ । ଚଉକିଟେ ନେଇ ପାଏଲା ଲୁକେ ସେ'ନ ଆଶ୍ରା ନେଲେନ । ଘୁର ଢେଡ୍ ବଖ୍‌ରା ଥିଁ ଝନ୍ ଚାଲ୍‌ଶେ ହେଲା ବେଲ୍‌କେ ସଭେ ସମ୍‌କୁଁ ଠଠେଇ ହେଲେ ଯାଇ । ପାଏ ନ୍ ଏ'ଦେ ଛାଡ୍‌ବା ସେ'ଦେ ଛାଡ୍‌ବା ବଲି ସମ୍‌କର୍ ଆଶା । ମାତର୍‌କ ପାଏନ୍ ଛାଡ୍‌ବାର ନା ନାଇଁ । ମୁଷଳର୍ ଧାରେଁ ରୁକୁଛେ । ଘଡ୍‌ଘଡ଼ି ଚଡ୍‌ଚଡ଼ି ଥିଁ କାନ୍ ଫାଟି ପରୁଛେ, ଘନ୍ ଘାଇ ମଙ୍ଗଲ୍ ଚଲୁଛେ । ପଂଚେତ୍ ଛାଡ଼ି ଉଠ୍‌ରିବାକେ କାହାରି ଦମ୍ ନାଇଁ, ଯେ ଯେନ୍ତା ଭାବେଁ ଅଛେ ସେନ୍ତା ଅଛେ ଯେ ଅଛେ ନ ।

ମନ୍ତ୍ରୀ ଇ ଜିଲ୍ଲାର୍ ଲୋକ୍; ସଦର ନିର୍ବାଚନ ମଣ୍ଡଳୀର ଏମେଲେ । ପଧାନ୍ ବାବୁକର୍ କହେଲା ପରେ ଜିଲ୍ଲା ସଭାପତି ମିଶ୍ର ବାବୁକୁଁ ପଚ୍‌ରେଇ ଜବାବ୍ ଛିଡ଼େଇନେଲେ ସେ ସୁରୁ ଖମାରୀ ଆଏ୍ ବା ଭୋଟ୍ ଥିଁ ଇ ପଂଚେତ୍ ସମିତିର୍ ଚେଆରମେନ୍ ଲାଗି ଠିଆହେବେ । ଖମାରୀ ଭି ହଁ ବଏଲେ । "ପାଏ ନ୍ ତ ନାଇଁ ଛାଡ଼େ ନ ଆଜ୍ଞା ! କିଛି କାଁଜିଭାଜି କରି ଦୁଇଟା ବନ୍‌ବସ୍ କରସିଁ, ସଭେ ଭୁଖେଁ ହଇଯିବେ ନ । ରାଏତ୍‌ଟା କଟ୍‌ଲେଁ ଫେର୍ ଯାହା ହେବା" । ହାତ୍ ଯୁଡ଼ିକରି କହେଲେ ସୁରୁ ଖମାରୀ।

"ଇ କଥା ନୁ ଦୁସ୍‌ରା କଥା ନାଇଁ, ହେଁଟା କଲେଁ ଯାଇ, ରନ୍ଧା ବଢ଼ାର୍ ଉଯୋଗ କର ।" କହେଲେ ଏମେଲେ ପଧାନ ବାବୁ ଉପର୍ ଆଡ୍‌କେ ନିଘା କରି ।

ଖମାରେନ୍ ଘରେଁ ନାଇଁ ଥିଲେଁ ବି ଦାଏଲ୍ ଚାଉଲ୍ ଉଏଲ୍ ଲେସୁନ୍ ଆଚାର ଆମୁଲ୍ ଖଲି ଦନା ଠାନୁ ସବୁ ଠିକ୍ ଠାକ୍ ହେଲା। ଉଆଡ୍ ମେମ୍ବରମାନେ ଛତା ଧରି ସଭେ ଲାଗି ପଡ୍‌ଲେ । ହେଲେଁ ଏତ୍‌କି ଲୁକର୍ ଡୁନ୍ ଶାଗ୍ କଥା କେନ୍ତା କର୍‌ମା ବଲି ଖମାରୀ ସରପଂଚ, ଉଆଡ୍ ମେମ୍ବରମାନେ, ପଂଚେତ୍ ସେକେଷ୍ଟେରି ଆର ପିଅନ୍ ରଙ୍ଖୋ ଗଉର୍ ଭାବୁର

କୁଟୁର୍ ହଉଛନ୍ । "ମନ୍ତ୍ରୀ, ଏମେଲେ, ଏସ୍‌ଡ୍ରୁ, ଥାନା ବାବୁ ବାଗିର୍ ଲୋକ୍ କେଭେଁ ଇ ପଂଚେତ୍‌ଥିଁ କୁନୁଆ ହେବେ । ଏଛନି ଦୁକାନ୍‌ଦାର୍‌କେ ଉଠାଲେଁ ଆଲୁ ଦୁଇ ଟାଏର କେଇଁ ମିଳିପାରେ ଯେ ଆଲୁଟା କେନ୍ ଦୁନ୍ ଥିଁ ଯାଏ ସି ? ହେଁଟା ହେଲେଁ ଗୁଟେ ଦୁନ୍ ହେବା ? ମେଲ୍‌ଛା ପଟେ ସୋର୍ ସାର୍ କର ବୋ ରଝୋ ।" ବଲି ସମ୍‌କର୍‌ର ଶୁନ୍‌ତ୍‌କେଁ କହେଲା ଆଦିବାସୀ ଉଆଡ୍ ମେମ୍ବର ଉଜଲ୍ ଭୁଏ । ସଭେ ମନେ ମନେ ଗାଁ ସାରା ଉହାଟି ଆନ୍‌ଲେ, ହେଲେ କା'ର୍ ଘରେଁ ମେଲ୍‌ଛା ଅଛେ ଯେ ପାଏ୍ ବେ ? ସଭେ ଦୁଖ୍‌ମନା ହେଲା ବାଗିର୍ ବସିଛନ୍, ଭୁଲିଆ ପଚରାର୍ ଉଆଡ୍ ମୁଟ୍‌ରୁ ମେହେର୍ କହେଲେ "ଅଛେ ଗା ପଟେ, ହେଲେଁ ସରପଂଚ କାଁ ବଲ୍‌ବେ ଯେ, ଜାନ୍‌ଏ ?" ସୁରୁ ଖମାରୀ ସାଙ୍ଗେଁ ସାଙ୍ଗେଁ କହି ପକାଲେ "ପାଁଚ୍ ଛାଗା ଥିଁ ଦଶ୍ ଦେବା, ହେଲେ ମିଲୁ ।"

ଉଜଲ୍ ଭୁଏ କେ ଆଏଁଖ୍ ମାରିନେଲେ ମୁଟୁର୍ ମେହେର । ଉଜଲ୍ ଭୁଏ କହି ପକାଲେ "ତମର୍ ମେଲ୍‌ଛା ପିଲାକେ କହୁଛନ୍ ଖମାରୀ ! କାଁ ବଲ୍‌ବ ଯେ" । ସରପଂଚ ସୁରୁ ଖମାରୀକର୍ ମନ୍ ସାଙ୍ଗେଁ ସାଙ୍ଗ୍ ଉତ୍‌ରି ଗଲା । ଏତେ ବର୍ଷା ନ ଭି ତାକର୍ କଁଠକପାଲିର ଝାଲ ସମ୍‌କର୍ ଆଏଁଖ୍‌କେ ଝଲ୍‌ମଲେଇ ଗଲା । ସୁରୁ ଖମାରୀ ନୀରବ୍, କଥା ନାଇଁ କି ଭାଷା ନାଇଁ, ହଁ ନାଇଁ କି ନାଇଁ ନାଇଁ । ତାକର୍ ମନର୍ ଆଖିଁ ପିନ୍‌ଟୁଡୁର୍ ସେ ଟଗ୍‌ଲିଆ ଚେହେରା ଚିକ୍‌ଚିକେଇ ଗଲା । ତାର୍ ପଛେଁ ପଛେଁ ହରିବଂଶର୍ ସେ କନ୍ଦକନ୍ଦ୍ ନିଆଁ ଆଏଁଖ୍ ଦୁହିଟା ସତେଁ ଖମାରୀକର୍ ଆଏଁଖ୍ ଦର୍‌ପନ୍ କେ ଆବ୍‌ରି ବସ୍‌ଲା । ଖମାରୀ ଭାବୁଛନ୍ ତ ଭାବୁଛନ୍ । କେତେବେଲେ୍ ଗଡ଼ିଗଲାନ କିଏ ଜାନୁଛେ ? ଖମାରୀକର୍ ସୋର୍ ବସ୍‌ଲା ଯେତେବେଲେଁ ମେହେର୍ ଉଆଡ୍ କହେଲେ ଯେ, "ଏତ୍‌କେଁ ବସାବସି କଲେଁ ହେବା ।"

ପାଏନ୍ ଟିକେ ଥେବି ଆଉଛେ । ସଭେ ଖାଇ ବସ୍‌ଲେ "ଯାହା ହେଲେଁ ଭି ଗ୍ରାମସେବକ୍ ତ୍ରିପାଠୀର ପାଗ୍ ରାଗ୍‌କେ ନାଇଁ ହଏ ଗା ! ଭୁଏ !" କହେଲେ ମେହେର୍ ଉଆଡ୍ ଉଜଲ୍ ଭୁଏକେ ।

"ଇଟା ଯେନ୍ ଶିକାର୍ ଆଏ, ନୁନ୍ ହଲ୍‌ଦି ଦେଇ ସିଝେଇ ନେଲେଁ ଭି ସୁଆଦ୍ କରିଥିତା ବୋ ନୁକୋ ଜିନିଷ୍ ଆଏତ ।" କହେଲା ଉଜଲ୍ ଭୁଏ । ସଭେ ମଜାଥିଁ ଖାଉଛନ୍, ମାତର୍‌କ ଖମାରୀ ଖାଇ ଭି ନୈ ବସି, ଖାଲି ଭେଲ୍‌କା ବାଗିର୍ ଦେଖୁଛନ୍ ଯେ ଦେଖୁଛନ୍ ।

ଖିଆପିଆ ସର୍‌ଲା; କଥା ହେଲା ମେତାଲ୍ ଖିଆ ସର୍‌ଲା କି ପାଏନ୍ ବି ଥେବ୍‌ଲା । 'ଏତ୍‌କେଁ ଆମେ ଯାଏସୁଁ' ବଲି ମନ୍ତ୍ରୀ ଏମେଲେ ଅଫିସର୍ ସବୁ ବାହାଲେ । ଖମାରୀ ଖାଲି ହାତ୍ ଦୁହିଟା ଯୁଡ଼ି ନେଇଛନ୍, ଆମ୍ ଲିମ୍ କଷା ପିତା କିଛି ନାଇଁ ।

ସଭେ ଗଲେ । ପଂଚେତ ଅଫିସ୍ ଛିନା । ଖମାରୀ ଘର୍‌କେ ଆଏଲେ । ଘର୍‌ଟା ବି ଝାଏଁ କରୁଛେ । ପିନ୍‌ଟୁଡୁ ଥିଲେଁ ମେଁ ମେଁ କରୁଥିତା । ଖମାରୀକର୍ ଆଁଖିର୍ ପାଏନ୍ ରୁକି

ହେଲା, ପିନ୍‌ଚୁଡୁ ବନ୍ଧା-ହେବାର୍ ଦୁଆଁଟା ମେଲା ପଡ଼ିଥିବାର୍ ଦେଖି । ଯାହା ବି ହଉ ମେଲା ଘରେଁ ଖଟେଁ ପଡ଼ଲେ । ଝୁମ୍‌ରା ନାଇଁ, ଖାଲି ଇକଡ଼୍ ସେକଡ଼୍ ହଉଛନ୍ । ସକାଲ୍ ପୁଅ ପୁଆ ଆଏଁଖି ଲାଗ୍‌ଲା ଲେଖେଁ ହେଲା । ସକାଲ୍ ପାଏ ଲା, ଗାଁଧିନିଗଧୁଆ ହେଲାନ । ଖମାରୀ ଘରର୍ କବାଟ୍ ନେି ହିଟ୍‌ଦାର ତାୟ ଲ୍ । ଫଂଚେତ୍ ପିଅନ ରଝୋ ଗଉର୍ ରାତିର୍ ଅଗଲିଲା ଜିନିଷ୍ ପତର୍ ଧରି ବାଟମୁହେଁ ଠିଆ ହଇଛେ; ଥରେ ଅଧେ 'ହରିବଂଶର୍ ବା' 'ହରିବଂଶର୍ ବା' ବଲି ଡ଼ାକ୍‌ଲା ନ; ହେଲେଁ ଭିତରୁଁ ଉଁ ଚୁଁ କିଛି ନାଇଁ ।

ଖମାରେନ୍ ହରିବଂଶକେ ଧରି ବଲଦ୍ ଗାଡ଼ିନୁ ଉତ୍‌ରିଲେ । ରଝୋ କେ କହେଲେ "ଦେଖତ ରଝୋ । ଇ ପିଲାକେ; ଘଡ଼େ ଭି ନେି ରହିଦେଲା ଯେ, ପିନ୍‌ଚୁଡ଼୍ ପିନ୍‌ଚୁଡୁ ବଲି ଉଠନୁ ବସ୍‌ନୁ ରେନ୍ଧ୍ ମତାଇଛେ ଯେ, ରଖେଇ ଥୁଏଇ ନାଇଁ ଦେବାର୍ ।" ରଝୋ ତେତ୍‌କେଁ ଟାଏଟ୍ ପିଟ୍‌ଲା ତ ଖମାରୀ ଆସି ଖୁଲ୍‌ଲେ । ହରିବଂଶ ଖମାରୀକର ନିକେ ଯାଏ ତା କାଣା ? ପିନ୍‌ଚୁଡୁ, ପିନ୍‌ଚୁଡୁ ବଲି ତାର୍ ବନ୍ଧାଠାନ୍‌କେ ଧାଏଁଲା, ହାତେଁ ଧରିଛେ ପିପଲ୍ ଡ଼ାଲ୍‌ଟେ, ପିନ୍‌ଚୁଡୁ ଖାଏବା ବଲି ବାଟୁଁ ଭଙ୍ଗେଇ ଆନିଥିଲା । ଦେଖ୍‌ଲା ପିନ୍‌ଚୁଡୁ ନାଇଁନ; ଦୁଆଁଟା ଖାଲି ପଡ଼ିଛେ । 'ପିନ୍‌ଚୁଡୁ ଯେ ବା' ବଲି ଖମାରୀକର୍ ଆଡ଼୍‌କେ ଦେଖ୍‌ଲା ବେଲ୍‌କେ ରଝୋ ଗଉର୍ କହି ପକାଲା "ରାତିଁ ଦୁଇଗୁଡ଼ିଆ ଲେଁଝା ନେଇଗଲା ବାବୁ! ଛାଡ଼୍, ଫେର୍ ପଟେ ଘିନ୍‌ମା ଯେ" । ହରିବଂଶ ଦୁଲ୍‌ଦାଲ୍ କରି ଠିଆ ଠିଆ ହିଟି ପଡ଼୍‌ଲା, ସୋର୍ ମୋଲ୍ ନାଇଁ । ଗାଁ ସାରା ସାଙ୍ଗେ ସାଙ୍ଗେ ହୁଲିଆ ହଇଗଲା । ଦୁଇଲୋକ୍ ଯାଇ ଡ଼ାକ୍ତର ଡ଼ାକି ଆନ୍‌ଲେ । ଡ଼ାକତର କହେଲେ- "ଦିହେଁ ଜର୍, ମାରକି ବି ମାରୁଛେ । ଛୁଆଟା ମନେ କେତ୍‌ନି କେତେ ଆଘାତ୍ ପାଇଛେ, ଛୁଆଟାକେ ବୁର୍ଲା ନେବାର୍ ବେବସ୍ଥା କର ।"

ଖମାରେନ୍ ବସ୍‌ଲା ଠାନୁ ଉଠ୍‌ବାର୍ ନାଇଁ । ଖମାରୀ ଭେଲ୍‌କା ବାଗିର୍ ଦେଖୁଛନ୍ । ପତା ପରବାର ନାଇଁ । ସମ୍‌କୁଁ ଶୁଭୁଥିଲା କି ନି କେ କାନ୍‌ଏ ? ଖମାରୀକର୍ କାନ୍‌କେ ଶୁଭୁଥିଲା ମେଁ... ମେଁ.... ମେଁ...



# ମରିଛେ କି ଜୀଇଁଛେ କେ ଜାନ୍‌ଏ ?

ସୋଙ୍ଗ୍ ମୁନୁଷ୍ ଯେନ୍ତା ଟିକେ ସୁଖ୍ ସଂପଦ୍ ହେଲେଁ ଉପ୍‌ଲି ପର୍‌ସି, ସେନ୍ତା ଇ ଗାଁ ବଡ଼ଉଲ୍‌ପୁର । ମଝ୍ ମଝ୍ କିଆ ଗାଁଟେ । ତାହା ପକ୍‌ଡ଼ି ଦୁକାନ୍ ଦୁଇଟା, କିରାନା ଆର୍ କପଡ଼ା ଦୁକାନ୍ ଗୁଟେ ଖଣ୍‌ଏ ହେଲା ଦିନୁ ବଡ଼ଉଲ୍‌ପୁର ଭି ଉପଲି ପରୁଛେ; ଉଚ୍‌କି ଉଠୁଛେପା ଇ ଗାଁନ ମଟେର୍‌ମାନେ ଭି ଘଡ଼୍‌ଏ ଛନ୍‌ଏ ଠିଆଡ଼୍ ହେସନ୍ ତ ଲୋକ୍ ଭିଡ଼୍ ବି ଜନା ପର୍‌ସି । ଛୋଟ୍ ଜାଗାଥିଁ ଗୁଡ଼ାଦୁ ଭି ଲୋକ୍ ହେଲେଁ ଭିଡ୍ ବାଗିର୍ ଆଏଁଖିକେ ଦିଶ୍‌ସି । ଇନ ବିଜ୍‌ଲି ଲାଗିଛେ, ଫୋନ୍ ବି ଲାଗ୍‌ଲାନ । ଇ ପଂଚେତର୍ ସରପଂଚ୍, ଚେଆରମେନ୍ ଏନ୍ତା କି ଏମେଲେ ହେଲେଁ ଭି ଇ ଗାଁର୍ ଲୋକ ହେସନ୍ । ଗଅଁଲିର୍ ଲୋକ୍‌ଟାକେ ହେଲେଁ ଭୋଟେର୍‌ମାନେ କେନ୍ତା ବାଛ୍‌ବେ । ବଡ଼ଉଲ୍‌ପୁରେଁ ହପ୍ତାକିଆ ହାଟ୍‌ଟେ ବି ବସୁଛେ ତ ଯେ ଯେନ୍ତା ଆଏଲେଁ ସରପଂଚ୍, ଚେଆରମେନ୍ ଏମେଲେ ସମ୍‌କୁଁ ଭେଟି ପାର୍‌ବେ । ଖଜାଖିଆ ଯାତ୍‌ରାଦେଖା ଦୁହି କବାର୍ ଏକା ସାଙ୍ଗେଁ ହେବା । ବଡ଼ଉଲ୍‌ପୁର୍‌କେ ଗାଁ ବଏଲେଁ ବଡ଼ଉଲ୍‌ପୁରିଏ ରିଶ୍‌ମି ହେଲେନ ।

ଦିନେ ଗାଁର୍ ମହାଜନ୍ ଲଛୁରାମ୍‌ର ଘରେଁ ପୂଜା ହଉଥିଲା । ଯେ ପୁରହିତ୍ 'ଗ୍ରାମଦେବତାୟୈ ନମଃ' ବଏଲା ବେଲ୍‌କେ ସଟୋ କଲା ସରପଂଚ୍ ସମାରୁ ଦାଶ କହି ପକାଲା 'ନଗର ଦେବତା" ବଲ୍ ବାହ୍ମନ୍ ଗୁସେଙ୍ଗ । ଲଛୁ ବି କହେଲା "ଆମର୍ ଗାଁ ହେଲେଁ ସହର୍ ନେ ହେଲାନ କାଏଁ ?" ଲଛୁର୍ କଥା ଏଛନି କାହିଁ ତଳେଁ ନୈ ପଡ଼ତ୍‌ବାର୍ ତ; ପଣ୍ଡିତ୍ ବାହ୍ମନ୍ ବି ତୁନ୍ ପଡ଼୍‌ଲେ । ଲଛୁର ଦୁକାନ୍ ଟା ବର୍ଷେ ଅଧେ ହେଲା ନ ବନ୍‌ଏ ଆଯଁଖ୍ ଦିଶୁ ଚଲୁଛେ; ଲଛୁର୍ ପୁଁଜିପାତି ଭି ଦିନ୍‌କେ ଦିନ ଦୁସ୍‌ରା ଦୁସ୍‌ରା ହଉଛେ । ତାର୍ ବାପ୍ ଘାଏ କମେଇଥିଲା; ଲଛୁକେ ବନ୍‌ଏ ସଂପତିଟେ ଦେଇକରି ଯାଇଥିଲା । ହେଲେଁ ବୁଢ଼ା ମଲା କି ଲଛୁ ଉତ୍‌ପାତିଆ ରାସ୍ତା ଧଏଲା ଦିନାକେତେ । ସଂପତି ଥିଲେ ବିଏସ୍ ଥିଲେଁ ଲୋକ୍ ହେନ୍ତା ହେସନ୍ ତ । ପଏସାଟା ତାହାକେ ଥାବେଁ ରହି ନାଇଁ ଦଉଥାଇଁ । ସାଙ୍ଗେଁ ଯୁଆନ୍ ବଏସ୍‌ଟା ଭି ତାହାକେ ଯାହିଁତାହିଁ କରି ପକଉଥିଲା । ଲଛୁ ସବୁ ଖରାପ୍ ବାଟ୍‌କେ ଆଦରି ବସ୍‌ଲା । ଆର୍ ଆବ୍‌ରି ବସ୍‌ଲା ଯେତେ ଖରାପ୍ ସାଙ୍ଗ୍ ଥିଲେ ଇ ବଡ଼ଉଲ୍‌ପୁରେଁ । ବଛର୍ ଦୁଇଟା- କେଁ ଲଛୁ ଖାସ୍ । ଅଡ଼ିଆ ପାନିର୍ ବି ଅଭାବ୍, ବେଲେ ଖାଏଲେଁ ବେଲେ ନାଇଁ । ଧନ୍ କମ୍‌ଲେ ମାନ୍ କମ୍‌ସି; ଇଜତ୍ କମ୍‌ସି । ଲଛୁ ଇଥିଁ ତାହିଁ ହଇ ଗାଏଲ୍ ଝଗର୍ କା'ଣା ମାର୍ ବି ଖାଏବାର୍ ସେ ପାଶ୍‌ରି ନୈ ଥିବା । ସେ ଦିନ୍ ସବୁ ଖରାପ୍ ସମିୟା ଥିଲା ଲଛୁର୍ । ହେଲେଁ ଲଛୁ ଫେର୍ ବେପାରୀ ବେଟା ଆଏ, ବନ୍‌ଜିଆ

ଉକତ୍ ଦିହ୍‌ସାରା ତାର୍ ଚହଲୁଛେ । ଖରାପ୍ ଦିନ୍ ଯେତେ ଜଲ୍‌ଦି ଆସିଥିଲା ସେତେ ତୁରତି ବି ପଳେଇଗଲା ଯେନ୍ ଦିନୁ ଲଛୁ ରାଜନୀତିଆକର୍ ସାଙ୍ଗ୍ ଧଏଲା ।

ବଉଲ୍‌ପୁରର୍ ଗଁଡିଆ ପିଲା ଯେନ୍‌ଦିନୁ ଏମେଲେ ହେଲା ସେ ଦିନୁ ଲଛୁର୍ ଧୁତି ଦଗ୍‌ଲି କା'ଣା ମୁଚ୍‌ଲା ଖୋଲ୍ ବି ଖଦଡ୍ । ଲଛୁ ଏଛନି ରାଜନୀତି ହଉ କି ନିୟେ ନିଶାପ୍ ହଉ ସବୁ ସଭାଥିଁ ଆଗ୍‌ପତି । ପାଶେଁ ମଧ୍ୟପ୍ରଦେଶ; ସେ ନିର୍ ଜିନିଷ ପତରର୍ ଦର୍‌ଦାମ୍ ଆର୍ ତାର୍ ଉପରେଁ ଲାଗୁଥିବା ଟେକ୍ସପାତି ଆମର୍ ରାଏଜର୍ ନୁ ପର୍ଛାଭିନ୍‌ଏ । କେନ୍‌ଟା କେତ୍‌ନି କେତେ ଶସ୍ତା ତ କେନ୍‌ଟା ବିଲ୍‌କୁଲ ମହିଙ୍ଗା । ମଝିଁ ଯୁଉଡ଼େ ଚେକ୍ ଗେଟ୍; ଡ଼େହେଁକି ପାର୍‌ଲେଁ ଲହଁକି ପାର୍‌ଲେଁ ମହାଲକ୍ଷୀର ଭଁଡ଼ାର ଘରଟା ଡ଼ଗୋ ଡ଼ଗୋ ଦିଶୁଛେ । ଲଛୁ ବେପାରୀ ପିଲା ଆଏ, ଏଖେଁ ଡ଼େଗାକେଁ ସେନ୍‌କେ କେନ୍ତା ପୁହୁଁଚି ହେବା ଜାନ୍‌ସି । ଏମେଲେ ଲେଖେଁ ପାଉଁଚ୍ ପାଏଲେଁ ମନ୍ତ୍ରୀମଂଡଲ୍ ବାଗିର୍ ଡ଼ବା ଉପର୍‌କେ ଚଢ଼୍‌ବାକେ ବେଲ୍ ନାଇଁ ଲାଗ୍‌ଏ । ଲଛୁ ସେ ଡ଼ବା ଉପରୁଁ ଚେକ୍‌ଗେଟ୍ ଛାର୍ କା'ଣା ଆଉର୍ କେନ୍‌ନିକେ ଭି ଡେଗିନେତା । ବଛରେ ନୁହେଁ ପୁରେ । ଲଛୁ ଏଛନି କରୋଡ଼୍‌ପତି । ମଝି ଘାଏ ଘର୍ ବନାଲା ତିନ୍ ମହଲା । ସେନୁ ଯାଛି କରେଇନେଲା ଯେ ନିହ୍ କୁଡ୍‌ଲା ବେଲ୍‌କେ ପୂର୍ବର ତୁପ୍‌ଲା ମାଲ୍ ବନ୍‌ଏ କରି ଥୁରେ ପାଏଲା । ସେ ଯାଛିଟା ଥିଲା ଖାଲି ଲୁକ୍‌କର ମନ୍‌କେ ଭୁର୍‌ଲାବାର୍ ଲାଗି; କାଲେ କିଏ ଭାବିନେବା ଯେ ଲଛୁ ଦୁଇନମ୍ବ୍ରି ଧନ୍ଦାଥିଁ ଧନ୍ କମେଇଛେ । ଲଛୁ ଫଟ୍‌ଫଟି ଘିନ୍‌ଲା, ଜିପ୍ ବି ଘିନ୍‌ଲା । ତାର୍ କବାର ଛାଡ଼ି ଅଫିସର୍ ପାତି ଭି ଯେ ଯେତେବେଲେଁ ମାଗ୍‌ଲେଁ ନାଇଁ ପଦ୍ ନାଇଁ । ତେଭେଁ ତ ଥାନା ବାବୁ ନୁ ମୂଲ କରି ବିଡ଼ୁ ତହସିଲ୍‌ଦାର ତକ୍ ସଭେ ଲଛୁ ବାବୁ ଲଛୁ ବାବୁ ହଉଥିସନ୍ । ଆର୍ ସେଥିର୍ ଲାଗି ଲଛୁକେ ବଉଲପୁରେଁ ଚାରହି ଖୁନ୍ ମାଫ୍ ।

ଏଭେଁ ଏଭେଁ ସପ୍ଲେ ମନ୍ତ୍ରୀ ଆଇଥିଲେ ଯେ ରାୟପୁର୍ ଯିବାର ମନ୍‌ଟେ କଲେ, ହେଲେଁ ସର୍କାରୀ ଗାଡ଼ି ନେସନ୍ କେନ୍ତାକରି ? ଗାଡ଼ିଟାକର୍ ଲାଗି ଲଛୁକେ କହା ହେଲା ତ ଲଛୁ ଜିପ୍ ଦେଲା, ହେଲେଁ ତାହାକୁ ପରେ କେନ୍ତା କେନ୍ତା ଲାଗିଗଲା । ସାଙ୍ଗେଁ ସାଙ୍ଗେଁ କେଛୋ କାରଟା ଘିନି ଆନ୍‌ଲା । ଯେନ୍ ମନ୍ତ୍ରୀ ଆସ୍‌ବେ ଆସୁନ୍ ଯେନ୍‌କେ ଯିବେ ଯାଉନ୍ ଆଉର୍ କା'ଣା କହେବାର୍ ଅଛେ ?

ଲଛୁର୍ ବେପାର୍ ବଏଲେଁ ବଉଲ୍‌ପୁର୍ ଆର୍ ତାର୍ ଆଖିପାଖି ସବୁ ଗାଁର୍ ଘିନା ବିକା ହିଁ ଆଏ । ଲଛୁ ଗରିବ୍ ଦୁଖୀକେ ଭି ସାହେଯ୍ କରୁଛେ ବଲି ଏମେଲେ କହୁଥିଲେ । ଭୁଦୋ ଦଶରା ମାସେଁ ଈ ଶୁଖା ଅଂଚଲ ଥିଁ କାହାରିର୍ ନ କିଛି ନାଇଁ ଥାଏ ତ, ସବୁ ଚଷାଭୂଷା ମହାଜନ୍ ନୁରସନ୍ । କା'ର୍‌ନ କା'ଣା ଥିବା ଯେ କିଏ ଦେବା ? ନିଜର୍ କଥା ନିଜ୍‌କେ ଧର୍‌ସଁଭାଲ୍ । ହେଲେଁ ଲଛୁ ନିକେ ଆଏଲେଁ ଫିରି ନାଇଁ ଯା'ନ କିହେ । ଧାନ୍

ବକ୍ତେ ଦିନ୍ ମୁଡ୍ ପାଏଲେଁ ଦେବ ବଏଲେଁ ରହୋ କଲା ପଚାଶ୍ ଟଁକା ହାତେଁ ହାତ୍ ଗନିନେବା । ସୁନା, ରୂପା, ଗଡୁ, ଗରିଆ ଏନ୍ତା କି ଗାଡ଼ି ଚକା ବି ଥୁଇନେବ ବଏଲେଁ ଅନ୍‌ମାନିଆଁ ଦାମ୍‌ର ଅଧାଟେ ଉଧାର ଦେବା । କନ୍ତର୍ ଏକା ଟଁକାକେଁ ମାସ୍‌କ ଦଶ ପଏସା । ବଛରକର ପରେଁ କନ୍ତର୍ ଫେର୍ ମୁଲ୍ ହେବା । "ହେଟାତ ବେଁକ୍‌ମାନ୍‌କେଁ ଭି ହଉଛେ, ଲଛୁକେ ହେଲେ ଦୋଷ୍ ଦେଇହେବା କାଏଁ।" ବଲି ଚେଆରମେନ୍ ସେ ଦିନେ ଲୁକ୍‌କୁଁ ବୁଝୋଉଥିଲେ । ଉଧାର୍ ବାଏର୍ ପଏସା ପତର୍ ଧନ୍ଦା ଥିଁ ଏମେଲେ କି ତାକର୍ ଆଖର୍ ପାଖର୍ ଲୁକ୍‌କୁଁ ଭି ଲଛୁ ସାହେଯ୍ କରସି; ତେଭେଁ ତ ଏମେଲେ ବାବୁର୍ ମାହାର୍ସାଦ୍ ମଲିଆ ସରାଫ୍ କେ ଭି ସେଦିନେ ଟପୋ ଟପୋ ଦଶ ହଜାର ଗନିନେଲା । କଥା କା'ଣା କି ମଲିଆ ସରାଫର୍ ସୁନା ରୂପା କାମ୍ ନାଇଁ ଚଲ୍‌ଲା । କା'ର ଠାନେ ହେଲେଁ ସୁନା ରୂପା ଅଛେ ଯେ ଚଲ୍‌ତା ? ଏମେଲେ ସାଙ୍ଗେଁ ଯାଇ ଆସି ଖର୍ଚାବର୍ଚାର୍ ଗୁଟେ ରଫତ୍ ହଇଯାଇଛେ ତ, କାଁ କର୍‌ବେ ସରାଫ୍ ? ଏମେଲେ କୁଁ କହି ବେଁକ୍ ବାଲାକୁଁ ଧରାଧରି କରି ଜିପ୍‌ଗାଡ଼ିଟେ ଆନି ଭଡ଼ା ଲଗାବାର୍ ମନ୍‌ଟେ କଲେ । ବେଁକ୍ କେ ପହେଲୁଁ ପଚିଶ୍ ହଜାର୍ ଜମା ଦେବାକେ ହେବା । ଏମେଲେ କାଁ କର୍‌ବେ, ତାକର୍ ନ ଥିଲେଁ ଭି ଦେବେ କାଏଁ ? ଏମେଲେ କହିନେଲେଁ ବେଁକ୍ ନ ସୁନା ଥୁଇକରି ପଏସା ଆନ୍‌ବେ । ସୁନା ପନ୍ଦ୍ରଭରି ସରାଫ୍ ଯୁଟାଲେ । ବେଁକ୍ ବାଲେ ସୁନାକେ ଟିକେ ଅପର୍‌ତେ କଲେ ତ ଏମେଲେ କହେଲେ "ମାସେଁ ଅଧିକେଁ ନେଇଯିବେ ଯେ ମୁଲ୍ କନ୍ତର୍ ଗନି କରି ।"

ମାସେ ଗଲା, ଦୁଇମାସ୍ ଗଲା, ସରାଫ୍‌ର ଦେଖା ନାଇଁ ନା ବେଁକ୍ ମେନେଜର୍ ଏମେଲେକୁଁ କହେଲେ "ଆଗ୍ୟାଁ ! ସେ'ଟା ସୁନା ନୁହେ ସେ; ସବୁ ସବୁ ନକ୍‌ଲି ଆଏ । କଥା ବାହାର୍‌ଲେଁ ସରାଫ୍ ତ ଜହଲ୍ ଯିବେ ଆପଣକର୍ ନାଆଁଥି ବି ଆଁଚ୍ ଆସ୍‌ବା ।"

ଏମେଲେ ଶୁନ୍‌ଲେ କି ଆର୍ କାଏଁ ଥାବେଁ ରହେସନ୍ ? ଦିନେଁ ଭୋକ୍ ନାଇଁ କି ରାତିଁ ନିଦ୍ ନାଇଁ ।  ସାଙ୍ଗେଁ ସାଙ୍ଗେଁ ମାହାର୍ସାଦନ୍ ହାଜର୍ । ମଲିଆ ସରାଫ୍ ଆର୍ କା'ଣା କହେବେ ? କଥାଟା ସତ୍ ଆଏ, ସୁନା ନକ୍‌ଲି ଆଏ । ଦାମ୍ ତ ଦଶ୍ କୁଡ଼େ ଟଁକା ଭିତ୍‌ରେ ହେବା; କା'ଣା କରିହେସି ? ସରାଫ୍ କଷ୍ଟେଁ ମଷ୍ଟେଁ ପନ୍ଦର ହଜାର୍ ଟଁକା ଯୁଟାଲେ; ବାକି ଦଶ୍ ହଜାର୍ କଥା କା'ଣା କର୍‌ବେ ? ନିଘା ପର୍‌ଲା ଲଛୁ ଉପରେଁ । ଏମେଲେର୍ ଥୁକ୍‌କେ ଭି ତ ଲଛୁ ହାତ ପାତ୍‌ସି, ଏଛନି ସେ ହିଁ ଆଶ୍ରା ।

ଲଛୁ ନାଇଁ କରି ପାର୍‌ତା କାଏଁ ? ଏମେଲେ କହେଲେ ନ ଯେତେ ବେଳେଁ । ଲଛୁ ନକ୍‌ଲି ସୁନା ରଖି ବାକି ଟଁକା ଦେଇ ସରାଫ୍‌କେ ରକ୍ଷା କର୍‌ଲା । ଏମେଲେ କି ସରାଫ୍ ସିନା ବେଡା ଆଁନ୍ ଯେ ନକ୍‌ଲି ସୁନାକେ ସଁଭାଳି ନାଇଁ ପାର୍‌ଲେ, ହେଲେଁ ଲଛୁ ଭାବ୍‌ଲା

ଦଶ୍ ହଜାର ଟଁକା ନେ ସେ ପନ୍ଦର ଭରି ଅଶଲି ସୁନା ପାଏଲା । ଟଁକା ଗନ୍‌ବାର୍ ଆଗୁଁ ଏକା ଗୁଟେ ସରତ୍ କରେଇ ନେଇଥିଲା ଯେ ସେ ସୁନାକେ ଲଛୁ ଯେତେବେଲେଁ ଯେନ୍ ଉଜ୍‌ନର ମାଲି, ମୁଦି, ଝଲ୍‌କା, ବେଁଟ୍‌ଲା କି କରନ୍ ଫୁଲ୍ ବଲ୍‌ବା ସରାଫ୍ ସେଟା କରିନେବେ ।

ଏମେଲେ ଉଶାସ୍ ହେଲେ । ଲଛୁ ତାହାକୁଁ ବଡ୍‌ଡେଟେ ବଦ୍‌ନାମି ନୁ ବଅଁଚେଇ ନେଲା । ଏଛନି ଲଛୁ ଆଗର୍ ଠାନୁ ବି ବଡ୍‌ଡେଟେ ଲୋକ୍ ହଇଗଲା ଏମେଲେକର୍ ଆଖିଁ । ପୁଲିସ୍ ସାହେବ୍, ଜିଲ୍ଲା ସାହେବ୍ ଯେ ଆଏଲେଁ ଲଛୁକେ ଚିହ୍ନାର୍ କରେଇ କହେଲେ "ଲଛୁ ବନ୍‌ଏ ବକ୍‌ତର୍ ଲୋକ୍ ଆଏ ।" ଇନୁ ଇ ଆଡ୍‌କେ ଲଛୁ ସୁନାର୍ ଦାମ୍‌କେ ଦାମ୍ ମେଟାଲ୍ ବି ଟଁକା ଦେଇ ଗହ୍‌ନା ରଖିଲାନ ।

ପରାଗ୍ ସା, ଘର୍ ପଁରାପଦର୍ । ଇ ଗାଁଟା ବଉଲ୍‌ପୁରନୁ ପାହେ ବାଟ୍ ବଏଲେଁ ଚଲ୍‌ବା । ପଁରାପଦର୍‌କେ ଭି ବଉଲ୍‌ପୁରର୍ ସବୁ ଧାସ୍ ପଡୁଛେ । ପଁରାପଦର୍ ବି ଭାବୁଛେ ସେ କମ୍ ନୁହେଁ ।

ପରାଗ ସା କିଛିଟା ପାଠ୍ ପଢ଼ିଥିଲା । ସଭା ସମିତିକେ ଭି ସୋର୍ ପାଏଲେଁ ଯାଏସି । ତେଲି ପିଲା ଆଏ, ଘନାଟେ ଥିଲା, ମାଲି ମୁଦି କରି ଦୁଇ ଚାଏର୍ ଭରି ସୁନା ବି ଥିଲା । ବଉଲ୍‌ପୁରେଁ ତ କଲ୍ ଘନା ତିନ୍ ତିନ୍‌ଟା ହେଲା ନ, ତେଲି ଘନା ମାନ୍‌କର ନିଶାସ୍ ବନ୍ଦ୍ । ପରାଗ ସା ବି ଘନାର୍ ଆଶ୍ରା ଛାଡ଼ି ଜମିବାଡ଼ି ଦୁଇ ଟେପ୍‌ରି ଯେନ୍‌ଟା ଥିଲା କମାକୁଠା କରୁଛେ । ହେଲେଁ କାଁ କର୍‌ବା ? ଲାଗ୍ ଲାଗ୍ ମରଡ଼ି । ଘନା, ଗନାରି ବଲଦ୍ ସବୁ ଯାଇ ଖାଲି ରହିଛେ ସୁନାମାଲି ଦୁଇଟା ।

ତାର୍ ମାଁ ବହ୍ ଢୁକାଲା ବେଲ୍‌କେ ଯେନ୍ ପତ୍‌ରିମାଲିଟା ହାତେଁ ଦେଇଥିଲା, ପରାଗ୍‌ର କନିଆଁ ଘାଏ ବି ବେଁକୁଁ ନାଇଁ ଉତ୍‌ରାଏ । ପରାଗ ସେ ମାଲିଟା ଲଛୁର୍ ନ ଥୁଇ ଟଁକା ହଜାରେ ନେଇଥିଲା । ଧାନ୍ ମଡ଼ାଲା କି ଖଳାର୍ ମୁହେଁ ଧାନ୍ ବିକି ଲଛୁର୍ ନ ହଜାର୍ । ଲଛୁ ଗନିନେଲୋ ମୁଲ୍ କନ୍ତର୍ ହିସାବ୍ କରି । ମାଲିଟା ବାହାର୍ କରି ପରାଗକେ ଦେଲା । ପରାଗ ମାଲିକେ ଉଲ୍‌ଟେଇ ପୁଲ୍‌ଟେଇ ଦେଖିଲା, ତାହାକେ ଅପର୍‌ତେ ଲାଗ୍‌ଲା । କି ହେଲା "ମହାଜନ୍ ଇଟା ମୋର୍ ମାଲିକ ନୁହୁ ଆଏ ।"

ଲଛୁ କହେଲା "ବନ୍‌ଏ କରି ଚିହ୍ନୁ, ହେଟା ତୋର୍ ମାଲି ଆଏ, ତାର୍ ନାଁ ଗାଁ ତାରିଖ୍ ପକେଇ ଲେଖି ରଖିଥିଲିଁ ।"

ପରାଗ୍ ବଏଲା "କେଭେଁ ନୁହେଁ" । ଗୁଡା ଉଚାର୍ ହଉନ୍ ହନ୍ କଥା ବଢ଼୍‌ଲା । ପରାଗ୍ ବି ଛାଡ଼୍‌ବାର୍ ଗୁସିଆଁ ନୁହେ । କହେଲା "ଇଟା ତ ସୁନା ମେଟାଲ୍ ଦିଶ୍‌ବାର୍ ନାଇଁ, ମୋର୍‌ଟା ତ ହଲ୍‌ଦି ଗଏଁଠ୍ ବାଗିର୍ ଜୁନ୍‌ହାଁ ସୁନା ଆଏ ।"

ଲଛୁ ତାର୍ ଶେଷ କଥା କହେଲା "ଇଟା ତୋର୍ ସୁନା ଆଏ, ନେବୁ ତ ନେ ନେହେଲେଁ ଯା। ଯା'ଣା କରବାର୍ ଅଛେ କରିପକା। କହ ଜାନ୍‌ବାରି ନୈ ଦେଖା।"

"ହଉ, କା'ଣା କରି ପାର୍‌ମି ମୁଇଁ ? ଇ ଦେଶେଁ ଇ ଯୁଗେଁ ଗରିବ୍ କେ'ନ କା'ଣା କରି ପାର୍‌ସି ? ଥାନା କେ ଯାଇ ଦେଖ୍‌ସିଁ ।" କହି କରି ପରାଗ ବାହାରି ବସୁଛେ ଦୁକାନ୍ ଭିତରୁଁ କି ଲଛୁର୍ ରିଶ୍‌ମି ଶିରାଗରଡ୍ ହଇଁ ପର୍‌ଲା।

"କା'ଣା କହେସୁ ବେ ତେଲି ! ଥାନାକେ ଯିବୁ? କହେବାର୍ ନୁହେ ସରେ, ଲୁହାକେଜି ଯେନ୍ ହାତେଁ ଥିଲା ଫିକିନେଲା ପରାଗ ଉପର୍‌କେ। ପରାଗର୍ ନାକ୍ ସୁରିଆ ପାଏଲା କେଜି ଲୁହା। ଲୁହା ତଲେଁ ନୁହେ ପଡ଼େ ପରାଗ୍ ଜୁଗ୍‌ରେଇ ହଇ ପର୍‌ଲା; ଦୁକାନର୍ ପଏସା ବାକସ୍ ଉପରେଁ ପରାଗ ମୁଡ଼୍‌ଟା କଚ୍‌ରେଇ ହେଲା; ପରାଗର୍ ମୁଡ଼ର୍ ରକତ୍ ଥପ୍ ଥପ୍ ପଏସା ଛିଙ୍ଗ୍‌ଲା କନ୍‌ହାଁ ଥି ବାକ୍‌ସେ ପଡୁଥାଏ। ସାଙ୍ଗେଁ ସାଙ୍ଗେଁ ଲଛୁ ଫୋନ୍ ଥିଁ ଥାନା ବାବୁକେ କହେଲା ଯେ, "ପରାଗ୍ ସା ତାର୍ ଦୁକାନୁ କାଁ କା'ଣା ଚୁରେଇ ନଉଥିଲା, ପକଡ଼ା ପଡ୍‌ଲା କି ଦଉଡି ଯିମି ବଏଲା ବେଲ୍‌କେ ଦୁଆରବନ୍ଧ୍ ବାଜିକରି ପଡ଼ିଛେ। ଆପଣ୍ ତୁରତି ଆସୁନ୍; ମରିଛେ କି ଜୀଇଁଛେ କେ ଜାନ୍‌ଏ ?"



# ନୁନୀ

ବୁଡ଼ି ଆଏଲା ବେଲର୍ ଲାଲିଆ ଖରା, ଭଁଡ଼ାର୍ କନର୍ କଲିଆ ମେଘ୍ ସାଙ୍ଗେଁ ଲେଠରେଇ ଘେଁସ୍‌ରେଇ ହଉଛେ । ନୁନୀର ପିନ୍ଧ୍‌ଲା କପ୍‌ଟାର୍ ଲାଲିଆ ପନତ୍ ଉଡୁଛେ ସେମାନଙ୍କର ସାଙ୍ଗେଁ ମକର ବସ୍‌ବା ବାଗିର୍ । ଇଟାକେ କଥାବାର୍ତା ହେଲା ମେତାଲ୍ ଚିଁ ଚାଁ କରି ଉଡ଼ି ଯାଉଛନ୍ ଚଢ଼େମାନେ, ନିଜର୍ ଆଶ୍ରା ଠାନ୍ ବା'ରି ବା'ରି । ବରଷ୍ନେ ବରଷ୍ନେ ହଉଛେ ମୁଡ଼ି ଅଷଡ଼ିଆ ମେଘ; ଉଦ୍ଧର୍ମାତ୍ ଦଉଡୁଛେ । ସେନ୍ତା ଦଉଡ଼୍‌ଲା ଲେଖେଁ ଚାଲୁଛେ ନୁନୀ ଘରମୁହାଁ । ଖେତ୍‌କେ ଯାଇଥିଲା ତାର୍ ବାବୁର୍ ଲାଗି ଚାହା ଟିକେ ନେଇ, ତଡାପନା ହେଇ ଫିରୁଛେ ଡ଼ର୍‌ଡ଼ରାନି ମେଘ୍ ଦେଖି ।

ନୁନୀ, ଜିତ ସାହୁର୍ ଛେଦକି ଝି । "ଇଟା ପୁଓ ହେବା ବଲିଁ ଆଶା ଥିଲା । ନୈ ହେଲେଁ ବି କେନ୍ ପକାଉଡ଼ାଟା ଆଏ ଯେ । " ବଲ୍‌ସି ତାର୍ ମାଁ ଭାମା । ଯେ ହେଲେଁ ବି କହେସନ୍ କେଡ଼େ ସୁନ୍ଦର୍ ଟୁକେଲ୍‌ଟେ । ଡ଼ଉଲ୍ ଡ଼ାଉଲ୍ ଗୋଲ୍ ମୁହଁ ଶଁଖ୍-ଧୋବ୍ ବରନ୍; ମୁଡ଼େଁ ବୁଝେ ବାଲ୍, ସେଟା ଫେର୍ କୁଚ୍‌କୁଚ୍ । ରାଏଜ୍‌କେ ସୁନ୍ଦର୍ ହେଲା ଦିନୁ ତ ଯେ ଦେଖ୍‌ବା ଆଏଁଖି ଅଟକି ଯାଉଛେ । ଯୁଆନ୍ ବଏସ୍‌ଟା ବସ୍‌ବା ବଲି ନୁନୀର୍ ଦେହ୍-ଆସନ୍‌ଟା କେଡ଼େ ନୁକୋ କରି ସଜେଇଛେ । ନୁନୀର୍ ପିନ୍ଧଲା କପ୍‌ଟାର୍ ପନ୍ତ କାନି ସେତାକେ ଢ଼ାପ୍‌ବାରୁଥିଁ ବାଏ । ନୁନୀର ଚାଲିନୁ ଆଉର୍ ଟିକେ ହର୍‌ବର୍ ହଇ ଚାଲି ଆଏଲା ମେଘ୍ । ବରଷିଲା ଯେ ବରଷୁଛେ । ନୁନୀ ବାଟର୍ ଝାପ୍‌ରୁ ଆମ୍ ଗଛ୍ ତଲ୍‌କେ ଆସି ବର୍‌ଷାନୁ ବଅଁଚିବାର୍ ଚେରେଷ୍ଟା କରୁଥାଏ । ନୁନୀ ଚମ୍‌କି ପଡ଼୍‌ଲା କେ ଆସିଗଲା ବଲି । ରମେଶ୍ କେ ଚିହ୍ନିପାରି ଦମ୍ ଧଏଲା, ହାୟ କଲା । ବିନାଶବ୍‌ଦେଁ ଆଏଁଖି ଚାରହିଟା କେତେ କଥାବାର୍ତା ହଇଗଲେ ଅଏନ୍ ଘଡ଼େ । ତେତ୍‌କେଁ ରମେଶ ମୁହଁ ଫିଟାଲା, ନୁନୀକେ ଆନ୍‌ଲା ଛତା ଉଢ଼େଇ କରି ।

"ଭିଜିଯିବୁ ବଲି ପଛାଫଛ୍ ଆଉଛେଁ, ତଥାପି ଭିଜିଗଲୁ ତ ।"

ନୁନୀ ତାର୍ ଦର୍‌ଭିଜା ପନତ୍‌କେ ନୁକୋ କରି ସଁଖିଲି କହେଲା "ମୋର୍ ଲାଗି ଏତେ ଶଁସେ ? ଭିଜ୍‌ଲେଁ ହେଲେଁ କାଏଁ ଲୋକ୍ ଘଡ଼୍‌କେଁ ଗଜା ହଇ ଯାଏସନ୍ ।

"ତୋର୍ ଲାଗି କେତେ ଶଁସେ ଯେ ହେଟା କେନ୍ ତାମ୍ବି କି କେଜି-ଥି ନାପି ଯୁଖି କହିହେବା । ହନୁମାନ୍ ବାଗିର୍ ଶକ୍ତି ଥିଲେଁ ଛାତିଚିରି ଦେଖେଇ ହେତା ଭାଏଲ୍ । ତୋର୍ ମେତାଲ୍ ପର୍ଛା ନିଶଁସେ ହଇ ନାଇଁ ହଏ ।" କହେଲା ରମେଶ ।

ଘଡ଼େ ଗୁମ୍‌ମାରି, କହେସିଁ କି ନି କହେସିଁ ହଇ କହେଲା ନୂନୀ - "ତୋର୍ ଶିଁସେ ମୋର୍ ଶିଁସେ ଭିତ୍‌ରେଁ ପରାଭେଦ୍ ଅଛେ ।"

ରମେଶ ପଚରେଇ ପକାଲା "କେନ୍ତା ?"

ନୂନୀ କହେଲା "ଯଦିର୍ଯି ତୋର୍ ଲାଗି ଦରକାର୍ ପଡ଼୍‌ବା, ଯେନ୍ ଘଡ଼ି ବଲ୍‌ବୁ ସେ ଘଡ଼ି ମୁଁ ଇ ଜୀବନ୍ କେ ମୁରଛି ନେମି । ସତ୍ ନାଇଁ ଲାଗ୍‌ବାର୍ ବଏଲେଁ କେଭେଁ ବିଡ଼ି ଦେଖ୍‌ବୁ ।"

ରମେଶ୍ ଟିକେ ହିଁସିକରି କହେଲା "ମହାପ୍ରୁ ବିଡ଼୍‌ବାର୍‌କେ ନାଇଁ କର୍ବୁ, ଆର୍ ତୁଇଁ ଜୀବନ୍ ନାଇଁ ଦେ; ତୁଇଁ ଜୀଇଁଥିଲେ ମତେ ବନିହାଁ କାମ୍ ଦେବା ।" ରମେଶ୍‌ର କଥା ବନ୍ଦ୍ ହେଲା ।

ଘଡ଼େ ତୁନ ପଡ଼ି ଠିଆ ହେବାର୍ ଦେଖି ନୂନୀ ପଚ୍‌ରାଲା "କା'ଣା ଭାବୁଛୁ ।"

ରମେଶ୍ ଛତାଗୁଡ଼ିର୍ ପଡୁଥିବାର୍ ପାଏନ୍‌କେ କହନି ଉପରୁଁ ପୁଛି ପକାଇ କହେଲା "ଭାବୁଛେଁ ଆମର୍ ଛୁଆଦିନର୍ କଥା । ସେ ଦିନ୍‌କେ ଆଉର୍ ଫିରି ନାଇଁ ହଏନ୍ ନାଇଁ ? ସେ ଦିନ୍‌ମାନେ କେତେ ଭଲ୍ କେତେ ସୁଖର୍ ଦିନ୍ ଥିଲା । ସେ ଦିନ୍ ମାନ୍‌କେଁ ଆମେଁ କେଡ଼େ ପାଖେଁ ଥିଲାଁ । ଆଜିର୍ ଆମେ ପାଖେଁ ଥାଇ ବି କେତେ ଦୁରିଆ ଥିବାର୍ ଜନା ପଡୁଛୁଁ । ସେତେବେଲେଁ କେତେ ଖେଲ୍, କେତେ ଲାଡ୍ କେତେ ଗେଲ୍ । ତୁଇଁ ଆସି କରି ମୋର୍ ଦିହେଁ ଜୁଗ୍‌ରେଇ ହଉଥିଲୁ; ମୁଇଁ ତତେ କୁତ୍‌କୁତେଇ କୁତ୍‌କୁତେଇ କେତେ ହିଁସୋଁଉଥିଲିଁ ଅଥା ହେବାର୍ ତକ୍ । ସେ ଦିନର୍ ସେ ବର୍‌କନିଆ ଖେଲ୍, ଲୁକ୍‌ଲୁକାନି ଖେଲର୍ ଅଁଧରିଆ ଟାଏଟ୍ କନ୍-ମାନ୍‌କେଁ ଧରା ଛପ୍‌କା କେତେ ଭଲ୍ ଲାଗୁଥିଲା । କାହାରିର୍ ଅଏବ୍ ନାଇଁ କାହାରିର୍ ଅକ୍‌ଦିବାର୍ ନାଇଁ । କାହାକେ ଡ଼ର୍ ନାଇଁ । ଆଜିର୍ ଏତେ ନିଶୂନ୍ ଜାଗାଥିଁ ଗୁଟେ ଛତା ତଲେଁ ଦୁହେ ଆଇଜରି ବି କାହାରିର୍ ଦିହେଁ କିହେ ଠଟେଇ ହେବାକେ କେତେ ଡ଼ର୍, କେତେ ଅଏବ୍ । ତମର୍ ବାରିର୍ ବୁରୋଗଛ ଆମ୍ବର୍ ବାଏରକେ ଡ଼ାବି ନେଇଥାଏ । ମୁଇଁ ବୁରୋ ଝାର୍‌ଲେଁ ତୁଇଁ ବେଟୁଥା'ଉ । ଦର୍‌ଗେଧିରା ବୁରୋ ଚାଖିକରି ସୁଆଦ୍ ଲାଗୁଛେ ବଲି ମୋର୍ ଆଡ଼୍‌କେ ଦେଇନଉ, ଆର୍ ମୁଇଁ ଟପ୍ ଟପ୍ ମୁହେଁ ପକେଇ ନଉଥାଏଁ । ତୋର୍ ଅଏଁଠା ବୁରୋ ଭି ମତେ କେତେ ସୁଆଦ୍ ଲାଗେ । ଦୁହିକର୍ ଭିତ୍‌ରେଁ ସୁର୍‌ଷୋ ଏତ୍‌କି ଫାଁକ୍ ନାଇଁ, ରଁଚେ ବି ତଫାତ୍ ନାଇଁ, ଫରକ୍ ନାଇଁ ସତେଁ ଦୁହେଁ ଗୁଟେ ଆଉ । ଆର୍ ଆଏଜ୍ ? ତୋର୍ ଏତେ ସୁନ୍ଦର୍ ଚେହେରା, ଅସମାନ୍ ଦେହର୍ ଲୋଭ୍ ମନ୍‌କେ ଚହଲେଇ ନେଲେଁ ଭି ମୁଁଇଁ ଅକରତବ୍, ମୋର୍ ଦେହ୍‌କେ କାଠ୍ କରି ନଉଛେଁ; ଚହଲା ମନ୍‌କେ ଟାନ୍ କରି ନଉଛେଁ ପଥର୍ ଲେଖେଁ ।"

ହସି ପକାଲା ନୂନୀ “ଇ ଦିହେଁ କା’ଣା ଥିସି ? ଇଟା ତ ଦୁଇଦିନିଆଁ ଆଏ । ଜୀବନ୍ ଥିବାର୍ ତକ୍ ବି ନୁହେ, ବଏସ୍ ଥିବାର ତକ୍ ଇତାର୍ ମାଏନ । ସେଟା ଗଲେଁ କିଏ ପଚାରେ ? କୁଆ, କୁକୁର୍, ମାଏଟ୍, କୁଏର୍ ଭୋଗ୍ ।”

ନୂନୀର୍ କଥା ନାଇଁ ସରନୁ ରମେଶ ଖିଦ୍‌ଖିଦେଇ କରି ହସି ପକଇ କହେଲା “ଏସୁରର୍ ତମର୍ ପରାର୍ ଭାଗବତ୍ ବସ୍‌ବାର୍‌ଟା ତତେ ହିଁ ଖାଲି କାମ୍ ଦେଲା ମେତାଲ୍ ଲାଗୁଛେ । ଭାଗବତର୍ ଭାବ୍ ଅରଥ୍ ତୋ’ରି ଦିହେଁ ଗୁଁ ଥି ହେଲା କାଏଁ ? ବୁଢ଼ାବୁଢ଼ୀ ବାବାଜି ବଏଷ୍ଟମ୍ ବାଗିର କଥା କହୁଛୁ ।”

ନୂନୀ ସାଙ୍ଗେଁ ସାଙ୍ଗେଁ କହି ପକାଲା “ସତ୍‌ଟା ସତ୍ ଆଏ; ବାବାଜୀ ବଏଷ୍ଟମ୍ କହୁନ୍ କି ମୁଇଁ କହେଁ । ତୁଇଁ ପରେ ଡ଼ାକ୍ତର ହେଲୁନ । ଛ ଛ ବରଷତ୍ ଡ଼ାକ୍ତରି ପଢ଼୍‌ଲୁ । କେତେ ଦେହ୍ କାଟିଥିବୁ କେତେ ଦିହେଁ କେତେ ଘା’ଦା ଦେଖିଥିବୁ; ଦିହ୍‌ଟା କା’ଣା ଆଏ ତତେ କେ ବୁଝାବା ? ଆର୍ ଦିହର୍ ଲୁଭେଁ ସୁଖ୍ ପାଏବାର୍, ଭଲ୍ ପାଏବାର୍‌ଟା ସଉଦାଗିରି ଆଏ, ଦୁକାନ୍‌ଦାରି ଆଏ । ଦିହ୍ ସୁନ୍ଦର୍ ଥିବାର ତକ୍ ଭାବ୍ ବି ସୁନ୍ଦର । ଦିହୁଁ ବଏସ୍ ଉତିରଲେଁ ତୁଇଁ ତୋର୍ ଭାବେଁ ମୁଇଁ ମୋର୍ ଭାବେଁ, ନାଇଁ ? ଗଛୁଁ ପତର୍ ଝରଲେଁ ଚରେ ଚିର୍‌ଗୁନ୍ ବି ନାଇଁ ବସନ୍ । ଅସ୍‌କଟାସନ୍ । ଆର୍ ମୁହୁଁ ବଏସ୍ ଗଲେଁ, ଦିହୁଁ ଚେହେରା ଝୁରମୁରାଲେଁ କେ ପଚାରେ କାହାକେ ?”

ନୂନୀକେ ଆଉର୍ କହି ନେଇ ଦେଲା ରମେଶ୍ । “ହେଲା ହେଲା ନୂନୀ! ହେତ୍‌କି କହ, ମତେ ହେନ୍ତା ଦିହ୍ ବେପାରୀ ବଲି ନାଇଁ ଭାବ୍ । ମୁଇଁ ତୋର୍ ରମେଶ ଆଏ, ଯାହାକେ ଦିନ୍‌ଏ ଆଉ କିଏ ଆମର୍ ରମେଶ ବଏଲେଁ ତୁଇଁ ଗାଏଲ୍ ହଉଥିଲୁ । ମୁଇଁ ସେ ରମେଶ୍ ଆଏଁ; ଗୁଟାଗୁଟି ତୋର୍ ।” ରମେଶ୍ ଫେର୍ ଟିକେ ଭାବିତ୍ ବାଗିର୍ ଠିଆ ହଇ କହେଲା “ସତେଁ କେତେ ବୁଧି ତୋର୍ ନୂନୀ! କେତେ ଭାବି ବିଚାରି କହୁଛୁ କଥା । ମୁଇଁ ଜିତ କକାକେ ଯାହା କହେଲିଁ ନାଇଁ ଶୁନ୍‌ଲା । ତୁଇଁ ପଢ଼ିଥିଲେଁ କେତେ ଭଲ ହଇଥିତା । ସାତ୍ କ୍ଲାସେଁ ବୃତ୍ତି ବି ପାଇଥିଲୁ । ହେଲେଁ ଜିତକକା କହେଲା-ଟୁକେଲ୍ ଜାଏତ, ପାଠ୍ ପଢ଼ି କାଁ କରବା ? ଫେର୍ ଦୁସ୍‌ରା ଗାଁର ଇସ୍‌କୁଲ, କୁଶେ ବାଟ୍ ଯିବାର୍ ଆଏ ବାର; ଥାଏ ତ, ଡ଼ର୍ ଲଗ୍‌ସି ନିନ୍ଦା ବଦ୍‌ନାମ୍ କେ । ମୋର୍ ବଡ଼େ ଆଶା ଥିଲା, ତୁଇଁ ପଢ଼ିଥିତୁ...”

ତାହାକେ ଆର୍ କହି ନେଇ ଦେଇ ନୂନୀ କହେଲା “ନୁଆଁ ନୁଆଁ ରକମ୍‌ର୍ ପିଁ ଧନ୍ ଉଢ଼ନ୍ ଶିଖିଥିତିଁ, ଦିହର୍ କେନ୍ ଭାଗ୍ ଖୁଲା ରଖି କେନ୍ ଭାଗ୍ କେତେ ଢ଼ପା ଯାଏସି ଶିଖିଥିତିଁ, ପିଲାମାନଙ୍କର୍ ନିକେ ଗୁପତ୍ ଚିଠି କେନ୍ତା ଲେଖା ଯାଏସି ଶିଖିଥିଁ ତି । ଆର୍

ଶେଷେଁ କେନ୍‌ଠାନେ ଗ୍ରାମସେବିକା କି ଧାଇ ନେହେତ ମାଷ୍ଟ୍ରେନ୍ ହଇଁ କା'ର୍ ସାଇକଲ ପଛେଁ ତ କା'ର୍ ଫଟ୍‌ଫଟି ପଛେଁ ବସି ଇନୁ ସେନୁ ହଉଥିତି ନାଇଁ ? ହେଟା ଗୁଟେ ଜୀବନ୍ ଆଏ ?" ରମେଶର୍ ମୁହଁକେ ଦେଖିଲା କା'ଣା କହେବା ବଲି ।

ରମେଶ୍ ତାର୍ ନିଜର କଥା ଉପ୍‌ରେ ଜୋର୍ ଦେଇ କହେଲା "ନାଇଁ ନାଇଁ, ତୁଇଁ କା'ଣା ପ୍ରଫେସର, ଡ଼ାକ୍ତର, ଇଞ୍ଜିନିୟର, ଅଫିସର୍ ହଇ ନାଇଁ ପାରିଥିତୁ ? ସେଟା ବି ତ ସମ୍ଭବ୍ ଆଏ । ହେଲେଁ..."ଫେର୍ କଥାର୍ ମୁଲ୍‌କେ ବରକସ୍ କରି କହେଲା ରମେଶ "ତୁଇଁ କା'ଣା ହଇଥିତୁ କି କା'ଣା ଥାଉ କେ ଜାନ୍‌ଏ ? ଯା'ଣା ଭି ହ ମୋର୍ ହିଁ ଥାଉ, ନିଜର୍ ଲୋକ୍ କେ ସଭେ ଚାହେଁସନ୍ ଯେତେ ଭଲ୍ ହଇପାରେ ହଉ ।"

"ନିଜର୍ ଲୋକ୍" ହୁରଗୁନି ହେଲା ବାଗିର୍ କହେଲା ନୂନୀ "ମୁଇଁ ତୋର ହଇ ପାର୍‌ମି ରମେଶ ? ଇ ଜନ୍‌ମେ ସେ'ଟା ହଇପାର୍‌ବା ?

"କାଁ କରି ନୈ ହେବା ? ବନ୍‌ଏ ଜୋର୍ ଦେଇକରି ପର୍ଛା ଭିତ୍‌ରୁଁ କହେଲା ଲେଖେଁ କହେଲା ରମେଶ୍ "ମୁଇଁ ତତେ ବିହା ହେମି, ମୁଇଁ ତତେ ଛାଡ଼ି ନାଇଁ ଜୀଇଁପାରେ, ନୈ ରହିପାରେଁ । ଆମେ ଦୁହେ ମିଶି ଏକ ହେମା, ଦୁଇଟା ଦିହେଁ ଗୁଟେ ନିଶାସ୍ ବୁହିବା, ଗୁଟେ ଜୀବନ ଗୁଟେ ନାଡ଼ୀ ଖେଲ୍‌ବା । ଦୁଇକେନିଆଁ ଗଛ୍ ମେତାଲ୍ ଗୁଟେ ଚେରେଁ ଜୀଇଁମା, ଗୁଟେ ଡ଼ାଲେଁ ପତ୍‌ରେଁ ନିଶାସ୍ ନେମା । ମତେ ଜର୍ ଆନ୍‌ଲେ ତୋର୍ ମୁଡ଼୍ ବଥାବା, ତୁଇଁ ପିନ୍ଧ୍‌ଲେଁ ଉଢ଼୍‌ଲେଁ ମୁଇଁ ସୁନ୍ଦର ଦିଶ୍‌ମି ।"

ଗୁଟେ କେରେଁ ହଁସି ପକେଇ ରମେଶ୍‌ର କଥାକେ ଟିକେ ଉଶାସ୍ କଲା ଲେଖେଁ କହେଲା "ନୈ ହେଲା କଥା ଭାବ୍‌ବାର୍‌କେ କେତେ ଭଲ୍ ଲାଗ୍‌ସି ନାଇଁ ? ତୁଇଁ ଗୁଟେ କାହିଁ ଡ଼ାକ୍ତର ଆର୍ ମୁଇଁ ଗୁଟେ ସାତ୍ କିଲାସ୍ ପଢ଼ା ଗଅଁଲିର୍ ଟୁକେଲ । ତୁଇଁ ବାହ୍ମନ୍ ପିଲା, ମୁଇଁ କୁଲ୍‌ତା ଘରର୍ ଝି ।ଏକ୍ ହଇ ପାର୍‌ମା ? ଲୋକ୍ କହେବେ କେତେ କଥା । କେ କହେବା ଉ ଉଧ୍‌ଲିଆ ତ କେ କହେବା ପଏସାମୁଡ଼ି । ଜାଏତ୍ ଧର୍‌ବେ । ଆମର ମା-ବାପ୍ ଆମର୍ ଲାଗି ଏକ୍‌ଘରିଆ ହଇ ଆମ୍‌କୁଁ ଜନମ୍ ଜାତ୍ କରି ପୁଷିପାଲି ହେ ପୁରସ୍କାର୍ ପାଏବେ । ଆମେ ସେମାନ୍‌କୁଁ ସୁଖ୍ ନୈ ଦେଇପାର୍‌ଲାଁ ତ ନାଇଁ; ଦୁଖ୍ ଦେବାର୍‌ଟା ବନ୍‌ଏ ହେବା ? ଆକାଶର୍ ଜନ୍ ଆର୍ ବନ୍ଧର୍ କଏଁଫୁଲ୍ ଦୁହେ ଦୁହିଁକୁ ସୁଖ୍ ପାଏସନ୍ ହେଲେ କଏଁଫୁଲ୍ ଆକାଶକେ ଯାଇ ନାଇଁପାରେ କି ଜନ୍ ବନ୍ଧ୍‌କେ ଉତ୍‌ରି ଆସି ନାଇଁ ପାରେ । ହେଁ କଥା ଛାଡ଼୍; ମଏଧନିଆ ସପନ୍ ମେତାଲ୍ ପାଶ୍‌ରି ପକା । ତୁମେର୍ ଗଛେଁ ଫୁଲ୍ ଆଉର୍ ତୁଲ୍‌ସୀ ଗଛେଁ ମଦାଇଁ ମେତାଲ୍ ତୋର୍ ଭାବ୍‌ଲା କଥା ବି ହେବାର୍ ନୁହେ । ଏ ମା ! ବେଳ୍ ବୁଡ଼ି ଆନ୍ଧାର ହେଲାନ ।" ଆକାଶୁଁ ପଡ଼୍‌ଲା ବାଗିର୍ କହେଲା ନୂନୀ

"ତତେ ମତେ ନେଇ ଗାଁଥି କେତେ ଫୁସୁର୍ ଫାସର୍ ଟୁପ୍ ଟାପ୍ । ମୋର୍ ବାବୁ ବି ଏଛନି ଈଁ ବାଟେଁ ଆସୁଥିବା । ମୁଇଁ ଯାଉଛେଁ ।" ଲମି ବସ୍‌ଲା ନୁନୀ ।

ନିରାଶ୍‌ନେ ପାଗିହେଲା ବାଗିର୍ କଥା ଥିଁ କହେଲା ରମେଶ "ମୁଇଁ ବି କାଏଲ୍ ଯାଉଛେଁ ନୁନୀ । ଦିଲ୍ଲୀ । ବୁର୍ଲା କଲେଜ୍‌ର ପାଠ୍ ସର୍‌ଲା; ସରକାରୀ ବୃତି ପାଇ ଦିଲ୍ଲୀ ପଢ଼ିଯିମି ଦୁଇ ବରଷ; ତତେ କହେମି ବଲି ନୁରୁଥିଲିଁ । ଦୁଇ ବରଷ୍ ଟାକ୍‌ବୁ । ଦୁଇଟା ବଛର୍ ଏ'ଦେ ଉଛ୍‌ନାର୍ ପାଏନ୍ ବାଗିର୍ ବୁହିଯିବା ।"

ନୁନୀ ତତାପନା ହଇ ଆମ୍ ତଲୁଁ ବାହାରି ଯାଉନ୍ ଯାଉନ୍ କହେଲା "ଦେଖିବୁ, ଦିଲ୍ଲୀ ସହର୍ ବନିହାଁ ଅଟ୍‌ପଟିଆ ଜାଗା ବଲସନ; ଦେଖିଚାହିଁ ଚଲ୍‌ବୁ । ଦିହ୍ ପା'ର୍ ଖିଆଲ୍ ରଖିବୁ ।"

ନୁନୀ ଯାଇ ସାର୍‌ଲା ବେଲ୍‌କେ ଅଁଧାର୍ ଖାଲି ଆମ୍ ତଲେଁ ଠୋଲ୍ ହେଲା, ନୁହେ, ରମେଶ୍‌ର ମନ୍ ଭିତର୍‌ଟାକେ ବି କୁହୁକୁହୁ କରି ନେଇଥିଲା । ରମେଶ୍ ବି ଧୀରେ ଧୀରେ ଗାଁ ଆଡ଼୍‌କେ ଚାଲ୍‌ଲା । ତାହାକେ ଲାଗୁଥିଲା ସଥେଁ ଯେନ୍ତା ତାର୍ ଆଶାର୍ ଗୁର୍ ହାଁଡ଼ିଥି ଚାଁଟି ଲାଗି ଯାଇଛନ୍ ।

ସତେଁ ରମେଶର୍ କହେଲା ଲେଖେଁ ବଛର୍ ଦୁଇଟା ପାଏନ୍ ମେତାଲ୍ ବୁହିଁଗଲା । ମାତର୍‌କ ଈ ଦୁହିଁ ବଛର୍ ସେ ଫାଲେଁ ଅକାଲ୍ ପଡ଼୍‌ଲା ବନିହା ଠାନେ ତ ବିହ୍‌ଡ଼ା ବି ନାଇଁ ଚଲ୍‌ଲା । ଜିତ ସାହୁ କାଁ କର୍‌ତା ? ନୁନୀର୍ ଉପ୍‌ରର୍ ଝି'କେ ତ ଆଗର୍ ବର୍‌ଷେଁ ପଠାନି ଦେଇଥିଲା ଘର୍‌କେ ଶୂନ୍‌ଶାନ୍ କରି । ତାର୍ ଉପ୍‌ରେଁ ଉଞ୍ଜିଆ ଗାଁନୁ ରବି ପଧାନ୍‌ଠାନୁ କିଛି ଧାନ୍ ବି ଆନିଥିଲା । ଆର୍ ବଛର୍ ଫେର୍ ଚାଷ କର୍‌ବାକେ ରବି ପଧାନର୍ ଆଶ୍ରା ନେବାକେ ହିଁ ପଡ଼୍‌ଲା ସବୁ ମିଶି ବନିହାଁ ଲାଗ୍ ହଇଗଲା ନ । ଜିତ ସାହୁର୍ ମୁଡ଼େଁ ବେଙ୍କୁ ମାଏଲା ମେତାଲ୍ ଲାଗୁଛେ; ଶୁଝ୍ ସି କେନ୍ତା କରି ?

ରମେଶ୍‌ର ବାପା ଶିବ ତିହାଡ଼ି ବି କା'ଣା କର୍‌ବେ କା'ଣା ନାଇଁ ଭାବୁଛନ୍ । ହଲିଆ ରଖି ନାଇଁ ପାର୍‌ବାର୍ । ଗାଁଥିଁ କା'ର୍ ନ କା'ଣା ଅଛେ ଯେ ପରର୍ ଜମି ଚାଷ୍ କର୍‌ବା । ନିଜର୍ ଜମିକେ ଧର୍ ସଁଭାଲ୍ । ତିହାଡ଼ି ଲାଜ୍ ମହତ୍ ଛାଡ଼ି ନିଜର୍ ଜାଏତ ଜୀବ୍‌କା ଧୟଲେ । କେ'ନ ତିରନାଥ୍ ମେଲା, ସତ୍‌ନାରେନ୍ ପୂଜା ତ କେ'ନ କାର୍ତିକ୍ ମହାତ୍‌ମା ଲକ୍ଷୀ ପୁରାନ୍ ଗାଇଁ କଷ୍ଟେଁ ମଷ୍ଟେଁ ଦୁଇଟା ପେଟ୍ ପୂରାଇ ଚଲାଲେ । ଅପାଲକ୍ କଥା ଅଭାବ୍ କଥା ପୁଓର ପାଶ୍‌କେ ନାଇଁ ଲେଖନ୍ । ହେଲେଁ ଭି ରମେଶ୍ ଗେଜଟ୍‌ମାନ୍‌କେଁ ଈ ସବୁ କଥା କାହାରି ଥିବାର୍ ପଢ଼ିଛେ । ସେ ନିଜେଁ ଦୁଖେଁ ସୁଖେଁ ଚଲି କେତେବେଲେଁ କେନ୍ତା ଦୁଇ ପଏସା ପେଟୁଁ ଉଲଟି ପଠେଇଛେ ବି । ନୁନୀର୍ କଥା ନାଇଁ ପଚାରେ।

ହେଲେ ଁଜିତ କକା ଘରେଁ  କେତା ଅଛନ୍ ବଲି ଚିଠିମାନ୍‌କେ ଧାଡ଼େ ଅଧେ ଲେଖ୍‌ସି । ଶିବ ତିହାଡ଼ି ହଲ୍ ଯୁତା ଭାର୍‌ବୁହା ଯୁଡ଼େ କଥା ଛାଡ଼ି ବାକି ସବୁ ଖେତର୍ ବୁତା କରି ଅଧିପରାନ୍ ହେଲେନ । ଚିହ୍ନିନାଇଁ ହେବାର୍ । ତିହାଡ଼େନ୍ ସବୁ ଦିନେ ଘାଏ ଘାଏ କହୁଛନ୍ ରମେଶର ବିହା ବର୍‌ପନ୍ କରିନେଲେଁ ଦୁଖ୍ ଯାଏତା । କେଡ଼େ କେଡ଼େ ଘର୍ ଟୁକେଲ୍ ଯଚୋଉଛନ୍ । ଘର୍ ଭରି ଯାଏତା । ହେଲେଁ  ତିହାଡ଼ି ଶୁନିକରି ଭି ନାଇଁ ଶୁନ୍‌ଲା ଲେଖେଁ ରହେସନ୍ । କହେଲେଁ ଏଖେ ପଦେ "ପୁଓ ଦିଲ୍ଲୀ ନ ଥିତା ଆର୍ ତୋର ଛନ ଥାଇ ବହ ପରଶନା ଖାଏବାର୍ ମନ୍ । ଧଏନ୍ ଧଏନ୍ ତୋର୍ ମା' ପଣିଆଁ ।" ତିହାଡ଼ି ପଏ୍‌ସେ କି ଅଧିଲେ ନୈ ଦେଇ ପାର୍‌ବାର୍ ପୁଓକେ। ଉଲ୍‌ଟିଆ ପୁଓ ପାଠ୍ ପଢ଼ି ବି ଯାହା ପାରୁଛେ ସାହେଜ୍ କରୁଛେ । ନିଜ୍‌କେ ଦୁଷୀ ଭାବ୍‌ନା ଘାଏ ଘାଏ ଘାରି ପକାସି ।

ରବି ପଧାନ୍ ବନିହାଁ ଧାନ୍ ଚାଉଲ୍‌ର ମହାଜନ୍ ଆଏ । ମାମୁଁ-ମାଇଁ ଦୁଇ ପରାନୀ । ଖାଏବାକେ କେ ଅଛେ ? ପୁଓ ଝି ପାୟବାକେ ଯାହା ଚେରେଷ୍ଟା କଲା କିଛି ଫଲ୍ ନାଇଁ। ପଧାନେନ୍ ନିଜେଁ ଭିରିଭାରି ହଇଁ ବଅଁଶ୍ ରଖିବାର୍ ପରତିଗ୍ୟାଁ ନେଇ ବାହାରି ପର୍‌ଲେ । ସେ ପସନ୍ଦ୍ କଲେ ନୁନୀକେ ।

ଜିତ ସାହୁକେ କହେଲେ "ନୁନୀକେ ଦିଅ । ମୁଇଁ  ବହେନ୍ କରି  ଝି' ବାଗିର୍ କରି ରଖିମି ।" ରବି ପଧାନ୍ ଭି ନୁନୀକେ ଦେଖି ତାର୍ ବଅଁସ୍ ରଖିବାର୍ ମନ୍ ଆର୍ ଟିକେ ପାଆଁଲି ଉଠ୍‌ଲା । ଜିତ ସାହୁର୍ ମନ୍‌କେ ରବି ପଧାନ୍ ଆସୁ ନାଇଁ ଆସୁ, ତାର୍ ଲାଗ୍ ବାଘ୍ ବାଗିର୍ ଜିତର୍ ମନ୍‌କେ ଆଁପରି ଚିପ୍‌ରିଁ ଘିଚି ଉଲ୍‌ଟି ରବି ପଧାନ୍ ଆଡ଼୍‌କେ ଅଜାଇ ଆନ୍‌ଲା । ତଥାପି ସେ ଭାବଲା ନୁନୀକେ ପଦେ ପଚରାବାର୍‌ଟା ବନ୍‌ଏ ହେବା । ଗାଁଥିଁ ଇ କଥା ଯାଜି ହଇଗଲା । ନୁନୀତ ପହେଲା ପହେଲା ତୁନ୍ ପର୍‌ଲା, ଆମ୍ ଲିମ୍ କଷା ପିତା ହଁ ନାଇଁ , କିଛି ନାଇଁ । ଲୁକେ ଶୁନି କହିଲେ "ରମେଶ୍ ଆର୍ ନୁନୀ ସତ୍ କରାକରି ହଇଛନ୍ ପରେ । ହେଁଥିର୍ ଲାଗି ନୁନୀର୍ ମନ୍ ନାଇଁନ।" ଇ କଥା ତାର୍ କାନୁ ତାର୍ କାନୁ ହଇ ରମେଶ୍‌ରର ମା'ର କାନ୍ କେ ଗଲା । ରମେଶ୍‌ର ମା'ର ପୁଓକେ ନେଇ ବହ ସାଙ୍ଗେଁ ଗୁଡ଼୍‌ଦୁ ଗୁଡ଼୍‌ଦୁ ଧନ୍ ସଂପତି ପାଏବାର୍ ସପନ୍‌ମାନେ ଛିଟ୍‌ବିଛି ହଇ ଧୁକା ମୁହଁର୍ ରୁଆ ବାଗିର୍ ଇଆଡ଼େଁ ସେଆଡ଼େଁ ଉଡ଼ି ପଳାଲେ । ସେମାନକୁଁ ଗୁଟାଗୁଟି କରି ଯେନ୍ ସୁଖର୍ ଆଶା-ଦୁଲି ଥିଁ ସେ ଦୁଲ୍‌ତେ, ସେ ଦୁଲିର୍ ରଶି ବୁନ୍ଧୁ ଛିଡ଼ିଗଲା । ଜିତ ସାହୁ ଆଉର୍ ଶିବ ତିହାଡ଼ି ; ଦୁହିକର୍ ଘର୍ ଲଗାଲଗି, ଛାଦନ୍ କେ ଛାଦନ୍  ଠୀଠି ବଜାବଜି; ଇ ଘରର୍ ପର୍‌ଝନା ସେ ଘରେଁ କହ୍‌ର୍‌ସି ତ ସେ ଘରର୍ ହାଇ ଇ ଘରକେ ଶୁଭ୍‌ସି ।

ନୁନୀ ସବୁଦିନେ ଶୁନ୍‌ସି ରମେଶ୍‌ର ମାଆର୍ କଥା । କେନ୍ ଅଫିସର୍ କେନ୍ ଗଁଟିଆ ରମେଶ୍‌କେ କନିଆଁ ଯଚଉଛେ, କିଏ କେତେ ସୁନା ଦେବା, କିଏ ମଟର୍ ବି ଘିନିକରି

ରଖିଲାନ: ଏଛନି ରମେଶ୍ ହିଁ ବଏଲେଁ ସକାଳ୍‌ପୁଆକେ ତାକର୍ ଘରେଁ ଦରବ୍ ରଖିବାକେ ଠାନ୍ ନୈ ହେତା ।

ରମେଶ୍‌ର ସୁନାର୍ ସଂସାର ଯେନ୍‌ଟା କି **ରମେଶ୍‌ର ମା'ର୍** ମନ୍-ମୁଲ୍‌କେଁ ତିଆରି ହେସି ତାର୍ ଛାଏ ବି ଘାଏ୍ ଘାଏ୍, ନୁନୀର୍ ଭାବ୍ -ଇଲାକାକେ ଲମି ଯାଏସି । ନୁନୀ ଭାବ୍‌ସି ରମେଶ୍‌ର ହେନ୍ତା ସଂସାର୍‌ଟେ ହେଲେ କେତେ ଭଲ ହେତା । ରମେଶ୍ ସୁଖେଁ ରହେଲେଁ ତାହାକେ ନିଜ୍‌କେ କେତେ ସୁଖ୍ ଲଗ୍‌ତା । ହେଲେଁ ସେ ରମେଶ୍‌ର ମନ୍-ଢ଼ବାଘରକେ ବର୍ହ୍ଲେଇ ଚତ୍‌ରେଇ ଆନିଛେ, ଗୁଟ୍ ଗୁଟ୍ କରି ସବୁ ଅନ୍ଦି କନ୍ଦି ଦେଖିଛେ, କେନ୍‌ସିନ ହେନ୍ତା ଜାଗା ନାଇଁନ୍, ଯେନ୍‌ଠାନେ ନୁନୀ ନୈ ଥାଇକରି ରମେଶ୍‌ର ନିଜର୍ ଲାଗି ସଂସାର୍‌ଟାକର କଲ୍‌ପନା ଅଛେ । ତାହାକେ ନେଇ ରମେଶ୍ କାଁ ସଂସାର୍ କର୍‌ବା ? ଯେନ୍ ସଂସାର୍ କରବା, ସେ'ନ ସୁଖ୍ ନୈ ଥାଏ, ଆନନ୍ଦ୍ ନୈ ଥାଏ । ଥିବା ଖାଲି ନିନ୍ଦା ବଦ୍‌ନାମ୍, ଗାଁର ଲୁକର୍ ଟପା ଗୁଲି, ମା' ବାପର୍ ଅସନ୍ତୋଷ । ପଛେଁ ରମେଶ୍ ବି ବାଆନି ବସ୍‌ବା; ନାଇଁ ପଢ଼ିଁ ବଲି, ହୁସିଆର୍ ନୁହେଁ ଚାଲାଁକ୍ ନୁହେଁ ବଲି । ସେତେବେଲେଁ ତାର୍ ହାତେଁ କର୍‌ବାକେ ଆରତ୍ କିଛି ନାଇଁ ଥିବା, ଯଦି କିଛି ଥିବା ତ ସେଠା ଖାଲି ପସ୍ତାବାର୍‌ଟା । ଜୁଲି ବାନ୍ଧଲେଁ ଯାଇ ଆର୍ ସେଟାଫେର୍ ସମାନ୍ ଜୁଲି ହେଲେଁ ଯାଇ ସଂସାର୍ । ସେ ରମେଶ୍‌ର କେନ୍‌ସି ମିତ୍‌ରେଁ ସନ୍‌ଶିୟାଁ ନାଇଁ ହଇପାରେ । ସମାନ୍ ନୈ ହଇପାରେ । କସ୍ତାଲ୍ ପଟେ ଆର୍ ଖଂକନିଟେ କାଁ ଢ଼ଙ୍ଗେଁ ବାଜ୍‌ବା ? କେନ୍ ସୋର୍ ଦେବା ? ବଲଦ୍ ଗାଡ଼ିର୍ ପଟେ ଚକା ବନ୍‌ଏ ବର୍କସ୍ ଥାଇ ଆର୍ ପଟ୍‌କ ଫିରି ଯାଇଥିବା ବେଲେଁ, ବିଦ୍‌ରି ଯାଇଥିଲେ ସେ ସେ ଗାଡ଼ି କେନ୍ତା ଚାଲ୍‌ବା ? ଛଡା ନାଇଁ ମାର୍‌ବା କାୟଁ ? ନାଇଁ ନାଇଁ, ରମେଶ୍‌ର ସୁଖର୍ ସଂସାର୍‌କେ ଅଦର୍ବା, ଅସ୍‌କଟିଆ କରବାର୍ ଠାନୁ ତାର୍ ସାଙ୍ଗ ଛାଡ଼ି ରମେଶ୍‌ର୍ ସଂସାର୍‌କେ ସୁନ୍ଦର୍, ଫୁଲ୍ ଫଲ୍‌ଭରା ହଁସଖୁସିର୍ ସୁନାର୍ ସଂସାର କରି ପାର୍‌ଲେଁ ନିଜେଁ ଭି ସୁଖେଁ ଉହେଲା ବାଗିର୍ ଲାଗ୍‌ବା । ତାର୍ ଜୀବନ୍‌ଟା ଲେଙ୍ଗ୍‌ଡ଼ି ଘେଁସ୍‌ରି ଉଠ୍‌ବସ୍ ପଛେଁ ହଉଥାଉ ରମେଶ ତ ସୁଖେଁ ରହେବା । ତାର୍ ମନ୍‌କେ ତ ସୁଖ୍ ମିଲ୍‌ବା, ତନ୍‌କେ ନାଇଁ ମିଲ୍‌ଲେଁ ନାଇଁ । ଇ ତନ୍ ଥିଁ କା'ଣା ଅଛେ ? ଇତାର୍ ସୁଖେଁ କାଏଁ ସୁଖ୍ ? ଇ ଦେହ୍‌ଟା ଦେଇ ହେବାର୍ ଜିନିଷ୍‌ଟେ ହେଁଥିର୍ ଲାଗି ଶାସ୍ତର୍ ପୁରାନ୍ ଇତାକେ 'ଦେହି' ବଲ୍‌ସି । ଇ ଦେହ୍‌କେ ମହାପ୍ରୁର୍ ନାଁଥିଁ ଭଜି ନେଇ ପାର୍‌ଲେଁ ପରେ ମୁକ୍‌ତି ମିଲ୍‌ସି, ସବୁଦିନିଆଁ ସୁଖ୍ ମିଲ୍‌ସି । ତାର୍ ଲାଗି ଆର୍‌କେନ୍ ମହାପ୍ରୁ ଅଛେ ? ରମେଶ୍‌କେ ଛାଡ଼ି ତାର୍ ମନ୍-ଦଉଲେଁ ଆର୍ କେନ୍‌ସି ମହାପ୍ରୁ ଲାଗି ଘଁଟି ବାଜ୍‌ବାର୍ ସେ ନୁହେଁ ଶୁନ୍‌ଏ । ତାର୍ ମନ୍ ଭିତର୍‌ଟା ରମେଶ୍ ହିଁ ଆବ୍‌ରି ବସିଛେ; ଦୁସରା କେନ୍‌ସି

ଦେବତାର ଲାଗି ଠାନ୍ ନାଏଁନ୍, ଜାଗା ନାଏଁନ । ହେଲେଁ ତାର୍ ଲାଗି ରମେଶ୍ୱର୍ ଘରେଁ ଦୁଆରେଁ ଠାନ୍ ନାଇଁ, ଠିଆ ହେବାର୍ ଆଗ୍ଁ ହପ୍‌କା ମାରୁଛନ୍, ହେବ୍‌ଲେଇ ନଉଛନ୍ ।

କାଲିର୍ ତ, ହଁ ଠିକ୍ କାଲିର୍ ଇ ସଂଜ୍ ପହରିଆ ବିଂଝାଲ୍ ଘରର୍ ଜେମା କାକୀକେ ରମେଶ୍ୱର ମା କହେବାର୍ ତାର ନିଜର୍ କାନେ ଶୁନିଛେ "କାଁ କହେବୁ ଲୋ ଜେମା ! ବହ ଲୁକାବାର୍ କଥା କହେସୁ ଯେ ଲୁକାତିଁ ନ । ମାତରକ କାଁ କହେବୁ, ଦଏବୀର୍ କାଟ୍ ବାଛ୍‌କେ ପାରି ହେସି, ଇ ମୁନ୍‌ଷର୍ କାଟ୍‌ବାଛ୍ କେ ନାଇଁ ପାରି ହଏ । ରାଆଁଡ଼େ ଆଁଟ୍‌କୁରେ ତାକର୍ ଝି ମାନ୍‌କୁଁ ଢ଼େରି ରଖିଛନ୍ । କା'ର୍ ପୁଓକେ ମହନୀ ଜଲ୍‌କା ଦେଇ ବେଁକେଁ ବାଁଧିନେତେ; ଜାଏତ୍ ଅଜାତ ଯା'ଣା ହଉ । ମୋର୍ କପାଲ୍ ଆଏ୍ ଲୋ ଜେମା ! ନିଜର୍ ସୁନା ତ ଭାଣ୍ଡ, କାହାକେ ଦୋଷ୍ ଦେବୁ । ଘରେଁ ବଢ଼୍‌ଲା ଝି ଥିଲେଁ ଘର୍‌ବର୍ ଉଡିର୍‌ଲେଁ ଲୋକ୍ ଝି ଦେଇ ପାର୍ ପାଏସନ୍, ହାୟ କର୍‌ସନ୍ ସିନା । ଆଏଜ କାଏଲ ଲୁକେ ଝି ମାନ୍‌କୁ ପଚରାଲେ ନ; ବଲଦ୍‌କେ ପଚାରି ଜୁଏଡ଼୍ ଛାଁଟ୍‌ଲେ ନ, ଗାଏକେ ବୁଝି ଛାନ୍ଦ୍ ଭାଙ୍ଗ୍‌ଲେ ନ । ଉଲଟିଆ ଯୁଗ୍, ଉଲଟିଆ କଥା ।"

ସେ କଥା ଶୁନ୍‌ଲା ବେଲ୍‌ଁ ତାହାକେ ସବୁ ଅନ୍ଧାର ଦିଶୁଛେ । ରମେଶ୍‌କେ ନେଇ ସଂସାର୍ କର୍‌ବାର୍‌ଟା ଯମ୍ ଘର୍‌କେ ଗଲା ଲେଖେଁ ଅନ୍‌ମାନ୍ ହଉଛେ । ନୁନୀ ଭାବୁଛେ ଯେ ଭାବୁଛେ। ତାର୍ ଥିତି କା'ଣା ହେବା ? କା'ଣା ହେବା ? ରମେଶର୍ ସୁନାର୍ ସଂସାର୍ ଦେଖି ତାର୍ ମନ୍ କା'ଣା ବୋଧ୍ ନାଇଁ ହଇପାରେ ? କାଁ କରି ନୈ ହେବା ?ରମେଶ୍ ଲାଗି ଜୀବ୍ ଦେଇ ପାର୍‌ବା। ତାର କହେଲା କଥା ଥିଁ କାଏଁ ଟିଖେ ସତ୍ ନାଇଁ ଥାଇ ? କହେବାର୍ ସୁରେଁ ଖାଲି କହି ନେଇଥଲା ? ତାର୍ ନିଜେଁ ଦିହ୍ ସୁଖ୍‌ଭୋଗ୍ ନାଇଁ ପାଏ, ନାଇଁ ପାଉ । ତାର୍ ଇ ଦିହେଁ କାଏ୍ ଅଧିକାର୍ ଅଛେ ? ଇଟା ମା' ବାପର୍ ଦେଲାଟା, ଜନମ୍ ଜାତ୍ କଲାଟା, ପାଲ୍‌ଲା ପୁଷ୍‌ଲାଟା । ଇ ଦିହ୍‌କେ ଭଁଜାଇ ମା' ବାପ୍ ଯଦ୍‌ରି ଶାନ୍ତି ପାଆନ୍, ସୁଖ୍ ପାଆନ୍, ହେଁଥିଁ ବଡ଼୍ କଥାଟେ ତାର୍ ଲାଗି କା'ଣା ହେବା ? ଆର୍ ତାର୍ ଇ ଦିହର୍ ସୁଖ୍ ଭୋଗ୍ ଲାଗି ଯଦର୍ପି ରମେଶ୍ୱର୍ ସଂସାରେଁ ହାୟ ହାୟର୍ କାନ୍ଦି ଶୁଭେ, ରମେଶ୍ୱର ପିର୍ଢ଼ାନ୍ କୁଆ ବସି ନୈ ପାରେ, ମା ବାପ୍ ଲାଗର୍ ଢ଼ରେଁ ଝଲ୍ଲର୍ ବୁନ୍ଦା କାନ୍ଦନ୍ ତ ତାର ଇ ଦିହ୍ ଥାଇ ନୈ ଥାଇ କାଏଁ ଲାଭ୍ ? ସେ ରମେଶ୍ ସାଙ୍ଗେଁ ଥାଇ କାଁ ଲାଭ୍ ପାଏବା ?

ନୁନୀ ଆହୁରି ଦୂରସ୍ କରି ଭାବ୍‌ଲା ସେ ଆଜିର୍ ଯେନ୍ ଦୁଇବଟିଆ ନେ ଠିଆ ହଇଛେ, କେନ୍ ବାଟ୍ କେନ୍‌କେ ଯିବା ତାହା କେ ଫଟିକ୍ ଦିଶୁଛେ । ସେ ଭାବିଚିନ୍ତି ଯିବା । ଗୁଟେ ବାଟ୍ ତାର୍ ସୁଖସଂଭୋଗ୍‌ର ଠାନ୍‌କେ ଯିବା । ଆଉର୍ ଆର୍ ବାଟ୍‌ଟା ?

ରମେଶ୍ୱର, ତାର ମା ବାପର, ଆଉର ତାର୍ ନିଜର୍ ମା'ବାପର୍ ସୁଖ ଶାନ୍ତି ଆଡ଼୍କେ ଯିବା। ସେ କେନ୍‌ବାଟ୍ ବାଛବା? ଆର ବାଟେଁ ତାହାକେ ନିର୍ମଳ ଭାବେଁ ଦିଶୁଛେ ରବି ପଧାନ୍‌ର ଘର୍। ଦୁଇ ସଅଁତିଅ ଘର, ଅଧେର୍ ବୟସର୍ ବର୍। ସେ ନ ତାର୍ ମନ୍-ଦର୍ପନ୍ ଥିଁ ଦିଶୁଛେ ତାର୍ ନିଜର୍ ଚେହେରା; ସେ ଯୁଆନ୍ ବୟସ ଲହଁକି ତୁରତି କଲା ଅଧେର୍ ବୟସେ ପହୁଁଚିଛେ। ତାର୍ ବି ମୁଡ଼୍‌ର ବାଲ୍ ଗୁଟେ ଗୁଟେ ପାଚି ଆଉଛେ। ରବି ପଧାନ୍‌ର ତିନି ମହଲାନୁ ଦକ୍ ଦକ୍ ଦିଶୁଛେ ତାକର୍ ଗାଁର ଚେହେରା। ରମେଶ୍ୱର ସଁସାରେଁ ସୁନାର୍ କୁକରା ଉଡୁଛେ, ଗାଡ଼ି ମଟର୍, ଧନ୍ ସଂପତିର୍ ହିସାବ୍ ନାଇଁ। ରମେଶ୍ ତା'ର ମା' ବାପର୍ ଗୋଡ଼୍ ତଳେଁ ପଡ଼ି ନୈ ଦେବାର୍। ତାର୍ ନିଜର୍ ମା' ବାପର୍ ବଏସ୍ କମି ଯାଇଛେ। ଲାଗ୍-ବାଘ୍ ଲେଞ୍ଜ ବି ହଲେଇ ନୈ ପାର୍‌ବାର୍। ରବି ପଧାନ୍‌ର ଘରୁଁ ତାର୍ ମା' ଘର୍‌କେ ଲାଗିଛେ ଧାଡ଼ି; କେତେବେଳେଁ ଭାର୍ ତ କେତେବେଳେଁ ଗାଡ଼ି। ସଭେ ଉଷତ୍ ସଭେ ଆନନ୍ଦ୍। ଖାଲି ତାର୍ ନିଜର୍ ଚେହେରା କେ ଦେଖି ନୈ ହେବାର୍। ଇ ସମ୍‌କରର୍ ଆନନ୍ଦ୍ ଥିଁ ଜହକରି ରମେଶର୍ ଆନନ୍ଦ୍ ଥିଁ ତାର୍ ଆନନ୍ଦ। ସେ ରମେଶ୍ୱର ସୁନାର୍ ସଂସାର୍, ସୁଖର୍ ଘରକରା ବାଟେଁ କଁଟା ହଇ କାଁ କରି ରହେବା? ସେ ଅଲଗି ଗଲେଁ ବନ୍‌ଏ।

ନନୀର୍ ଆଖିଁ ଲହ ଉହୁଲୁଛେ; ପୁଛ୍‌ବାର୍ ସୋର୍ ନାଇଁ; ଗାଲେଁ ବିହଲିଁ ଛାତିର କପ୍‌ଟା ନ ଛପ୍‌ଲିଁ ଗଲା ନ। ଉଦା ଲାଗ୍‌ଲା କି ନୁନୀର୍ ସୋର୍ ଆଏଲା ଆର୍ ସାଙ୍ଗେଁ ଆଏଲେଁ ତାର୍ ମାଁ ଭାମା।

ନୁନୀର୍ ଆଖିଁ ଲହ୍ ଦେଖି ଭାମା କହେଲେ "କାନ୍ଦୁ ଛୁ ପୁତା! ତୁଇଁ ନାଇଁ ବଏଲେଁ ଆମେ କାଏଁ ଦେଇ ନଉଛୁଁ ତତେ ? ଆମେ ନାଇଁ ଦେଲେଁ କାଏଁ. ଜୋର୍ ଜବ୍‌ରାନ୍ ନେଇଯିବେ ସେମାନେ? ନାଇଁ ନାଇଁ, ତୁଇଁ ହଁ ବଏଲେଁ ହଁ, ନାଇଁ ବଏଲେ ନାଇଁ। ଆ ମା! ଆ ମୋର୍ କିରିୟା। ନାଇଁ କାନ୍ଦ୍। ପଧାନ୍ ଘରର୍ ଲୋକ୍ ଆସି ବସିଛନ୍; ହଁ ବଏଲେଁ ଲଗନ୍ ଦେଇଯିବେ। ତୋର ବାବୁ ଆମ୍‌ଲିମ୍ କିଛି କହେବାର୍ ନାଇଁ, ତୋର ଅଟ୍‌କେଁ ଅଛନ୍। ଆ, ମୁଇଁ ସେମାନ୍‌କୁଁ ଚାହା ପାଏନ୍ ଟିକେ ବି ଦେଇ ନୁହେ ପାରେଁ।" ଭାମା ଫେର୍ ସେ ଘରୁଁ ପଲାଲେ। ନୁନୀ ଏକ୍‌ଲା ରହେଲା କି ଫେର୍ ଯେନ୍ ଭାବ୍‌ନା ମୁଲ୍‌କେଁ ଥିଲା ସେ ନିକେ ଫିରିଗଲା। ହେଲେଁ ଭାବ୍‌ତା କା'ଣା? ତାର୍ କାନେ ତାର୍ ନିଜର୍ କଥା ଗୁନ୍‌ଗୁନେଇ ଉଠୁଛେ "ତୋର୍ ଶଁସେ ମୋର୍ ଶଁସେ ଭିତ୍‌ରେଁ ପରାଭେଦ୍ ଅଛେ, ଯଦର୍ପି ଦରକାର୍ ପଡ଼େ ଯେନ୍ ଘଡି ବଲ୍‌ବୁ ସେ ଘଡି ମୁଇଁ ଇ ଜୀବନ୍ କେ ମୁରଛି ନେମି, ଇ ଜୀବନ୍ କେ ମୁରୁଛି ନେମି, ଇ ଜୀବନ୍ କେ ମୁରଛି ନେମି।"

ନୁନୀର ଆଖିଁ ଜୁଲ୍‌ଜୁଲିଆ ପୋକ୍ ବାହାରି ପଡୁଛି । ତାହାକେ କିଛି ନାଇଁ ଦିଶ୍‌ବାର୍ । ଯେନ୍ ଆଡ଼୍‌କେ ନଜର୍ ପଡୁଛେ ଖାଲି ରମେଶ୍‌ର ଚେହେରା । ରମେଶ୍ ରମେଶ୍ ରମେଶ୍ ।

ତାର ମା ଫେର୍ ଆସି କହେଲେ "ନାଇଁ ଆଏଲୁ ନୁନୀ !" "କାଁ କର୍‌ମି ମା ଯାଇକରି ? ଯା ଚାହା ପାଏନ୍ ଦେ ।" ନୁନୀ ଲୁହ୍ ପୁଛି କହେଲା ।

"ଦେଲିନ ମା, ତୋର୍ ବାବୁ ଟାକିଛନ୍... କାଁ ବଲ୍‌ବେ ଯେ..." ଅଟକିଲା ବାଗିର୍ କହେଲେ ଭାମା ।

ନୁନୀ କହେଲା "ମା ବାପ୍ ପୁଓ ଝି'ର୍ ଭଲ୍ ସିନେ କର୍‌ବେ ମା ! ଯା ଯେନ୍ ଟା ବନ୍‌ଏ ଲାଗୁଛେ ସେ'ଟା କର ।"

ରମେଶ୍ ଦିଲ୍ଲୀନୁ ଫିର୍‌ଲା କି ଶୁନ୍‌ଲା ନୁନୀର୍ ବିହା ବଢ଼େ ଧୁମ୍‌ଧାମ୍ ନେ ହେଲା । ରବି ପଧାନ୍ ଲାଖ୍‌ଟୁରି କରି କଦେଇ ନେବାକେ ପସନ୍ଦ ନୈ କଲେ । ବଙ୍ଗାଗଙ୍ଗା, ଫୁଲ୍‌ବାନ୍, ଭୁଜିଭାତି ଥିଁ ଗାଁ ଉଛ୍‌ଲି ପର୍‌ଲା । ଲୋକ୍ କହୁଛନ୍, ଏନ୍ତା ବିହା ଇ ଗାଁ ନ କେଭେଁ ନାଇଁ ହଇ ଥାଇଁ ଆର୍ ହେବା କି ନି କେ ଜାନ୍‌ଏ ? ରମେଶ୍‌ର ଆଖିଁ ସେ ଝାପ୍‌ରୁ ଆମ୍ ଗଛ୍ ଝଲ୍‌ସି ଉଠ୍‌ଲା । ସେ ଅଁଧାର୍ ,ସେନ୍ତା ଛାଇ ହଇଛେ । ସେନ ଦୁଇଟା ଛଏ୍‌ରା ପାଖାପାଖି ଠିଆ ହଇଛନ୍ ।

ଗୁଟେ ଛଏରାତ୍ ମୁନ୍‌ଷର୍ ଆଏ; ଆର୍ ଆର ଛଏ୍‌ରାଟା ଜୁଲ୍‌ଜୁଲିଆ ପୋକର୍ ଉଜାଲା ନେଇ ଲମି ଯାଇଛେ ଯେତ୍‌କି ଦୂର ଦିଶ୍‌ବା ସେତ୍‌କି ଦୂର ।



# ମୁଇଁ କା'ଣା ଦେଇ ପାରମି

ରଘୁନାଥ୍ ମିଶ୍ର । ସୁନ୍ଦର୍ ଚେହେରା । ବଏସ୍ ପଚିଶ୍ ପାର୍ ହେଲା ନ ଗୁଟେ ପିଲାର୍ ବାପ୍ ବି ହେଲା ନ । ବାପା ବନିହାଁ ଦିନୁ ସରଗ୍ ବାସୀ ହେଲେ ନ । ମାଁ ବୁଢୀ ବୁଢ୍ଲା ବେଲର୍ ଆୟୁଷ ଧରି ରେଙ୍ଗୋ ଘେଟୋ ହୋଇ ଅଛନ୍ । ବିହା ହୋଇଥିଲା ବନ୍ଏ ଘରର୍ ଟୁକେଲ୍‌ଟେ । କନିଆଁର ବାପ୍ ଭାବିଥିଲେ ଜୁଏଁ ପିଲାଟା ବିଏ ପାସ୍ କିଛେ, ବନ୍ଏ ଡ଼ିଭିଜନ୍ ବି ପାଇଛେ; ଗୀତ୍ କବିତା ଲେଖ୍‌ସି, ପତର୍ ପତ୍‌ରିକା ନେ ବି ବାହାର୍‌ବାର୍ ପଢ଼ିଛନ୍ । ଇସ୍‌କୁଲ୍ କଲେଜର୍ ସଭାମାନକେଁ ଭାଷଣ୍ ଭିଲ୍ ଦେସି । ଝି ଦେଲେଁ ଭୁଖେଁ ନୈ ମରେ ବାଗିର୍ ଲାଗ୍‌ଲା ତାହାକୁଁ । ଜମି ଟୁପୁରଦୁ ଭି ତ ଅଛେ ।

ଶଶି ରଘୁର୍ କନିଆଁ; ନୂଆ ସଂସାର କର୍‌ବାର୍ ବନିହାଁ ସପନ୍ ସାଙ୍ଗେଁ ବାସନ୍ ବର୍ତନ୍ ଖଣ୍ଡେଦୁ ଆଉର୍ ଅଏଁଖ୍ ଦିଶ୍‌ଟୁ କାଠର୍ ସାମାନ୍ ନେଇ ପଠାନି ଆସିଥିଲା । ତାର୍ ବାପା ବି ଦିହ୍‌କେ ବନ୍ଏ ଦୁଇଦରବ୍ ଦେଇଥିଲେ । ରଘୁ ନଉକିରି କର୍‌ବା, ମାସ୍‌କେ ମାସ୍ ଦରମା ପାଏବା ଥିଲା ଆଶା । ଏ'ଦେ ହେବା ସେ' ଦେ ହେବା ବଲି ଶଶି ବାସନ୍ ବର୍ତନ୍ ସୁନାରୁପା ଯାହା ଥିଲା ବିକି ଭାଁଜି କରି ଇନଟରଭୁକେ ଆଏଜ୍ ଭୁବନେଶ୍ୱର୍ ତ କାଏଲ୍ କଟକ୍ ପରଦିନ ସମ୍ୱଲପୁର କରି ପଠାଲା । ବାହ୍ମନ୍ ପିଲା, ସହଙ୍କେଁ କେ ନ ନଉକିରି ପାଉଛନ୍ । ଫେରର୍ ଆଏଜକାଏଲ ତ ନଉକିରିମାନେ ପରେ ନିଲାମ୍ ହଉଛେ; ଆଗୋ ଖର୍ଚ୍ଚା କଲେ ଯାଇ ପଛେଁ ନଉକିରି । ରଘୁର୍ ସରକାରୀ ନଉକିରିର୍ ବଏସ୍‌ଟା ଭି ଡ଼େନା ବାଁଧି ଉଡ୍‌ଲା ମେତାଲ୍ ପଲେଇଗଲା । ଜମି ଟୁପୁର୍ ଦୁଇ ଛିଡ଼ୋଲ୍ ଭୁଗୋଲ୍ କରି ଦେଲେଁ କୁଟ୍‌ମର୍ ଚାଉଲ୍ ଭର୍‌କ ହେସି । ବାକି ଖର୍ଚ୍ଚା କେ କାଁ କର୍‌ବା ? ରଘୁର୍ ଯୁଆନ୍ ମନ୍ ବୁଢ଼ାକର୍ ବାଗିର୍ ହଦରି ବସ୍‌ଲାନ । ଘରେ ମା ବୁଢ଼ୀର ଖୁଁ ଖୁଁ ଖାସି । ପଢ୍‌ଲା ପୁଓକେ ଘରେଁ ବସ୍‌ବାର ଦେଖ୍ ତାକର୍ ମନ୍ ବି ବସିଗଲାନ । ଉଷୋକଷା ଲାଗ୍‌ଲା ନ ମାସ୍‌କ ଶଏ ଛ'କୋର୍ । ରଘୁର୍ ବିହା ହେବାର୍ ବଛର୍ ନେ ପୁର୍‌ନୁ ଆଏଲା ପୁଓ ଶରତ୍ ନାରେନ୍ । ଶଶିକେ ଗୁରସ୍ ହଏ ନାଇଁ । ଡ଼ବା ଗୁରସ୍ ଘିନି ଘିନି ଜାଆଁବାକେ ପଡ୍‌ଲା । ନୁନ୍ ତେଲ ଠାନୁ ଚିନି ଚାହା ତକ୍ ସବୁ ଘର୍‌ଚଲା ଦରବ୍ ଦିନ୍‌କେଁ ଗୁଟେ ଭାଉ । ଚିନିର୍ ଦାମେ ନୁନ୍ ଘିନ୍‌ବାକେ ପଡୁଛେ । ଖର୍ଚ୍ଚା ଚଲାବାକେ ତ କେଡ଼େ କେଡ଼େ ଲୋକ୍ କଧ୍‌ରି ବସ୍‌ଲେନ, ଆର୍ ରଘୁ ଭାଏଲ କେନ୍ ଖେତର୍ ଢ଼େଲ୍ ଆଏ ? ରଘୁର୍ ଆଶା ଆର୍ ଶଶିର୍ ସପନ୍ ରଘୁର୍ ଗୋଡ଼ର୍ ହାବାଇ ଚଟି ମେତାଲ୍ ସରି ସରି ଛିଡ଼ି ଛିଡ଼ି ଆଏଲେନ ।

ରଘୁ ତାର୍ ଚାଲି ଆଏଲା ଜୀବନ-ରାସ୍ତାକେ ଲେହେଁଟି ଦେଖ୍‌ଲା; ତାର୍ ପାହା ଚିହ୍ନମାନେ ଫଟିକ୍ ଦିଶୁଛେ । ସେ ଦଉଡ୍ ଥିଲା, ଡ଼େଗୁଥିଲା, ନାଚୁଥିଲା, ଇ ରାସ୍ତାର୍

ଦୁହିଆଡ଼େଁ ଫୁଲ୍ ଫୁଟ୍‌ବାର୍ ଦେଖିଥିଲା। ସେ ଫୁଲର୍ ମହକ୍ ଭିତ୍‌ରେଁ ନିଜେଁ ନିଜ୍‌କେ ହଜେଇ ନଉଥିଲା । ସେ ଠାନୁ ତାହାକେ ଦିଶୁଥିଲା ଆଗର୍ ରାସ୍ତା ଆଉର୍ ସୁନ୍ଦର୍, ଆହୁରି ଫୁଲ୍ ଫଳଭରା ହେବା । ଜୀବନ୍ ଟାକେ ସୁରୁତ୍ ସର୍‌ବତ୍ ମେଡାଲ୍ ପିଇନେବା । ହେଲେଁ ଆଏଜ୍ ଦେଖିଲା ସେ ସବୁ କେତେ ମିଛ, କେତେ ଦୁଖ୍ ଦିଆ ଆଏ । ପଛ୍‌କେ ଲେହେଁଟି ଦେଖି ସେ ନୁରି ବସୁଛେ  କେନ ହଜାଲା ତାର୍ ସୁଖ୍, ତାର୍ ଲେଖିବାର୍ ଖିଆଲ୍, ବୁଝିବାର୍ ମନ୍ । ଆଜିର ତାର୍ ହଁସିଖେଲିର୍ ବଏସ୍ ସାଙ୍ଗେଁ ତାର୍ ଯାହା କିଛି ଥିଲା ସବୁ ହଜି ଯାଇଛେ । ଅଛେ ଖାଲି ହୁର୍‌ଗୁନି ହେବାର କାନ୍ଦି ପକାବାର୍ ମନ୍‌ଟେ । ହେଲେ କାନ୍ଦି ନାଇଁପାରେ । କାନ୍ଦି ପାର୍‌ଲେଁ ଭାଏଲ ବେଦେନ୍ ଫାଟି ପୋଜ୍ ବୁହିଁଗଲେ ଯେନ୍ତା ଉଶାସ୍ ଲାଗ୍‌ସି ସେନ୍ତା ବାଗିର ଲଗ୍‌ତା । ହାୟ ! କେଡ଼େ ହୀନ୍ କପଲିଆ ଆଏ, ସେ ଭାବ୍‌ଲା ନିଜେଁ ନିଜେଁ । ତାର୍ ବିତିଗଲା ଦିନ୍‌ମାନେ ତାର୍ ଆଖିଁ ଆଏଜ୍ ବି ନାଚୁଛନ୍ ।

ରଘୁ ଦେଖିସି ତାର୍ ସାଙ୍ଗେଁ ପଢୁଥିଲା ପିଲାମାନ୍‌କୁଁ । ଯେନ୍‌ମାନେ ମେଟ୍ରିକ୍  ନେ ରହିଗଲେ। ସେମାନେ ଆଜିର୍ କିଏ ପଂଚେତ କି ସୁସାଇଟ୍ ସେକ୍ରେଟେରି ହଇ ଫଟଫଟି ଚଢୁଛନ୍ ନାଇଁତ ଉଆଡ଼୍‌ମେମ୍ବର ସରପଂଚ କି ରାଜନୀତି ଦଲେଁ ହି ନୀତି ନିଏ, ନିଶାପର ହୋଲ୍‌ସେଲର୍ ସାଜିଛନ୍ । ମେଟ୍ରିକ୍ ପାସ୍ କରି କଲେଜ୍ କେ ଯାଇ ନାଇଁ ପାର୍‌ଲା ସାଙ୍ଗ୍‌ମାନେ ମାଷ୍ଟର ହଇଁ ଟିଭି ଟିଭିଏସ୍ କମ୍ପାନୀ ମାନ୍‌କର୍ ଭଲ ଆସାର୍ ବଖାନୁଛନ୍ । ତାର୍ ସାଙ୍ଗେଁ ବିଏ ପାସ୍ କରିଥିଲା ହରିଜନ୍ ଆଦିବାସୀ ପିଲାମାନେ କିଏ କିରାନି ତ କିଏ ପେସ୍‌କାର ହଇ ପକ୍କା ଘର୍ କଲେ ନ । ପେସ୍‌କାର ଥିବାର ସାଙ୍ଗ୍ ପରେ ପାର୍ଟିମାନ୍‌କର ନୁ ଆଗ୍‌ତରିଆ ମାଜିଷ୍ଟ୍ରେଟ୍‌କେ ଦିଆ ଲାଗ୍‌ବା ବଲି ହଜାର୍ ହଜାର ଆନ୍‌ସି ମକ୍‌ଦମା ହାରିଗଲେଁ ଫିରେଇ ନେମି ବଲି କହିକରି । ବନ୍ଧୁ ବାନ୍ଧବ୍ ସାଙ୍ଗ୍ ସରସିଆ କାହାକେ ଛାଡ଼େଁ ନାଇଁ । ଝୁରି ଖାଏବ ତ କାଏଁସାନ୍ ବଡ଼; କୁକ୍‌ରା ଖାଏବ ତ କାଏଁ ଘିନ୍‌ଲା କାଏଁ ପୁଷ୍ଲା । ଖାଏବ ତ ସବୁ ଖାଅ ସବୁ ଏକାଟା ।

ଇ ରମାକାନ୍ତ କେ ଦେଖ, ତାର୍‌ଠାନୁ ଦୁଇ ବର୍‌ଷର୍ ଆଗୁଁ ବିଏ ପାସ୍ କରି ଉକିଲାତି ପଢ଼୍‌ଲା । ଉକିଲ ହଇ ଏ'ଦେ ବଛର୍ ଦୁଇଟାକେଁ ସହରେଁ ଘର୍ ଦୁଆର ବନେଇ ଗାଡ଼ି, ପିଁଢ଼ା କଲା ନ । ଚକ୍‌ବନ୍ଦୀ ଆର୍ ସିଲିଙ୍ଗ୍ ସାହେବ୍‌ମାନେ ତାର୍ ସାଙ୍ଗେଁ ସାଙ୍ଗ୍ ହେସନ୍ । ସିଲିଙ୍ଗ୍ ଚକବନ୍ଦୀର ଆଇନ୍ କାନୁନ୍‌ମାନେ ତାର୍ ମୁହେଁ ମୁହେଁ ଖେଲୁଥିସନ୍ । ଦୁଇ ଏକଡ଼୍ ବଅଁଚାବ ବଏଲେଁ ଏକଡ଼୍ କର ଦାମ୍ ନାଇଁ ମୁରୁଛିଲେଁ ହେବା କାଏଁ ବଲି ଡ଼ାକି ହାକି କହେସି । ଇ ସବୁକେ ଅସ୍‌କଟ୍ ଲାଗ୍‌ସି ରଘୁକେ । ଶଶି ବଲ୍‌ସି "ପଏସାଟା ପଯସା ଆଏ ; ନୀତି ନିୟମ୍, ପାପ୍ ପୁଇନ୍ ବଏଲେଁ ପଏସା ପଲାବା ଯେ କୁଦେଇ ନାଇଁ ପାର

।" ଭାବ୍‌ନାର୍ ଝାର୍ ଭିତରେଁ ରଘୁ ଗମି ଯାଇଛେ, ଫିର୍‌ବାର୍ ମନ୍ ନାଇଁ । ନାଇଁ ଫିରିଥିତା ବି ଯଦପି ଶଶି ନେ କହିଥିତା ଯେ "ବାବୁର୍ ଦେହେ ପୁଡ଼ି ଯାଉଛେ, ତାତିର୍ ସୀମା ନାଇଁ ଲିଆଫୁଟା କର୍ । ଉଷୋ କଷା କିଛି ନେ କଲେଁ କେନ୍ତା ହେବା ? କଂପାଣ୍ଡର୍ ଲେଖି ନେଇଥିଲେ କାଗଜ୍ ନେଇକରି ଯ । ଯେନ୍ତାକରି ହେଲେଁ ଉଷୋ ଆନ୍‌ଅ ।

ରଘୁ ସଥର୍ ଜୀବନ୍ କେ ଫିରି ଆଏ ଲା; ସବୁଦିନିଆ ସଂସାର୍ ସୋର୍‌କେ ଆଏଲା । ଦେଖ୍‌ଲା ପୁଓକେ କର୍, ମାଁର୍ ବି ଉଷୋ ସର୍‌ଲା ନ, ଶଶିର୍ ଶାଢ଼ୀ କେଭୁଁ ଫାଟ୍‌ଲା ନ, ଖଣ୍ଡେଏକେ ଧୁଇ ଶୁଖେଇ ପିଁ ଧୁଛେ । ଘରେଁ ତେଲ୍, ନୁନ୍, ଚିନି ଚାହା କିଛି ନାଇଁ ଆର ତାର୍ ସାଙ୍ଗେଁ ହାତେଁ ପଏସା ଟେ ବି ନାଇଁ କି ପାଏବାର୍ ବାଟ୍ ବି ନାଇଁ । ଭାବ୍‌ନା-ରାଏଜୁଁ ବାହାର୍‌ବାକେ ଚେରେଷ୍ଟା କଲା ବେଲ୍‌କେ ଦେଖ୍‌ଲା ଯେ ଚତୁର୍‌ଦିଗ୍ ବମୋର୍‌କଁଟା ସିଘ୍‌ରାଲା ଲେଖେଁ ବାଟ୍ ରୁନ୍ଧି ହଇଛନ୍ । ରଘୁର୍ ନିରାଶ୍ ମୁହେଁ ଶେଥୁଆ ରଙ୍ଗ୍ ପାଉଡ୍‌ର୍ ମେଡାଲ ଲେସି ହେବାର୍ ଦେଖିଁ ଶଶି ତାର୍ ନାକ୍‌ଫୁଟ୍‌କି ଟା, ସୁନାର୍ ପାୟନ ବୟ୍‌ଲେଁ ଯେନ୍‌ଟିକ ଖାଲି ବଅଁଚି ଥିଲା ଆନି ଧରେଇ ନେଲା । କହେଲା "ନିଅ, ବିକି ଭାଙ୍ଗି ଉଷୋ ଆନ୍‌ଅ, ହୁଆଟା ଆଗୋ ବଅଁଚୁ ।" ରଘୁର୍ ଭିତରର୍ ମୁନୁଷ୍, ତାର୍ ପୁରୁଷ ପନିଆ ହାହାକାର୍ କରି ଉଠ୍‌ଲା । ତାର୍ ନେ ପାର୍‌ଲା ମନ୍‌ଟା ଦିହ୍‌ସାରା ସର୍‌ସରେଇ ଲଙ୍ଗେଇ ଗଲା । "ନାଇଁ ନାଇଁ, ଥାଇ ଦେ, ମୁଇଁ କେନ୍‌ସି ରକମେ ଉଷୋ ଆନ୍‌ମି ନ ।" କହିଁ ଚଡାପନା ହଇ ସହର୍‌କେ ପଲାଲା ।

ସବୁଦିନର୍ ଦେଖ୍‌ଲା ସହର୍‌ଟା ଆଏଜ୍ ରଘୁକେ ନୂଆଁ ନୂଆଁ ଲାଗୁଛେ । ଇନ୍ ସେ ପଢ଼ିଶୁନି ମାକର୍ ନୁ ମୁନୁଷ୍ ହଇଛେ । ଇନର୍ ପୁଲିଆଁ, ସଡ଼କ୍, ତାର୍‌ଖମ୍, ଦଉଲ୍ ମସ୍‌ଜିଦ୍ ସବୁ ତାର୍ ଚିହ୍ନାର୍ ଜନାର୍ ତଥାପି ତାହାକେ କିହେ ନେ ଚିହ୍ନିବାର୍ ବାଗିର୍ ଲାଗୁଛି । ନିଜେଁ ସାଙ୍ଗ୍ ସାଥୀଙ୍କୁଁ ଦେଖ୍‌ଲେଁ ମୁହଁଲୁକା ଦଉଛେ । ସାଏତ୍ କିଏ ପଚରେଇ ନେବା କାଏଁ କେନ୍ତା ଅଛେ କା'ଣା କରୁଛେ ବଲି । କା'ଣା କହେବା ? ନି ପାର୍‌ଲା ପନ୍ ହୀନ୍ ମନିଆଁ ଭାବ୍ ତାର୍ ଦିହେଁ ଘୁରି ଘୁରି ଚଢ଼େଇ ନଉଛେ । ସହର୍‌କେ ତ ଆୟ୍‌ଲା ଛୁଛା ହାତେଁ, ଗୁଡ୍‌ଦୁ ହାଟ୍‌ବାଟ୍‌ର ଭାବ୍‌ନା ନେଇ । କେନ୍ ନିକେ, କାହାର୍ ଠାନ୍‌କେ ଯିବା ? ସୋର୍ କଲା ତାର୍ ପଢ଼ାସାଙ୍ଗ୍ କଏଲାସ୍ ଜୈନ୍ କେ । ସେ ଦେଖିଛେ କଏଲାସ୍ ଆଜିର ସହରର୍ ବଡ୍ ମହାଜନ୍ ଖାଲି ନୁହେଁ, ବଡ୍ ଲୋକ୍ ବି ଆଏ । ମୁନ୍‌ସିପାଲଟିର୍ ଚେଆର୍‌ମେନ୍ ହଇଛେ, ବ୍ୟବସାୟୀ ସଘର୍ ସଭାପତି, ଯୁବଲେଖକ୍ ସଘ୍‌ର ସଭାପତି, ରୋଟାରୀ କ୍ଲବ୍‌ର ସେକ୍ରେଟାରୀ, ଆର୍ କାଁ କା'ଣା । ଯେବେଁ ଦେଖ୍‌ଲେଁ ପଚାର୍‌ସି କେନ୍ତା ଅଛୁ ବଲି । "ମୋର୍ ସେବା ଲାଏକ୍ କିଛି ଥିଲେଁ କହେବୁ" ବଲି ବି କହେସି । ହେଲେଁ ସେଟା ଗୁଟେ କଥା କହେବାର୍ ସହରୀ ଫେସନ୍ ଆଏ । ସଥେଁ ସେମାନେ ସାହେଯ୍

କର୍‌ବେ କାଏଁ ବଲି ରଘୁ ମନେ ମନେ ପଚ୍‌ରାଇ 'ନାଇଁ' ଉତତର୍ ପାଏ୍ ସି, ତୁନ୍ ପର୍‌ସି । ଦୁକାନେ ସେ ଥିବା ନାଇଁ ଥିବା କେ ଜାନ୍‌ଏ ? ଗେଜେଟ୍-ମାନ୍‌କେଁ ସବୁଦିନେ ବାହାର୍ ସି, ସେ କେନ୍ ସଭାନେ ସଭାପତି, କେନ ମୁଖ୍ୟ ଅତିଥି ତ କେନ୍ ସମ୍ମାନିତ ଅତିଥି, ନାଇଁ ତ ଆୟୋଜକ ହେଲେଁ ଥିସି । ଭାବୁନ୍ ଭାବୁନ୍ ତାର୍ ଦୁକାନ୍ ନ ହାଜର ହଇଗଲା ରଘୁ । କଏଲାସ୍ ଆର୍ କା'ର ସାଙ୍ଗେ ବସି ଦୁକାନେ କଥାବାର୍ତା କରୁଛି । ରଘୁକେ ଦେଖି ଡ଼ାକ୍‌ଲା "ଆ ବୋ ! ରଘୁ, ଆ ଭିତର୍‌କେ ଆ, କେନ୍‌ଆଡ଼େଁ ଆଏଁଲୁ ?"

ରଘୁର୍ ମର୍‌ଲା ମନ୍, ମଏ୍‌ଲା ଚେହେରା, ଶୁଖିଲା ମୁହଁକେ ବନ୍‌ଏ ଘଡ଼େ ନିଘା କର୍‌ଲା କଏଲାସ୍; ବନିହାଁ ହାଟ୍‌ବାଟ୍‌ନୁ ଫିର୍‌ଲା ଅବିକ୍ରି ବଲଦ୍ ପଟେକେ ଦେଖି ଗୋରବେପାରୀ ଯେନ୍ତା ଶସ୍ତା ଥିଁ ମିଲ୍‌ବାର୍ ଆଶ୍‌କରି ନଜର୍ ଗଡ଼ାଇ ଦେଖ୍‌ସି । ସାଙ୍ଗେଁ ଥିବାର୍ ଲୋକ୍‌ଠାନେ ରଘୁକେ ଚିହ୍ନାର୍ କରାବାକେ ଯାଇ କହେଲା "ଯେ ମୋର୍ ସାଙ୍ଗ୍ ରଘୁନାଥ ମିଶ୍ର, ଏକା ସାଙ୍ଗେଁ ପଢୁଥିଲୁଁ, ଗୁଟେ ଡ଼େସ୍ ଥି ବସୁଥିଲୁଁ । ଭଲ୍ ଲେଖାଲେଖି କରି ଆମର୍ ଇସ୍‌କୁଲେଁ ନାଁ କମେଇଥିଲା ।"

ସାଙ୍ଗର୍ ଲୋକ୍‌ଟା ପଚାରାଲା "ଏଛନି କା'ଣା କରୁଛନ୍?"

କଏଲାସ୍ କହେଲା "କାଁ କର୍‌ବା? ଏଛନି ଯେନ୍ ଯୁଗ୍ ଆଏ ଚାକ୍‌ରି ବାକ୍‌ରି ମିଲ୍‌ବାର୍ ନାଇଁ, ଗାଁ ନ ଅଛେ ।"

"ତ ଆମର୍ ବ୍ୟବସାୟୀ ସାଙ୍ଗର୍ କିରାନିଟେ ଦର୍‌କାର, ରଖିନେଲେଁ?" କହେଲା ସାଙ୍ଗର୍ ଲୋକ୍‌ଟା ।

କଏଲାସ୍ କହେଲା "ସଙ୍ଘ୍ କହୁଛେ, ମାସ୍‌କ ତିନ୍‌ଶ ଟଁକାନୁ ଅଏଧିକା ନାଇଁ ଦେଇପାରେ; ଇ ନ ରହି ଜନ୍‌ଏ ତିନ୍‌ଶ ଟଁକାଥିଁ ଚଲ୍‌ବା କେନ୍ତା କରି ?" ଫେର୍ ଘାଏ ଭାବି କହେଲା "ହଉ, ମୁଇଁ ରଘୁ ସାଙ୍ଗେଁ କଥାବାର୍ତା କରି ଯେନ୍‌ଟା ଦିଶ୍‌ବା କର୍‌ମି ।

ସାଙ୍ଗର୍ ଲୋକ୍‌ଟା 'ଜରୁରି କାମ୍ ଅଛେ' କହି ପଲାଲା ।

ରଘୁ ଆଉର୍ କଏଲାସ୍ କଥାବାର୍ତା ହଇ ଛିଡ଼ାଲେ ଯେ, ରଘୁ ବ୍ୟବସାୟୀ ସଂଘର କିରାନି ହଇ ରହେବା । କୟଲାସ୍ ଘରେଁ କୁଠିଟେ ରହେବାକେ ଦେବା, ଆର୍ କୟଲାସ୍‌ର ପୁଓକେ ରଘୁ ପଢ଼ାବା, ତାର୍ ଘରେଁ ଖିଆପିଆ କର୍‌ବା । ଦୁହେ ଉଷତ୍ ହେଲେ । ରଘୁ କଏଲାସ୍ ନୁ ଟଁକା ନେଇ ତାର୍ ହାଟ୍ ବଜାର୍ ଧରି ଘର୍‌କେ ଆଏଲା । ଆରଦିନ ପଲାଇ ଆଏଲା ସହର୍‌କେ ।

ରଘୁକେ ସହର୍‌ଟା ଆଏଜ୍ ଦୁସ୍‌ରା ଦୁସ୍‌ରା ଦିଶୁଛେ । ଇ ସହରର୍ ସବୁ ଜିନିଷ ସହରାବାର୍ ଲାଏକ୍ ମେଡାଲ୍ ଦିଶୁଛେ, ହେଲେଁ ନିଜ୍‌କେ ସେ ପାସଙ୍ଗ୍ ନେ ପକେଇ

ନେ ପାର୍‌ବାର୍ । ନିଜ୍‌କେ ବନିହାଁ ଛୋଟ୍ ହୀନ୍‌ମାନ୍ ଲାଗୁଛେ । ସେ ଆଏଜ୍ କଏଲାସ୍ ଢୈନ୍‌ର ବାହାର୍ ଛାୟା ତଳେଁ ଆଶ୍ରା ନେଇଛେ । ରଠ୍ ଖରାଥିଁ ଗଛ୍ ଯେନ୍ତା ବାଟ୍ ଚଲ୍‌ତାକେ ବସିଦେସି ।

ବନିହାଁ ଦିନାକେତେ କଟିକଲା । ବ୍ୟବସାୟୀ ସଂଘ ବନ୍‌ଏ ଚଲ୍‌ଲା । କଏଲାସର୍ ପୁଓ ବୃତି ପାଏଲା । ରଘୁ ତାର୍ କବାରେଁ ସବୁବେଲେଁ ମନ୍‌ତନ୍ ଦେଇ ଲାଗିଛେ । ଦେଖ୍‌ଲା ଯେ, ସକାଲ୍ ପୁଆକେ ତାକର୍ ଗାଁଟା ସଥେଁ ଯେନ୍ତା ଉଠି ଆଉଛେ ଇ ସହର୍‌କେ । ଦଧି କେଉଁଟ୍ ମୁହିଁ ଦୁଇବସ୍ତା ଧରି ଆଏଲେଁ ରାମ ମାଲୀ ଶାଗ୍ ଭାରେ ଆର୍ ଚଟ୍‌ନି ପତର୍ ଛଟ୍‌ନ୍‌ଏ ଧରି ଆଉଛେ । ଗାଁର୍ ଗୁର୍, ଗରସ୍, ଝୁରି, ମୁରହି, ଦୂନ୍‌ଶାଗ୍ ଏନ୍ତା କି କୁକ୍‌ରା ଚିଙ୍ଗ୍‌ରାନୁ ଗାଁ ନେ ଜନମ୍ ହେଲେଁ ଭି ତାକର୍ ମରଘାଟିଟା ସହର୍ ଆଏ । ଲଛ୍‌ମନ୍ ଭାଁଡ଼ାରୀ ଛୁରା ମୁଠି ଧରି ସହରେଁ ହାଜର୍ ହେସି, ରଘୁ ଆର୍ ଶଶି ଭିତ୍‌ରେଁ ଖବର୍ ନେ ଆନ୍ କରସି । ଦିନ୍‌ଏ ଲଛ୍‌ମନ୍ କହେଲା "ମିଶିରପିଲା ! ନୀଲ ଘାସିର୍ ଝି ଲତାକେ ଦେଖିସୁ କି ନି ବୋ !"

ରଘୁ ସୋର୍ କଲା ଲତାକେ । ତାର୍ ଆଖିଁ ଗୁଟେ ସୁନ୍ଦର୍ ବର୍କସ୍ ଗୁରୀ ଟୁକେଲ୍‌ଟାକର୍ ଚେହେରା ନାଚି ଆଏଲା । ରଘୁ କହେଲା "ନାଇଁ ତ ବାବୁ ! ନେ ଦେଖିବାର୍, ଇ ସହରେଁ ଅଛେ ?"

ଲଛ୍‌ମନ୍ ହଁସି ହଁସି କହେଲା "ନୁହେଁ ଜାନ୍‌ଉ, ଇ ସହରର୍ ପିଲା ଅଜିତ୍ କଲେତ୍ କେ ଗଲା ବଛର୍ ବିହା ନାଇଁ ହଇ ? ଅଜିତ୍ କଲେତ୍, ମୁନିସିପାଲଟିର୍ ମେହେଁତର୍ ମେଟ୍ ମଧୁ କଲେତର୍ ପୁଓ । ଅଜିତ୍ ହୋ ଅଜିତ୍; ରେଡ୍ରୁ ନେ ଗାୟସି, ଆଜ୍‌କାଏଲ ପରେ ଟିଁଭି ଥି ଭି ଗାଏଲାନ । ଲତା, କାଁ କହେବୁ ଯେନ୍ ଟୁକେଲ୍‌ଟେ ଯେ ଖତ୍‌ଗାଡ଼େଁ ପଦ୍ମଫୁଲ୍ ଫୁଟ୍‌ଲା ଲେଖେଁ ଘସିଆ କୁଳେଁ ଜନମ୍ ହେଲା ସିନା, ନେ ହେଲେଁ ଦେଖିବୁ ବଏଲେଁ ଅପସରୀ ଆଏ, ଅପସରୀ ।"

"ତାର୍ କଥା କେନ୍ତା କହେସୁ, ବାରିକ୍ ଛୁଆ ! ହେନ୍ତା କ'ଣା ବନିହାଁ କିଛି କଥା ଅଛେ ଲତାର୍ ନ ?" ପଚ୍‌ରାଲା ରଘୁ ।

"ହଁ ରେ ବୁଆ ! ହେଥିର୍ ଲାଗି ତ ପଚରଉଥିଲି ତତେ;" କହି ବସ୍‌ଲା ଲଛ୍‌ମନ୍ । "ଲତାକେ ତ ବିହା ହେଲା ଅଜିତ; ଅଜିତ୍ କେ ଭି ଜାନ୍‌ବୁ ଯେ, କେ'ନ ଧୁରିଆର୍ ଲୋକ୍ ଆଏ ? ଆମର୍ ପାଲି ଗାଁର୍ ମଧୁ ଘାସିର୍ ପୋ । ମଧୁ ହୋ ମଧୁ; ଆଗୋ ଲୋକ୍ ମନ୍ଦ୍‌ଲିଆ ବଏଲେଁ ଖାଲି ମଧୁ କେ ହିଁ ବୁଝୁଥିଲେ । ହେଁ ଟୁରା ଅଜିତ୍ ବିହା ହେଲା କି ବୁଲୁବୁ ପିଇ ବସ୍‌ଲା ଯେ ପିଉଛେ ତ ପିଉଛେ । ସେ ପରେ ସଂଗୀତ୍ ବିଦ୍ୟାକେ ବିହା

ହଉଛେ, ଲତାକେ ନୁହେ । ଲତା ତାର୍ ଭାବେଁ, ଅଜିତ୍ ବୁତଲ୍ ସାଙ୍ଗେଁ । ହେଲେଁ ଅଜିତ୍‌ର ବୁଆ ମଧୁ ଭଲ୍ ଲୋକ୍ ଆଏତ, ଟୁକେଲ୍‌ଟାକେ ମୁନ୍‌ସିପାଲ୍‌ଟିନେ ଭରିନେଲା । ଲତା ଏଛନି ସୁନୁରୂପା ଦୁଇଦରବ୍ ପିଁଧିଲା କି ଆହୁରି ସୁନ୍ଦର ଆହୁରି ଲୁଭଲୁଭାନି ଦିଶୁଛେ । ଗାଁର୍ ସବୁ ବନ୍‌ଏ ଚିଜ୍ ତ ସହର୍‌କେ ଆଏଲେଁ ଯାଇ ଭାଁଜ୍ ହେସି । ଲୋକ୍ କହେସନ୍ ମୁନ୍‌ସିପାଲ୍‌ଟିର୍ ବଡ଼ ବାବୁ ... ନାଇଁ ବୁଝ୍‌ଲୁ ?" ।

ହଁ ହଁ ଥାଇଦେ ଚିପୋ, ସବୁକଥା କେତେ ଖୁଲାଖୁଲି କହେବୁ !" ବନ୍ଦ୍ କରାଲା ରଘୁ ଲଛ୍‌ମନ୍‌ର୍ କଥାର୍ ଧାର୍‌କେ । ଆର୍ ନିଜେଁ ପଶି ଉହୁଲି ଉହୁଲି ଗଲା ଭାବନା-ନଦୀର ଧାରେଁ ଧାରେଁ ଯେନ୍‌ଟା କି ଘାଉଁ-ଘାଏ୍‌କେ ବଢ଼ି ବଢ଼ି ଫୁକାରି ଉଠୁଥିଲା ।

"ଗାଁର୍ ସବୁ ଭଲ୍ ଚିଜ୍ ସହର୍‌କେ ଆୟ୍‌ଲେଁ ଯାଇ ଭାଞ୍ଜା ହେସି" କହେଲା ଲଛ୍‌ମନ୍; କେଡ଼େ ସତ୍ । ଭାବୁଥିଲା ରଘୁ "ଗାଁର୍ ସବୁ ତୁନ୍‌ଶାଗ୍ ଝୁରି, ମୁର୍ହି, ଅଣ୍ଡା, କୁକ୍‌ରା ସହର୍‌କେ ଆସି ଭାଞ୍ଜ୍ ହେବା ଆର୍ ତାର୍ ଗାଁଥି ଗଅଁଡି କର୍‌ବେ ରକତ୍‌ହୀନ୍‌ତା, ଶୋଥ୍, ସିକ୍‌ଲିଙ୍ଗ୍, ଗୋଡ଼୍‌ଜଲା ବାତ୍, ରଏତ କଣା ବେମାର୍ । ପିଲାତୀ ମାଁମାନୁକୁଁ ଗରସ୍ ପାଏ୍‌ନ୍ ନାଇଁ; କାଟ୍‌ଲେଁ ବି ଲସି ଥିପେ ନାଇଁ; ଛୁଆମାନେ ଅଦିନିଆଁ ମର୍‌ବେ; ଯଦରି ଜୀଇଁବେ ତ ପେଟ୍ ବଡ଼୍ ,ଗାଲ୍ ବଡ଼, ଆର ହାତ୍‌ଗୋଡ଼ ସପୁଁର୍ ସପୁଁର୍ ନଲି ଲେଖେଁ; ଆଏଁଖିମାନେ ଗାଲ୍‌ଲା ମଡ଼୍ ମେଡାଲ ପେଙ୍କୁଆ । ତୁନ୍ ଶାଗଭି ଝୁରି ମୁରହି ବାଗିର୍ ଦିହ୍‌ମାନେ ବଏସ୍‌ମାନେ ଚେହେରାମାନେ ବି ଆସି ସହରେଁ ଭାଞ୍ଜା ହଉଛେ ବଲି କହେଲା କାଏଁଯେ ଲଛ୍‌ମନ୍ ? ମିଛ୍ ତ ନୁହେ ତାର୍ କଥା ।" ଭାବ୍‌ନା-ନଏଦ୍ ଥିଁ ଉହୁଲୁଛେ ରଘୁ, ଗୋଡ଼୍ ହାତ୍ ପିଟୁଛେ ଖଏଣ୍ ନେ ଧରି ପାର୍‌ବାର୍ । ସୋର୍ କଲା, ଗଲା ବଛରର୍ କଥା । ତାକର୍ ଗାଁର୍ ଫୁଟ୍‌ବଲ୍ ଦଲ୍ ଖେଲି ଆଇଥିଲେ କେନ୍ ମେଚ୍‌ଟେ । ସେଥିଁ କେଉଁଟ୍ ଘରର୍ କାର୍ତିକ ବଢ଼ିଆ ଖେଲୁଥିଲା । ସହରର୍ ଲୋକ ଭି ଆଶ୍ଚିଯ୍ ହେଲେ ତାର୍ ଅକାଭୁତ୍ ଖେଲ୍ ଦେଖିଁ । ରେଫରି ହଇ ଯାଇଥିଲା ସହର୍ ଟିମର୍ ମେନେଜର୍ ରାମୁ ଅଗ୍ରୱାଲ । ଏସୁର୍ ବଢ଼େ ଦିନୁ କାର୍ତିକ କେଉଁଟ କେ ରାମୁ ତାର୍ ଗୁଡାଖୁ କାର୍‌ଖାନା ନେ କାମ୍ ଦେଇ ସହର୍ ଟିମ୍ ଥିଁ ଖେଲାଲା ନ । କାହୁ ବଢ଼ିଆ ବାର୍‌ସି, ବଟାଲି, କରତ୍, ଗିର୍‌ମିଟ୍ ଧରିସବୁଦିନେ ସହରେଁ ମୁଲ୍‌ଚାଲ୍ ହେସି, ଆର ତାର୍ ଗାଁର୍ ବଡ଼୍‌ଭାଗୀ ଘର୍ ପଡ଼୍‌ନେ ପଡ଼୍‌ନେ ହଉଛେ ।

ଆଉର୍ ନିଜେଁ ? ତାର୍ ନିଜର୍ କଥା ଭାବି ବସ୍‌ଲା ବେଲ୍‌କେ ରଘୁ ଭାବ୍‌ନା-ନଏଦର୍ କେନ୍ ଭଉଁରୀ ଥିଁ ଭିତ୍‌ରେଇ ଗଲାନ । ତାର୍ ହେଜା ଗୁଜା ନାଇଁ । କଏଲାସର୍ ପୁଓ ବୃର୍ତି ପାୟ୍‌ଲା; ଆର୍ ତାର୍ ନିଜର୍ ପୁଓ ଗାଁଥିଁ କେ'ନ କଷିଆମ୍ କଷିବୁରୋ ଲାଗି ଗଛୁଁ ହିଟି ପଡୁଛେ; କେତେବେଲେଁ ଢ଼େଁଢୁ ସାପ୍ ପଛେଁ ତ କେବେଁ କେନ୍ ମଟରର୍ ପଛେଁ ପଛେଁ ଦଉଡୁଛେ । କଏଲାସ୍ କେ ଦିନେ ସହରର୍ ଦୈନିକ ପତ୍‌ରିକାର୍ କଥେନ୍ ଲେଖକ୍

କବିତା ଲେଖକ୍ ବଲି ପୁରସ୍କାର ପାଇ ଆସି ଭେଟ୍ ହେଲେ । ଦୁହେ ଦୁହିଙ୍କର୍ ମୁହଁକେ ଦେଖାଦେଖି ହେଲେ ଖାଲି; କଥାବାର୍ତା ନାଇଁ। ଶେଷେଁ କଏଲାସ୍ ନୋଟ୍ ଗେଛେ ରଘୁକେ ଧରେଇ ନେଲା । ହେଲେଁ ରଘୁଁ କାଁ ବଲି ନେତା ? ନେଇ ନାଇଁ ପାର୍‌ଲା । ଭାବ୍‌ଲା ତାର୍ ଲେଖା ପୁରସ୍କାର ପାଏଲା, ନାଁଟା ଯାର୍ ହେଲେ କା'ଣା ଅଛେ ? କଏଲାସ୍‌ର ପଢ଼ଲା ଭାଷଣ, ମୁଖ୍ୟ ଅତିଥିର୍ ଭାଷ୍‌ମାନେ ଗେଜଟ୍‌ମାନଙ୍କେ ବାହାରୁଛେ, କେତେ ବାଃ ବାଃ କରୁଛନ୍ । ରଘୁକେ ଦେଖି କଏଲାସ୍ କିଛି କହି ନାଇଁ ପାରେ ତାର୍ ଲେଖା ଭାଷଣ୍‌ମାନେ କେତେ ବଢ଼ିଆ ହଉଛେ ବଲି । ରଘୁର୍ ଭାଷା କଏଲାସର୍ ହଇ ଯାଇଛେ । ରଘୁର୍ ମଗଜ୍-ରାଏଜେଁ କୟଲାସ୍‌ର ଜବର୍ ଦଖଲ୍ ଥାପି ହେଲା ନ । କଏଲାସ୍‌ର ମୁହେଁ ରଘୁର୍ ଭାବ୍‌ନା ରଘୁର୍ ଭାଷା ଉଦ୍‌ଗାରି ହଉଛେ । ରଘୁର୍ ପାର୍‌ଲାପନ୍ କଏଲାସନ୍ ନ ବିକ୍‌ରି ହଉଛେ । ଦଧି କେଉଁଟେର୍ ମୁହିଁ ମେତାଲ୍ କି ରାମ ମାଲୀର୍ ଶାଗ୍ ବାଗିର୍ । ଆଉର୍ ଲତାର୍ ଦିହ୍ ବଏସ୍ ବିକ୍‌ରି ହେବାର୍ ଥିଁ କାଏଁକରି ପସ୍ତାବା ? ହେ ସବୁ ତ ବିକ୍‌ରି ହଉଥିଲା, ହଉଛେ, ହଉଥିବା । ଲତାର୍ ଦିହ୍ ଭାଙ୍ଗି ହେବାର୍ ଟା ଲଛ୍‌ମନ୍ ଭଁଡ଼ାରୀକେ ଅସ୍‌କଟ୍ ଲାଗୁଛେ ତ ତାର୍ ନିଜର୍ ମନ୍, ବୁଦ୍ଧି, ଶକ୍ତି ଭାଙ୍ଗି ସେ ତାର୍ କୁଟୁମ୍ ଚଲୋଉଛେ, ସଥେଁ ଇଟା ତାହାକେ କେତେ ଅସ୍‌କଟ୍ ଲାଗୁଥିବା । ତାର୍ ମନେ ସେ କେତେ ଛିଛି ଥୁଥୁ ନେ କରୁଥିବା । ଭାବ୍‌ନା-ନଦୀରୁ ଭଉଁରୀ ଭିତ୍‌ରେଁ ଉକ୍‌ବୁକେଇ ଯାଉଛେ ରଘୁ । ଉପର୍‌କେ ଉପର୍‌କେ ଆନ୍‌ଲା ଲଛ୍‌ମନ୍‌ର କଥା...

"କା'ଣା ଗାଁ ବାବୁ ମିଶିର୍ ପିଲା। ବନିହାଁ ଭାବି ବସ୍‌ଲୁ, ମୁଇଁ ଯିମି ଏତ୍‌କେଁ । ଘରର୍ ଲୁକେ କହିଥିଲେ ଘାଏକର୍ ଲାଗି ହେଲେଁ ପରେ ଘର୍‌କେ ଯିବୁ । ବୁଢ଼ୀ କାଁ ହେଲା ଯେ ବନିହାଁ ନୁରୁଛନ୍ ।" ରଘୁ ଖାଲି ହଁ କଲା ମେତାଲ ମୁଡ୍ ହଲାଲା। ଲଛ୍‌ମନ୍ ଗାଁ ମୁହଁର ବାଟ୍ ଧଏଲା । ରଘୁର୍ ମନ୍‌ଟା କାଞ୍ଜିହାଉସର୍ ବଲଦ୍ ମେତାଲ୍ ଇ ନ ସେନ ହଉଥାଏ । ଦିନଯାକ ଇ ନଁ ସେ ନ ହଉଥିବାର୍ ମୁନୁଷ, ଜଁତ୍, ଚରେମାନେ ନିଜର୍ ନିଜର୍ ଗୁଡ଼ା ଧଏଲେ। ବେଲ୍‌ଟା ମାଁର୍ କୋଲ୍‌କେ ଯିବାର୍ ଦେଖି । ରଘୁ ଗଲା କଏଲାସର୍ ନଉକର୍ ମାନ୍‌କର୍ ରହେବାର ଲାଗି ଥିବା ତାର୍ କୁଠିକେ ।

ସକାଲ୍ ପାଏଲା । ଚରେମାନେ ଗୁଡ଼ା ଛାଡ଼ି ଆହାର୍ ଖୁଜି ବାହାର୍‌ଲେ ନା । ଗୋରୁ ଗାଏ ଭି ଢ଼ିଲା ହଇ ଚରିଗଲେ ନ । ରଘୁ ତାର୍ ସକାଲ୍‌ର କାମ ସାରି ବାହାରୁଛେ ବ୍ୟବସାୟୀ ସଘର୍ ଅଫିସ୍‌କେ । ସୁନ୍ଦର୍ ଯୁଆନ୍ ଟୁକେଲ୍‌ଟେ ଆସି ଉଲ୍‌ଗି ହେଲା । ରଘୁ ଦେଖି କହେଲା...

"ଲତା କାଏଁ ?"

"ହଁ ଦଦା !" ବଏଲା ଲତା ।

ରଘୁର୍ ମନର୍ ଆଶ୍ରିଜ୍ ଭାବଟା ଖେଳିଗଲା ମୁହଁ ଉପରେଁ । ଭାବ୍‌ଲା ସାଥେଁ କେଡ଼େ ସୁନ୍ଦର୍ ତାର୍ ଗାଁଅଁର୍ ଇ ଘଁସିଏନ୍ ଟୁକେଲ୍‌ଟା । କେଭେଁ ନାଇଁ, ଆଏଜ୍ କେନ୍ତା ଆସି ଲତା ତାହାକେ ଉଲ୍‌ଗି ହେଲା ।

ରଘୁ ପଚ୍‌ରାଲା - "କେନ୍ତା ରେ ନୁନୀ ! କେନ୍ ଆଡ଼େଁ ଆଏ ଲୁ?" "ମୁଇଁ ସବୁଦିନେ ଇ ଚେଆର୍‌ମେନ୍ ଘର୍‌କେ ବର୍ନହା ବର୍ନହି କରି ଆଏ ସିଁ ଦଦା ! କେଭେଁ ଦମ୍ ନାଇଁ ଲାଗେ ଭେଟ୍ ହେବାକେ ।" କହେଲା ଲତା ।

"ଆଏଜ୍ ସେ କେନ୍ତା ଦମ୍ କଲୁ !" ପଚରାଲା ରଘୁ ।

"କାଏଲ୍ ଭଁଡ଼ାରୀ ଘରର୍ କକା କହେଲା ତ, ତୋର୍ ସାଙ୍ଗେଁ କେନ୍ତା ଭେଟ୍ ନାଇଁ ହଉ ବଲି ।" କହେଲା ଲତା ବନିହାଁ ସରଲ୍ ଆର୍ ପର୍ଷ୍ଟା ସହଜ୍ ଢ଼ଙ୍ଗ୍ ଥିଁ ।

କଥାବାର୍ତା ଚାଲ୍‌ଲା । ଗୁଟେ ଗାଁର୍ ଦୁଇଜନ୍ ବାହାରେଁ ଭେଟ୍ ପର୍‌ଲେଁ ଦୁହେ ଦୁହିଙ୍କୁଁ କେତେ ନିଜର୍ ଲାଗସନ୍; ଭାବୁଥିଲା ରଘୁ । ଲତାକେ ପଚରଉନ୍ ପଚରଉନ୍ ତାର୍ ନିଜର୍ କଥା ପଚରେଇ ନେଲା ରଘୁ ।

ଲତା କହି ଚାଲ୍‌ଲା ଟିକେ ବି ଆଡ୍ ଉହାଡ୍ ନେ ରଖୁଁ । ସବୁ ତାର୍ ନିଜର୍ କଥା, ତାର୍ ବରର୍ କଥା, ତାର୍ ଶାଶ୍ ଶଶୁରର୍ କଥା । ସତେଁ ଯେନ୍ତା କି ନଦୀର୍ ବାଏଲ୍‌କେ ଇଁଚରେଇ ନେଲେ ସଫା ନିର୍ମଲ୍ ପାଏନ୍ ଉପ୍‌ଜି କି ଛଲ୍‌କି ଯାଏସି । ଲତା କହେଲା ଗୋଟ୍ ଗୋଟ୍ କରି କେନ୍ତା ତାର୍ ମୁନୁଷ୍ ଅଙ୍ଗିତ୍ ମଦ୍ ପାଏନଥି ମାତି ସବୁ ପାଶରି ନେଇଥିଲା । ଲତାକେ ପିଟୁଥିଲା ମାରୁଥିଲା । ତାର୍ ଶାଶ୍ ଶଶୁର୍ କେନ୍ତା ଲତାକେ ଭୁର୍ତାବାକେ ଆୟ ଅଲଙ୍କାର୍, ଆଉର୍ ବନ୍‌ଏ ବନ୍‌ଏ ଶାଢ଼ୀ ବ୍ଲାଉଜ୍ ଆନି ନଉଥିଲେ । ସେ ସାଜୋ ସେ ଦାମୀ ଶାଢ଼ୀ ଦେଖି ଲୋକ କେନ୍ତା ଲତାକେ ବଦ୍‌ନାମିର୍ ବାଏଲ ଧୂଏଲ୍ ଥିଁ ପାଟି ନଉଥିଲେ । "ସେ ବଦ୍‌ନାମ୍, ସେ ନିନ୍ଦା କାଁ ବଲି ସହେବୁ ଦଦା ? ବୁଡ଼ି ଉଟ୍‌କି ହଇ ମରିଯା ବାଗିର୍ ଲାଗେଁ ।" କହି ଲତାର୍ ଆଙ୍କୁଁ ଲହ ଦରୋ ଦରୋ ବୁହିଗଲା ରଘୁ ମନାକଲା ଆଉର୍ କିଛି କହେବାକେ । ହେଲେଁ ଲତା କେ'ନ ମାନୁଛେ । ଆଖିର ପାଏନ୍ ତାର୍ ସମଲ୍‌ପୁରୀ ଶାଢ଼ୀର୍ ପନତେଁ ପୁଛି ଆନି ଏଛନିର୍ ହାଲ୍ ହିସାବ୍ ଯେତେବେଳେଁ କହେଲା ଲତାର୍ ମୁହେଁ କେତେ ସୁଖ୍ କେତେ ଉଷତର୍ ଧାସ୍ ଝଲ୍‌କି ଉଠ୍‌ଲା ।

"ଏଛନି ଦଦା ! ତୋର୍ ବୁହେନ୍ ଜୁଏଁକେ ଦେଖ୍‌ବୁ ବଏଲେଁ କାହିଁ କହେବୁ ଯେ ଇ ମୁନୁଷ୍‌ଟା ଏତେ ତଲ୍‌କେ ଖସ୍‌ରି ଯାଇଥିଲା । ମଦ୍ ପାଏନ୍ କଥା ଛାଡ୍ ଭାଙ୍ଗ୍‌କି ଗୁଡ଼ାଖୁ ଦେଖ୍‌ଲେଁ ବି ଛି ଛି ଥୁଥୁ କରୁଛନ୍ । ଘାଏ ବି ପାଖୁଁ ଅନ୍ତର୍ ନାଇଁ; ଲତା ଲତା ହଉଛନ୍

ନ । ସେତେବେଳେ ଯେନ୍ ଧରମ୍ ଦେବ୍‌ତାକେ ସାକ୍ଷୀ ଦେଇ କହୁଥିଲି- 'ଯେ ଉଦୁଛେ ବୁଡୁଛେ ସେ ଜାନ୍‌ବା; ଯଦ୍‌ରି ମୁଇଁ ଦୁଶେଁ ଗୁନ୍‌ହେଁ ଥିମି; ଯଦ୍‌ପି ମୁଇଁ ବାଟ୍ ଛାଡ଼ି ଇବାଟେଁ ଚାଲିଥିମି ତ ମୁଇଁ ଧରମ୍ ଘରେଁ ସଜାୟ ପାଏମି; ନେ ହେଲେଁ ମୋର୍ ମୁନୁଷ୍ ଫେର୍ ମୋର୍ ପନତ୍ ତଳ୍‌କେ ଘୁଚି ଆସ୍‌ବା', ଆଜିର୍ ସେ କଥାଟା ଘଟ୍‌ଲା । ମୋର୍ ଡ଼ାକ୍ ଧରମ୍ ଦେବତା ଶୁନ୍‌ଲା ।"

ଲତାର୍ ଇ କଥାମାନେ ରଘୁର୍ ଠାନେ ଲତାକେ କେତେ ଉପର୍‌କେ ଉଠେଇ ନେଲା ଯେ ରଘୁ ବି ଥାବ୍ ନାଇଁ ପାଏବାର୍ । ଲଛମନ୍ ଭଁଡ଼ାରୀ ତାର୍ ମନ୍ ଭିତରେଁ ଲତାର୍ ଯେନ୍ ଅଟଲ୍‌ନିଏନ୍ ଅପନ୍ତରା ଅପନ୍ତରା ଟୁକେଲ୍‌ଟାକର୍ ପୁତ୍‌ଲା ଲେଖିଦେଲା ସେଟା ଆପେଁ ଆପ୍ ମେଟିଁ ଯାଇ ଗୁଟେ ନୂଆଁ ପୁତ୍‌ଲା ଉଭାଗର୍ ହଇ ଆସୁଥିଲା ।ସେଟା ସୀତା ସାବ୍‌ତିରୀର୍ ପୁତ୍‌ଲା ଲେଖେଁ ଦିଶୁଥିଲା ରଘୁକେ ।

"ମୁଇଁ ଯାଏ ସିଁ ଦଦା !" କହି ଲତା ଯିବାର୍‌କେ ବାହାରୁନ୍ ବାହାରୁନ୍ କହେଲା "ସେ ମତେ ମୁନ୍‌ସିପାଲ୍‌ଟି ଅଫିସ୍ ପାଖେଁ ଟାକି ଥିବେ, ଇ ମାସର୍ ପଏସା ମିଲ୍‌ଲା କି ଗାଁଆଁକେ ଯିମା ବଲୁଛନ୍ । କାଁ କା'ଣା ହାଟ୍‌ବାଟ୍ କର୍‌ମୁ; ଆର୍ ଇ ସହରେଁ ରହେବାକେ ସେ ମନ୍ ନାଇଁ କର୍‌ବାର୍ ତ ।"

ରଘୁର୍ ମନେ ବନ୍‌ଏ ଆଶ୍ଚିଯ୍ ଭାବ୍‌ଟେ ଖେଲିଗଲା । କେନ୍ତା ଇମାନେ ସହର୍-ଜୀବନ୍ କେ ବାଆନି ବସୁଛନ୍ ବଲି; ଲତାର୍ ହର୍‌ବର୍ ଦେଖି ଆର୍ କିଛି ନେ ପଚରେଇ ସେ ନିଜେଁ ବି ବ୍ୟବସାୟୀ ସଂଘର୍ ଅଫିସ୍ ଆଡ଼୍‌କେ ବାହାର୍‌ଲା । ମନର୍ ଗଛେଁ ଲତା ଟା ଏନ୍ତା ଲଟେଇଁ ଯାଇଛେ ଯେ ସେ ଆର୍ ହିଟେଇ ନାଇଁ ପାର୍‌ବାର୍ । ଲତାର୍ ସେ 'ଦଦା' ଡ଼ାକେଁ କାଏଁ ରସ୍ ସାନି ହଇଥିଲା ଯେ, କାନେ ପଶି ମନେ ସର୍‌ଡ଼ାଇ ହଇଛେ ଛାଡ଼ି ନାଇଁ ହେବାର୍ । ସତେଁ ଗାଁର୍ ଇ ମାଏନ୍ ଦାଏନ୍ ଲାଗର୍ ଲେଖର୍ ହେଲେଁ ଭି କେତେ ସତର୍ ମେତାଲ୍ ଲାଗ୍‌ସି । ବନୋଟିରି ନାଁ ଗନ୍ଧ ନାଇଁ ଥାଏ । ହେଁ ସବୁ ସହରେଁ ନୁର୍‌ଲେଁ କେନ ମିଲ୍‌ବା ? ବ୍ୟବସାୟୀ ସଙ୍ଘର୍ ଅଫିସ୍ ନୁ ମୁନ୍‌ସିପାଲ୍‌ଟି ଅଫିସ୍‌କେ ଯାଉଥିଲା ରଘୁ ।

ବସ୍‌ଷ୍ଟେଣ୍ଡ ପାଖେଁ ଗୁଟେ ଭିଡ୍ ଉପର୍‌କେ ଦଉଡ଼ି ଆଉଥିଲା ଲତା, ହାତେଁ ଲମ୍ଵା ବାଡ଼ି ଲାଗିଥିବା ଗୁଟେ ନାଲି ସଫା କରବାର୍ ବ୍ରୁସ୍, ମୁହଁ ରିଶ୍‌ମି ଥିଁ ଲାଲ୍ ଜର୍‌ଜର୍ । ରଘୁର୍ ମନ୍ ଭିତରର୍ ସୀତା ସାବ୍‌ତିରିର୍ ରୂପର୍ ଲତା, ବାହାରେଁ ମହିଷା ମର୍ଦ୍ଦିନୀ ରୁପ୍ ନେଇ ଦଉଡ୍‌ଛେ । ରଘୁ ବୁଝି ନେ ପାର୍‌ବାର୍, ସତ୍ ଆଏ୍ କି ସପନ୍ ଆଏ । ଲତା କିର୍ଲୋଉଛେ "ଇ ରଇଖିଏ, ଇ ଗାଡ଼୍‌ଶୁଏ ମାରି ପକଉଛନ୍ ରେ ମୋର୍ ଗାଆଁର ଲୋକ୍ କେ ।" ଦଉଡ଼ି ଯାଇ ବ୍ରୁସ୍‌ର ଲମ୍ଵା ବାଡ଼ିକେ ଭିଡ୍ ଭିତରେଁ କିନ୍ଦ୍ରୋଉଛେ । ଭିଡ୍ ଭଙ୍ଗ୍‌କଲା

ଭାଙ୍ଗିଗଲା । ପହୁଁଚିଛେ ରଘୁ ଆର୍ ଉଙ୍ଗିଆ ଆଡୁ ଅଜିତ୍ । ପାଶେଁ ଶିକାଭାର୍ ଟେ ଆର୍ ଦୁଇଟା ଖାଲି ବସ୍ତା । ବୁଝୁନ୍ ବୁଝୁନ୍ ଜନା ପର୍ଲା ଯେ, ଶୁକ୍ରୁ କଲମି ଆମ୍ ବିକି ଆନିଥିଲା । ଭାଙ୍ଗ ପଟେଇ ସଭେ ଆମ୍ ନେଲେ; ପଏସା ଗୁଠେ ନାଇଁ ସଭେ ଇଆଡ଼୍ ସେଆଡ଼୍ ପଲାଲେ । ଦୁଇଜନ୍‌କୁଁ ଧଏଲା, ଛାଡ଼୍‌ଲା ନାଇଁ । ତେତ୍‌କେଁ ତାର୍ ଉପରେ ପଡ଼୍‌ଲା ମାର୍ । ସେ ମାରର ସୀମା ନାଇଁ, ହେଜାଲେଖା ନାଇଁ; ଶୁକ୍ରୁ କାଁ କର୍‌ତା ? ଗୁହୁଡ଼େ ଲୁକର୍ ବିଧା ଥାପଡ଼୍, ଲାତ୍, ହୁଦା ଖାଇଁ ଅଚେତ୍ ହଇଁ ପଡ଼ିନେଲା ବେଲ୍‌କେ ଲତା ପହୁଁଚିଥିଲା । ଘାଉଁ ଘାଏକେ କଥା ଯାଜି ହେଲା ଆର୍ ଲଛମନ୍ ନୁ ମୁଲ୍ କରି ରାମ ମାଲୀ, ଦଧି କେଉଁଟ୍, ଅଜିତ୍, ରଘୁ, ସଭେ ପହୁଁଚିଲେ । ଶୁକ୍ରୁର୍ ହୋସ୍ ନାଇଁ । ରଘୁ ଆର୍ ଲତା ରିକ୍‌ସା କରି ଶୁକ୍ରୁକେ ଡ଼ାକ୍ତରଖାନା ନେଲେ । ଡ଼ାକ୍ତର ଦେଖାଦେଖି କରି ଉଷୋ ଇଂଜେକ୍‌ସନ୍ କରି ବସ୍‌ଲେ । କହେଲେ, ବନ୍‌ଏ ମାଡ୍ ହଇଛେ, ହୋସ୍ ଆସ୍‌ଲେଁ ଯାଇ ପଛେଁ ଯାହା କରି ହେବା । ବାକି ଲୁକେ କିହେ ଝମେଲା ନାଇଁ କର । ରୁଗୀର୍ ପାଖଉଁ ଅଲଗାଇ ହ ।

ସଭେ ଯାଇ ଡ଼ାକ୍ତରଖାନାର୍ ବାହାରେଁ ମୁହଁମାନ ଉଲ୍‌ମେଇଁ ବସିଛନ୍ । ଲତାର୍ ମୁହଁଟା ଖାଲି ରାଗେଁ ତମ୍‌ତମଉଛେ; ସତେ ଆଜିର୍ ଗାଁଆଁଟା ଲତାର୍ ରୂପ ନେଇ ନିଜର୍ ଭିତରର୍ ରିଶ୍‌ମି ଉଦ୍‌ଗାରି ପକଉଛେ । ଅଜିତ୍ ଆର୍ ରଘୁ ଚିହ୍ନାର୍ ଜନାର୍ ହଇଁ କଥାବାର୍ତା ହେଲେ । ଦୁହେ ଦୁହିକର୍ ଆଡ଼୍‌କେ ଭିତରେଁ ଭିତ୍‌ରେଁ ଟାନି ହେଲେ ନ । କଥାର୍ ସୁରେଁ ଅଜିତ୍‌ର ମନର୍ ଭାବ୍ ତାର୍ ସୁଖେଁ ମୁହଁ ଦେଖାଲା ।

ଅଜିତ୍ କହୁଥିଲା "ଇ ସହର୍ ମାନ୍‌କେଁ ଦାଦା ! ସବୁ ଘିନାବିକା । ଘିନାବିକା ଛଡ଼ା ଇନ୍ ଆଉର୍ କିଛି ନାଇଁନ । ମୁର୍ହି କେତେ ନେବୁ ? ଝୁରିର୍ କେଜି କେତେ ? ବଢ଼ିଆ ! ଦିନକ୍ କେତେ ନେସୁ ? ଭଁଡ଼ାରୀ ତୋର୍ ଛଅର୍ କରା କେତେ, ବାଲ୍‌କଟା କେତେ ପର୍‌ସି ? ଗାନାବାଲା ! ତୋର୍ ଗୀତଟାକେଁ କେତେ ପାଏସୁ ? ତୋର୍ ଗଳାର୍ ଦାମ୍ କେତେ ? ଲେଖକ୍ ତୁଇଁ କେତେ ପାଏଲେଁ ମୋର୍ ଲାଗି ଲେଖି ନେବୁ ? ନିଜର୍ ଜିନିଷ ବିକି ବିକି ମହାପୁରୁ ଦେ'ନ୍ କେ ଭି ଇନ୍ ବିକ୍‌ଲେଁ ଯାଇ ବଅଁଚି ହେବା । ଏନ୍ତା ବଅଁଚିବାର୍‌ଟା ମର୍‌ବାର୍ ଠାନୁ ବି ମତେ ହୀନ୍ ବାଗିର ଲାଗ୍‌ସି; ତମେ ମତେ ଯାହା ବଲ । ମୁଇଁ ତ ଠିକ୍ କରିଛେଁ ଗାଆଁ କେ ପଲାମି, ସେନୁ ଭୁକେଁ ବି ଜୀଇଁ ହେବା, ଇନ୍ ଅଏସ୍ ଥି ଭି ମରି ନେ ହଏ । ମୁଇଁ ଭାବୁଛେଁ ଗାଁ ମାଁର୍ ଲଗତିଆ ହଇ ମନେଁ ଶାନ୍ତି ନାଇଁ ମିଲେ । ମୁଇଁ ଯେନ୍ ଗାଁଆର୍ ପାଏନ୍ ପବନ୍ ମାଏଟ ଉଜାଲା ନେଇ ଇ ଦିହ୍‌ଟାକ ଇ ଜୀବନ୍‌ଟାକ ପାଇଛେଁ, ସେ ଜୀବନ୍ ସେ ମନ୍‌ଟାକେ କେନ୍‌ସି ଭି କାମେ ଲଗେଇ ନେ ପାର୍‌ଲେଁ ସେ ଜୀଇଁବାର୍‌ଟା କେତେ ହୀନ୍‌ମାନ କେତେ ନଦାରଦ୍ ହେବା ଦଦା !"

ରଘୁ ଅଜିତ୍‌ର କଥା ସବୁ ପିଇ ଯାଉଥିଲା ସତେଁ । ଭାବୁଥିଲା ଅଜିତ୍ କେତେ ବଡ଼୍ କେତେ ଉଚା ତାର୍ ଭାବ୍‌ନା ? କେଡ଼େ ନିର୍ମଳ୍ ତାର୍ ମନ୍ ? ଏନ୍ତା ଯଦି ଆମର୍ ଦେଶର୍ ଷହେ ନୁ ଅଶୀ ଭାଗ୍ ବଏଲେଁ ଅଶୀ କୋଟିନୁ ଚଉଷଠି କୋଟି ଲୁକ୍‌କର ମନେ ଅଜିତ୍‌ର ଚାଏର ଅନୀଟେ ବି ଭାବ୍‌ନା ଆଏ ତା ତ ଆଜିର୍ ଇ ଦେଶ୍ ସରଗ୍ ପାଲ୍‌ଟି ଯାଏତା । ଗାଁ ମାନେ ହତ୍‌ଶିରୀ ହଇ ଛିନା ହଅତେଇ୍ ନାଇଁ ଯାୟ୍‌ତା । ଦେଶର୍ କଲ୍‌ଜା ଥିଁ ପୋକ୍ ଚରୁଛନ୍ ତ ଦେଶ୍‌ର ଚେହେରା କା'ଣା ଫୁଟ୍‌ବା ? ଇ ଅଜିତ୍ ମେତାଲ୍ ମହାନ୍ ଲୋକ୍ ମଦର୍ ନିଶା ଭିତ୍‌ରେଁ ଡୁବି ରହିଥିଲା । ଇ ଦେଶର୍ ଲାଖ୍ ଲାଖ୍ ଲୋକ୍ ତାର୍ ବାଗିର୍ ଡୁବି ରହିଛନ୍ ନିଜ୍‌କେ ପାଶ୍‌ରି ସଂସାର ପାଶ୍‌ରି ପକଉଛନ୍ । ସେଥିଁ ସାହେଜ୍ ଅଛେ ଇ ଦେଶର୍ ସବୁ ଦଲର୍ ଶାସନ୍ କଲର୍ ।

କେଡ଼େ ଖରାପ୍ କେତେ ଅସ୍‌କଟ୍ କରି କହିଥିଲା ଲଛ୍‌ମନ୍ ଅଜିତ୍‌ର ନାଆଁ ଥିଁ । ମୁଇଁ ବି ଶୁନ୍‌ଲା କଥାକେ ସତ୍ କରି ଗଁଠେଇ ପକେଇଥିଲିଁ । ଅଜିତର୍ ନେ ଦେଖ୍‌ଲା ମୂର୍ତିକେ କେତେ ଛିଛି ଥୁଥୁ କରିଛେଁ । ମାରି ପିଟି ହଇ ମରି ଯା ମେତାଲ୍ ଲାଗ୍‌ସି ସୁରତା କଲେଁ । ଭଁଡ଼ାରୀ ପିଲାର୍ ହେଲେଁ କାଏଁ ଦୋଷ୍ ? ସେତ୍‌କି ବେଲେଁ ସେ'ଟା ସତ୍ ବି ଥିଲା । ହେଲେଁ ଲତା ବୁଡ଼୍‌ଲା ଅଜିତ୍‌କେ ଢୁଏ ଭିତରର୍ ସୁନା ବାଗିର କରି ଘିଚି ଆନିଥିଲା । ଲତା ପୁରାନ୍‌ର୍ 'ଶିବା' ଆଏ, ଯେ ନାଇଁଥିଲେଁ 'ଶିବ୍' ଭି 'ଶବ' ହଇ ଯାଏସନ୍ । ରାମେଣର୍ 'ସୀତା' ଆୟ୍, ଯାର୍ ଠାନେ ରାମ୍ ପର୍ଚ୍ଛା ସଁପି ହଇଥିସନ୍ ଏକ୍ ହଇଥିସନ୍ । ଅଗବା ରାମ୍ ହଇ ନାଇଁ ରହିପାରନ୍, ସୀତାରାମ୍ ହେବାର୍‌କେ ପଡ଼୍‌ସି । ଲତା ଘାଏକେ ଘାଏ, ବୁଝି ଆଉଛେ ଶୁକ୍ରୁର ସୋର୍ ନାଇଁ ଆଏବାର୍ ତ ତାର୍ ମନ୍‌ଟା ବିତାପୋର ହଇଯାଉଛେ । ତାହାକେ ସାମ୍‌ନା କର୍‌ବାକେ କାହାରିର୍ ଦମ୍ ନାଇଁ । ବନିହାଁ ଗୁମ୍ ହଇଁ ବସି ଥିବାର୍ ଦେଖି ରଘୁକେ ପଚାରଲା ଲତା "କାଁ ହେଲା ଦଦା ! କେନ୍ ରାଏଜକେ ପଲେଇ ଗଲୁ ?"

ଟିକେ ଚମ୍‌କିଲା ବାଗିର୍ ହଇ ରଘୁ କହେଲା "ହଁରେ ନୁନୀ ! ଅଜିତ୍ ଆଏଜ ଗୁଟେ ନୂଆଁ ରାଏଜକେ ନେଇଗଲେ ତ, ବାଟ୍‌ଘାଟ୍ ନାଇଁ ପାଏବାର୍ ଫିର୍‌ବାକେ ।"

ସାଙ୍ଗେଁ ସାଙ୍ଗେଁ ଅଜିତ୍ କହି ପକାଲା "ହଁ ତମର୍ ବହେନ୍‌କେ କହ ଦଦା ! ହେ ଠିକ୍ ଜାନିଛେ, ବାଟ୍ ବତେଇ ନେବା । ମତେ ତ କେତେଁ ନେ ଫିର୍‌ବାର୍ ରାଏଜୁଁ ଫିରେଇ ଆନିଛେ, ତମ୍‌କୁଁ ଭି ଫିର୍‌ବାକେ ବେଲ୍ ନାଇଁ ଲାଗେ ।" ଲତାର୍ ମୁହେଁ ଟିକେ ଟଏନ୍ ଚଢ଼୍‌ଲା । ଚଣେଁ ଟିକେ ହଁସିର୍ ଝଲକ୍ ଖେଲେଇ କହେଲା -

"ମୁଇଁ କାଏଁ ବାଟ୍‌ଘାଟ୍ ଜାନ୍‌ମି ଗୋ ମା ! ମୁଇଁ ନାଲୀ ନର୍ଦ୍ଦମା, ପାଇଖାନା ସଫା କର୍‌ବାର୍ ଲୋକ୍ । ନାଲୀ ନର୍ଦ୍ଦମା ଥିଁ ବନ୍‌ଏ ଜିନିଷ୍ ପଡ଼ିଥିଲେଁ ଫିକି ହେସି କାଏ ? ଛାନି ଆନି ଉପ୍‌ରେ ଥୁଇ ନେସିଁ ।"

ଅଜିତ୍ ଟିକେ ଲଜାଲା ଲେଖେଁ କହେଲା 'ସତେଁ ଦାଦା ! ମୁଇଁ ନାଲୀ ନର୍ଦ୍ଦମା କା'ଣା ଆହୁରି ଖରାପ୍ ଠାନେ ପଡ଼ିଥିଲିଁ ।"

ରଘୁ କହେଲା "ଲତା ! ଇ ସହରକେ ସଫା କରି କରି ତୋର୍ ହାତ୍‌ଟା ବନ୍‌ଏ ହାତ୍ ସଫେଇ ଶିଖି ସାଏଲା ନ ।"

"କାଏଁ ହାତ୍ ସଫେଇ କର୍‌ବୁ ଦାଦା !" ଲତା ଅଜିତ୍‌ର ଦିହେଁ ଘେଁସ୍‌ରେଇ ହଇ ବସି କହେଲା "ଇ ସହର୍‌ର ବାହାରକେ ଯେତେ ସଫା କଲେଁ କାଁ ହେବା ? ତାର୍ ଭିତର୍‌ଟା ଯେତେ ମଏଲା ଯେତେ ଦୁର୍‌ଗନ୍ଧ ଯେ ସେ'ଟା ସଫା ହଇ ନାଇଁ ପାରେ । ସେ ନ ଖାଲି ପରର୍ ଜିନିଷ୍‌କେ ଲୋଭ୍ । କିହେ ଖରାକେ ଶୀତ୍ ବର୍ଷାକେ ଘରୁଁ ନେ ବାହାର୍‌ତେ, ପଁଖା ତଲେଁ ବସି ଚାଉଲ କିଲୋ ଟଁକାକେଁ ଝୁରି ମୁର୍ହିସବୁ ଶସ୍ତା ଥି ଆର୍ ସଜ୍ ପାଏଲେଁ ଲୁଟିକରି ହୁରିଜୁରି କରି ପରହର କମାନିକେ ଗେଫ୍‌ଲାତେ । ହେ ମଏଲା କେ କିଏ ସଫା କରବା ? ହେ ଜାଗା ନ କେନ୍ ଝାଡୁ କେନ୍ ବୁରୁସ୍ ଚଲ୍‌ବା ?

ରଘୁ କହେଲା "ତୁଇଁ ବି ଇ ସହରେଁ ଉକ୍‌ବୁକେଇ ଗଲୁନ କାଏଁ ହେଲେ ଗାଁଥି ଚଲ୍‌ବ କେନ୍ତା କରି ?"

ଟିଖେ ବି ନାଇଁ ଟାକି କରି ଅଜିତ୍ କହି ପକାଲା "ବାପ୍ ଅଜା ଚଉଦ୍ ପୁରୁଷ କେନ୍ତା ଚଲୁଥିଲେ ଦଦା !? କମାନୀ କୁଠାନିର୍ କଥା କହୁଛ ତା ମୋର୍ ବାପ୍ ଅଜାର୍ ବେଉସା ମାନ୍ଦଲ୍ ମୁର୍ଦୁଙ୍ଗ୍ ଢୋଲ୍ ନିଶାନ୍ ତବଲା ମର୍ଦ୍ଦଲ୍ ବନା କରା ସଜା ସଜିଥିଁ ଭି ଜୀଇଁହେବା । ଖାଏ ବା କେ ନାଇଁ ଖଙ୍ଗେ । ଖାଏବାର୍ ମୁଠାକ୍ ହେଲେଁ ଗାଁର୍ ପିଲାକୁଁ ଶିଖାବାକେ ଗାଏବାର୍ ବଜାବାର୍ ଗୁଟେ ବେବସ୍ଥା କରିହେବା । ସବୁ ନୁ ବଡ଼୍ କଥାଟେ ଭାବୁଛେଁ ଦଦା ! ତମର୍ ମନ୍ କେ କେନ୍ତା ଆଏ ବା ଯେ ";

"କା'ଣା କହ" ପଚାରଲା ରଘୁ ।

"ଆଝିର୍ ସମଲପୁରୀ ଗୀତ୍ ବାଏଦର୍ ଯେନ୍ ଆଦର୍‌ଟା ବଢୁଛେ ସେଥିଁ କେତେ ଭାଗ୍ ଆମର୍ ନିଜର୍ ସୋର୍ ଶବଦ୍ ଅଛେ ? ନିଘା କରିଛ ଦଦା ?" ବନିହାଁ ଭାବିଚିନ୍ତି କରି ବନ୍‌ଏ ଗହେଗୁଁ କହେଲା ଅଜିତ୍ । ରଘୁର୍ ଉ ରକେ ନାଇଁ ଟାକି କରି ଫେର୍ କହି ବସ୍‌ଲା - ଇଥିଁ ଆଜିର୍ କେନ୍ ସିନେମା ସୋର୍, କେନ୍ ଉଡ଼ିଆ ଚଉପଦୀର୍ ସୋର୍, କାଁ କା'ଣା ମିଶେଇ କରି ଘାଁଟି ପକାଲେ ଯେ ଆମର୍ ନଜର୍‌ଟା କେନ୍ ଆର୍ ପରହର୍‌ଟା କେନ୍‌ଟା ବାଆରି ନାଇଁ ହେବାର୍ । ମୁଇଁ ଟିକେ ଚେରେଷ୍ଟା କରତିଁ ବଲିଁ ଭାବୁଛେଁ ଗୁଟେ ନିରୋଲ୍ ସମଲପୁରୀ ସଂଗୀତ୍ ନିଥିରେଇ ଆନ୍‌ବାକେ ।"

ହଁସି ପକଇ କହେଲା ଲତା "ବନ୍‌ଏ ଅସାର୍ ବାଛି ବାଛି ପର୍ଛା ଶୂଇନ୍ ନେ କରି ନିଅ ତ ?"

ରଘୁ କହେଲା "ଗାଁ କେ ଗଲେଁ ଯାହା ଦିଶ୍‌ବା କର୍‌ବ । ଆଗ୍ରୁଁ ଏତେ ଭାକୁର୍ କୁଟ୍‌ଣ ବନ୍‌ଏ ନୁହେ ?"

ଲଛ୍‌ମନ୍ ଇ ସବୁ ଶୁନି ଶୁନି କହେଲା "ହେଁ ସବୁ ମୋର୍ ମୁଡ଼୍‌କେ ନେ ଢୁକ୍‌ବାର; ଖାଲି ଗୁଟେ କଥା ମତେ ଦିଶୁଛେ ଯେ ଆମେ ଗାଁ ସାରା ବାଗିର୍ ସହର୍‌କେ ଉଠି ଆସି ଇନର୍ ସେବା କରୁଛୁଁ । ଯେନ୍ ଦୁଇ ପଏସା ପାଉଛୁଁ କେତେ ଗାଁକେ ନେସୁଁ ? କିଏ ଚାହା ପକଡ଼ି ଢୁକାନେ, କିଏ ମଦ୍ ଭାଟି ଥିଁ ତ କିଏ ସଟା ନ ଦେଇନେଇ ନଙ୍ଗ୍‌ଲା ହଇଁ ଘରକେ ଯାଏସୁଁ । ସହର୍ ଆମ୍‌କୁଁ ଦେସି ବଦ୍‌ଲା ନେ ମାର୍ ଗାଏଲ ଛିଛି ଥୁଥୁ ଭାବ୍‌ନା । ଆଜି ଶୁକୁ ମାର୍ ନାଇଁ ଖାଇ; ଇ ମାର୍ ପରିଛେ ଗାଁକେ, ଶହେ ନୁ ଅଶୀ ଲୁକ୍‌କୁଁ କୁଡ଼େ ଲୋକ୍ ଆଏଜ୍ କୁରଡ଼ାଥିଁ ବୁଲେଇ ବୁଲେଇ ପିଟୁଛନ୍ ।"

ରଘୁ ଠହରି ନାଇଁ ପାରି କହେଲା "ରାଜନୀତିର୍ ଲୋକ୍ କହୁଛନ୍ ଦେଶର୍ ଖର୍ଚ୍ଚା ବି ଦେଖ୍‌ଲେଁ ଗାଁଥି କମ୍ ସହରେଁ ବେଶୀ ଖର୍ଚ୍ଚା ହଉଛେ ।"

ଲଛ୍‌ମନ୍ କହେଲା "ଗାଁକେ ଚେତୋବାକେ ପଡ଼୍‌ବା, ଜାଆଁବାକେ ପଡ଼୍‌ବା । ଗାଁର୍ ଲୁକ୍‌କୁଁ ରୁଢ଼ିଆ ରଖି ସହର୍‌କେ ଚିକନ୍ କରି ଆର୍ ମୁଇଁ ନାଇଁ ଆସେଁ ; ନାଇଁ ଆସେଁ ।"

ରଘୁ ମନେ ମନେ ଭାବୁଥିଲା "ସଭେ କିଛି କିଛି ଦେଇ ଗାଁର୍ ସେବା କର୍‌ବେ ହେଲେ ଗାଁ ଉଠ୍‌ବା । ମୁଇଁ କା'ଣା ଦେମି ? ମୋର୍ ନଁ କା'ଣା ଅଛେ ? ଅଛେ ମୋର୍ ବଲି ଖାଲି ଇ କଲମ୍ । ଇଟା ମୁଇଁ ଗାଁକେ ଦେମି । ମୋର୍ ଗୀତ୍ କବିତା କଥାନିର୍ ଚରିତର୍ ମାନେ ହେବେ ଗାଁର୍ ଲୋକ୍ । ମୋର୍ ଲେଖାର୍ ପରିବେଶ୍ ହେବା ଗାଁର ମାଏଟା । ଗାଁର ସକାଲ୍ ଗାଁର୍ ସଞ୍ଜ, ଗାଁର୍ ଖେତ୍ ଗାଁର୍ ଗଛ ପତର୍ ହେବେ ମୋର୍ ଲେଖାର୍ ବିଷେ । ହେଁଟା ତ ଦେଇ ପାର୍‌ମି ।' ବନ୍‌ଏ ବର୍ଷସ୍ ମନର୍ ସିଧ୍ ଭାବ୍‌ନା ଥିଁ ବୋଧ୍ ହଉଥିଲା ରଘୁ ।

ରାମ ମାଲୀ ଜହ୍ନିଭାରେ ନେଇ ଗାଁନୁ ଆଏଲା ଆର୍ ବଢ଼େଇ ନେଲା ଶଶି ଦେଇଥିବା ଚିଠି ଖଣ୍ଡେକ ।

ଚିଠି ପଢ଼୍‌ଲା ରଘୁ "ବାବୁର୍ ପେନ୍ଟ- କୁର୍ତା ଆର୍ ନାଇଁ ଚଲ୍‌ବାର୍ ନ । ମାଁର୍ ଉଷୋ ନେ ପଠାଲ ଯେ ଖଟେଁ ଲଟ୍‌କି ଗଲେ ନ । ଭାଗ ଥିଁ କମଉଥିବାର୍ ସା' ଘରେଁ ଏସୁରତ୍ ଆମର୍ ଜମି କମାବାକେ ମନା କଲେ। ମୋର୍ ଶାଢ଼ୀ ତ କେଭୁଁ ଫାଟିଛେ ଜାନିଛ ।" ରଘୁ ଭାବୁଥିଲା 'ମୁଇଁ କା'ଣା ଦେଇ ପାର୍‌ମି ?'

ଲତା ଆସି କହେଲା ଶୁକୁର ସୋର୍ ନିହେ ଆସେ । ରଘୁ ଫଁ କରି ନିଶାସ୍ ଛାଡ଼ି କହି ପକାଲା "ମୁଇଁ କାଣା ଦେଇ ପାର୍‌ମି ?"



# ଭାରେ କଥା ହାରେ ଫୁଲ୍

(କ)

"ମେଘ ବାଦଲ୍ ନାଇଁ ଥିଲେ ପୁଷ୍ ମାସର୍ ସକାଲ୍‌ଟା ଦେଖିନୋର୍ ଆଏ । ଖରାଥିଁ ଝରି ପରୁଥିସି ସୁନାର୍ ଗୁଁଡ଼୍; ଗଛେଁ ପତ୍‌ରେଁ ଘରର୍ ଛାଏନ ପିର୍ଢ଼ା ଥିଁ ବି । ଉଡ଼୍‌ଲା ଚଢେର୍ ପଏଁଖି ମାନ୍‌କେଁ ଇ ସୁନାର୍ ରଙ୍ଗ କେଡ଼େ ସୁନ୍ଦର୍ ଦିଶ୍‌ସି । ବନ୍ଧ୍ କଟାର୍ ପାଏନ ଉପରେଁ ସୁନାର୍ ରଙ୍ଗ ଛାଇ ହଇଥିସି, ତାର ଉପର୍‌କେ ଟିକେ ଟିକେ କୁହୁଲା ଆର୍ ମଛି ଗୁଟେ ଗୁଟେ ଜରେଲ୍ ମହରେଲ୍ ଝୁରି ଫତ୍‌କୁ ଥିବାର ଦେଖିଲେଁ ଆଏଁଖି ଫିରେଇ ନାଇଁ ହଏ । ଖଲାମାନକେଁ ଓସ୍ ପଡ଼ିଥିବାର୍ ଧାନ୍ ମାଡ଼େନ୍ ଥିଁ ଇ ଖରା ପଡ଼ି ପୁଆଲ୍ ସବୁକେ ସୁନାର୍ ତାର୍ କରି ପକାସି । ଘାଁସ୍ ଲଟା ଉପରେଁ ପଡ଼ିଥିବାର୍ ଓସ୍ ଇ ସୁନେଲି ଖରାକେ୍ ଧରି ଚକ୍‌ଚକେଇ ଯାଏ ସି; ଯେ ହେଲେଁ କହେବା, ଧରତୀ ରାନୀ ଗୁଟେ ମହାନ୍ ଦାମର୍ ଶାଢ଼ୀ ପିନ୍ଧିଛେ କାଏଁ ?" ବୁଆରେ ! ତୋର୍ କଥାରେ, କବି ହଇଗଲୁ ନ କାଏଁ ବୋ ରୁପ୍‌ଧର !" କହେଲା ମହୀ ମହାନନ୍ଦ୍ । ମହୀ ଆର୍ ରୂପ୍‌ଧର୍ ଦୁହେ ପିଲା ଦିନୁ ଜୀବନ୍ ଦିଆଦେଇ ସାଙ୍ଗ୍ । ଗଁଡ଼ା ପରାର୍ ପିଲା ଦୁହିଟା; ଏକାସାଙ୍ଗେ ପଢୁଥିଲେ । ମହୀ ତ ସାତ୍ କିଲାସ୍ ନୁ ଇଟା ଗର୍ହା ଶିଖି ଚିମ୍‌ନି-ଭାଟି ମାନ୍‌କୁଁ ଯାଏ ସି । ରୂପ୍‌ଧର୍ ମେଟ୍ରିକ୍ ପାସ୍ କରି ନେ ପାର୍‌ଲା ତ ଇ ନ ସେନ ହଉଛେ, କେନ୍‌ସି ନ ଖଏଣ୍ ଧରି ନେ ପାର୍‌ବାର୍ ତାଏ୍ଲ । ।

ସାଙ୍ଗେଁ ସାଙ୍ଗେଁ ରୁପ୍‌ଧର୍ କହେଲା "କେନ୍ତା କଥା କହେସୁ ବୋ ! ବିର୍ଝୋଲା ବାଗିର୍ ; କାହିଁ କବି ଆର୍ କାହିଁ ମୁଇଁ ? ଯେନ୍ ଜାଡ଼୍ ହଉଛେ ଯେ ଖରା ନାଇଁ ଲାଗ୍‌ଲେଁ ତ କାହିଁ ବାହାରି ନେ ହେବାର୍ । ଉଠ୍‌ବାର୍‌ଟା ମୁଇଁ ଟିକେ ସକାଲୁଁ ଉଠ୍‌ଲି ନ ତ, ତଡେ ବାହାର୍‌ବା ନେ ବାହାର୍‌ବା ବଲି ଇଆଡ୍ ସେ ଆଡ୍ ହଉଥିଲିଁ; ସେତେବେଳେଁ ଯାହା ଦେଖିଲିଁ ମୋର୍ ମନ୍ ଭିତ୍‌ରେଁ ଲଖେଇଗଲା ବାଗିର୍ ଲାଗ୍‌ଲା; ତଡେ ଶୁନାସିଁ ବଲୁଥିଲିଁ ।"

"ହେଁଟା ନୁହେ ବୋ ରୁପ୍‌ଧର୍ ! କଥାର୍ ମଂଜି ମୁଇଁ ପାୟ୍‌ଲିଁ ନ" କହେଲା ମହୀ ମହାନ୍ ଜାନ୍‌ବାର୍ ଲେଖେଁ ମୁହଁଟେ କରି ।

"କଥା କା'ଣା କି ? ଦୁଇଟା ଜୀବନ୍ ଏକ୍ ହେବାକେ ଗଲେଁ ମନ୍ ଟିକେ ପାଆଁଲି ଉଠ୍‌ସି ତ ଆଏଁଖିକେ ସବୁ ସୁନ୍ଦର୍ ଦିଶ୍‌ସି, ମୁହଁକେ ଅଏନ୍ କଥା ଆଏସି । ଢୋଲର୍ ଦୁଇପାଖି ଛାଉନି ହଇଗଲେଁ ନାଇଁ ବଜାଲେଁ ବି କେନ୍‌ସି ଶବଦ୍ ଥିଁ ବି ବାଜ୍‌ଲା ବାଜ୍‌ଲା

ବାଗିର୍ ଲାଗ୍‌ସି । ତପର୍ ଆର୍ ତୋର୍ ଯୁଡ଼ିଟା ବିଧାତାର୍ ସର୍ଜନା ବାଗିର୍ ଭିର୍‌ବା ଗା । ହଁ, ତପର୍ ଲାଗି ଯେତ୍‌କି କବାର୍ କର୍‌ବାକେ ପଡ଼ିଛେ ସେଟା ମୁଇଁ ଜାନେ । ତପଟା ଯାହା ବଲ୍ ବନ୍‌ଏ ଟୁକେଲ୍ ଆଏ ଗା । ଦେଖିବାକେ ତ କୁନ୍ଦେଁ ବସାଲା ବାଗିର୍, ତାର ଚାଲ୍ ଚଲନ୍ ଟିକ ବି ଖୁନି ନାଇଁ ହଏ ଗା । ମାଁ ଛଉଣ୍ ଟୁକେଲ, ପଢ଼ି ନେ ପାର୍‌ଲା । ଏମି ଇସ୍କୁଲର୍ ମାଷ୍ଟରମାନେ ତପ ଉପର୍‌କେ ନାଇଁ ପଢ଼ୁଲା ବଲି କମ୍ ନାଇଁ ପସ୍ତାଇଁ । ବାପ୍‌ଟା ତ ଜାନୁଛୁ ଜୁନ୍ ହା ମଦୁଆ ଆଏ। କାଁ କରତା ହେଲେଁ ? ତୋର୍ ବହୁ ଯେତେବେଲେଁ ତୋର୍ ସାଙ୍ଗେଁ ବିହା ବର୍‌ପନ୍ କଥା ପକାଲା, ଉଞ୍ଚା ଲୁକର୍ ମନ୍‌କେ ଆସୁ ନେ ଆସୁ ତପ ତୁନ୍ ପର୍‌ଲା । ତୋର୍ ପର୍‌ଶଁସା କଥା ପର୍‌ଲେଁ କାନ୍ ପାରି କରି ଶୁନ୍‌ଲା । ବନିହାଁ ଘର୍‌ବର୍ ହେଲେଁ ନାଇଁ ଉଡିର୍‌ଲେ କାଏଁ ? ବୁଢ଼ାର୍ ମନ୍ କେନ ଦୁଇପୟସା ଛିନ୍‌ତା, ତାର୍ ହାତୁଁ ଯେନ୍ତା କିଛି ଦିଆ ନାଇଁ ଲାଗ୍‌ତା ! ପରା ପାଟ୍‌କେଁ ଭି ତୋର୍ ପଟିଆ ହେଲେ ତ ଉଁ ଚୁଁ ନାଇଁ କଲା ସିନା ହେଲେଁ ତାର୍ ମନେ ଦୁସ୍‌ରା ଭାବ୍‌ନା ଥିଲା । ବରଗଡ଼ର୍ ସେ ବଏଲ୍ଜୁ ବୋ ! ବୁଢ଼ାର୍ ପିଛା ନ କମ୍ ଖର୍ଚ୍ଚା ନାଇଁ କର୍‌ବାର୍ । ନ ତପ ଟିଖେ ବି ବଏଲ୍ଜୁର୍ ଆଡ଼୍‌କେ ନାଇଁ ଢ଼ଲ୍‌ଲା । ପରାର୍ ଲୁକେ ପଟେଇ ନେଲେ ଯେ ରୂପଧର୍ ତ ଟୁରା ପିଲା ଆଏ। କା'ଣା ପାୟ୍ ବା? କପ୍‌ଟା ଖଣ୍‌ଏ ଚୁରି ମୁଠେ ନେଇ ଆଏବା । ଜାଏତ୍ ଖାଏଦ୍ ଭି ଯାହା ହେବା ତାହା ସହି ।

କଥାର୍ ମଝିନୁ ରୂପଧର୍ କହେଲା "ହଁ ତତେ ନେ କହେବାର୍ ନ ବୋ! ମୋର୍ ନନା ଘୁଷ୍‌ରା ଛୁଆଟେ ଦେଇଛେ ଜାଏତ୍ ଖାଏଦ୍ ଲାଗି। ଆର୍ କପ୍‌ଟାର୍ ଲାଗି ତ ଆଜିର୍ ତତେ ଜୁଗିଜୁଗି ଆନ୍‌ଲିଁ । ମୋର୍ ବା' ଟଁକା ତିନ୍‌ଶ ଡ଼ାକେଁ ପଠେ ନେଇଛେ; ଆର୍ ଟଁକା ଦୁଇଶ ବାଗିର୍ ଭୁତି ଦୁଖିନୁ ଅଗଲେଇ ପେଟୁଁ ଉଲ୍‌ଟି ରଖିଥିଲିଁ । ପାଁଚ୍‌ଶଥିଁ ଶାଢ଼ୀ ସାୟା ବ୍ଲାଉଜ୍ କରଣ୍ଡୁଁ; ଯଦର୍ପି ଅଗଲିବା ତ ବାକି ଖର୍ଚ୍ଚା ନେ ଲଗାମା ।"

"ଆରେ ବାକି ଖର୍ଚ୍ଚ ବର୍ଚ୍ଚା କଥାର୍ ତୁଇଁ କାଏଁ ଚିନ୍ତା କର୍‌ସୁ । ଆମେ ବି ହାତେ ଗୁଡ଼େ ନାଇଁ ଦେଇ ଲାଗ୍‌ମୁ କାଏଁ ?" କହି ଚାଲିଛେ ମହୀ । "ହଁ ମୋର୍ ଶଶୁର୍‌କେ ତ ଜାନିଛୁ ହେଁ ତପଘର୍ ପରାର୍ ମୁକ୍‌ବିର୍ ବଲ୍ କି ସିଆନ୍ ବଲ୍ । ସଭେ ମାନ୍‌ସନ୍ । ସେ କହିଛନ୍, ରୂପଧରର୍ ଖର୍ଚ୍ଚାକେ ଟିକେ ସଭେ ଜୁଗ୍‌ବ । ତପର୍ ବୁଆକେ ସେ ଦିନ ସେ କହୁଥିଲେ ରୂପଧର୍ ଟୁରା ପିଲା ଆଏ. ତାହାକେ ଝି ଦେବାର୍‌ଟା ଗୁଟେ ଧରମ୍ ଆଏ । ରୂପଧର୍‌କେ ହେଲେଁ କା'ଣା ବାଆନିବ ? ବର୍କସ୍ ପିଲାଟେ। କେଡ଼େ ସୁଧାର୍ ଟିଖେ ବି ଉପଡ଼େଗ୍‌ରା ନାଇଁ । ତପର୍ ବୁଆ କାଁ ବଲୁଛେ ଶୁନ୍‌ବୁ ରୂପଧର୍! ସୁଧାର୍‌ପନ୍‌କେ ଘୁରି ପିଇଲେଁ ଭୋକ୍ ଯିବା କାଏଁ ହୋ ସୁନା ବୁଢ଼ା। ମୋର୍ ଶଶୁର୍ କାଏଁ ବଏଲେ ଶୁନିଥା । ରୂପଧରର୍ ଖାଲି ଗୁନ୍ ନାଇଁ ଘର୍ ବାଏର ଟିକେ ତ ବନ୍‌ଏ ଅଛେ । ସିଲିଙ୍ଗ୍ ଥିଁ ଟିକ୍‌ରା

ଟାଙ୍ଗର୍ ପଛେ ହଉ ଜମିନ୍ ଏକ୍‌ଡ଼େ ଭଲ୍ ପାଇଛେ । ମେଟ୍ରିକ୍ ଫେଲ୍ ହେଲେଁ ବି ହରିଜନ୍ ପିଲା ଆଏ, ପିଅନ କି ଚପ୍‌ରାଶି କାମେ କେତେବେଲେଁ ହେଲେଁ ଲଟ୍‌କି ଯିବାର୍ ଆଶା ଅଛେ । ସବୁଠାନୁ ବନ୍‌ଏ ଇଟା ଆଏ ଯେ ପିଲାଟା ମଦ୍ ଗଁଜେଇ କି ଜୁଆ ଚିଟିର୍ ଛଏରା ବି ମାଡ଼େ ନାଇଁ । ହେଲେଁ ତପର୍ ବୁଆର୍ ମୁହଁ ଉସ୍‌ରେ ନାଇଁ, ଭୁଆଷେନ୍ ଭୁଗା ଲେଖେଁ ଫୁଲେଇ ଥାଏ । ପରାର୍ ଲୋକ୍ କେତ୍‌କେ ଛାଡ଼୍‌ସନ୍ ? ସଭେ ଚାହୁଁଛନ୍ ଯେ ତପ ବନ୍‌ଏ ପିଲାଟାକେ ବିହା ହଉ ଆର୍ ସେ ବନ୍‌ଏ ପିଲାଟା ଖାଲି ରୂପ୍‌ଧର ଆଏ । ବୁଢ଼ା ବଢ଼ା କଷ୍ଟେଁ ହଁଟେ କଲା । ତେତ୍‌କେଁ କାଏଁନ୍ ଇ ସବୁ ଚୂରି କପ୍‌ଟାର୍ କଥା ପର୍‌ଲା । ହଁ ତୋର୍ ବା ତିନ୍‌ଶ ଟଁକା ପଠେଇଛେ ବଲ୍ । କେ ନ ପାଇଥିବା ଗା ?" ମହୀର୍ ଲମ୍ଭ ଏକସ୍‌କଁଟି କଥା ଟିକେ ବନ୍ଦ୍ ହେଲା ।

ରୁପ୍‌ଧର୍ କହେଲା "କେ'ନ ପାଏବା ବୋ ! ହେନ୍ତା ମାଗିଯାଚି କରି ଯେନ୍ ଦୁଇ ପଏସା ଠୁଲେଇଥିବା ସେ'ଟାକେ ପଠେଇଥିବା କାଏ୍‌ନ । ବାପ୍‌ମାନ୍‌କର୍ ମନ୍ ଦୁସ୍‌ରା ଆଏ ବୋ ! ଦେଖ୍ ତ ନିଜେଁ କେତେ କଷ୍ଟେଁ ଚଲୁଥିବା ?"

ମହୀ କହେଲା "ତୋର ବା' ବନ୍‌ଏ ଲୋକ୍‌ଟେ ଥିଲା ଆର ବନ୍‌ଏ ରୋଗ୍‌ଟେ ବି ତାହାକେ ଧୟ୍‌ଲା ।"

ରୁପ୍‌ଧର୍ ଟିକେ ଦୁଃଖ୍‌ମନା ଭାବେଁ କହେଲା "ବନ୍‌ଏ ଲୋକ୍ ନୈ ହଇଥିଲେଁ ତାର୍ ଦିହେଁ ଛଉ ଗୁଟେ ଗୁଟେ ଦିଶ୍‌ଲା କି ଲୋକ୍ ଅବ୍‌ଦି ବସ୍‌ଲା ମାତର୍ କେଁ ଭାୟ୍‌ଲେ ମୋର୍ ପୁଓକୋ ଡ଼େଗିଯିବା ବଲି ମତେ ତୋର୍ ବୁଅର୍ ହାତେଁ ପରା ପାଟ୍‌କେଁ ସଁପି ପଲାଲା ହାତୀବାରି । ସେ ଥିଲେଁ ମୋର୍ ଇ ଅବସ୍ଥା ହଇଥିତା କାଏଁ ? ମୋର୍ ମା'ର୍ ଚେହେରା ତୋର ମନେ ନାଇଁନ । ସେ ମାଁ ବୁଆ ଦୁହିଟା ଥିଲା । ଛାଡ଼୍ ଭାଇ ! ଯାହିଁ ଯା ତାହିଁ ଯା କପାଲ୍ ନେଇ ଯା ।"

ମହୀ କା'ଣା କହେବାକେ କହେବାକେ ହଉଥିଲା ବେଲ୍‌କେ ସାୟ୍‌କଲ୍‌ଟେ ତାର୍ ଆଗ୍ ମୁଡ଼େଁ ବିରେକ୍ ଦେଇ ମହୀକେ କହେଲା "ଭେନେଇ ଯୁହାର୍" ।

ମହୀ ତାର୍ ଶଲାକେ ଚିହ୍ନିପାରି ଆଶ୍ଚିଯଜ୍ ଭାବେଁ କହେଲା "କେନ୍‌ଆଡ଼େଁରେ ! ଏତେ ରେସ୍ ନେ ଯାଉଥିଲୁ ?"

"ତମର୍ ନିକେ ବୋ !" "ତପ ଆଇଛେ କାଯଁ ? ତାର୍ ଖୁଜାର୍ ଥିଁ ପରା ଯାକର ଥିଆ" ।

ରୂପ୍‌ଧର୍ ଆର୍ ମହୀ ଦୁହେ ଯାକ୍ ଥକା ହଇଁ ବସି ପଡ଼୍‌ଲେ ସଡ଼୍‌କର୍ ତରାପଟିଆ । ମହୀର୍ ଶଲା ମୁଲୁଁ ଶେଷ୍ ତକ୍ ଯାହା ହଇଛେ କହେଲା ।

"କଲା କାଲହିର୍ ବେଲ୍‌ବୁଡ଼େଁ ବୟଜ୍ ଗର୍‌ଗଟୁଁ ଆୟଲା ତପ ଘରକେ । ବନ୍‌ଏ ରନ୍ଧାମଦ୍ ଦୁଇବୁତଲ୍ ଆର୍ ବଧିଆ ପଟେ ଧରି । ତପର୍ ବୁଆ ସାଙ୍ଗେଁ ଖିଆ ପିଆ କଲେ । ବୁଢ଼ାକେ ପଟାପଟି କଲା କିଛି ଭିତ୍‌ରିଆ ସାରି ଟଁକା ପୟସା ଦେଇକରି । ବୁଢ଼ା କହେଲା ତପକେ ଆର୍ ରୂପ୍‌ଧରକେ ନାଇଁ ଦିଏ ନ । ରୂପ୍‌ଧରର୍ ବୁଆକେ ବଡ୍ ରୋଗ୍ ହଇଛେ । ହେଁ ବଉଁଶ୍ ହେଁ ରକତ୍; ଇ ବେମାର୍‌ଟା ବେଇମାନ୍ ବେମାର୍ ଆୟ, ପୁରୁଖା ଉତ୍‌ରାସି । ପରାର୍ ଲୁକେ ଜମିଗଲେ । ମୋର୍ ବା ବନିହାଁ କହେଲା ଜନ୍‌ଏ କେ ହଁ କରିଛୁ, ସେ ଆଶା କଲା ନ ; ଇ କରମ୍ ନେଁ କର୍, ଇଟା ବଢ଼େ ପାପ୍ ଆୟ । ହେଲେଁ ବୁଢ଼ା କେ'ନ ମାନୁଛେ । ତପ ବି ତ ସା'ବାଲକ୍ ହେଲାନ ତାହାକେ ହେଲେଁ ପଟର ବଲି ପରାର୍ ଲୁକେ କହେଲେ । ତପ ବୟଲା ମନ୍ ଜନ୍‌ଏକେ ଆର୍ ତନ୍ ଜନଏକେ ନାଇଁ ଦେଇ ହୟ୍ । ମୋର୍ ମନ୍ ମୁଇଁ ଯାହାକେ ଦେଇଛେଁ ମୋର୍ ଦିହ୍, ମୋର୍ ଜୀବନ୍ ତାର ଆୟ । ବୁଢ଼ା ଯେତେବେଲେଁ କହେଲା ଯେ ବଡ୍ ରୋଗ୍ ହଇଛେ ତାର୍ ବାପ୍‌କେ ବଲିଁ, ତପ କହେଲା ବାପ୍‌କେ ହଇଥାୟ ନି ଯେ ପୁଓକେ ନାଇଁ ହଇଁ । ଆ.ର୍ ଇ ବର୍‌ଗଡ଼ିଆକେ ତ ତାହିଁରୁ ବଡ୍ ରୋଗ୍ ଧରିଛେ ସବୁବେଲେଁ ନିଶା ପାୟନ୍ । ମୁଇଁ ହେତାର୍ ନିକେ ନାଇଁ ଯାୟଁ । ହେନ୍ତା ଗୁଲ୍‌ମଲିଆ ଧଏଲା କଥା ବେଲ୍‌କେ ସଭେ ବୟଲେ ରାୟତ୍ ଚାଯାର୍ ପହର୍‌କ ଯାଉ ଯେନ୍‌ଟା ହେଲେଁ ନିଷ୍‌ପତି ହେବା । ସକାଳ୍ ପାୟଲା କି ତପ ନାଇଁ । ସଭେ ନୁରୁଛୁଁ, ଆଖେଁ ପାଖେଁ କାହିଁ ନାଇଁ । କିଏ ବଲୁଛେ ବୁଢ଼ି ଉଚ୍‌କି ହଇ ମଲା ନ ତ କିଏ କହୁଛେ ରୂପ୍‌ଧର୍ ନିକେ ପୟସାମୁଡ଼ି ଢୁକିଥିବା । ଭଗ୍‌ବାନ୍ ଜାନ୍‌ଏ କାହିଁ ଗଲା ଟୁକେଲ୍‌ଟାକ ଯେ ।"

ରୁପ୍‌ଧର୍ ଫଁ କରି ନିଶାସ୍ ଛାଡ଼୍‌ଲା; ପୁଷର୍ ସକାଳିଆ ଖରା କାହାକେ ସାଁପ୍ ଗରଲର୍ ରଙ୍ଗ ଧରିଛେ ବାଗିର୍ ଲାଗୁଥିଲା । ସଡ୍‌କେଁ ଲାଇନ୍ ଗାଡ଼ି ଏକସ୍‌କେଁଟି ଚାଲିଥିଲା; କାହାରିର୍ କଥା ତାହାକେ ନାଇଁ ଶୁଭୁଥାଇ ।



# ଭାରେ କଥା ହାରେ ଫୁଲ

## (ଖ)

ଶଏନ୍‌ବାର୍ ହାଟର୍ ଦିନେ ଯେ ଇ ସଡ଼କ୍ କେ ଦେଖିଛେ ସେ ହିଁ ଜାନ୍‌ବା ଯେ କେତେ ଭିଡ଼୍ । ଗାଡ଼ି ମଟର୍ ଦେଖିବ କି ସାଏକଲ୍ ଫଟ୍‌ଫଟି ଦେଖିବ । ବାଟ୍ ଚଲ୍‌ତା ଭାର୍‌ବୁହା ଲୋକ୍ ଭି ତିନ୍ ଚାଏର୍ ଜନର୍ ଭିଲ୍ ବାଁଧି ଗୁହୁଡ଼ା ଗୁହୁଡ଼ା ଯାଉଥିସନ୍ । ଲୋକର୍ ଧାଡ଼ି ସରେ ନାଇଁ କି କଥାର୍ ଧାର୍ ମରେ ନାଇଁ ।

ବନ୍‌ଏ ଫୁଲ୍‌କୁବି ଭାର୍‌ଟେ ବୁହି ଲୁଚନ୍ ପଧାନ୍ କପ୍‌ସି କପ୍‌ସି ଚାଲୁଥିବାର୍ ଦେଖି ସପ୍‌ନେ ସାହୁ କହେଲା "ଦଦା ! ତତେ ତ ବୋଝ୍ ଭାରୀ ଜନା ପରୁଛେ ବୋ ! । ବନିହାଁ ଦିନୁ ତତେ ଭାର୍ ବୁହିବାର୍ ନେ ଦେଖିଥାଇ, ଆର୍ ଆଏଜ ଦେଖ୍‌ଲିଁ ତ ମହାନବାର ଭାର୍‌ଟେ ଖନ୍ଦେଇଛୁ। ଉତ୍‌ରା, ଭାର୍ ପଲ୍‌ଟେ ପକାମା । ଯେନ୍ତା ହେଲେଁ ମୋର୍ ଭାର୍ ଟିକେ କମ୍ ଥିବା, ଉଶାଷ୍ ଥିବା ।" ଲୁଚନ୍ ପଧାନ୍ ତାର୍ କହେବାର୍‌କେ ଟାକିଥିଲା ବାଗିର୍ ଟପୋନୁ ଭାର୍ ଉତ୍‌ରେ ଖନ୍ଦର୍ ଚାଏରହାତୀ ନେ ଧୁକି ହେଲା । ସପ୍‌ନେ ସାହୁ ଭାର୍ ଉତ୍‌ରେଇ ଟିକେ ବସି ପର୍‌ଲା ବେଲ୍‌କେ ତାର୍ ସାଙ୍ଗେଁ ଆସୁଥିବା କଲିଆ କୁକୁର୍‌ଟା ତାହାକେ ଲେଠ୍‌ରେଇ ହଇ ବସ୍‌ଲା ଆର୍ ଜିଭ୍ କାଢ଼ି ଥାକ୍ ମାଏଲା । ଲୁଚନ୍ ପଧାନ୍ କହେଲା –

"ପଁଚମୁଖା ଜନ୍ତୁଟେ ଧରି କାଏଁ ହାଟ୍‌କେ ବାଟ୍‌କେ ଆଏସୁ ବୋ ! ଥାଏତ ।" ସପ୍‌ନେ ତାର୍ କୁକୁର୍‌କେ ଟିକେ ସୁଆଁଲି କରି କହେଲା "ଆମର୍ କୁଟ୍‌ମର୍ ଜନେ ଆଏ ଦଦା !, ମତେ ଛାଡ଼ିକରି ନାଇଁ ରହିପାରେ ।"

ଆଉର୍ ବି ଝନଦୁ ଭାର୍ ବୁହିଁ ଆଏଲେ । ଭାର୍‌ମାନ୍‌କୁଁ ଉତ୍‌ରେଇ ଭାଙ୍ଗ୍ ଦିଆନିଆ ହଇଁ ଟିକେ ସୁସ୍ତାଲେ ।

ସାଏ କଲର୍ ପଛେଁ ଆର୍ ମଝିଁ ମେସିନ୍ ଉପରେଁ ଦୁଇଟା ବସ୍ତା ଥୁଇଁ ଚଲେଇ ଚଲେଇ ଆନୁଥିଲା ମାଲୁ ଭୁଏ; ସେ ବି ଅଟ୍‌କି ବିଡ଼ିଟାକେ ଜୁଏ ଧରଉନ୍ ଧରଉନ୍ କହେଲା "ପଧାନ୍ ଦଦାର୍ ଭାର୍‌ବୁହା ତ ମୁଁ ଜନମୁ ନେ ଦେଖିଁ ବୋ !"

ଲୁଚନ୍ ପଧାନ୍ ତାର୍ ସାଙ୍ଗେଁ ସାଙ୍ଗେଁ କହି ପକାଲା "କାଁ କର୍‌ବୁ ରେ ଭାଏ ! ସଂସାରର୍ ଗତିରୀତି ଏନ୍ତା ଚାଲୁଛେ; କିହେ କାହାରିର୍ ନୁହନ୍। ଦେଖିତ ଇ ଶଏନ୍‌ବାର

କେ ମୋର୍ ଗୁଡି ବୋ !, କୁଠିଆ ଦିନୁ ତାହାକେ ଘରର୍ ପୁଓ ବାଗିର୍ ରଖି ପାଲି ପୁଷି ଯେନ୍ତା କରି ରଖିଛେଁ ଗାଁ ମାଁ ଜାନୁଛନ୍ । ଏସୁରର୍ କଥା ଦେଖ । ତାର୍ ବିହା ଚୁରା ଥିଁ ଯାହା ପାରଲିଁ ଗଁଧେ ପୁଷ୍ଟେ ଦେଲିଁ । ତାର୍ ଲାଗ୍‌ବାଡ଼ି ଯେନ୍‌ଟା ବି ଥିଲା ଶୁଝ୍‌ଲିଁ । ପିଁ ଧିନା ପଟା ବି ବଛର୍ କେ ବଛର୍ ଦଉଛେଁ । ଦୁସରା ଲୋକ୍ ହେଲେଁ ଥୁକ୍‌କେ ହାତ୍ ପାତିଥିତା । କାଏଲ୍ କୁବି କାଟ୍‌ଲା ବେଲ୍‌କେ ନେ କହେତା ବୋ କାଏଲ୍ ନାଇଁ ଯାଇପାରେଁ ବଲି । ମୁଇଁ କାଁ କରି କୁବି କାଟିଥିତିଁ । ସକାଲୁଁ ବଲୁଛେ ମୋର୍ ଶାଶ୍ ଘରକେ ଘାଏ ଗଲେଁ ଯାଇ । ଦେଖି ମୋର୍ ଦଶା। ପିଲାଟା ଲାଏକ୍ ଥିଲେଁ ସାୟ କଲେଁ ଥିରେ ଆନିଥିଲେଁ ମତେ କାଏଁ ବୋଝ୍ ହେତା । ମୋର୍ ଦୁଆରୀ ତ ସାଏକଲା ଚଢ଼ା ନାଇଁ ହେଲା କେଭେଁ । ପିଲା ବଲୁଛେ ସକାଲୁଁ ଯେ ସେ ପିକ୍‌ନିକ୍ ଯିବା । ମରଗୋ ମୋର୍ ପିକ୍‌ନିକ୍! ହଏରେ ଶଶୁରେ ଯେନ୍‌ମାନେ ସବୁ ଦିନେ କବାର୍‌ବୁତା ଥିଁ ବୁଡ଼ି ରହିଥିସନ୍ ସେମାନେ ସିନେ ବରଷ୍‌କେଁ ଦିନ୍‌ଏ ଅଧେ ଯାଏସନ୍ ବୁଲିକିନ୍ଦ୍ରି ଆଏଲେଁ ବନ୍‌ଏ ଲାଗ୍‌ବା ବଲିଁ । ତମେ ତ ସବୁଦିନେ ବୁଲୁଛ ତମର୍ ଫେର୍ କାୟଁ ପିକ୍‌ନିକ ରେ ? ତାର୍ ମାଁଟା ପିଲାଟାକେ ବଢ଼େଇନେଇଛେ ବୋ! ଇ ଲୋକ୍ ପଦେ କହି ନାଇଁ ପାରୁ । ନେ କହେସନ୍ ଗୁଟେ ପୁଓ ଯାର୍ ମୁହଁ ପୁତ୍ରୁ ତାର୍ । ଯାହା ପାରଲିଁ ପଢ଼ାଲିଁ । ଫଟା ପିଁଧି ଟେରିକଟ୍ କି କା'ଣା ବଲ୍‌ସନ୍ ଯେ, ପିଁଧାଲିଁ । ନିଜେଁ ନୁନ୍ ବାସି ଖାଇ ମେସ୍ ବୁଡ଼ିଙ୍ଗ୍‌ନ ତାହାକେ ରଖାଲିଁ। ଉରଘଟ୍ ସୁରଘଟ୍ କରି ପାସ୍‌ଟେ କଲା ଯେ ନଉକିରି କାହିଁ ? ଆରେ ବାବୁ! ନଉକିରି ନାଇଁ ମିଲ୍‌ଲା ତ ନାଇଁ; ଘରର୍ କବାର୍ ବୁତା ହେଲେଁ ନାଇଁ କରତୁ ? ଲୁହୁଙ୍ଗିଟେ ଗୁରେଇ ହଇ ଇ ପିଁଢ଼ା ସେ ପିଁଢ଼ା ହଉଛେ । ମୁଇଁ କୁବି ବାଏ୍‌ର୍‌କେ ପାଏନ୍ ବଳଉଥିମି, ବାବୁ ବୁଲିଥିବା । ସତେଁ ବୋ! ନାଇଁ କହେସନ୍ ମୁନୁଷ୍ ଆର୍ ବେଙ୍ଗ୍ ପୋଷ୍ ନାଇଁ ମାନନ୍ ।"

ମାଲୁ ଭୁଏ କହେଲା "ଇ ମୁନୁଷ୍ ଦୁଇଗୁଡ଼ିଆର୍ କଥା ନାଇଁ କହନ ଦଦା ! ତୁଇଁ ତ ନିଜର୍ ଜନମ୍ ଜାତ୍ କଲା ପୁଓ ନେ ମାନ୍‌ବାର୍ ବଲି କହୁଛୁ, ଆର୍ ମୁଇଁ ମୋର୍ ପୁଷିଆଁ ପୁଓର୍ ପୁରାନ୍ କା'ଣା ଗାଏମି ?" ଲିଭ୍‌ଲା ବିଡ଼ିକେ ଖାଡ଼ି ମାଏଲା ।

ସପ୍‌ନେ ବଏଲା "ଆମେ ସଭେ ତ ଭାବୁଥିଲୁଁ ଗା ଭୁଏ! ତୁଇଁ ଯେନ୍ତା ଲୋକ୍ ଆଉ, ତତେ ମହାପ୍ରୁ ବନ୍‌ଏ ସୁଖେଁ ରଖିବା । ପିଲାଟା ପୁତ୍‌ରା ହେଲେଁ ବି ଜନ୍‌ମୁ ତତେ ବାପ୍ ବାଗିର୍ ଭାବିଁ ମାନି ଆଇଛେ। ।"

ମାଲୁ ବିଡ଼ିର୍ କୁହୁଲା ଛାଡ଼ି କହେଲା "ସେ ସବୁ ଜୁନ୍‌ହାଁ କଥା ଛାଡ଼୍ ବୋ ! ଯେନ୍ତା ବିହା ବର୍‌ପନ୍ କରିନେଲିଁ କି ଶଶୁର୍ ଆର୍ କାଏଁ ବାପ୍ ବଲ୍‌ତା ? ବିହାର୍ ଆଗୁଁ ସଂପତି ଟିକ ତାର୍ ନାଁଥି କରିନେଲିଁ ତ । ଯେନ୍‌ଥିର୍ ଲାଗି ମନାଗୁନା, ସେ ଟିକ ତ ହାତ୍‌କେ ତାର୍ ଗଲା ।

ତୋଡ୍ କାଣା ଦେଖ୍‌ବୁ ? କହେବାକେ ଲାଜ ଲାଗବା ଗା ଭାଇ !, ଭୁଆଷେନ୍ ତୋର୍ ବହୂର୍ ମୁହେଁ ହଗ୍‌ଲା ନ । ଏନ୍ଥିନି ଭିନ୍‌ଏ ହେଲୁଁନ୍ । ଝନ୍‌ଏ ପୁଷ୍‌ବା ପାଲ୍‌ବା, ଥିର୍ ଢୁକେ ଦେବା, ଗୋଡ୍ ହାତ୍ ଗୁହ୍‌ମୂତ୍ କର୍‌ବା, ମଲା ପରେଁ ପିଁଡ୍ ପରଦାନ୍ ଗତି ମୁକ୍‌ତି କର୍‌ବା ବଲି ସିନେ ପୁଷ୍‌ପୁତର ରଖ୍‌ସନ୍; ମୁଇଁ ପୁଷପୁତର ରଖିଥିଲିଁ ବୋ ଭାଗବେଁଟା ଦେବାକେ । ପୁଓ ନୁହେ ମୋର୍ ଭାଏ ହେଲା, ତେଭେଁ ତ ଭାଗ୍ ନେଲା । ଏନ୍ଥନି ଛଏରା ମଡ଼ାମଡ଼ି ନାଇଁ, ମୁହଁ ଦେଖାଦେଖି ନାଇଁ ।”

ସଭେ ଭାର୍‌ମାନ୍‌କୁଁ ଉଠେଇ ଚାଲ୍‌ଲେ । ଲୁଚନ୍ ପଧାନ୍ ସପନେର୍ ଭାର୍‌ଟାକେ ଟଙ୍ଗ୍ କଲା ଉଠେଇ କହେଲା “ଯେ ଯାହାକେ ସେନ୍‌ହୋ ସରାଗ୍ ଟିକେ ଦେବା, ସେ ଟିକ ତାର୍ ଠାନୁ ଆର୍ ଟିକେ ଜହକରି ପାଏମି ବଲିଁ । ଜହ କା’ଣାରେ ପିଲା ! ସେନ୍‌ହୋ ସରାଗର୍ ନାଁ ଗଁଧି ନାଇଁ । ତତେ ଦେଖ୍‌ଲେଁ ନାକ୍ ଡ଼ିଆଁବେ । ଆଡ ଆଖିଁ ବି ଦେଖନ୍ ନାଇଁ। ଶୁଖା ପତ୍‌ରେଁ ନୁନ୍ ଗୁଡ଼ାକର୍ ଆଶା ନାଇଁ। ଆମେ ଶଲେ ମୁରୁଖ୍ ଆଉଁ ତ; ଫେର ତାକର୍ ଗୋଡ୍ ତଲ୍ ତଲ୍ ହେଁସୁ ।”

ଲୁଚନ୍ ପଧାନ୍‌ର କୁବି ଭାର୍‌ଟା ସଥେଁ ବନ୍‌ଏ ଭାରୀ ଥିଲା । ସପ୍‌ନେ ବୁହିଲା କି ସେ ଭି ଟିକେ କପ୍‌ସାଲା ବାଗିର୍ ଚାଲ୍‌ଲା । ଦୁର୍ଯୋଗ୍ କେ ସାଏକଲିଆ ଗୁଟେ ଆସି ତାର୍ ଦିହେଁ ଙ୍ଗ୍‌ରେଇ ହେଲା କି ସଁଭରିବାର୍ ସଁଭରିବାର୍ କେ ହଇଁ ସଡ଼କର୍ ଇ ଫାଲୁଁ ସେ ଫାଲ୍‌କେ ଯାଇ ମୁହଁମାଡି

ହଇ ପଡ଼ଲା। ତାର କଲିଆ କୁକୁରଟା ଭୋଭୋ କରି ଦଉଡ଼ି ଆଉଛେ ବେଲକେ ଟରକ୍‌ଟେ ଆସି ହାଜର୍ । କଲିଆ କୁଁ କାଁ ବି କରି ନେ ପାର୍‌ଲା, ସେ ଠାନେ ଖତମ୍ । ସପ୍‌ନେ ତାର୍ ନିଜର୍ ଆଘାତ୍ ଲାଗିଁ କି କଲିଆର୍ ମୁରତୁଘାତ୍ ଲାଗିଁ ଯେ କେ ଜାନ୍‌ଏ ଅଚେତ୍ ମେଡାଲ୍ ପଡ଼ିଥାଏ । ଲୋକ୍‌କର୍ ହୁଆହୁଟା ଥିଁ କିଛି ନାଇଁ ଶୁଭୁଥାଇଁ ।



# ଭାରେ କଥା ହାରେ ଫୁଲ

(ଗ)

"ତାର୍ ଝି'ର୍ ପଟିଆ କହୁଛେ ବଲି ବଲ ପଛେ ନାନୀ ! ମୋର୍ ସରର୍ କେନ୍‌ସି ଦୋଷ୍ ଗୁନ୍‌ହାଁ ନାଇଁ, ତୁମ୍‌କୁଁ କା'ଣା କହେମି; କେନ୍- କଥା ତମ୍‌କୁଁ ଅଜନା ଅଛେ ?" ମାଲା କହେଲା ।

ପୁଷ୍ ମାସର୍ ବେଲ୍‌ହୌ ବେଲ୍, ମୁଡ଼୍ ଉପରୁଁ ବେଲ୍ ଢ଼ଲ୍‌କିଲା କି ବେଲ୍ ବୁଡ଼୍‌ଲା ବାଗିର୍ ଲାଗ୍‌ସି; ବେଲ୍ ନେ ବୁଢ଼୍‌ନୁ ଜାଡ଼୍ କୁଦେଇ ଆନ୍‌ସି । ହାଟ୍ ଗଢ଼୍‌ତଢ଼ଉ ଥିବା । ଏଛନି ବି । ତଥାପି ରାସ୍ତା ଥିଁ ହାଟ୍ ଫିରତା ଲୋକର୍ ଭିଡ଼୍ ; ହାଟ୍ ଉଖ୍‌ଲି ନେଥିବା । ମାତର୍‌କ ଝାଁକ୍‌ରେନ୍ ମାଲାର୍ ଦୁଖ୍ ଯେନ୍‌ଟା କି ତାର୍ ମନ୍ ଭିତ୍‌ରେଁ ବଟି ହଇଁ ଅହେରା ମାରିଥିଲା ଆଜିର୍ ଉଖ୍‌ଲି ଆସୁଛେ କଥା କଥା ନେ । କେତେବେଲେଁ କେନ୍ତା ଆଖିଁ ପାଏନ୍ ବି ଥିପେ ଥିପେ ଆସି ଟଁଟି ଆର୍ ନାକ୍ ଗୁଁଧି ନଉଛେ ।

କହୁଛେ ତାକର୍ ପରାର୍ ମିତ୍‌ରା କେ । ଗାଁର୍ ମାଏନ , ଦାଏନ , ଥିଁ ତାହାକେ ଜେଠ୍‌ନେ ବଲ୍‌ସି । କହେଲା ମିତ୍‌ରା "ସରର୍ ପିଲାଦିନୁ ଆମେ ଅବ୍‌ତକ୍ ଦେଖି ଆଉଛୁଁ । ମାଛିକେ ବି ମର୍ ବଲେ ନାଇଁ । ମୁଡ଼୍ ଟେକି ବାଟ୍ ଚାଲେ ନାଇଁ । ଯାହାକେ କହେବା ମାଏନ୍ ଦାଏନ୍ ଧରି କେତେ ସୁତର୍ କଥା; ଉବେଢ଼ଗି ନୁହେ କି ବକ୍‌ବକି ନୁହେଁ । ହେଲେଁ ଲୋ ମାଲା, ବନ୍‌ଏ ଘରେଁ ବି ତ ଦେଇଥିଲୁ, ପିଲାଟା ତ ସୁତର୍ ଲେଖେଁ ଦିଶ୍‌ସି । ସରର୍ କେନ୍ ଦୋଷ୍ ଗୁନ୍‌ହାଁ ଦେଖି ଏଡ଼୍‌କି ରକମ୍ କର୍‌ବାକେ ଯାଉଥିଲା; ସେଥିର୍ ଲାଗି ଲୋକ୍ ଅବ୍‌ଦୁଛନ୍ ସରର୍ କେନ୍‌ସି ଦୋଷ୍ ଥିବା କାଏଁ ?"

ମିତ୍‌ରାକେ ଆର୍ କିଛି କହି ନେ ଦେଇ ତତାପନା ହଇଁ ମାଲା କହେଲା "ମଲୁଁ ପର୍‌ଛନ୍ କରି ଟିକେ ଭି କୋର୍ କପଟ୍ ନେ ରଖିଁ ସବୁ କଥା କହି ନେଉଛେଁ ଶୁନ୍‌ଅ । ମୋର୍ ସରର୍ ଯଦର୍ପି ଟିକେ ବି ଗୁନ୍‌ହାଁ ପାଏବ ତ ମୋର୍ ମୁହଁ ପୁଡ଼ାବ ।"

"ନାଇଁଲୋ !" ମିତ୍‌ରା କହେଲା "ସରକେ ଆର୍ ନାଇଁ ଜାନିଛୁଁ କାଏଁ ? କି ତମର୍ ବିହା ବର୍‌ପନ୍, ଖରା ଉଷା ସବୁକେ ନୁକୋ ଭାବେଁ ଆଏବାର୍ ଯିବାର୍ ସବୁ ସଭେ ନାଇଁ ଜାନିଛନ୍ କାଏଁ ? ତୋର୍ ଝି'କେ 'ସର' ନେ ବଲି 'ସର୍‌ଲା' ନାଆଁ ଦେଥିଲେଁ ଚଲିଥିତା ।"

ମାଲା ସାଙ୍ଗେଁ ସାଙ୍ଗେଁ କହଲା "ହେଁଥିର୍ ଲାଗି ତମ୍‌କୁ ମୁଲୁଁ ଶେଷ୍ କରି କହି ନଉଛେଁ, ଭଲ୍‌କେ ଭଲ୍ ବଲ୍‌ବ, ଅସାର୍ ଥିଲେଁ ମତେ ମୁହଁକେ ମୁହଁ କହେବ । ଶୁନ୍‌ଅ,

ମୋର୍ ଜୁଏଁ ଘରକେ କିଏ ନାଇଁ ଜାନି ? ବରିହା ଘର୍ ବଲି ଡ଼ାକ୍ ପରୁଛେ । କଟା ତଲେଁ ଜମିନ୍, ଅବଲ୍ ବାହାଲ । ବଏଶାଖ୍ ମାସେଁ ବଡିର୍‌ସି । ଆମର୍ ସରର୍ ଲାଗି ଅସାଯୁଥା କଲେ କି ହଁ ବଏଲୁ । ସବୁ ପଟ୍‌ଲା; ବିହା ବର୍‌ପନ୍ ଖରାଜଷା । ଆମେ କେ'ନ ଜାନିଛୁଁ ଯେ, ବରିହା, ହେଁ ମୋର୍ ସମ୍ଧି କେଭ୍ଁ କେଭ୍ଁ ମଦ୍ ପାଏନ୍ କରି ଭିତ୍‌ରେଁ ଭିତ୍‌ରେଁ ସବୁ ପୁଲପୁଲା କରିନେଲା ନ ବଲି । ଆମର୍ ଭି ଆଶା ଥିଲା ପିଲାଟା ଦୁଇ ଅଖର୍ ପଢ଼ିଛେ ତ ମୁନ୍‌ଷେଁ ଯିବା । ହେଲେଁ କାଁ କରବ ନାନୀ । ଗାଁର୍ ହୁର୍ଦୁଙ୍ଗିଆ ପିଲାକର୍ ପଟି ନେ ପରିଁ, ମୋର୍ ଝି'କେ ଯେନ୍ ରତେ ମସେ ଦେଇଥିଲୁଁ ବିକି ଭାଁଜି ସୁରୁ ଫଟ୍‌ଫଟିଟେ ଘିନି ପକାଲା । ସେଟା କାଏ ସାଏକଲ୍ ଆଏ ଯେ ସୋଜ୍ ଚଲ୍‌ତା ? ତେଲ୍ ମୁବିଲ୍ ରୋଜ୍ ଦରକାର୍ । ବାପର୍ କାଏଁ ସଂପଦ୍ ଅଛେ ଯେ ଘିନ୍‌ବା ? ଫେର୍ ସାଙ୍ଗେ ଯେ ହଉ ଝନ୍ଏ ଥିବା, ହୁଟଲ୍ ଦେଖ୍‌ଲେଁ ଠିଆ; କିଛି ନେହେଲେ ବି ପକ୍‌ଡ଼ି ଚକ୍‌ନେ ଚକ୍‌ନେ ଆର୍ କପେ ଲେଖା ଚାହା । ଦେ ପଏସା ।"

"ଏନ୍ତା ଥିଁ ବଲୁଛ ନାନୀ ଯେନ୍ ଦୁଇ ଦରବ୍ ଦେଇଥିଲି ଉଡ୍‌ନେ ଚରେର ଛୁଆ ମେତାଲ୍ ଗୁଟେ ଗୁଟେ କରି ଡ଼େନାଁ ବାଁଧିଲେ । ମତେ ପଦେ ଭାଏଲ୍ କହିଥିତା, ନା ସେ ପିଲାକେ ନା ତାର୍ ଶାଶ୍ ଶଶୁର୍‌କେ । ମୁଇଁ ପାଲ୍‌କେଁ ସୋର୍ ପାଏଲିଁ କି ପଚରାଲିଁ ଯେ ବଏଲା ତୋର୍ ଦେଲା ଦରବ୍ ଫିରେଇ ଆନିଥିତୁ ଭାଏଲ ମା! । ତାକର୍ ଦରବ୍ ସେ ଯାହା କଲେ ମୋର୍ କହେବାର କା'ଣା ଅଛେ ? କାଁନେ ମାଏଲା ବାଗିର୍ ରହିଗଲିଁ ନାନୀ । ମୁଇଁ ହେଲେ କା'ଣା କହେତିଁ ?"

ମିତରା ବଏଲା "ସୁତର୍ ବଏଲେଁ ଏନ୍ତା ହିଁ ସୁତର୍ ହେସନ୍ ଲୋ ମାଲା! ତୋର୍ ଝି'ର କଥା ଦେଖତ । ସାଁପ୍ ନାଇଁ ଚାବ୍‌ଲେଁ ନାଇଁ। ହେଲେଁ 'ଫଁ' ନେ କଲେଁ ଢ଼େଲ୍ ପଥର୍ ନାଇଁ ଖାଏବା କାଏଁ"

ମାଲା ତର୍‌ତର୍‌ରେ ଯାଉଥିଲା ସବୁ କଥା କହେବା ବଲି ତ, ଆର୍ ମିତ୍‌ରା କେ କହି ନେ ଦେଇ ଫେର୍ କହେଲା "ପର୍ହୁର ଉଷାକେ ଆସିଥିଲା ବେଲ୍‌କେ ଅୟର୍ଚ୍ଚା କରୁଥିଲା । ମୁଇଁ ଯାହା ପାର୍‌ଲି ଖୁଆଲିଁ ପିଆଲିଁ । ଖରାକେ ଆଏଲା ବେଲ୍‌କେ ଦଶ୍‌ମାସୀ । ଦିହେଁ ହାଡ଼୍ ଖଁଡ଼େ ଦୁହୁଲେଛ । ଅଁସଗଁଡ୍ ଦେହେଁ ନୁକୋ ନୁକୋ ଖାନା ପି'ନା ନେ ହେଲେଁ ଯେନ୍ତା ହେସି । ଆର୍ ଯାଇ ନାଇଁ ଦେଲି ନ । ଇନ୍ ପିଲାତି ପାଏନ ହେଲା ତାର୍ ପୁଓଟା ହକ୍‌ହକେଇ ଯାଉଥାଏ । ଗୁରସ୍ ପାୟନ୍ ହେବୋ ବଲି ଆମେ ନିଜେଁ ନାଇଁ ଖାଇପିଇ ଝିଇ'କେ ଖୁଆଲୁଁ ପିଆଲୁଁ ।"

"ନୂଆଖାଇଁ ଗଲା । ତାର୍ ଶାଶ୍ ଶଶୁର କି ସେ ଜୁଏଁ ପିଲାର୍ ଦେଖାନାଇଁ, ଖବେର୍ ବାତ୍‌ନି ବି କିଛି ନାଇଁ । କା'ଣା କରତୁଁ ? ଗଛ୍‌କେ କାଏଁ ଫଲ୍ ଭାରୀ ? ଯତ୍‌ନା ସଁଖିଲା

କରି ରଖିଛୁଁ । ଭାଏ ଜାଇଁତିଆ ଦୁଇଦିନ ଅଛେ ସେ ପିଲା ଆସି ବଲୁଛେ, ଇମାନେ ଯିବେ ।

ମୁଇଁ ବଏଲିଁ ଏତ୍‌କି ଦିନ୍ ଗଲା ବୁଆ ! ଆର୍ ଆଠ୍ ଦିନ ଠହର । ଲୋକ୍ ଭାଏ ଜାଇଁତିଆଁ କେ ଶାଶ୍ ଘରେଁ ଥିଲେ ମାଁ ଘରକେ ଆଏସନ୍ । ଛ'ମାସ ତ ହେଲା ନା ! ଖଁଡ଼େଁ କପ୍‌ଟେ ଖଞ୍ଜସିଁ, ଲିଆଭୁଗା କରି ଯାହା ଜୁଟ୍‌ବା ଭିଆମି; ଯିବା, ତମର୍ ମାଲେଁ ଆମର୍ କାଏଁ ହକ୍ । କାଏଁ ମାନ୍‌ତା ଲୋ ନାନୀ ! ସେ ଟୁରା ବଏଲା ନାଇଁ ଗଲେଁ ନାଇଁ ଚଲେ । ଆମର୍ ଘରେଁ ବନିହାଁ ଅସୁବିଧା ଅଛେ । ମୁଇଁ ବେଡ଼ୀ ବଲୁଛ ନାନୀ ତାହାରି ଲାଗି ସୁଜି ଟିକେ ଘାଁଟି ଚାହା ଟିକେ ଫୁଟଉଛେ ରନ୍ଧାଘରେଁ ଶୁନ୍‌ଲି, ଖାଲି ତମର୍ ଝି ତମର୍ ଘରେଁ ମୋର୍ ପୁଓ ମୋର୍ ଘରେଁ । ଆର୍ ଘର୍-ର୍-ର୍ କରି ଲୁନା କି କା'ଣା ବଲ୍‌ସନ୍ ଯେ, ମୋର୍ ଟୁଁ ଡ଼େଁ ଲେହେଁଟେ ନାଇଁ ଛୁଆଟାକେ ଧରି ପଲାଲା । ମୋର୍ ଝି କହୁଥାଏ, ନାଇଁ ନିଅ ନାଇଁ ନିଅ ମୁଇଁ ପଛେଁ ଯିମି, ମୋର୍ ପୁଓକେ ନାଇଁ ନିଅ ।

ସେ ଦିନୁ ସର କାନ୍ଦି କାନ୍ଦି ନାଇଁ ଖାଇ ପିଇ ତନର୍ ତନ୍ ହଇଗଲା ।ମାସ୍ ଚାରେ ଯାଇଛେ କି ନାଇଁ ଖବର୍ ପାଏଲୁଁ ଯେ, ସେ ଛୁଆଟାକେ ଡ଼ାକ୍ତର ଖାନା ଆନିଛନ୍ । ଖିଆ ନାଇଁ ପିଆ ନାଇଁ, ଯତନ୍ ସଁଖଲ୍ କିଛି ନାଇଁ ଦାତା ଦଏବ କିହେନାଇଁ କେନ୍ତା ହଇଥିବା ତାର୍ ଅବସ୍ଥା ବିଚାର୍ କର୍ ତ ନାନୀ !

ସର ଶୁନ୍‌ଲା କି ନି ତାହାକେ ସଁଭାଲି ନେ ହେଲା । ମତେ ଡ଼ାକ୍ତର ଖାନାକେ ନେଇନିଅ, ନେଇନିଅ ବଲି ରଟ୍ ଲଗାଲା ଯେ ଲଗେଇଛେ । ସବୁ ଲାଜ୍ ମହତ୍‌କେ ପଛେଁ ପକେଇ ଆମେ ଦୁହିପରାନୀ ତାହାକେ ନେଇ ଡ଼ାକ୍ତରଖାନା ଗଲୁଁ । ଦେଖ ତ ନାନୀ ! ଛୁଆ ତାର୍ ମା'କେ ଦେଖିଲା କି ବଲୁଛ ଜୀବନ୍ ପାଏଲା ବାଗିର୍ ଝଁପେଇ ହେଲା, ଅହିରୁଦନ୍ ହଇଁ କାନ୍ଦ୍‌ଲା । ଦିହେଁ ହାଡ଼୍ ଖଣଏ ଅଛେ । ପବନ୍ ଟିକେ ଖାଲି ଆ' ଯା' ହଉଛେ । କେତେବେଲେଁ ପବନ୍ ଟିକ ବନ୍ଦ୍ ହଇଯାଏସି ନ କାଏଁ ବଲିଁ ମୋର୍ ଜୀବନେ ଜୀବନ୍ ନାଇଁ । ଡ଼ାକ୍ତର ଉଷୋ ଘିନ୍‌ଅ ବଲି କାଗଜ୍‌ଟେ ଧରେଇ ନେଇଛେ, ସେ'ଟା ପଡ଼୍‌ବା ସାତ୍‌କୋର୍ କି ଆଠ୍ କୋର୍ । ମୋର୍ ଜୁଏଁ ଘର୍ ଦୁହି ବାପ୍ ପୁଓ ମୁହଁ ଉଲ୍‌ମେଇ ବସିଛନ୍ । ସର ସବୁକଥା ବୁଝ୍‌ଲା କି ମୋର୍ ଆଡ଼୍‌କେ ଏକସ୍‌କଁଟି ଦେଖିଲା । ସେ ଦେଖା କାଏଁ ଦେଖା ଆଏ ଯେ, ଯେ ଦେଖିଛେ ସେ ହିଁ ବୁଝ୍‌ବା ନାନୀ ! ସେଟା କହି ନାଇଁ ହଏ ।

କହେଲା ମୋର୍ ଛୁଆକେ ବଅଁଚ ମା ! ନେ ହେଲେଁ ତାର୍ ସାଙ୍ଗେଁ ମୁଇଁ ବି ଜୀବନ୍ ଦେଇନେମି । ମୋର ଯାଗାନ ଥିଲେଁ ତୁଇଁ ତୁନ୍ ପରିଥିତୁ କାଏଁ ? ତୋର୍ ଛୁଆ ଲାଗି

ତତେ ଯେନ୍ତା ଲାଗ୍‌ସି, ମୋର୍ ଛୁଆ ଲାଗି ମତେ ହେନ୍ତା ନାଇଁ ଲାଗ୍‌ବା କାଏଁ? ଟଁକା ସାତ୍‌କୋର୍ କି ଆଟ୍ କୋର୍ ଲାଗି ମୋର୍ ଛୁଆର୍ ଜୀବନ୍ ପଲେଇଯିବା ମା? ହେଁ ଟା ତୁଇଁ ସହେବୁ? ମୁଇଁ ସହେମି? ମା ମା କେନ୍‌ସି ନ ହେଲେଁ ଖଣ୍ଡ୍ ଟଁକା ଗୁଡ଼ାଦୁ, ମତେ ରାଏଙ୍କେଁ ରଖ୍। ତାର୍ ଦିହେଁ କି ମୋର୍ ଦିହେଁ ସୁନା ରୁପାର୍ ପାଏନ୍ ନାଇଁ; ଥିଲେଁ କାଏଁ ନ କେ'ନ ଗହନା ଗୁଠା କରି ହେତା। ତାର୍ ନାନୀ ଆସିଥିଲା ଯେ ତାର୍ ଭରକିଆ ଗୁଟି ମାଲିଟା ସରର୍ ବେଁକେଁ ପିଁଧେଇ ନେଇଥିଲା, ଛୁଛା ମେଲା ନଗ୍‌ଲା ହଉଛେ ବଲିଁ।

ବଡ଼୍‌ଖାଁ ନୁନୀକେ ବୁଝା ସମ୍‌ଝା କରମି ନ ବଲିଁ ସେ'ଟାକେ ଦେଇ ଦୁଇଶ ଟଁକା ଆନ୍‌ଲେ ତାର୍ ବା। ଉଷୋ କଷା କରୁନ୍ କରୁନ୍ ଛୁଆଟା ଠହର୍‌ଲା।

ସେ ଡ଼ାକ୍ତରଖାନା ନୁ ବାପ୍ ପୁଓ ଯାଇଛନ୍ ଯେ ଯାଇଛନ୍। ସରର୍ ନ ଆଉର୍ କା'ଣା ଅଛେ ଯେ ଆଏତେ? ସୁନା ରୂପା ଖୁରି ଗିନା ସାଙ୍ଗେଁ ପୁଓର୍ ଜନମ୍ ବାଟେଁ ଚେହେରାଟାକେ ବୁଟ୍‌କେଇ ବଏସ୍‌ଟା ବି ତ ଗଲା। ନାଇଁ ଖାଇ ନାଇଁ ଖାଇ ପୁଓକେ ଝୁରି ଝୁରି ସଁଖିଲି ସଁଖିଲି ତାର୍ ଦିହର୍ ହାଡ଼୍ ଗନିଁ ହଉଛେ।

ବାଟ୍ ଚାଲି ଚାଲି କଥା କହୁଥିଲେଁ ସାଏଁ ସାଏଁ ଲାଗ୍‌ସି, ଅଧିନିଶାସୀ ଲାଗ୍‌ସି ବଲିଁ ମାଲା ଟିକେ ଠହରିଲା, ଦୁହେ ଘାଏ ବସି ପକାଲେ ବି। ମିତ୍‌ରା ପଚରାଲା "ଏହ୍ନି ତ ଛୁଆଟା ଟେନ୍‌ଟେନ୍ ହେଲା ନ, ସର ବି କବାର୍ କମ୍‌କେ ପାର୍‌ଲା ନ, ନେଇକରି ଘର ଦୁଆର୍ କରି ନାଇଁ ଖାଏ ତା ତୋର୍ ଜୁଏଁ।"

ମାଲା କହେଲା "ମୋର୍ ଝି କବ୍‌ାରକମ କେ କେଭେଁ ନାଇଁ ହଦରେ ନାନୀ! ମୋର୍ ଜୁଏଁ ଅଁଟ୍‌କୁରାକେ, ତାର୍ ମା ବୁଆକେ ଖାଲି ପଏସା ଚାହି। ଫେର୍ କେନୁ ଗୁଟେ ଟୁକେଲ ଆନ୍‌ଲେଁ ଦୁଇ ଦରବ୍ ଆନ୍‌ତା। ସେଥିଁ ଚଲ୍‌ତେ। ହେନ୍ତା ଭାବି ହେ ମୋର୍ ସମ୍‌ଧେନ୍ ଆଁଟୁକୁରୀ, ଗାଡ଼େଁ ଗାଡ଼େ ହେବା ଯେ, ତାର୍ ଭାଏର୍ ଝିଇ'କେ ଭିତ୍‌ରେଁ ଭିତ୍‌ରେଁ ଠିକ୍ କରିଥିଲା। ପୁଷ୍ ମାସେଁ ନେ ଚଲେ ବଲି ତ ଥିଲା, ନେହେଲେଁ କେଭୁଁ କେଭୁଁ ଭୁକେଇ ସାରିଥିତା ନ। ହେଲେଁ ସେ ଟୁକେଲ୍‌ଟା ବଲୁଛ ଆମର୍ ନନୀ ସାଙ୍ଗେଁ ପଢୁଥିଲା ହେଁ ହାଟ୍‌ଗାଁର୍ ଇସ୍‌କୁଲ୍ ଥିଁ। ତାର୍ ବା'ର ନାଁ ଆଏସି ଯେ ହେଁ ଗାଁର୍ ନାଁ ନାଇଁ ଧରେଁ ନାନୀ। ମୋର୍ ଝି ପାଁଚ୍ କିଲାସ୍ ନୁ ନେ ଗଲାନ, ସେ ସାତ୍ କିଲାସ୍ ତକ୍ ପଢ଼୍‌ଲା। ଘରବର୍ ନେ ଉତ୍‌ରିଲେ ବଲିଁ ଏତ୍‌କି ଦିନ୍ ତକ୍ ରହି ଯାଇଥିଲା। ଆର୍ ବଡ଼୍ ଠାଠିଏନ୍ ଆଏ ତ। ଜହ ବଏସର୍ ବାଗିର୍ ଦିଶ୍‌ସି।

ନ ଟୁରୀ ବଢ଼େ ହୁସିଏର୍ ବନ୍‌ଏ ବୁଧିଆଲ ଟୁକେଲ ଆଏ। ଇ ସବୁ କଥା ସୋର୍ ପାଏଲା କି ବଲୁଛ କାଏଲ ମୁଁହ ସଙ୍ଗେ ଆମର୍ ଘରେଁ ହାଜର୍; ତାର୍ ପଛାପଛି ତାର୍ ମା

ବୁଆ ଭି । ଆମେ ସବୁ ଆଶ୍ରିଜ୍ ଏ ମା ! କା'ଣା ହେଲା ? ଆଏଜ୍ ନାଇଁ କାଏଲ୍ ନାଇଁ କେନ୍ତା ଟୁକେଲ୍‌ଟା ଆଏଲା ? ଆର୍ ଛନ୍ଏ ନାଇଁ ଯାଉନୁ ତାର୍ ମା'ବୁଆ ଭି ।

ସର ଦେଖିଲା କି କ୍ଷୀର୍ କେନ୍‌ଆଡୁ ବେଲ୍ ଉଦ୍‌ଲା ଲୋ ବଲୁନ୍ ବଲୁନ୍ ଦୁହେ ଦୁହିଙ୍କୁ ଆବ୍‌ରି ହେଁକେଇ ହେଁକେଇ କାନ୍ଦୁଛନ୍ ଯେ, କାନ୍ଦୁଛନ୍; ବୁଆଟା ତଲେଁ ବସି ସେମାନ୍‌କର ମୁହଁ ମାନ୍‌କୁଁ ଭକ୍ ଭକ୍ କରି ଏକ ସର୍‌ଲଗ୍ ଦେଖୁଛେ। ତାର୍ ମା'ବୁଆ ସଡ଼କ୍ ଦମ୍ ଠିଆ ରହିଛନ୍ । ବୁଝୁନ୍ ବୁଝୁନ୍ ସବୁ କଥା ଜନା ପର୍‌ଲା । କ୍ଷୀର କହେଲା ତାର୍ ମା'କେ- ଇ ବୁଆକେ ଦେଖ୍, ଇ ସରକେ ଦେଖ, ତୋର୍ ଝି'କେ ଏନ୍ତା ଅବସ୍ଥା ନେ ଛାଡ଼ି ତୋର୍ ଜୁଏଁ ଯଦ୍‌ରି ଆର୍ କେନୁ ଗୁଟେ ଟୁକେଲକେ ବନେଇ ଆନ୍‌ତା ତତେ କେନ୍ତା ଲାଗ୍‌ତା କହ । ମତେ ହେଁ ନିକେ ବଟାବୁ ? ଅଏତ୍‌କା ହଉଁଛେ, ବୋଝ୍ ହଉଛେଁ ବଏଲେଁ ବିଷ୍ ମହରା ଟିକେ ଦେଇ ନେ । ସର ସାଙ୍ଗେଁ ଦୁହେ ଖାଇନେମୁ।

ତାର୍ ମା ବୁଆ ଦୁହେ ଏକାସାଙ୍ଗେଁ କହେଲେ ନାନୀ, ଛାଡ୍ ସେ କଥା ଆର୍ ଆମେ ହେଁ ପଟିଥିଁ ନୈ ପତୁଁନ । ଯାହା ହେଲା ହଇଁଗଲାନ; ଚାଲ ଘର୍‌କେ ଯିମା ଚାଲ୍ ।

ମୁଇଁ ବଏଲିଁ ଆଇଛେ ସାଙ୍ଗ୍ ସର୍‌ସିଆ ବଲିଁ, ଦୁଇ ଚାଏର ଦିନ୍ ରହୁ ଯିବା । ମୋର୍ ଝିଇ'ର ଲାଗିଁ ଯେ ନିଜର୍ ମା' ବାପ୍ ସୁଖ୍‌ଦୁଖ୍‌କେ ଖାତିର୍ ନେ କରିଁ, ମୁଇଁ ତାହାକେ ହେନ୍ତା ମେଲା ହାତେଁ ବଟେଇ ନେ ପାରେଁ । ଯ, ମୁଇଁ ପଛେ କ୍ଷୀଉକେ ନେଇ ଛାଡ଼୍‌ମି ନ ବଏଲିଁ । ସାଙ୍ଗେଁ ସାଙ୍ଗେଁ କ୍ଷୀର ବି ବଏଲା, "ନାଇଁ ଗୋ ବା ଏକ୍‌ଲା ମୁଇଁ ନାଇଁ ଯାଏଁ; ସର୍‌କେ ନେଇକରି ଯିମି । ଆମର୍ ହଲ୍‌ଗାଡ଼ି ପଠେଇ ନେବୁ, ସମାର୍ ଦିନେ ଆମେ ଦୁହେ ଯିମୁ । ଆର୍ ଯଦ୍‌ରି ବନ୍‌ବା ତ ସରକେ ମୁଇଁ ସେ'ଠାନୁ ବଟାମି ।"

ମତେ ଇସବୁ ତ ସପନ୍ ମେତାଲ୍ ଲାଗୁଥାଏ ଲୋ ନାନୀ । ସେମାନେ ପଅର ଦିନ ଯିବେ ତ ଜୁଛା ହାତେଁ ମୁଇଁ ହେଲେଁ ବଟେଇ ପାର୍‌ମି ? ତାର୍ ବା'କେ କହେଲିଁ । ସେ ମାଲି ବାବଦ୍ ଫେର୍ ଦୁଇଶ ଆନ୍‌ଲେ। ଶାଢ଼ୀ ସାୟା ବ୍ଲାଉଜ୍ ସାଗୁନ୍ ଅତର୍ କରି ଘିନ୍‌ଲିଁ ଦେଖିଲ ତ।"

ମିତ୍‌ରା ବଏଲା, "ନାଇଁ ଜାନି ଗୋ ମା' ମୁଇଁ ଏତେ କଥା । ଆଏଜ୍ କାଏଲ୍ ପରେ ଲୋକ୍ ଶିଖେତ୍ ହେଲେ ନ ରେ ବହେନ୍। ଆମର୍ ଦିନେ ଆମର୍ ଇ ସହଁରା ବିଝାଁଲ୍ କୁଲେଁ ଇନ୍ତା କଥା ଶୁନା ଜନା ନେ ଥାଇଁ। କନିଆଁ ଟୁକେଲ୍ ସାଙ୍ଗେଁ ବନିହାଁ କରି ଦରବ୍ ଦର୍‌କାର୍ ଇ'ଟା ଗୁଟେ ବେମାର୍ ଆଏ; ଜାଏତ ହାଏତ ନେ ମାନେ ସମ୍‌କୁଁ ଧଏଲା ନ। ।"

ବାଟର୍ ଲମ୍ବା ପେଟେଁ ସେମାନେ ମେଟି ଯାଉଥିଲେ ଆର୍ ଆକାଶ୍‌ର ଅସୀମା ଗର୍‌ଭେଁ ହଜି ଯାଉଥିଲା ସେମାନ୍‌କର କଥାବାର୍ତା ଦୁଖ୍ ସୁଖ୍ ।



# ଭାରେ କଥା ହାରେ ଫୁଲ

(ଘ)

ବରଜ୍ ଭୁଏ ଖନ୍ଦେଁ ମେଲା ସିକା ଭାରଟେ ପକାଇଛେ । ତାର୍ ଗଁଡ଼ା ଚାଏରହାତୀକେ ଝୁଲ୍‌ମୁନା କରି ମୁର୍ହି ଆର୍ ଭାଜ୍‌ଲା ଚନା । ତାହିଁ ମିନ୍‌ଚି ମିଶେଇ ଗରସେ୍ ଗର୍ସେ ମୁହେଁ ପକଉଛେ । ସେଥିର୍ ଲାଗି ତାର୍ କହେଲା କଥା ବନ୍‌ଏ ଫଟିକ୍ ନେ ଶୁଭ୍‌ବାର୍ ।

ହେନ୍ତା ମେଲା ଡ଼ଲାଭାରେଁ ତୁନ୍ ଶାଗ୍ ଯାହି ତାହି ଗୁଡ଼ାହୁ ଧରି ଶୁକରୁ ଚାଲୁଛେ ବରଜର୍ କଥାକେ ହୁଁ କାର ଦେଇ ଦେଇ ।

"ତୋର୍ କଥା ଫଟିକ୍ ବୁଝି ନେ ହେବାର୍ ବୋ ! କେତେଦିନର୍ ଭୁଖେଁ ଥିଲା ଲେଖେଁ ମୁର୍ହି ମସ୍‌କୁଛୁ ଯେ ମସ୍‌କୁଛୁ ନ" ଶୁକ୍‌ରୁ ବିର୍‌କତ୍ ହଇଁ କହେଲା । "ନାଇଁ ବୋ ! ଏକ୍‌ଲା ମୁର୍ହି ନୁହେ, ଭାଜ୍‌ଲା ମଟେର୍ ଚନା ଆର୍ ମିନ୍‌ଚି ମିଶା ହଇଛେ ତ, ଛାଡ଼ି ନାଇଁ ହେବାର୍ । ରାଁଧିନି ଗଧୁଆ ନୁ ବାସି ଚାଏରଟା ଖାଇକରି ଆଏବୁ ଯେ ଏ'ଦେ ବେଲ୍ ବୁଡ଼ି ଅଁଧାର୍ ମେତାଲ୍ ହେଲା ନ, କେତେ ଠହର୍‌ବୁ ? ପେଟ୍ ଜଳି ଯାଉଛେ । ତୁଇଁ ଏକା ବନ୍‌ଏ ଠହରି ପାର୍‌ସୁ, ମହାନ୍ କଠିନ୍ ଲୋକ୍ ଆଉ ।" ବରଜ କହେଲା ।

ସାଙ୍ଗେଁ ସାଙ୍ଗେଁ ଶୁକରୁ କହେଲା "ନାଇଁ ପିଲା ! ହାଟୁଁ ଫିର୍‌ଲା ବେଲ୍‌କେ ଛୁଆପୁତା ବା' କା'ଣା ଆନିଛେ ବଲି ବୁଚ୍‌କା ତାମ୍‌ଡ଼ି ହେସନ୍ ତ, କିଛି କା'ଣା ନେଇକରି ନାଇଁ ଯିବୁ ଯଦି ଇ ଲୁକୁଁ କେନ୍ତା କେନ୍ତା ଲାଗ୍‌ସି । ତାକର୍ ସାଙ୍ଗେଁ ପଛେ ଥିବା ବଏଲେଁ ଗର୍ସେ ମୁଠେ ଖାଇ ହେସି । ଆର୍ ହାଟେଁ ବାଟେଁ ଖାଏବାକେ ଟୁଁଡ଼୍‌କେ ନାଇଁ ଯାଏ ଗା । ମତେ କଠିନ୍ ବଲ୍‌ସୁ ଯେ, ମୁଇଁ କା'ଣା କଠିନ୍ ଆଏ ବୋ ! କଠିନ୍ ଲୋକ୍ ବଲ୍‌ବୁ ରାମ୍ ରତନ୍ କେ । ଦେଖ୍‌ତ ତିନିଦିନ୍, ତିନ୍ ଚାଏତ ହେଲା ନ ଟୁଁଡ଼ି ନେ ଠୁକ୍‌ବାର୍ ଯେ । ଗାଁ ଯାକ ମନେଇ ବୁଝେଇ ଦେଖିଲେ, ଯେ ଯା'ଣା କହୁଛନ୍ ବୁଲୁଛନ୍, ଉଁ ସୁଁ କିଛି ନାଇଁ ଖାଲି ଭକ୍ ଭକ୍ ଦେଖୁଛେ । ଖାଏବାର୍ କଥା ଛାଡ । ପାଏନ୍ ଥିପେ ବି ମୁହେଁ ନେ ଦେବାର୍ । ଆଶ୍ଚିସ୍ କଥା ବୋ ! ମୁଇଁ ଏନ୍ତା କଥା ଦେଖିବାର୍ ତ ଛାଡ଼୍ , କେନ୍‌ସି ଶାସ୍‌ତରେ ପୁରାନ୍ ଥିଁ ବି ନାଇଁ ଶୁନି ।"

ବରଜ୍ ବଏଲା "ହଏ ବୋ ! ଦେଖ୍‌ତ ବାପର୍ ଲାଗି ପୁଓ, ପୁଓର୍ ଲାଗି ବାପ୍, ମାଏଝିର୍ ଲାଗି ମୁନୁଷ୍, ମୁନୁଷ୍ ଲାଗି ମାଏଝି; ଆର୍ ଦେଶ୍ ଲାଗି, ଗାଁ ଭୁଇଁର୍ ଲାଗି ଲୋକ୍ ଜୀବନ୍ ତେଜି ନେବାର୍ ଶୁନା ଯାଏସି; ହେଲେ ଗଛ୍‌ଟାକର୍ ଲାଗି କିହେ କେଭେଁ ଜୀବନ୍ ଦେବାର୍ ସୁନା ଜନା ନାଇଁ; ଇଟା ତ ଗେଜଟ୍ ହେବାର୍ କଥା ବୋ !" କଥାର୍ ଶେଷେଁ ତାର୍ ଝୁଲା ମୁନାର୍ ଶେଷ୍ ମୁଠାକ୍ ମୁହିଁଚନା ଖାଇ ନେଇକରି ଚାଏରହାତୀଟାକ

ଝାରଲା; ଆର୍ ଦିହେଁ ଉଡ଼ିହେଲା । ବାଟ୍‌ଚଲା ଲୁକ୍‌କୁଁ ସିନେ ଜନା ନାଇଁ ପଡୁଥାଇଁ ହେଲେ ବନ୍‌ଏ ଶୀତ୍ ହଉଥିଲା ।

"ଗେଜଟ୍ ହେବାର୍ କଥା ବଲସୁ ଯେ । " ଶୁକ୍‌ରୁ ତାର୍ ଖନ୍ଦୁଁ ଖସ୍‌ରୁ ଥିବାର୍ ହଜ୍‌ରିଟାକ ବନ୍‌ଏ କରି ଉଡ଼ି ହଇଁ କହେଲା "ଗାଁ ଗଁଡ଼ାର୍ କଥା କାଁ କରି ଗେଜଟ୍ ହେତା ଗା, କେଭେଁ ହେଲା ନ ? ଇଟା କେନ୍‌ସି ସହରେଁ ହଇଥିତା ତ ଦେଖ୍‌ତୁ କେତେ ଫଟୁ, କେତେ କଥା, କେତେ ନେତା, କେତେ ଅଫ୍‌ସର୍, କେତେ ଗେଜଟ୍ ବାଲା ପୁହୁଁଚିତେ ନ । ଗାଁର୍ କଥା ଭାଇ ! କିଏ ପଚ୍‌ରଉଛେ ? ଗାଁ ଗଥିଁଲି ନେ ହାତୀ ମଲେ ବି ଚାଁଟି ଆଏ । ଆର୍ ସହରେଁ ବଲ୍‌ବୁ ବଏଲେଁ ଫସ୍‌କ କଥାକେ ମହେମା ଡ଼ାକ୍ । ବୁରୋ ପିଠାକେ ପାଟର୍ ଉଢ଼୍‌ନା ।"

ବରଜ୍ ପାଲିଆ ଧରଲା ବାଗିର୍ ଶୁକ୍‌ରୁର୍ କଥାକେ ମାଥିବରି ଦେଲା ମେତାଲା କହେଲା "ଭୋଟ୍ ବେଲକେ ନେତାମାନେ କାଣା କହେସନ୍ ଜାନିଛୁ ? ଇ ଗାଆଁ ମାନ୍‌କେଁ ପରେ ଦେଶର୍ ଜୀବନ୍ ଅଛେ । କେନ ଅଛେ କେ'ନ ଅଛେ ଗା ସେ ଜୀବନ୍ ? ମତେ ଦିଶ୍‌ତା ବଏଲେଁ ଚିଙ୍ଗ୍‌ରି ଚିପ୍‌ଲା ମେତାଲ୍ ଚିପିନେତିଁ ପୁତାକେ ଯେ କନ୍ଧା ଖାଇ ଯାଏ ତା।"

ବନ୍‌ଏ ଟିକେ ଖଦ୍‌ଖଦେଇ କରି ହଁସି ଶୁକ୍‌ରୁ ବରଜର୍ କଥାକେ ହଲ୍‌କା କରିନେଇ କହେଲା - "ତୁଇଁ କେନ୍ତା କରତୁ ଗାଁ? ଭୁଇଁ କେନ୍‌କେ ଯାଏତୁ ? ତୁଇଁ ଦେଶର୍ ବାହାର୍ ଆଉ ଭାଏଲ ?"

ବରଜ ତାର କହେଲା କଥାକେ ବର୍‌କସାଲା ବାଗିର୍ କହେଲା- "ମୁଇଁ ବି ମରତିଁ । କାଣା ହେତା ? ଆମର୍ ଇଟା କାଏଁ ଜୀଉଁନି ଖାଉନି ଆଏ ବୋ ? ଗର୍ରା ପଟେକେ ଯେନ୍ତା ଖୁଟିଟେ ଗାଡ଼ି ରଶି ଖଣ୍‌କେଁ ବାଁଧି ନେଇଥିସନ୍ ସେନ୍ତା ଆଉଁ ଆମେ । ରଶି ଯେତ୍‌କି ଲମ୍‌ବା ସେ ଭିତ୍‌ରେଁ କିନ୍ଦୁ ଥା, ସେ ଭିତ୍‌ରେଁ ଯେନ୍ ଘାସ୍ ପଟର୍ ଗୁଟେ ଗୁଟେ ପିକଉଥିବା ଖୁଁଟୁ ଥା । ରଶି ଲମେ ନାଇଁ କି ଆଶା ଥମେ ନାଇଁ । ହେନ୍ତା ଜୀବନ୍ ଠାନୁ ମଲା ଉତ୍‌ରୁଁ କେନ୍‌କେ ଯାଏସନ୍ ଯେ ସେ ଠାନ୍ ଭାଏଲ୍ ବନ୍‌ଏ ଥିବା କେ ଜାନ୍‌ଏ ? ଗାଁ ମାନ୍‌କେଁ କା'ଣା ଅଛେ ? କେନ୍ ସୁଖ୍, କେନ୍ ସଂପଦ୍ ? କା'ର୍ ଲୁଭେଁ ଇନ ରହେତିଁ, ଇନ ଜୀଇତି ବଲ୍‌ବୁ ହେଲେଁ କହ ।

ଶୁକ୍‌ରୁ କହେଲା "ଇନ ସୁଖ୍ ନାଏଁନ, ସଂପଦ୍ ନାଏଁ ନ, ବଡ଼୍ ବଡ଼୍ ମହଲ୍ ନାଏଁନ୍; ହେଲେ ଇନ ଯେନ୍ ସଫା ନିରମଲ୍ ପବନ୍ ଟିକେ ଅଛେ, ସାଁକୁର୍ ପଛେ ହଉ ଖୁଲା ମନ୍ ଅଛେ, ସେ'ଟା ସବୁ ଆଏ । ସମ୍‌କିରି ଉପରେଁ ଅଛେ ଜନମ୍ ମାଏଟର୍ ଚୁମ୍ବକ୍ ଯେନ୍‌ଟାକି ଯେତେ ଦୂରେଁ ଥିଲେ ବି ଲୁକ୍‌କୁଁ ଟାନି ଆନ୍‌ସି । ବୁଢ଼ା ହେଲେଁ ବି ଯେନ୍ତା ମାଁର୍ କୁଡ଼େଁ

କୁଗ୍‌ରେଇ ହ ବାଗିର୍ ଲାଗ୍‌ସି । ଏ'ଦେ ନାଇଁ ଦେଖୁଛୁ, ଇ ରାମ୍-ରତନ୍ କେ । ଇତାକେ କାହିଁ ନି କାହିଁ କାଲିମାଟିନୁ ଟାନି ଆନିଥିଲା ସେ ଚୁମ୍ବକ୍ ।"

ଶୁକ୍‌ରୁର୍ କଥା ନାଇଁ ସରିଥାଇ ବାଗିର୍ ଲାଗୁଥାଏ ଆର୍ ବରଜ କହେଲା "ଦେଖିଲୁ, ଆମେ କଥାର୍ ସୁରେଁ କେତେଦୂର ପଳେଇ ଯାଇଥିଲୁଁ, ମୁଇଁ ପଚାରୁଥିଲିଁ ହେଁ ରାମ୍ ରତନର୍ କଥା । ଦେଖ ତ ଖାନା ପି'ନା କିଛି ନାଇଁ, ପଡ଼ିଛେ ଯେ ପଡ଼ିଛେ । ସେ ବିଚ୍‌ରାକେ ଲୋକ୍ ଆମ୍ ରତନ ବଲୁଥିଲେ ବୋ । ତାର୍ ଆମ୍ ଗଛ୍ ସାଙ୍ଗେଁ ଭାବ୍ ରଙ୍ଗ୍ ଦେଖିଁ । ତୁଇଁ ଯେନ୍ତା କରି ହେଲେଁ ବି ବଛରେ ପାଁଚ୍‌କର ତ ବଡ଼୍ ହେବୁ; ତୁଇଁ ବନ୍‌ଏ ଜାନିଥିବୁ, କହ ହେ ରାମ୍ ରତନ୍‌ର କଥା । ଆମେ କାହିଁ ଜାନ୍‌ତୁଁ ବୋ ତାର୍ କଥା । ସେ ତ କାହାରି ସାଙ୍ଗେଁ ହେତେ ବେଶୀ କଥାବାର୍ତା ହଏନାଇଁ, ତାର୍ ଆମ୍ ଗଛ୍ ସାଙ୍ଗେଁ ପଛେ ପୁଟ୍‌ପୁଟାଉଥିବା ।"

ଶୁକ୍‌ରୁ ବନ୍‌ଏ କଥାନିଟେ କହେବାର୍ ଢ଼ଙ୍ଗେଁ ରାଗତାନ୍ କରି କହେଲା - "ରାମ୍ ରତନ୍ ଆମର୍ ସାଙ୍ଗର୍ ଆଏ । ଏକାସାଙ୍ଗେଁ ପଢୁଥିଲୁଁ ଖେଳୁଥିଲୁଁ ବୁଲୁଥିଲୁ । ତାର୍ ବୁଆ ନଲ ମହାନ୍ ଜୁଆରି ଥିଲା । ଯେନ୍ ଟେପ୍‌ରେ ଟାଙ୍ଗ୍‌ରେ ଥିଲା ଜୁଆଁଥି ଝଁପେଇ ନେଲା ଉତ୍‌ରୁଁ ହିଆ ହାରିକରି ମରିଗଲା ବଲି ସଭେ କହେଲେ । ବୁଢ଼ୀଟା ବି ଦିନା ଚାରକେଁ ତାର୍ ପଛ୍ ଧଏଲା । ଦୁହିକର୍ କାମ୍ କାରଯ୍ ଥରକେଁ ହେଲା । ଗାଁର୍ ଲୁକେ ତାମ୍‌ଏ ମାନଏ ଚାନ୍ଦା ଭେଦା କରି ଇତାର୍ ମୁଣ୍ଡୁଁ ଖାର୍ ଟିକେ ହିଟାଲେ । ତାର୍ ନାନୀ ଭେନେଇ କାଲିମାଟି ନୁ ଆସିଥିଲେ । ଘରଟିକ ଗଁତିଆକେ ସଁପି ସାରି ନେଇ ଇତାକେ ଧରି କାଲିମାଟି ପଲାଲେ । ରାମ୍ ରତନର୍ ବି ବନ୍‌ଏ ହେତୁ ହଇଥିଲା ନ । ଗଲାବେଲେଁ ତାର୍ ନାନୀ ଗଁତିଆକେ କହିଥିଲା-

ଜମିବାଡ଼ି ତ ଗଲା ଦଦା । ଡ଼ିହ୍‌ଟିକ ତମର୍ ହେପାଜତ୍ ଥିଁ ରଖି-ଥିବ ଯେ କେଭେଁ ଜନମ୍ ମାଏଟ୍ ବଲିଁ ଫିରଲେଁ ରାମ୍ ରତନ୍ ରହେବା । ଗଲାବେଲେଁ ରାମ୍ ରତନ୍ ଆମର୍ ଘର୍‌କେ ଯାଇଥିଲା ଯେ ମୋର୍ ମା' ପାଲ୍‌କେଁ ମୁହିଁ ଆର୍ ଉଖୁରା କରି ବୁଟ୍‌କେ ଗଁଠେଇ ନେଇଥିଲା ଆର୍ ଚାଏରନି ଟେ ଧରେଇ କହେଲା -

"ବାଟେଁ ଘାଟେଁ ରେଲ୍ ମଟର୍ କରବ ପୁତା । ବଡ଼୍ ହେଲେଁ ଗାଁ ଭୁଇଁକେ ଫିରି ଆଏବ ।"

ବରଜ ହଁସି ସଁଭାଲି ନେ ପାରି କହେଲା "ଚାୟରନି ଟେ ?" ଶୁକ୍‌ରୁ ବଏଲା "ଆରେ ସେତେବେଲର୍ ଚାଏରନି ଟେ ଆଜିର୍ କେତେ ଟଁକା ହେବା କହ ତ ? ଚାଉଲ୍ ତାମ୍ବି ଦୁଇଅନା ଥିଲା ।" ଫେର୍ ନେ ଥେବି କରି କଥେନ୍ କହେଲା ମେତାଲ୍

କହେଲା “ଗାଁ ମୁଡ଼୍‌ସାର୍ ଡ଼ିହ, ବନିହାଁ ଲୁକର୍ ଲାଲ୍ ଥିପି ପରୁଥିଲା । ହେଲେଁ ଗଁତିଆ କାଏଁ ଦେତା କାହାକେ ? ସେତେବେଲେଁ ଗଁତିଆ ମାନ୍‌କର୍ ଗାଁ ଭୁଇଁ ନ ଯେନ୍ ପାଉର୍ ଥିଲା, ଏଛନି ତସିଲ୍‌ଦାର୍ କା'ଣା ଜିଲା ସାହେବର୍ ବି ନାଏଁ ନ । ବରଷ୍‌ଦୁ ଗଲା କି ଗଁତିଆ ନଡ଼ା ଛାଦନ୍ କରି ଗୁହାଳ୍ ବନାଲା । ପଛେଁ ରାମ୍ ରତନର୍ ଆର ସୋର୍ ଖବର ନେ ପାଏଲା କି ଝାଡ୍‌ଲା ମହଲ୍ ।

ଗଅଁତି ଗଲା, ପଂଚେତ୍‌ରାଜ ହେଲା ବେଲ୍‌କେ ସେ ଗଁତିଆ ହେଲା ସରପଂଚ୍ । ହେଁ ଘରର୍ ଟିକେ ଆଗ୍‌କେ ଧର୍‌ସା ଲାଗ୍‌ନୁ ଥିରେ ବାଗିର୍ ଗୁଟର୍ ଥିଲା; ସେନ ହେଲା ପଂଚେତ୍ ଅଫିସ୍ । ଧୀରେ ଧୀରେ ସରପଂଚ୍ ବନ୍ଧ୍‌କଟା ରୋଡ୍‌ରାସ୍ତା କାମ କରି ବନ୍‌ଏ ଦୁଇପଏ୍‌ସା କମାଲା । ପଏସାର ବଲେଁ ଚେଆରମେନ୍ ବି ହେଲା । ଗାଆଁ ରାମ୍‌ରତନ୍ କେ ପାଶ୍‌ରି ଥିଲା ନ, ହେଲେଁ ରାମ୍‌ରତନ୍ ଗାଆଁକେ ନାଇଁ ପାଶ୍‌ରି । ତାର୍ ନାନୀ ଭେନେଇ ସେ କାଲିମାଟି ନେ ମରିଗଲେ । ଇତାକେ କାର୍‌ଖାନା ଥିଁ ଭି ଭର୍‌ବାକେ ଭେନେଇ ଗୁସିଆଁ ଚେରେଷ୍ଟା ବି କରିଥିଲା ପରେ । ମାତର୍‌କ ଇତାର୍ ମନ୍ ନାଇଁ । କାହାର୍ ଟିଫିନ୍ କା'ର ମିଲ୍ ନିଆ ଅନା କରି ଦୁଇପଏସା ପାଉଥିଲା ।

ତାର୍ ହାତେଁ ପନ୍‌ତେଁ ଯାହା କିଛି ଥିଲା ଧରିକରି ଦିନ୍‌ଏ ଗାଁଥି ହାଜର୍ । ହାତେଁ ସୁରୁଟେ ସୁଟ୍‌କେଶ୍ ଆର୍ ମୁଡ଼େଁ ବଢ଼େଟେ ଆଶା । ତାର୍ ଡ଼ିହ୍ ଥିବା, ସେନ ଘର୍ ବନାବା । ସେ ଠାନେ ରହେବା । ତାର୍ ଡ଼ିହେଁ ଦେଖ୍‌ଲା ଯେତେବେଲେଁ ଯେ ବଢ଼େ ଜାବର୍ ମହଲ୍‌ଟେ ଠିଆ ହଇଛେ, ନିଜେଁ ବସି ପଡ୍‌ଲା ଦେଖ୍‌ଲା ସଙ୍ଗେ । ସରପଂଚ୍ ଦିନାଦୁ ଡ଼ାକି ହାକି ଖାଏବାକେ ପିଇବାକେ ଦେଲା ।

ଇଯେ ଜାନିଥିବାର୍ କବାର୍ ଗାଁନ ନାଇଁ, କି ଗାଁନ ଥିବାର ଖେତ୍‌ଖଲାର୍ କବାର୍ ଇତାକେ ଜନା ନାଇଁ । ଦିନୁ ଦିନ୍‌କେଁ ସରପଂଚ୍ ଧ୍‌କାର୍‌ଲା କି ପଂଚେ୍‌ତ୍ ଅଫିସର ପଛିଥିଁ ଶୁଏ, ଆର୍ କାର୍ ବୁଟ୍‌କା ପେଁଡ଼ା ଧରି ଇ ଗାଁନୁ ସେ ଗାଁ ଯାଇ ଯାହା ପାଏ, ଖିଆ ପିଆ କରେ । ଥରେ ମୁଡ଼ି ଅଷଡ଼ିଆ ହାଟ୍‌କେ ଗୁରିଆ ଘରର୍ ପସ୍‌ରା ବୁହିଁ ଯାଇଥିଲା, ଆର ଫିର୍‌ଲା ବେଲ୍‌କେ ଗୁଟେ କଲ୍‌ମି ଆମ୍ ଗଛ୍‌ଟେ ଧରିଁ ଆଏଲା । ମତେ ବଏଲା ଭାଇ ! ଇଟା ବାରମାସୀ ଫଲ୍‌ବା ବଲିଁ ବିକ୍‌ନେବାଲା କହୁଥିଲା ।ହେଥିର୍ ଲାଗି ଘିନି ଆନ୍‌ଲିଁ ବୋ ! । ବନ୍‌ଏ କଲୁ ବଲିଁ କହେବାର୍‌ଟା କହେଲିଁ, ନ କେ'ନ ଜଗାବା ବଲିଁ ମନେ ମନେ ଭାବୁଥାଏଁ । ନ, ପିଲା ତାର୍ ଡ଼ିହ୍ ଆର୍ ପଂଚେତ୍ ଅଫିସ୍‌ର ମଝିଁ ଯେନ୍ ବଢ଼େ ଢୁଡ଼ା ନାଇଁଥିଲା କାଏଁ ବୋ ? ପାଶେଁ ଖତ୍‌ମୁତ୍ ଘାଁସ୍ ପତର୍ ଅବଡ଼୍ ଜବଡ଼୍ ନାଇଁ ଥିଲା କାଏଁ ? ସକାଲୁଁ ଲାଗ୍‌ଲା ଯେ ଅଁଧାର୍ ନୈ ହଇ ପାର୍‌ଲା । ଖାଲ ପାଟିକରି ଆମ୍ ଗଛ୍‌ଟାକ

ଢଗେଇ ନେଲା; ଆଉର୍ ହାତ୍ ପାଁଚ୍‌କର୍ ଭାଉଁରେ ବନ୍‌ଏ ବାଁଜିକଁଟା ଲାଠ୍ ଦୁ ଆନି ଗୁନ୍ଧି ନେଲା । ଆମ ଗଛ୍‌କେ ଯେନ୍ ରକ୍‌ମେ ସଁଖ୍‌ଲା ବୁଟ୍‌ଲା କଲା ଦେଖ୍‌ବୁ ବଏଲେଁ ମହାପ୍ରୁର୍ ପୂଜାକଲା ମେତାନ୍ ବୋ । ଧୂପ୍ କାଠି ଜଲ୍‌ବାର୍ ଦେଖ୍‌ବୁ କି ଘି ସଏଲ୍‌ତା ଦେଖାବାର୍ ଦେଖବୁ ।ନିଜେଁ ପଛେଁ ଭୁଖେଁ ରହିଯିବା, ହେଲେ ଯାହୁଁ ହେଲେଁ ପିରୁଆ ଘିନି ଆନି ଗଛର୍ ବୁନ୍ଧ୍‌କେ ଛାଡ଼ି ଠାନ୍ ଠାନ୍ ଡୁପୁଥାଏ । ସେ ଆମ୍‌ଗଛ୍ ବି ବୋ କାହିଁ ପଡ୍‌ଲିଁ ବଏଲା; ଦିନ୍‌କ ପତ୍‌ରେ ଦିନ୍‌କ ପତ୍‌ରେ ପକେଇ ଦୁଇ ପାଏନ ନାଇଁ ଯାଇଥାଇ ନ ଫଲି ବସ୍‌ଲା । ଆମ୍ ଗଛର୍ ଚାର୍ହିକୁତି କନାମାନେ ଗାଡ଼ି ଆମ୍ ଗଛର୍ ଭାଉଁରେ ଖର୍ ପୁଆଲ୍ ଛାଇଁ କୁରିଆ ମେତାଲ୍ କରି ପକାଲା । ସେ'ନ ରାନ୍ଧ୍‌ଲା, ସେନ ଖାଏଲା ସେ'ନ ଶୁଆବସା ସବୁ । ବନ୍‌ଏ ଖରା ହେଲେଁ ଆମ୍‌ଗଛ୍‌କେ ଟିନ୍ ଟିନ୍ ପାଏନ ଆନି ଗଧେଇ ପକଉଥାଏ, ଆଉର୍ କହିଥାଏ ଯେ, ଖରା ନେ ହଉନୁ ମୁହିଁଟା ଉଲ୍‌ମେଇ ନେସି, କହି ପାର୍‌ଲେଁ ତ କହେତା ।

କେତେବେଲେଁ ବିହା ହେଲା ମାଏଝି ବାଗିର୍, କେତେବେଲେଁ ମା' ବାପ୍ ବାଗିର୍ ତ କତେବେଲେଁ ଜନମ୍ କଲା ଛୁଆପୁତା ମେତାଲ୍ ସେନ୍‌ହୋ ଆଦର୍ କରେ । ଆମ୍‌ଗଛ୍‌କେ ଗେଲ ଲାଡ଼୍ କଲା ଲେଖେଁ କଥାବାର୍ତା କରେ ବଲିଁ ଲୋକ୍ ତାହାକେ ଆମ୍‌ରତନ୍ ବଏଲେ । ଆଉର୍ କିଏ କିଏ ତ ବଂଝା ହେଇଗଲାନ ବଲିଁ ବିର୍ଝାଇ ବସ୍‌ଲେ । ଆମ୍ ଫଲ୍‌ଲା କି କିଏ ମାଗ୍‌ଲେଁ ରହ ପାଚିଦିଅ ଥିପିଦିଅ ବଲେ । ଥିପ୍‌ଲା ଲେତିମାନେ ମିଠା କାଏଁ ବୋ । ଖଣ୍ଡ୍ ମଧୁର୍ । ଥରେ ମୁହେଁ ଯାର୍ ପରିଛେ ପାଶ୍‌ରି ନାଇଁ ପାରେ । ଥିପ୍‌ଲା ଲେତି ମହାପ୍ରୁ ଗୁଡ଼ି, ମହାଦେବ୍ ଗୁଡ଼ି, ସମଲେଇ ଗୁଡ଼ିକେ ପଠାଏ । କା'ର ଘରେ ସତ୍‌ନାରେନ୍ ପୂଜା ହେଲା କି ତିର୍ନାଥ୍ ମେଲା ହେବାର୍ ଖବର୍ ପାଏଲେଁ ସେନ ଦେଖ୍‌ବୁ ତାର୍ ପାଚ୍‌ଲା ଆମ୍ ଭୋଗ୍ ଲାଗିଥିବା । କା'ର୍ ଘରେଁ କିଏ ବେମାର୍ ସେମାର୍ ଅଛେ ବଲି ଜାନ୍‌ବା କି, ତା'ର୍ ଝି ବହ ଆଶ୍‌ରେ ହଇଥିବାର୍ ଜାନ୍‌ଲା ବେଲେଁ ସେ ନିକେ ନିଜେଁ ଯାଇକରି ଦେଇଆସେ । କିଏ ପଏସା ପତର୍ ଯାଚ୍‌ଲେଁ କହେ ମହାପ୍ରୁର୍ ପର୍‌ସାଦ୍ ଥିଁ କାଏଁଦାମ୍ କାମ୍ ?

ତୁଏ ପାଚଲେଁ ସେ ଗଛେ ଫେର୍ ବଉଲ୍ ଆସେ । ଏନ୍ତା ବି ମୁଇଁ ଦେଖ୍‌ଛେଁ ବୋ ! ଗଛେଁ ବଉଲ୍, କଷି, ପାଚ୍‌ଲା ତିନ୍‌ହିଁ ଅବସ୍ଥାର୍ ଫଲ୍ ଥିବାର୍ । ଫଲେଁ ଲହଁସୁ ଥିବାର୍ ଡ଼ାହି ମାନ୍‌କୁଁ ଦେଖବବେଲେଁ ରାମ୍ ରତନର୍ ଗୁଟେ ଭାବ୍ ତହଁରି ଆସେ, ଯେନ୍‌ଟା କି ଚଉବରଗ୍ ପୂରିଥିବାର ଲୁକର୍ ମୁହେଁ ଭି ନେ ଦେଖିପାରୁ । କେତେବେଲେଁ ଗଛେ ଅଦ୍‌ଲେଇ ହଇଁ ଉପର୍‌କେ ଦେଖୁଥାଏ ତ କେତେ ବେଲେଁ ଗଛର୍ ଡ଼ାଲେଁ ପତ୍‌ରେଁ ଚୁମା ଦଉଥାଏ । କବାର୍ କମ୍ ଲାଗିଁ ବି ଆଉର୍ ଦୁରିଆକେ ଯିବାକେ ମନ୍ ନାଇଁ କଲା ନ । ଖାଏବାର୍ ବି ଚିନ୍ତା ଧକ୍ ନାଇଁ । କିଛି ନେ ହେଲେଁ ଲେତି ଗୁଟେ ଖଣ୍ଡ୍‌ଏ ଖାଇ ପାଏନ୍

ପେଟେ ପି ଦିନ୍ ଦିନ୍ ରହିଯାଏ । ଏନ୍ତା ଭାବେଁ ବଢ଼େ ଆନନ୍ଦ୍ ଉଲାସ୍ ନେ ଥିଲା ରାମ୍ ରତନ୍ । ତାର୍ ଡ଼ିହ୍ ନାଇଁ ଥିବାର୍, ଇ ସଂସାରେ ତାର୍ ନିଜର୍ ବଲି କିହେ ନାଇଁ ଥିବାର୍ ସେ ଜାନି ନାଇଁ ପାରୁଥାଇଁ । ତାର୍ ମା'ବାପ୍, ଭାଇ ଦାଇ, ପୁଓ ମାଓପୋ, ଦେ ଦେବ୍ତା ସବୁ ଥିଲା ତାର୍ ଆମ୍ ଗଛ୍ ।

ସରପଂଚ୍ ତାର ଠିକା କାମର୍ ମାଏଟ ଗୁଗଡ଼ି ଦୁହାରବାର୍ ଆର୍ ଖେତି କାମ୍ ଦୁହିଟା ପଟ୍ବା ବଲି ଟାକ୍ଟରେଟେ ଆନ୍ଲା । ହେଲେଁ କେ'ନ ରଖିବା ? ସେନ୍ତା ଜାଗା କାଇଛେ ? ରାମ୍ ରତନର୍ ଡ଼ିହ୍ ଉପରେ ଠିଆ ହଇଥିବା ତାର ନୂଆଁ ମହଲ କେ ଲାଗି ଇ ଜାଗାଟାକେ ଆଏଁଖି ପକାଲା; ହେଲେଁ ଚିପୋ ରାମ୍ ରତନର୍ ଆମ୍ ଗଛ୍ଟା କାଲ୍ କଲା । କେନ୍ତା କରସି ? ଲାଖ୍ ଲାଖ୍ ଟଁକାର୍ ଟାକ୍ଟରଟାକେ ହେନ୍ତା ଯାହିଁ ତାହିଁ ଆଖିର୍ ଉଢ଼ାଲେଁ ତ ନାଇଁ ରଖି ହଏ । ବଙ୍ଗୋ ଶଶୁର ! ଗଛ୍ଟେ ଜଗେଇ ନେଲା, ନେହେଲେଁ ହେଁ ଠାନେ ଛାଦନ୍ ଟିକେ ଉତରେଇ ନେଇଥିଲେଁ କେତେ ସୁନ୍ଦର୍ ହଇଥିତା । ମନ୍କେ ମନ୍ ହୁରଗୁନି ହଇଁ ଗୁମ୍ ହଇଁ ରହେଲା ସରପଂଚ୍ ।

ଦିନା ତିନ୍ଏ ହଉଛେ । ରାମ୍ ରତନ୍ ଗୁରିଆ ଘରର୍ ପସ୍ରା ନେଇ ହାଟ୍କେ ଯାଇଥାଏ । ସେ ଦିନର୍ ବେଲ୍ବୁଡ଼ିଆ ନିର୍ଧୁମ୍ ବରଷା ନାଇଁ ହେଲା କାଏଁ । ସେମାନେ ଆରଦିନର୍ ସକାଳ୍ ପୁଆକେ ଯାଇ ଆଏଲେ । ଆସିକରି ଦେଖିଲା ଯେ ତାର୍ ଆମ୍ ଗଛ୍ଟା ଲାଙ୍ଗ୍ଛାଟ୍ ହଇଁ ଶୁଇଛେ । ଗଛ୍ ବୁନ୍ଦେଁ ଡ଼ଲେ ମେତାଲ ଦରଦ୍ କଟା ଛାଲି ପଡ଼ିଛେ । ରାମ୍ ରତନ୍ ଦେଖିକରି କାନ୍ଦି ବି ନେ ପାର୍ଲା ।ତାର୍ ଆଖିର୍ ଲହ ସବୁ ଆମ୍ ଗଛର୍ କନ୍ଦ୍ନା ଥିଁ ମିଶି ସତେଁ କାଏଁ କଟା ଜାଗାନ ରୁକିଁ ହଉଛେ ।ଖିଆପିଆ କିଛି ନାଇଁ; ଯେ ଗଲେଁ ଯାହା କହେଲେଁ ଉଁ ସୁଁ କିଛି ନାଇଁ; କାଲି ଭକ୍ ଭକ୍ ଦେଖୁଛେ । ଗଛ୍ଟାକେ ଆବ୍ରି ଧରି ନିଜେଁ ବି କଟାଗଛ୍ ଲେଖେଁ ପଡ଼ିଛେ । ପିରୁଆ ବୁଚ୍କେଇ ଥିବାର୍ କରିଆ ଖଣ୍ଡେ ବେକେଁ ଗୁରେଇ ହଇଛେ ଯେ ଚାଁଟି ଧାର୍ ଲାଗିଛନ୍ । ତାର୍ ଦିହ୍ ମୁଡ଼୍ ଯାକ ଜାଗାନାଇଁ ।

ବରଜ ପଚରାଲା "କିଏ କାଟିଥିବା ଗା ? ଦେଖିତ ଇ ଅନ୍ନିଯେ ବୋ ! ସଂସାର୍ ଇଥିଁ ରହେବା ? ଏନ୍ତା ଥିଁ ସମିୟା ସୁକାଲ୍ କରବା ?"

ଶୁକ୍ରୁ କହେଲା "କିଏ କାଟିଛେ ସଭେ ଜାନୁଛନ୍ ପିଲା !, ନ କିହେ କାହାରିର୍ ନାଁ ନେ ଧରନ୍ । ଆମର୍ ଗାଁ ପରେ ଅନ୍ନିୟେ ଅନୀତିର୍ ଭଣ୍ଡାର୍ ହଇଗଲା ନ ବୋ ।"

ବରଜ ପଚାରଲା "ସରପଂଚ୍ ସେନିକେ ଯାଇଥିଲା ବୋ ?"

ଶୁକ୍ରୁ କହେଲା "ସରପଂଚ୍ କେ ତ ସେ ଦିନୁ କିହେ ଦେଖନ୍ ନିହେ, ତଳ୍ ଗଲା କି ଉପର୍ ଗଲା, ଯେ ଉଦୁଛେ ବୁଡୁଛେ ସେ ଜାନ୍ବା।"

ଦୁହେ ବାଟର୍ ଅନ୍ଧାରେଁ ହଜି ଯାଉଥାଆନ୍ ଗଲା ଆଏଲା ଲୁକର୍ ମଝି, ଆର୍ ଅନ୍ଧାର୍ ବି ଆହୁରି ଆହୁରି କଲାରଙ୍ଗ ଥିଁ ଶୀତ୍ ମିଶେଇ କରି ପିଇ ପିଇ ଚାପିଁ ଆସୁଥାଏ ।



କାଗଜ୍ ଥିଁ କଲମର୍ ଗାର୍ ନାଇଁ ଦିଶ୍‌ବାର ନ । ବନ୍‌ଏ ଅନ୍ଧାର୍ ହେଲାନ, ତବି ସଡ଼କେଁ ଲୁକର୍ ଧାର୍ ନୁହେ ଛିଡ଼େ, ଚାଲିଛେ, ସାଙ୍ଗେଁ କଥାର୍ ଧାରଟେ ଛୁଟୁଛେ। ସତ୍‌ସତାନି ଲୁଭଲୁଭାନି ହେଲେଁ ବି ସଁଖିଲିବାର୍ ଗୁଟାବର୍ ଲୋକ୍ କିହେ ନାଇଁ । ସକାଲୁଁ ଅସିଥିଲିଁ ଖଲାକେ । ଖଲାଟା ଦେଶର୍ ଗୁଟେ ବନ୍‌ଏ ସଡ଼କର୍ ତରେଁ ଥାଇ ଭ ଶଏନ୍‌ବାର୍ ହାଟର୍ ଆଏଲା ଗଲା ଲୁକର୍ କଥାମାନ୍‌କୁଁ କାନ୍ ପାରିକରି ଶୁନ୍‌ଲା ମେତାଇ ଡୁଗ୍ ଡୁଗ୍ ଦେଖୁଛେ ।

ଘରୁଁ କାଗଜ୍ କଲମ୍ ଆନିକରି ଆସିଥିଲିଁ, କିଛି କଥାନିର୍ ଫୁଲ୍ ଗାଁଥି ହାରଟେ କରି ଭାଷା ମାଆଁକେ ପିନ୍ଧାମି । ଭାବି ଦେଖିଲିଁ କେତେ କଥେନ୍, କେତେ ବିଷେ, ଅକଥନ୍ କଥାର୍ ଫୁଲ୍ । କେନ୍‌ଟା କହଁଡ଼୍ ହେବାର୍ ଆଗୁଁ ଝରିଗଲା; କେନ୍‌ଟା ଫୁଟ୍‌ବାକେ ହଉନ୍ ହଉନ୍ ଝୁରମୁରେ ଗଲା । ଯେନ୍ ଗୁଟେ ଖଁଡ଼େ ଫୁଲର୍ ରୂପ୍ ଧଏଲା ସେ ସବୁ କାଗଜର୍ ଫୁଲ୍ ମେତାଲ୍ ଲାଗ୍‌ଲା । ରଙ୍ଗ ନାଇଁ କି କହର୍ ନାଇଁ ।

ସଡ଼କର୍ ଧାରେଁ ଧାରେଁ ଭାର୍ ଭାର୍ କଥାର୍ ଧାରଟେ ଲୁକ୍‌କର୍ ମୁହେଁ ଉଲ୍‌ଦିଁ ହଉଛେ । ନିଜର୍ କଥା, ଘରର୍ କଥା, ଗାଆଁର୍ କଥା, ମୁନୁଷ୍ ଜୀବନର୍ ସତର୍ କଥା, ଭୁଗ୍‌ଲା କଥା । ସେଥିଁ ବନୋଟି ନାଇଁ ଦେଖେଇ ହେବାର୍ ବାଗିର୍ ଭାବ୍‌ନା ନାଇଁ । ଗାଁର୍ ଢ଼ଁକ୍, ଗାଁର୍ ଉପମା ଗାଁର ବିଷେ, କେତେ ସରଲ୍ କେତେ ତରଲ୍ ଭାବେଁ ଇ ମୁହୁଁ ସେ କାନ୍‌କେ, ସେ ମୁହୁଁ ଇ କାନ୍‌କେ ହଇ ଗଦେଇ ହଉଛେ । ସେନୁ ଭାରେ କଥା ଉଠାଲିଁ, ଗଁଥିଲି ଗୁଟେ ହାର୍ ସଏଦ୍ ଫୁଟ୍‌ଲା ଫୁଲର୍ । କହର୍ ଭର୍ ଭର୍, ମହକ୍ ସରସର୍ ବାଗିର୍ ମତେ ଲାଗୁଥାଏ ସିନା ମୋର୍ ମାଁର୍ ମନ୍‌କେ କେନ୍ତା ଆଏ ବା ଯେ କେ ଜାନ୍‌ଏ ?



# ନୂଆଁଖାଇ

"ଗାଁ ଗଁଡ଼ା ଡ଼କ୍‌ରା ପକାଲା ନ ଆଜ୍‌ହରି ଦିନ୍‌କେ ନୂଆଁଖାଇ । ମଝି ଗୁଟେ ନ ହାଟ୍ ପର୍‌ବା । କା'ଣା କରିହେସି ? ନୂଆଁଖାଇ ବଛରଟାକେଁ ଦିନ୍‌ଏ । ମାଇ ତିହାର୍ ଆଏ, ବାପ ଅଜା ତେପନ୍ ପୁରଖା ମାନି ଆଇଛୁଁ, ନାଇଁ ମାନ୍‌ଲେ ହେଲେଁ ଚଲ୍‌ବା କାଏଁ? ହେଲେଁ ତିହାର୍‌ଟେ ବଏଁ ଲେଁ କା'ଣା କର୍‌ବୁ ? ଘରେଁ ନାଇଁ ଥିର୍ ଟଷ୍ଟ, କା'ଣା ନେଇ ଆବ୍‌ରି ବସ୍ତୁ ବଏଲା ବାଗିର୍ କଥା ।"

ତାର୍ ତାର୍ କହେଲା ମେତାଲ୍ କହୁଥିଲା ବିଶାଲ୍ ବୂଢ଼ା । ତାର୍ ବହ ଟୁକେଲ୍‌ଟା ରନ୍ଧାଘରେଁ ଥିର୍ ଢୁକେ ଉଲ୍‌ହଉ ଥିଲା । ଆର୍ ପୁଓ ଜୀବର୍‌ଧନ ପଛିଥିଁ ବସି ତାର୍ ଉଦା ଲୁହୁଙ୍ଗି ଟା ଗୁଁଡ଼ିଆ କୁହୁଲା ଅଁତ୍‌ରା ଉପ୍‌ରେଁ ଶୁଖଉଥିଲା । ଦୁହେ ଶୁନୁଥିଲେ ବୂଢ଼ାର୍ କଥା, କିହେ କିଛି ନାଇଁ କହୁଥାଇଁ ।

ଫେର୍ କହେଲା ବୂଢ଼ା, "ହଁ ଆମର୍ ଦିନ୍‌କେ ଆମର୍ ବାପ୍ ଅଜା ଅମଲୁଁ ଘରର୍ ଯେ ବଏଠା ବସାସିଁ, ଯେ ଦେ ଦେବ୍‌ତା କରସି, ତାର୍ ଲାଗି ହାତେ କାଣ୍ଏ ଯାହା ହେଉ ନୂଆଁ ବସ୍ତର୍ ଟିକେ ଅନା ହଉଥିଲା । ସେଟାକେ ପିନ୍ଧି ସେ ବଏଠା ବସୋଉଥିଲା, ଦେ ଦେବ୍‌ତା କରୁଥିଲା । ହେଲେଁ ସେ ଦିନ୍‌କାଲ୍ ଗଲା ନ । ଆଗୋ ଟଁକେ ସୁକେ ନ, କି ପଛେଁ ପଛେଁ ଆମର୍ ଅମଲର୍ କଥା ନ ବି ପାଁଚ୍ ଦଶ୍ ଥିଁ ଥି ଗଏଲ୍ କପ୍‌ଟା କି କକେନ୍‌ପର୍, ଆର୍ ଟିକେ ଉପର୍‌କେ ଗଲେଁ ଦୁଇଫୁଲିଆ କପ୍‌ଟା ମିଲୁଥିଲା ।କାଏଁ ଯୁଗ୍ ହେଲା ଯେ ତ ଶଅ ନେ ଗନଲେଁ ଗୁରେଇ ହେବାର୍ ଯୁକ୍ତିରି ଛିଡ଼ା ହାତେ ନାଇଁ ମିଲେ । କା'ଣା କରିହେସି ?" ବଲିଁ ଲମ୍ୱା ନିଶାସ୍‌ଟେ ପକାଲା ।

ଜୀବର୍‌ଧନ୍ ବଏଲା "କପ୍‌ଡ଼ା ଲତାର୍ ନାଁ କା'ଣା ଧରୁଛୁ ବୂଆ ! ଭାତ୍ ତୁନ୍ ଟିକେ ଖଞ୍ଜି ହଉଛେ କି ନି ଦେଖ୍ । ପିଠାପନା କଥା ତେନ୍‌କେ ଥାଉ । ଏ'ଦେ ଦେଖ୍ ଯେ ଚିନି କେଜି ଦଶ୍‌ଟଁକା, ଗୁର କେଜି ସାତ୍ କି ଆଠ, ମୁଗ୍ ବାର, ଅଟା ଛଅ । ଆର୍ ତେଲ୍ ଚାଲିଶ୍ । ଚାଉଲ୍ କେଜେ ଘିନ୍‌ବା ଯେ ତାହାକେ ବି ଛ'କି ସାତ୍ ଟଁକା ଗନ୍‌ବାକେ ପଡ଼୍‌ବା ।ତେହେଁରୁ ଗଲା ତେହେଁରୁ ଗଲା ନୁନ୍ କେଜି ବି ଡ଼େଢ଼୍‌ଟଁକା । ଖା, କେନ୍ତା ନୂଆଁ ଖାଏ ସୁ ଯେ । "

"ସର୍କାର୍ ବଲ୍‌ସି ସବୁ ଜିନିଷ୍ ସୁଲଭ୍ ଦରେଁ ପର୍ବତ୍ ଉପରେଁ ବି ପରେ ଯୁଗେଇ ନଉଛେ । କେଭେଁ? କେନ? କାହାକେ? ଯେ କେ ଜାନ୍‌ଏ? କିସ୍ତାନି ତେଲ ଲାଗି କେତେ ଗୁଲ୍‌ଗୁଲା ଦେଖି ତ । ଭଲେ ତୋର୍ ବହ ଦିନ୍ ଦୁଇପହର୍ ନାଇଁ ମାନି, ଖରା ତରାକେ ନାଇଁ ଡ଼ରି ଟୋଲ୍ ଗରା ଗୁଡ଼ାଦୁ କେନ୍ତାକରି ବେଟିଥିଲା ଯେ, ଘନ୍‌ଏ ଦୁଇଘନୋ ଘରେ ଥିଲା ବଲି ସେଥିଁ ଆମେ ରାଏଜ୍ କରୁଛୁଁ । ସେ ଟିକ ମଖା ଘଁଷା ପର୍ଛା ଉର୍ଛା ସବୁ। ରାତିଁ କେତ୍‌ରାଖିଆ କେଁଚ୍ ମାନ୍‌କେଁ ଦେବାକେ ବି ସେଟା ନ । ସେଥିଁ ଅଗ୍‌ଲା ଉଛ୍‌ଲା ଟିକେ ଥିଲା ଯେ, ସଏଲ୍‌ତାଟେ ଲଗେଇଁ ରାତିର୍ ଖିଆପିଆ । ନେ ହେଲେଁ ଅନ୍ଧାର୍ ରାଏ ତ୍ କାହାର୍ ଜାଏ ତ । କିସ୍ତାନି ଟିକେ ବି ନାଇଁ ମିଲ୍‌ବାର । ଇଆଡୁଁ ଯେ କହୁଥିଲେ ଖାଏବାର୍ କାଯେଁ ପାମୋଲିନ୍ ତେଲ୍ ପରେ ସରକାର୍ ଶସ୍ତା ନ ଦେସି । ସେଟା ଏକା ସହରୁଁ ଗାଁକେ ନାଇଁ ଆସେ । ବାଟ୍ ଭୁଲି ଯାଏ ସି କାଏଁ? ସେଟା ଏକା ସହରୁଁ ଗାଁକେ ନାଇଁ ଆସେ । ବାଟ୍ ଭୁଲି ଯାଏ ସି କାଏଁ? ଗାଁମାନ୍‌କୁଁ ବାଟ୍ ହେଲେଁ କେନ ଅଛେ ଯେ ଆଏ ତା ।" ଜୀବର୍‌ଧନ୍ ଆର୍ ବି କାଁ କା'ଣା କହିଥିତା, ହେଲେଁ ବୁଢ଼ା ସେ ଅଁଧାରେ ବି ତାର୍ ଆଡ଼୍‌କେ ମୁହଁକରି ସଁଭରି କରି ବସ୍‌ଲା ଆର୍ କହେଲା -

"ମୋର୍ ଘର୍ ବସିଥିଲା ନ, ତୁଇଁ ଦେହେଁ ଥାଉ । ହେ ବଛରର କଥା ଆଏ ଲେଖେଁ ସୋର୍ ପରୁଛେ । ଆମର୍ ଗାଁର୍ ବେହେରା ବୁଢ଼ା ଗାଁଧୀ ମହାରାଜ୍‌ର ନାଆଁ ଧରି ଜିହଲ୍ ଯିବାର ଥାଏ । ସେ ସଭାକେ ମୁଇଁ ଯାଇଥାଏଁ । ସେ ସଭା ନିକେ ଲୁକେ ବନିହେନ୍ ଆସିଥାନ୍ । ସେମାନେ ସେନ ଯେନ୍ କଥାମାନେ କହୁଥାଆନ୍ ସୋର୍ କଲେଁ ଏଛନି ବି କାନେ ପିଟି ହଉଛେ ଲେଖେଁ ଲାଗ୍‌ସି । ଆମେ ପର୍‌ଦେଶୀ ଶାସନ୍ ଥିଁ ଅଛୁଁ ବଲି ଗରିବ୍, ପେଟ୍‌କେ ଗୁଁଣ୍‌ଏ, ପିଠ୍‌କେ ଖଣ୍‌ଏ ଜୁଟେଇ ନେ ପାର୍‌ବାର୍ । ସରାଜ୍ ହେଲେଁ ଆମେ ଆମର୍ ଦେଶ୍‌କେ ସଁଭାଲ୍‌ମା । ସବୁ ଦରବ୍ ଶସ୍ତା ହେବା । ଗରିବ୍ ବଲ୍‌ବାର୍‌ଟା ନୁର୍‌ଲେଁ ଖୁଜ୍‌ଲେଁ ବି ନାଇଁ ଥିବେ।

ଏ'ଦେ ତ ବୁଆ! ସରାଜ୍ କେଭୁଁ ହେଲା ନ; ଆମର୍ ଲୁକର୍ ହାତେଁ ଶାସନ୍ ଅଛେ । ଗଁଧିରି ତେଲ୍ ଟିକ୍‌କର ଲାଗି ବି ଗୁଲାଚୁଲା । କରିଆଟିକେ ଗୁର୍ହେଇ ହେବାକେ ନାଇଁ କି କୁରିଆ ଟିକେ ମୁଡ଼୍ ଲୁକାବାକେ ନାଇଁ । ଆମର୍ ଗାଁ ଗଁଡ଼େଁ ଯାହାକେ ଦେଖିବ ସେ ଗରିବ୍, କିହେ କାହାକେ ଖଁଡ଼୍‌ଏ ମାନ୍‌ଏ ଚଲେଇ ନେ ପାର୍‌ବାର୍ । କାଁ ସରାଜ୍ ବୁଆ ଇଟା? ଆଗୋ ପଛେଁ ଲୋକ୍ ନୁକୋ ଥିଲେ ।"

ବୁଢ଼ାର୍ କଥା ନେ ସରୁନୁ ଜୀବର୍‌ଧନ୍ ବଏଲା "ସବୁକଥା ବଢ଼ିଛେ ଯେ ବୁଆ ! ଆମର୍ ଲାଗି ନିହେ । ଯେନ୍‌ମାନେ ଶାସନ୍ ଥିଁ ଅଛନ୍ ଆସନ୍ ଥିଁ ଅଛନ୍, ସେମାନଙ୍କୁଁ

ଦେଖିବୁ ଯା । ଫଟା କୁରିଆ ବାଲା ତିନ୍ ମହଲା କରୁଛେ; ଭଙ୍ଗା ସାଏକଲ୍ ଚଢ଼ିବାକେ ନାଇଁ ମିଲୁଥିଲା ଯାହାକେ ସେ ଉଡ଼ାଜାହାଜ୍ ଚଢୁଛେ । ହେଟା ତ ସରାଜ । ହେମାନ୍‌କର ଲାଗିଁ ଆଏ । ଆମର୍ ଲାଗି ଦେଶୀ ଶାସନ୍ ଯାହା ପରଦେଶୀ ଶାସନ୍ ତାହା । ସରାଜ୍‌ର ସୁଫଳ୍ ବରଷିଲା ପାଏନ୍ ଲେଖେଁ ଆଏ । ଉହୁଲେନ୍ ଦେଖି ଜନା ପରସି ଆଏଁଖିକେ ଦିଶ୍‌ସି । ଆମେ ତ ଠଠ୍‌ଙ୍ଗୋ ଟାଙ୍ଗର ।"

ବୁଢ଼ା ତୁରତି ତତାପନା ଥିଁ ମୁକ୍ତ କଲା ପେର୍- ଛାଡ଼୍‌ରେ ବୁଆ ! ହେଁ ସବୁ କଥା; ଆମେ କେନ୍ତା କରମା କହ । ଦେଖି ଯେ ମୋର୍ ମା'ର ଲାଗି ମୋର ଅଜା, ତୋର୍ ମା'ର ଲାଗି ମୋର୍ ବୁଆ, କପ୍‌ଟା ଖଣ୍ଡ଼ଏ ଇ ଦିନେ ଆନନ୍ । ମୁଇଁ ଭି ଅବ୍‌ତକ୍ ଆନୁଥିଲିଁ । ଏସୁର୍ କା'ଣା କରସିଁ ବଲୁଛେଁ । ଆଛା ଗୁଟେ କଥା କର୍ ।"

ବୁଢ଼ା ଟିକେ ମେତାଲ୍ ଥେବି ଭାବ୍‌ଲା ପରେଁ କହେଲା "ପାଏନ୍ ଝଁକେର୍ ବଳି କାଠ୍ ଖଣ୍ଡେ ଥିଲା । ତଳି ଟେପ୍‌ରିର୍ ପୁଇ ଜାମ୍ ଗଛ୍‌ଟା ଠାଡ୍‌ମରା ହଇଥିଲା ବଲି ଆନି ରଖିଥିଲି । ଗାଡ଼େ ନୁ କମ୍ କାଠ ନାଇଁ ହଏ । ସାଏକଲ୍‌ଏ କାଠ୍ ଆନ୍‌ଲେଁ ଲୋକ୍ ଚାଲିଶ୍ ପଚାଶ୍ ବିକୁଛନ୍; ଯା' ନେଏ ବିକି ଆନ୍, ଅବେଶ୍, ଜହ ନେହେଲେଁ ବି ଛ'କୋର୍ କି ସାତ୍ କୋର୍ ନୁ କମ୍ ନାଇଁ ହଏ । ହେଁଥିରୁ ଛିଡ଼ା ହାତେ ଘିନି ଆନ୍‌ବୁ ଭୁଆଷେନ୍ ଲାଗି । ତାର୍ ପିଁଧିନା ବି ତ ନାଇଁନ, କେଭୁଁ ନି କେଭୁଁ । ଖଁଡ୍‌ଏ କେ କାଟି ଖୁନ୍ଦି, ଧୁଇ ଶୁଖେଇ ପିଁଧୁଛେ । ସେଥିଁ ଅଗ୍‌ଲିଲେଁ ଅଟା, ଚିନି, ଗୁର୍, ମୁଗ୍ ଯାହା ପାରବୁ ଘିନି ଆନ୍‌ବୁ । ସଖାଲୁଁ ଯା' ଯେ ବେଲା ତକ୍ ଘୁଚି ଆଇଥିବୁ ନ ।"

"ସତ୍ ଆଏ ଯେ" ଜୀବରଧନ୍ କଥା ଲେହେଁଟାଲା "ମୁଇଁ ବଲୁଥିଲିଁ କି ସାର୍ ବସ୍‌ତେ ଆନ୍‌ତାଁ । ନେ ଦେଖୁଛୁ, ଦୁସ୍‌ରା ଲୁକର୍ ଖେତ୍‌ମାନେ କେନତା ଲେସୁନ୍ ପତ୍ରିଆ ଧରି କୁସେର୍ ବାଏର ବାଗିର୍ ଦିଶୁଛେ, ଯେନ୍ ସାର୍ ଟିକେ ରଁଚେ ପରିଛେ । ସଂସାର୍ ଲଁଟୁଆ ହଇଗଲାନ ବୁଆ ! ଅଫ୍‌ସର୍ ନୁ ଧାନ୍ ଗଛ୍ ତକ୍; କିଛି ନାଇଁଦେଲେ ନାଇଁ ହଅନ୍ । ତୋରନ ବି ତ କରିଆ ଏଖେଇ ଖଣ୍ଡ଼ଏ ଅଛେ, ଯେନ୍ ଆଠ୍‌ହାତୀ ଖଣ୍ କ ମୋର୍ ମାମୁଁ ଘରେଁ ଦେଇଥିଲେ ମୋର୍ ମା'ର କାରଯ୍‌କେ । ମୋର୍ ଲୁହୁଙ୍ଗି ଖଣ୍ଡ଼ଏ ପର୍ଛା କୁଲ୍‌କୁଲା ହଇଗଲା ନ, ଆର୍ ଖଣ୍‌କ ଶୁଖାଲେଁ ଯାଇ ପିଁଧି ହଉଛେ । ହେଁସବୁ କରତାଁ, ଧାନ୍ ଚାଉଲ୍ ହେଲେଁ ତାର୍ ଲାଗି କପ୍‌ଟା ଘିନ୍‌ତାଁ ନ ।"

ଜୀବରଧନର୍ କଥା ନେ ସରୁନୁ ବୁଢ଼ା କହେଲା "ନାଇଁ ଗା ବୁଆ ! କପ୍‌ଟା ଖଣ୍ଡ଼ଏ ଯେନ୍ତା କରି ହେଲେଁ ଆନ୍‌ବୁ । ସାର୍ ବଳ୍‌ସୁ ଯେ ମତେ ଥିର୍ ଢୁକେ ଢୁକେ ନେଇନେବ ତ ମୁଇଁ ଦୁଇଦିନେ ତୋର୍ ଜମିନ୍ କେ ସାର୍ ସରସର କରିନେମି । ଡ଼ଲାଭାର୍ ଧଏଲିଁ

ବଏଲେଁ ଭାରକେ ଭାର୍ କଁଟା ଗୁବର୍ ତୋର୍ ତୁଲିକେ ତୁଲି ରୁକି ଆନ୍‌ମି । କେତେ ଖ' ଜମିନ୍ ଯେ ବୋ ! ଧାନ୍ ପୁରୁଗ୍ କର୍ ପରନ୍ ତ । ଦୁଇ ଏକର୍ ହେବା କିନି କେ ଜାନ୍‌ଏ, ମତେ ଦିନ୍ ଦୁଇଟା କି ତିନ୍‌ଟା ଲାଗ୍‌ବା । ସାର୍ ପକାଲେଁ ମାଏଟ୍ ପଖନ୍ ପାଲ୍‌ଟି ଯାଏ ସି ବୋ ! ପୋକ୍ ରୋଗ୍ ବି ବାଟ୍ ଦେଖୁଥିସନ୍ । ଆର୍ ଏସୁନ୍ ସାଲେଁ ଲୋକ୍ ସାର୍ ବିଷେ ଥିଁ ସର୍କାରର୍ ଯେନ୍ ପେଁଚ୍‌ପାଁଚ୍ କଥା କହୁଛନ୍ ଯେ, ଥିଲା ଲୋକ୍ ତ ହଦ୍‌ରି ବସୁଛନ୍ ଆର୍ ଆମର୍ ତ ଥାଁ କଲେଁ ବତିଶ୍ ଦାଁତ୍ ଦିଶୁଛେ ।"

"ଢ଼େଗି ଉଡ୍‌କିକରି ଭି ଝାରିଝୁରା ନାଇଁ ପାର୍‌ଲା କି କୁଲିହା ପରେ କହେଲା ଛଡ଼ ଅଙ୍ଗୁର୍ ଫଲ୍ ଆମଟ୍ ଲାଗ୍‌ସି; ହେନ୍ତା ମେତାଲ୍ କଥା ଆଏ । ହଉ ତୋର୍ କହେଲା କଥା କର୍‌ମା ।" କହିକରି ଜୀବର୍ଧନ୍ ଟିକେ ହଁସି ପକାଲା; ଯେନ୍ ହଁସି ନେ ଝରି ପରୁଥିଲା ତାର୍ ମନ୍ ଭିତରର୍ ଅସନ୍ତୋଷ, ବନିହାଁ କରି ଜମି ରହିଥିବା ଚାଷୀ ଜୀବନର୍ ଦରଦ୍ ।

ହାଟର୍ ଦିନ । କାଲ୍‌ହିର ନୂଆଁଖାଇ । ଜୀବର୍ଧନ୍ କୁକ୍‌ରାଡ଼କୁଁ ତାର୍ ଉଲ୍‌ଟି ଥିଁ ଯାହା କାଠ୍ ଥିଲା ଗାଡ଼ି ନେ ଯାହା ଧରାଲା ଜୁଗ୍‌ରାଲା; ଆର୍ ମନ୍ ଭିତ୍‌ରେଁ ଯାହା ଧରାଲା ଆପେଁ ଆପ୍ ଖୁନ୍ଦି ହଇ ଜୁଗ୍‌ରେଇ ହେଲେ ଭାବ୍‌ନା ମାନେ ମନା ନେ ମାନ୍‌ବାର୍ ଆଶା ମାନ୍‌କୁଁ ନେଇ ।

ତିର୍ବିନିର୍ ଲାଗି କେନ୍‌ତା କପ୍‌ଟା ଘିନ୍‌ବା ? କେନ୍ ରଙ୍ଗ୍ ହେଲେଁ ତିର୍ବିନିର୍ ମାଗୁର୍ ଦିହ ବରନ୍ କେ ଭିର୍‌ବା ? ମୁହଁଥିଲା କପ୍‌ଟା ତିର୍ବିନିକେ ଫବ୍‌ବା କି ବିନ୍ ମୁହାଁ ? ତିର୍ବିନି କେଭେଁ ଭଲ୍ ମନ୍ଦ୍ ବଏଁଲେଁ ଚାଖେ ନିହେ । ଆଏଜ୍ ଜରୁର୍ କିଛି ତାର୍ ଲାଗି ଆନ୍‌ବା । ସିଙ୍ଗଡ଼ା, ଆଲୁଚପ୍ କି ପକୁଡ଼ି ? ପିଲାଦିନେ ନିଙ୍କେଁ ରଥ୍ ବେଲ୍‌କେ ଜିଲ୍‌ବି ଘିନିକରି ଖାଇଥିଲା । ସେ ମିଠା ଅବ୍‌ତକ୍ ସେ ନିହେ ପାଖ୍‌ରେ, ହେଁଟା ଆନ୍‌ଲେଁ କେନ୍ତା ହେତା ? ତାର୍ ବୁଆକେ ମିଠେଇ ଲଡୁ ପରେ ବନ୍‌ଏ ଲାଗ୍‌ସି; ହେଟା ଗୁଟାଦୁ ଆନଲେଁ ସଭେ ଖାଏତେ । କାଠ୍ ବିକ୍‌ଲା କି ଆପ୍‌ନେ ନିଙ୍କେଁ ତ କେନ୍‌ସି ଭି ହୁଟେଲ୍‌କେ ଢୁକିଯିବା । ପକୁଡ଼ି ଆର୍ ମିର୍ଚା ଚଟ୍‌ନି ଖାଇ ନେବା ଟଁକେ ଅଧିକର୍ । କେ'ନ କେଭେଁ ଖାଉଛେଁ ଯେ ? ବରଷ୍‌କେଁ ଦିନ୍‌ଏ ହେଲେଁ ନେ ଖାଏ ବା କାଏଁ ? ହେଟୋ ଭାବି ତ ତିର୍ବିନି ତାର୍ ଲାଗି ବଢ଼େଇ ନେଇଥିବାର୍ ବାସି ବଟ୍‌କି ଟା ଜାନି ଜାନି ନାଇଁ ଆନ୍‌ଲା । ନୂଆଁଖାଇର୍ ହାଟ୍ ବାଟ । ଚିନି ଅଟା ଗୁର୍ ମୁଗ୍ ପଛେଁ କମ୍ ଆନ୍‌ବା, ହେଲେଁ କପ୍‌ଟା ବନ୍‌ଏଟା ଖଣ୍ଡେ ଆନ୍‌ବା ।

ସହର୍‌କେ ପୁହୁଁଚିଲା କି ଜଙ୍ଗଲ୍ ଚପରାଶି ଆସି ହାଜର୍ । ଗାଡ଼ି ଜପତ୍ । ଜୀବର୍ଧନ୍ କୁର୍କୁଟି କରି ଭାଙ୍ଗ୍‌ଲା ମନ୍ ଆର ଉଦ୍‌ରି ବିଦ୍‌ରି ଯାଇଥିବାର ଆଶା ଭରସା ନେଇ ମେଲା

ନଙ୍ଗ୍‌ଲା ହାତେଁ ଘର୍‌କେ ଫିର୍‌ଲା । ରାତିର୍ ସେ ପହରେଁ କାଏଲ୍ କେନ୍ତା କର୍‌ବେ ଯେ ତିନ୍‌ହି ଲୁକର୍ କଥାବାର୍ତ୍ତା ।

ବୁଢ଼ା ବଏଲା "କାଁ କର୍‌ମା ? ଛାଡ୍ ଆମର୍ କରମ୍ କପାଲ୍ ଖରାପ୍ ଆଏ । ତୁଇଁ ନିଖୁନ୍ ହଇଁ ଘର୍‌କେ ଫିର୍‌ଲୁ ଯେ, ହେଁଟା ବଡ୍‌କଥା ଆଏ ।" ଫେର୍ ଟିକେ କା'ଣା ଭାବିଁ ହତାଶିଆ ହଇଁ କହେଲା "ପୁଡ଼ି ଯାଉ ମୋର୍ ଜୀଉଁନି ଖାଉନି, ମୋର୍ ବହୁ ଟୁକେଲ୍‌କେ ନୂଆଁଖାଇ ଦିନେ ଭି ଛିଡ଼ା ହାତେ ନେ ଦେଇପାର୍‌ଲିଁ ।"

ଜୀବର୍‌ଧନ୍ କହେଲା "ବନିହାଁ ହାଏଲୁଟି ବାଏଲୁଟି ହେଲିଁ, ଯୁହାର୍ ପାହେଁ ପର୍‌ଲିଁ, ତ ବି ଶଲା ଶୁନ୍‌ଲା କାଏଁ ? କାଠ୍ ରହେଲା, ଗାଡ଼ି ରହେଲା, ଆର୍ ତାର୍ ସାଙ୍ଗେଁ ତୁଇଁ ବି ରହେବୁ ବଲୁଥିଲା ଚପ୍‌ରାଶି । ବନିହାଁ ଗୁଲ୍‌ଗୁଲା ସୁଲ୍‌ସୁଲା ହେଲିଁ ବେଲ୍‌କେ ସାଦା କାଗଜେଁ ଦସ୍‌କତ୍‌ଟେ ନେଇଁ ଛାଡ଼ିନେଲା । କହେଲିଁ ଭି ଆମର୍ ଜମିର୍ ଠାଡ୍‌ମରା ଜାମ୍‌ଗଛନ୍ ଫଟେଇଛେଁ, ସର୍‌କାରୀ ଜଙ୍ଗଲର୍ ନୁହେ । ଶିଶୁ, ସାଗୁନ୍ କି ବିଜା ରେଙ୍ଗାଲ୍ ନୁହେ । ତଥାପି ବେଟା ମାନ୍‌ଲା କାଏଁ ? ମେଛା ମଲକଉଥାଏ । ମନ୍ ହଉଥାଏ ଶଲାକେ ପକାଟିଁ କାଏଁ କୁଢ଼େର୍ ଫସାଟେ ଆର ଉଡ଼ିନେତିଁ । ଘର୍ ଆଡ୍‌କେ ସୋର୍ କଲିଁ, ତିହାର୍ ବାହାର୍‌ଟେ ଆଉଛେ ସହିନେସିଁ ବଏଲିଁ । ନେ ହେଲେଁ..."

ଚଷା ଆଉର୍ ସରକାରୀ ଅଫିସର୍ ଭିତ୍‌ରେଁ ଥିବା ଖାଇଟା ଆହୁରି ଆଁ କି ରସାତ୍ତାଲକେ ଫାଟ୍ ଧଏଲା ମେତାଲ୍ ଜନା ପରୁଥିଲା । ଆଉର୍ ଚଷାର୍ କେତେ ଦିନୁ ନାଇଁ କେତେ ଦିନର୍ ରୁନ୍ଧି ହଇଥିବାର୍ ରିଶ୍‌ମି ପ୍ରତିହିଂସା ଜୀବର୍‌ଧନର୍ ମୁହେଁ ଗୁଡ଼ା ବାଁଧିଲା ବାଗିର୍ ଦିଶୁଥିଲା । ସେ ଅଁଧାରେଁ ଭି ବିଶାଲ୍ ବୁଢ଼ା ଜୀବର୍‌ଧନର୍ ରାଗ୍‌ନୁ ବାଆରି ପାରୁଥାଏ ଯେ ତାର୍ ରିଶ୍‌ମି ଅସଁଭାଲ୍ ଧରିଛେ । ତାହାକେ ଶୀତଲ୍ କର୍‌ବାକେ କହେଲା ।

"ବନ୍ଏ କଲୁ ବୁଆ । ସହେଲା ଲୋକ୍ ବଡ୍ ଆଏ । ମୁଡ୍ ଲୁହିନେଲେଁ ସମୁଦର୍ ପାର୍ ।"

ଜୀବର୍‌ଧନର୍ ରିଶ୍‌ମି ଶାନ୍ତ୍ ନେ ହଇଥାଇଁ ତ ସାଙ୍ଗେଁ ସାଙ୍ଗେଁ କହେଲା - "କେନ୍ ସମୁଦର୍ ପାର୍ ହେଲିଁ ବୁଆ ? ମତେ ତ ଲାଗୁଛେ ଜୁଡ଼ାଟେ ଡେ଼ଗି ଅତାଲ୍ ତାଲ୍ ଅଭାବ୍ ସମୁଦରେଁ ଆସି ଜୁଗ୍‌ରେଇ ହଇ ପର୍‌ଲିଁ ।"

ବାପ୍ ପୁଓର୍ କଥା ବଢୁଥିବାର୍ ଶୁନି ତିର୍ବିନି ରନ୍ଧାଘରୁଁ ଟିକେ ପଛି କେ ଆସି କହେଲା -

"ହେଁଥିର୍ ଲାଗି କାଏଁ ଏତେ ଗୁଡା ଉଚାର; ହଉ ସବୁ ଚଲ୍‌ବା । ମୋର୍ କପ୍‌ଟା ଖଣ୍‌କ ସରଫ୍ ଖୋଜାକର୍ ଆନି କାଚି ଖୁନ୍ଦି କରି ଶୁଖେଇଛେଁ; ହେଁଟା ପିନ୍ଧିଁ ବଏଠା ବସାମି; ଦେ'ଦେବ୍‌ତା କର୍‌ମି । ଘରେଁ ଯାହା ଅଛେ ହେତ୍‌କି ଥିଁ ନୂଆଁଖାଇ ମାନ୍‌ମା ।

ସବୁଦିନେ ସବୁକଥା ନାଇଁ ଥାଏ, ଆମେ ହେଲେଁ କାଏଁ ସବୁଦିନେ ଗରିବ୍ ଥିମା ? ମହାଲକ୍ଷୀଁ କେତେବେଳେଁ ହେଲେଁ ଘାଏ ଆଡ୍‌ଖିଁ ନାଇଁ ଦେଖିବେ ? ସଁଭରିଲେଁ ବନ୍‌ଏ କରି ମାନ୍‌ମା ନ । ରାଁଧି ସାର୍‌ଲିଁ ନ ଆସ ଖିଆପିଆ କର । ମୁଇଁ ଖାଇ ସାଏଲେଁ ନୁଁଡ଼ା ଖୁରି କଲେଁ ଯାଇ । ସଖାଲ୍‌କେ ବାସି କବାର୍ ଥିଲେଁ ନାଇଁ ପାରିହଏ, ଏକ୍‌ଲା ଲୋକ୍ ।"

ସକାଳ୍ ନୁହେ ପାଏ, ତିର୍ବିନି ଉଠି ଗାଧି ପାଧି ଆଏଲା । କବାର୍ ଉସ୍ତାବାର୍ ଲାଗିଁ କି ଅଗ୍‌ବା ଦର୍‌କିଲା କପ୍‌ଟା ପିଁଧିଛେ, ତନ୍ ଯଉବନ୍ ଢ଼ାପି ନେ ହେବାର୍ ଲୋକ୍ କାଁ ବଲ୍‌ବେ ଯେ କେ ଜାନ୍‌ଏ ? ଆସିକରି ତାର୍ ଶୁଖାଲା କପଟାକେ ଭରକୋ କରି ଉଲି ଆନ୍‌ଲା ପିଁଧିବାକେ । ବାଉଁଶ୍ ଅଡ଼ା, ଗର୍ଏଁଠ୍‌ନ ଅଲ୍‌ଝିଲା ବାଗିର୍ ଲାଗୁଥାଏ, କପ୍‌ଟାଟିଏକ୍ ଅଧେର୍ ହେଲା ନ । ଥିଲାଲୋକ୍ ହଇଥିଲେଁ କେଭୁଁ ଅଲ୍‌ଗେଇ ନେତା ନ କି ପାନ୍‌ତି ଗୁବର୍‌ତିକେ ଦେଇ ନେତା ନ । ନାଇଁ ଘିନି ପାର୍‌ବାର୍ ବଲିଁ ସେ ଖଣ୍ଡ୍‌ଏ କେ ଧୁଇ ଶୁଖେଇ ପିଁଧି ଉଢ଼ି ହଉଛେ ।

ଉଲ୍‌ଲା ବେଲ୍‌କେ କପ୍‌ଟା ଖଣ୍ଡ୍‌କ ଏନ୍ତା କରି ଚିରି ହେଲା ଯେ ଆର୍ କେନ୍‌ସି ମିତ୍‌ରେଁ ପିଁଧି ନାଇଁ ହଏ । କା'ଣା କରତା ଆର୍ ? ବୁଢ଼ାର୍ ଧୁତି ସେ ଅଡ଼ାନ୍ ଶୁଖୁଥିଲା ପିଁଧି ପକାଲା । ଆଠ୍‌ହାତୀ ଧୁତି, ମାଏ୍ ଝି ଟୁକେଲ୍ ପିଁଧିଲା ବେଲ୍‌କେ ଫାଲେ ଢ଼ାପିଁହେଲେଁ ଫାଲେ ମେଲା ।

ବଏଠା ବସାଲା; ମହାଲକ୍ଷୀଁ ବସାଇ, ପୂଜାଧଜା କଲା । ଇ ସବୁ ବୁଢ଼ାର୍ ନଜର୍‌କେ ଢ଼େଗି ନାଇଁ ପାର୍‌ଲା । ବୁଢ଼ା ଗାଧି ଆଏଲା ଉତ୍‌ରୁଁ ଦେଖିଲା ତାର୍ ଆଠ ହାତୀ ନାଇଁନ; ବହୁ ଟୁକେଲ୍ ପିଁଧିଛେ । ଚିର୍‌ହା କପ୍‌ଟା ଟା ସେ ଅଡ଼ାନ ଉଲା ହଇଛେ, ସଥେଁ ଯେନ୍ତା କି ତାକର୍ ଘରର୍ ମାନ୍ ମହତ୍, ଗରିବ ଥିତି ଉତ୍‌କି ହଇଁ କୁତ୍‌କୁତା ଗୁବ୍‌ରୁବା ହଇ କିର୍‌ଲଉଛେ- "ମାନ୍‌ଅ, ମାନ୍‌ଅ ଆଏଜ୍ ନୂଆଁଖାଇ ଆଏ । ମହାଲକ୍ଷୀଁ ବସ, ଆସ ଗୁଡ଼୍‌ଶାଲେଁ ପର ।"

ବୁଢ଼ା ସୁଜି ସୁତା ଆନି ବହୁ ଟୁକେଲ୍‌ର ଫଟା କପ୍‌ଟାକେ ସିଇ ବସୁଥିଲା କି ତାର୍ ଘରର୍ ଫଟା ଦଦ୍‌ରା ଥିତି କେ ଟିପି ବସୁଥିଲା କେ ଜାନ୍‌ଏ ? ତାର୍ ଆଖିଁ ପାଏନ୍ ଥିପେ ଥିପେ ଝରୁଥିଲା; ସେଥିଁ ମହାଲକ୍ଷୀଁର୍ ଗୋଡ଼୍ ଧୁଇ ହଉଥିଲା କି ନି ମହାପ୍ରୁ ଜାନ୍‌ବେ । ସେ କାନ୍ଦି ବିଶାଲ୍ ବୁଢ଼ାର୍ କାନ୍ଦି ଆଏ କି ଭାରତ୍‌ମାତାର୍ ରକ୍ତର୍ ବୁନ୍ଦାର୍ କନ୍ଦ୍‌ନା ପରୁଥିଲା କିଏ କହେବା ?

ବୁଢ଼ାକେ ପାଏବେ କି ନି ଯେ କେ ଜାନ୍‌ଏ ଲୋକ୍ ବନିହାଁଦିନ୍ ଧରି ନୁରୁଛନ୍ ।



# ମୁରେନ୍ ନୁହେ ଯୁରେନ୍ ଆଏ

ଗାଁର୍ ଡ଼ଁଡ଼ା ଖୁଏଲ୍‌ଟା ଅଜଗର୍ ବାଗିର୍ ପଡ଼ିଛେ । ତାର୍ ମେରୁହାଡ଼୍ କଁଟା ବାହାରଲା ମେତାଲ୍ ସାନ୍ ସାନ୍ ଖୁଏଲ୍‌ମାନେ ଆଖିପାଖି ବାହାରିଛନ୍ । ଗାଁର୍ ଉପର୍ ମୁଡ଼େଁ, ଆ'ତି ଭୁଜ୍‌ନି ଆଡ଼େଁ ଯେନ୍ ସଁପୁର୍ ଖୁଏଲ୍ ଟା ମୂଷାଲେଞ୍ଜିଆ ଉତ୍‌ରିଁ ଯାଇଛେ, ସେ'ଟା ସୁଲ୍‌କି ପରା । ଗାଁର୍ ଛୁଆନୁ ବୁଢ଼ା ତକ୍ ସେ ନାଆଁ ଥି ଜାନସନ । ସୁଲ୍‌କି ପରାର୍ ଶେଷ୍ ଘର୍‌ଟା କହ୍ନେଇ ବରିହାର୍ ଆଏ । ପୁଆଲ୍ ଛୁଆନି ମାଟିର୍ କାଁଥିର୍ ଦୁଇ ବଖ୍‌ରା ଘର୍, ଟିକେ ବାଗିର୍ ପର୍ଛି, ଖଟ୍ ଦୁଇ ଖଣ୍ ପଡ଼ବାର ମିତରି ଦୁଆର ଟିକେ । ଘରର ପଛକେ ବନେ ବାଏର ଖଣେ ।

ତାର୍ ଲାଗ୍‌ନୁ ପଧାନ ଘରର୍ ତିନ ମହଲା ଘର୍; ଟିକେ ଛାଡ଼ି ସଡ଼କ୍, କେ'ନୁ କେନ୍‌କେ ଯାଇଛେ ଯେ, ଦିନ୍ ରାଏତ୍ ମଟର୍ ଘଁ ଗାଁ ସଁ ସାଁ, କାନ୍ କିଲ୍‌କିଲେଇ ଯାଉଥିସି । ଇ ପାଖୁଁ ସେ ପାଖ୍‌କେ ଲହଁକିବାକେ ଡ଼ର୍ ।

ସକାଲ୍ ପାଏବାର୍ ବନ୍‌ଏ ଘାଏ ହେଲା ନ । ପରା ପରା ଛରା ଦେଲା ମେତାଲ୍ ଖରା ଛାଏଛାଏ ପର୍‌ଲା ନ । ହାଲ୍ କଅଁଲେଇ ଥିବାର୍ ଦାମୁର୍ ଟେ ଗୁହାଲୁଁ ଆସି ଗାଁ ଖୁଲିଁ ଧୁକା ମେତାଲ୍ ଦଉଡ଼ୁଛେ । ଛୁଆ ଗୁଟେ ଗାଁ ଖୁଲି ବସିଛେ ଟୁପ୍‌ଲିଟାକେଁ ମୁହିଁ ଗୁଟାଦୁ ଧରି; ନାକେ ସିଂ ଘନ୍ ଧାରେ ବହୁଛେ । ପାଶେଁ ପାଶେଁ କୁକୁରା ଚିଆଁ ଗୁଟାଦୁ ବୁଲି ବୁଲି ଛୁଆର୍ ପକାଲା ମୁହିଁ ବେଟି ବେଟି ଖାଉଛନ୍ । ଛାଦନ୍ ଉପରେଁ ବିଲେଇ ପଟେ ଜୁହିଜୁହି ନିଘା କରୁଛେ, ସଜ୍ ପାଏଲେଁ କୁକ୍‌ରା ଚିଆଁକୁ ଛାପ୍‌କିତା, ହେଲେଁ ଦେଖୁଁଛେ ଯେ ସେ ପାଖେଁ ଝାଁକର୍ ଘରର୍ କବ୍‌ରା କୁକୁର ଶୁଇକରି ତାର୍ ଦେହର୍ ଉକେନ୍ ଖୁଜେଇ ହଉଛେ ପଛର୍ ଗୁଡ଼େଁ ଆଁପରି ଆଁପରି । ବିଲେଇ ଝପ୍‌ଟିବାର୍‌କେ ଦମ୍ ନାଇଁ କର୍‌ବାର୍ । ଝାଁକର୍ ଘରର୍ ସୁରୁ ଭୁଆସେନ୍ ପାଏନ୍ ଯୁରା ଧରିଁ ଆଉଛେ; ମୁଡ଼ର୍ ମଠିଆ କାଖର୍ ମଠିଆର୍ ମଝିଁ ଦଶ୍‌ମାସିଆ ଗରଭ୍ । ଦେଖ୍‌ଲେଁ ମାଁକେ ଧର୍‌ତୀ ବଲ୍‌ବା କି ଧର୍‌ତୀକେ ମାଁ ବଲ୍‌ବାର୍ କଥା ଭାବ୍‌ବାକେ ପଡ଼୍‌ବା । କହୁଥାଏ–

"ବରିହା ବୁଢ଼ା ଆଏଇ୍ ନୁହେ ଉଠନ୍, କାଏଁ ଗା ? ଟାଏଟ୍ ଅଜା ହଇଛେ ଯେ, ବେଶ୍ ବି ଅବର୍ନାହାଲା ଲେଖେଁ ଲାଗୁଛେ ।"

କହ୍ନେଇ ବରିହା ଖଟେଁ ପରିଛେ, ତାର୍ କାନେ ବି ଇ କଥା ପରୁଛେ; ହେଲେଁ ଉଠ୍ ବାଗିର୍ ନାଇଁ ଲାଗ୍‌ବାର୍ ତାହାକେ । ସବୁଦିନେ କୁକ୍‌ରା ଡ଼ାକ୍‌ଲା ବେଲ୍‌କେ ସେ ଉଠି ଥାଏସିନ । ସେ କେତେବେଲେଁ ଉଠ୍‌ସି ଗାଁର୍ ଲୁକେ କିହେ ନୁହେ ଦେଖନ୍ ବଏଲେଁ ଚଲେ । ହେଲେଁ ଆଏଜ୍ ସେ ଖଟ୍ ନାଇଁ ଛାଡ଼ି ପାର୍‌ବାର୍ । ନିଜେଁ ବି ଭାବୁଛେ କାଣା ହେଲା ତାହାକେ ? କେନ୍ତା ସେ ଉଠି ନେ ପାର୍‌ବାର ? ତାର୍ ସା' ଘରର୍ ପିଲା ତାକର୍ ଜମିନ୍ ସବୁକେ ବିକି ନଉଛେ । ବିକୁ, ତାର୍ କା'ଣା ଗଲା ? ହେଟା ଶୁନ୍‌ଲା ବେଲୁଁ ସେ ଖଟେଁ ପରିଛେ ଯେ ପରିଛେ । ସେ ହେଲେଁ କାଏଁ ଉଠ୍‌ବାର୍‌କେ ଚେରେଷ୍ଟା ନାଇଁ କର୍‌ବାର୍ ? ଉଠ୍‌ଲେଁ ମୁଡ଼୍ ଫାଏଁ କରୁଛେ, ଦିହ୍‌ଟା ଗଦେଇ ହଉଛେ, ହାତ୍‌ଗୋଡ଼୍ ଭିଲ୍ ଝିମ ଝିମେଇ ଯାଉଛେ, ନାଇଁ ଚଲ୍‌ବାର୍ । କାଏଲ ରାତିଁ ତ ଖିଆପିଆ ନାଇଁ , ହେନ୍ତା ଶୁଇ ପର୍‌ଲା । ଶୁଇଲା କେ'ନ ? ଖାଲି ଖଟେଁ ପରିଛେ । ଦଶ୍‌ନା ବି ନେ ଦଶାଇଁ । ଖଟେଁ ହେହ୍‌ଟାକ ଥୁଇଁ ରାଏତ୍ ସର୍‌ତା ବୁଲିଛେ ତାର୍ ସା' ଘରର୍ ଜମିନ୍ ଦଶ୍ ଏକଡ଼ର୍ ଇଲାକା ଭିତ୍‌ରେଁ ।

ଏକ୍‌ଠନିଆଁ ଜମିନ୍, ଇର୍ ଢ଼େଗା ନାଇଁ ଲାଗେ ହଲ୍ ଫାନ୍ଦ୍‌ଲେଁ ।ଗୁଟେ ଡୁଲି ପରେଁ ଆର ଡୁଲି । ସେ ଭିତରେଁ ଆଁଟ୍ ମାଲ୍, ବେର୍ଣ୍ଣା, ବାହାଲ । ଉପରେଁ ଉପ୍‌ରେଁ ସାନ୍ ହେଲେଁ ବି ମୁଡ଼ାଟେ । ବାହାଲ୍ ଭିତ୍‌ରେଁ ଚୁଆଁ ।ଚାରହି କୁତି ଗଛ୍‌ଖୁଁଟ୍, ସଥେଁ କିଏ ନେଇ ଯାଏ ସି ନ ବାଗିର୍ ଚୁଆଁ ଟାକେ ଜୁଗି ବସିଛନ୍ । ସୋଜ୍ ଦିନେ ବି ସେ ଖେତ୍‌କେ ଆଏଲେଁ ଇନ ଘଡ଼େ ନାଇଁ ବସ୍‌ଲେଁ ଯାଇ ନାଇଁପାରେ । ଇ ଚୁଆଁ ଥି ହେତ୍‌କି ପାଏନ୍ ନେ ଥିବା ଯେତ୍‌କି କଥା ତାର୍ ମନ୍ ଭିତ୍‌ରେଁ ଉପଜିସି ଇ ଚୁଆଁକେ ଦେଖ୍‌ଲେଁ । ଇନ୍ ଆସି ବସ୍‌ଲେଁ ତାର୍ ସୋର୍ ହେସି 'ଛପନ୍ ସାଲ୍' । ତାର୍ ହେତୁ ହଇଥିଲା ନ, କରିଆ ପିଁଧି ଥିଲା ନ ସେ । ଏ ବୁଆ । ହେନ୍ତା ଅକାଲ, ହେନ୍ତା ଦୁରଭିଖ୍, ହେନ୍ତା ମରଡ଼ିର୍ ଆର୍ କେଭେଁ କାହିଁ ଶୁନା ନାଇଁ କି ଜନା ନାଇଁ । ନାଇଁ ହଉ ମହାପ୍ରୁ । ହେନ୍ତା କେନ୍‌ସି ଦେଶେଁ, କେନ୍‌ସି ଭି ମୁଲ୍‌କେଁ । ଶତ୍‌ରୁ କେ ଭି ହେନ୍ତା ଦଶା ନାଇଁ ମିଲୁ । ତାର୍ ବୁଆ ଘନ ବରିହା ଇ ଚୁଆଁ କୁଡୁ ଥାଏ ଯେ, ସେ ସା'କାର୍ ଘରୁଁ ଥିର୍ ବଏଲେଁ ସଥେଁ ଥିର୍ ଖୁରେ ଆର୍ ଜାନ୍ ନେ ଜାନ୍ ଗରସେ ମେତାଲ୍ ପଖାଲ୍ ଧରି ଇନ୍‌କେ ଆନି ନିଏ । ହେତ୍‌କି ଭି ତ ଲୁକ୍‌କୁଁ ନାଇଁ ମିଲୁଥାଇଁ ଯେ ତେଁତେଲ୍ ପତର୍ ନୁ ନେ ପୁରୁ ଥାଇଁ । ଖାଇ ନଉଥିଲେ । କଙ୍ଗାଲିଖାନା ଥିଁ ରେଙ୍ଗୁନ୍ ଚାଉଲର୍ ପଗେ ପଗେ ଲମର୍ ଭାତ୍ ଖାଇ ରଇ ବୁଢ଼ୀର୍ ହାବ୍‌ଡ଼େଁ ପରୁଥିଲେ ।

ତାର୍ ମାଁ ହେ ବଛର୍ ମରଡ଼ି ନ ମଲା । ତାର୍ ବନ୍‌ଏ ସୋର୍ ଅଛେ ଯେନ୍ତା କରି ତାହାକେ ଆବ୍‌ରି ଧରିଥାଏ, ଆର୍ ତାର୍ ବୁଆକେ କହୁଥାଏ "ମୋର୍ ଛୁଆକେ ଦେଖ

ନାହିଁ ଛାଡ଼ବ; ନିଙ୍କେଁ ଭୁଖେଁ ରହି ଇତାକେ ଜାଆଁବ, ବଅଁଶ୍ ରହେବା । ବରିହା ବଅଁଶ୍ ତମାର୍ ଠାନୁ ଛିଡ଼ି ନେ ଯିବା, ଟୁଟି ନେ ଯିବା ।"

ଦୁହି ବାପ୍ ପୁଓ କେନ୍ତା କରି ତାର୍ ମାଁ କେ ନେଇ ଯୋର୍ ଖଁଡ଼ି ଘୁଡ଼୍ଘୁଡ଼େଇ ନେଲେ, ନିଙ୍କେଁ ନାହିଁ ବୁହି ପାରୁଥାହିଁ ବଲି ଠାନ୍ କେ ଠାନ୍ କେନ୍ତା ଉହ୍ଲଇ ଥାଆନ୍, ଏଛନି ବି ସୋର୍ କଲେଁ ତାର୍ ଦିହ୍ ଶୀତେଇ ଉଠ୍ସି । ଗୁଟେ ପେଟ୍ ପୁଷ୍‌ବାରଟା ଅସଂଭାଲ୍, ଦୁଇ ଦୁଇଟା ପେଟ୍ କେନ୍ତେଇ ପୁଷ୍‌ମୁ ବଲିଁ ତାର୍ ବୁଆର୍ ଭାଲ୍‌ନି ଏଛନି ବି ସଏଦ୍ ଦେଖିଲା ମେତାଲ ଲାଗୁଛେ । ହେଲେଁ ବାହ୍ମନ୍ ବୁଢ଼ାର୍ ସେ ଦିନର୍ କଥା କାନ୍ ଭିତରେଁ ଲେସି ହଇ ଯାଇଛେ ଯେ ସୋର୍ କଲା ମାତର୍‌କେଁ ଶୁଭ୍‌ସି ଫଟିକ୍ ଭାବେଁ ।

"କାଏ ଭାଲ୍‌ନି କରସୁ ଦଦା ! ଯେ ଗଲା ସେ ଗଲା । କାନ୍ଦ୍‌ଲେଁ ବୁବାଲେଁ, ଭାଲ୍‌ନି କଲେଁ ମଲା ଲୋକ୍ ଫିରି ଆଉଥିଲେଁ ତ ଲୋକ୍ ଭୂତିଆର୍ ଲଗେଇ ଭାଲ୍‌ନି କରତେ । ଛାଡ଼୍ କହ୍ନେଇର୍ ମାଁ ଆର୍ ନାହିଁ ଫିରନ୍ ନ । ହଁ ତୋର୍ ପେଟ୍ ଅଁଟାର୍ କଥା ଯଦର୍ପି ଭାଲ୍‌ନି କରୁଛୁ ତ ଶୁନ୍ କହୁଛେଁ । ତୁହିଁ ପରେ ମୋର୍ ଗୁତି ଆଉ, ମୋର୍ ଗୋତ୍ କୁଟ୍‌ମର୍ ହଇଯାଇଛୁ; ଆମେ ଏକ୍ ଆଉଁ । ମୁହିଁ ଖାଏଲେଁ ତମେ ଖାଏବ, ମୁହିଁ ଭୁଖେଁ ରହେଲେ ତୁମେ ଭୁଖେଁ ରହେବ । ମୋର୍ ନ ଧନ୍ ନାହିଁ କି ଧ୍ୟାନ ନାହିଁ । ମୋର୍ ଘରେଁ କା'ଣା ଅଛେ କା'ଣା ନାହିଁ ମୋର୍ ଠାନୁ ତୁହିଁ ଜହ ଜାନ୍‌ବୁ । ଯାହା ବି ଅଛେ ସେ ଭରକ ବାଆରି କରି ସହି ସଁଭାଳି ଚଲ୍‌ମା ବଏଲେଁ ବଛରଟେ ଗୁଁଜ୍‌ରେଇ ନେମା । ଆମେ ହେଲେଁ କେତେ ଜନ୍ ବୋ ! ମୁହିଁ ଆର୍ ତୋର୍ ବହୁ, ତୁମେ ଦୁହି ବାପ୍ ପୁଓ । ତାମ୍‌କର ଠାନେ ମାନ୍ଏ ଫୁଟାମା, ଚଲିଁଯିମାନ ।

ହଁ ଏଛେନ୍ ଆର୍ କାଏଁ ବୁଡା ଚଲାବା କି, ପାରବୁ ବଏଲେଁ ତୋର୍ ଦେହେ ପା' ଦେଖିକରି ବାହାଲର୍ ହେଁ ବିନୁଆଁ ଢ଼ିପାର୍ ତଲ୍‌କେ ପାଏନ୍ ଦେତା ବାଗିରତ୍ ଲାଗସି, ଚୁଆଁଟେ କୁଡ଼୍ ।"

ତାର୍ ବୁଆର୍ କାନେ କଥା ପଡ଼୍‌ବାରଟା ବେଲ୍ ଲାଗଲା, ମାତର୍‌କ ବେଲ୍ ନାହିଁ ଲାଗଲା ଚୁଆଁ କୁଡ଼୍ ଚୋଟ୍ ପଡ଼୍‌ବାର୍ । ଚୁଆଁକୁଡ଼ା ଚାଲିଛେ, ଦିନ ଦୁଇପହର୍ କା'ଣା, ଜନ୍ ଥିଲେଁ ରାତି ଭିଁ ଥେବେ ନାହିଁ । ମୁରମୁରିଆ ପଥରିଆ ମାଏଟ୍ । ଗର୍ଏଁତି, ଚୋଟ୍ କେ ଭି ଉଁ କରେ ନାହିଁ । ହେଲେଁ ତାର୍ ବୁଆର୍ ସେ ଅଥକ୍ କବାର୍, କହ୍ନେଇର୍ ମୁଡ଼େଁ ଘରା କରିଛେ । ସୋର୍ କରବାକେ ନାହିଁ ଚାହେଁଲେଁ ବି ତାର୍ ମନେ ମନେ ଉପଲିଁ ଆଏସି, ଗୁପ୍‌ଲେଇ ହେସି ଭାବନାରୁ ଭିଡ଼୍ ଭିତ୍‌ରେଁ ।

ପଥରୁଁ ପାଏନ୍ ବାହାରଲା । ପାଏନ୍ ନୁହେତ ସେ ଦୁସ୍‌କାଳକେ ସଏଦ୍ ଅମରତର୍ ଧାର୍ ଗୁଟେ । ତାର୍ ବୁଆର୍ ଗହଦର୍ ଧାର୍, ଲକ୍ତର୍ ଧାର୍ ଚୁଆଁର୍ ତଲୁଁ ପାନିର୍ ରୂପ୍ ଧରିଁ

ଉପର୍କେଁ ଆଏଲା । ବାହ୍ମନ୍ ବୁଢ଼ା ସେ ସେ ପାଏନ୍ କେ ନେଇ ଘର୍ ଘର୍ ବାଆଁଟିଲା କେତେ ଉଷତ୍ ମନେ । ପାଏନ୍ ଯେତ୍କି ବାହାର୍ଲା ତାର୍ ଦୁଗୁନ ତାର୍ ବୁଆର୍ ମନ୍ ଭିତ୍ରେଁ ଉସତ୍ ଆନନ୍ଦର୍ ଗୁଟେ ଧାର୍ ଉତ୍ରି ଆଏଲା । ସେ ଦିନ ଇ ପୁଇଜାମ୍ ଗଛର ଛଏରା ତଲେଁ ତାହାକେ ବସେଇ ବୁଆ କହିଥିଲା -

"ଦେଖ୍ ଗା ବୁଆ, ଇ ମାନେ ଇ ବାହ୍ମନ୍ ଘରଟା ଆମର୍ ମହାପ୍ର ଆ'ନ୍ । ନେହେଲେଁ ଯେତେବେଳେଁ ବାପ୍ ପୁଓକେ ନାଇଁ ପଚ୍ରାବାର୍, ଭାଏ ଭାଏ କେ ଦେଖୁଛେ ଯେ ଭୁଖେଁ ମରୁଛେ ଥିର୍ ଢୁକେ ନେ ଦେବାର୍, ପୁଓର୍ ମୁହୁଁ ଛଡ଼େଇ ମା ଖାଇ ନଉଛେ, ଏନ୍ତା ଦିନେ ଆମ୍କୁଁ ଗୁଟେ ନୁହେ ଦୁଇ ଦୁଇଟା ମୁହୁଁକେ ଆଧାର୍ ଦେଇ ବଅଁଚେଇଛନ। ଇ ମାନ୍କୁଁ ତୋର୍ ଜୀଇଁଥିବାର୍ ତକ୍ ନାଇଁ ଛାଡ଼୍ବୁ । ମୁଇଁ ତ ଆଏଜ୍ ଅଛେଁ କାଏଲ୍ ନାଇଁ, ତୁଇଁ ଯେତ୍କି ଦିନ୍ ତକ୍ ଥିବୁ, ଇତାକର୍ ନୁନ୍ ଖାଇଛୁ ଗୁନ୍ ଗାଏବୁ ।" ତାର୍ ବୁଆର୍ ଇ କଥା ପଦ୍ଦୁକ କନ୍ହେଇର୍ ଲାଗି ବେଦ୍ ପୁରାନ୍ ଧରମ୍ କରମ୍ ସବୁ ହେଲା ।

ଲେଉଟ୍ ବଛ୍ରେଁ ଆର୍ତର୍ ଜନମ୍ । ସାହାକାରର୍ ପୁଓ । ଗୁଡି ଆର ସା'କାର୍ ଦୁହିକର୍ ଉଷତ୍ କହେଲେଁ ନାଇଁ ସରେ । ସେ ଆର୍ତକେ ପାଇ କଲା, ଖେଲାଲା, ବୁଲାଲା । ତାର୍ ଲାଗି ହମା ହଗଁ ହାତୀ ହେଲା, ଘୁଡ଼ା ହେଲା ବାହ୍ମନ୍ ଘରର୍ କାକୀ ଆର୍ତର୍ ମା କହନ୍ "କନ୍ହେଇ ଆଗୋ, ଆର୍ତ ପଛେଁ ।" କହନ୍ ଖାଲି ନୁହେ କରନ୍ ଭି । ସେ ବଛର୍ ତଳି ଡୁଲି ବନାଲା ତାର୍ ବୁଆ ମାଏଟ୍ ବୁହି ବୁହି । ଧାନ୍ ହେଲା ଯେ କାହୁଁ କା'ଣା । ଚୁରି ହାରି ବଲିଁ କୁର୍ମାଟେ ଗାଡ଼ି ରାତିଁ ଡୁଲିର୍ ଆରିଁ ତାର୍ ବୁଆ ଶୁଏ । ଧାନ୍ ପେଟା ପରିଥାଏ, ଆର୍ ସକାଳକେ ଆସି ଦେଖ୍ଲା ବେଲ୍କେ ତାର୍ ବୁଆ ମରିମରି ଶୁଇଲା ସଙ୍ଗେଁ ଶୁଇଛେ । କଲେତ୍ ସାଁପଟେ ତାର୍ ପିଠ୍ ତଲେଁ ଚେପେଇ ହଇ ଚେପ୍ଟା ହଇ ଯାଇଛେ । ହେନେ ନ ଗାଡ଼୍ଟେ କୁଡ଼େଇ ତାର୍ ବୁଆକେ ମାଏଟ୍ ଦିଆଲା ବାହ୍ମନ ବୁଢ଼ା ସେ ମୁର୍ଦାର ଢୁପା ଉପରେଁ ଆମ ଗଛଟେ ଜଗେଇ ନେଲା । ଏଛ୍ନି ବି ସେ ଆମ୍ ଗଛ୍ ଘନର୍ ଆମ୍ ଗଛ୍, ଆଉର୍ ଡୁଲିର୍ ନାଁ ଘନର୍ ଡୁଲି । ହେଲେଁ ଜମିନର୍ କାଗଜ୍ ପତରେଁ ଘନ ବରିହାର୍ ନାଁ ଗଁଧି କିଛି ନାଇଁ ।

ତାର୍ ବୁଆର୍ ମଲା ପରେଁ ଆପେଁ ଆପ୍ କନ୍ହେଇରର ଖନ୍ଦ୍ ଉପ୍ରେଁ ଜୁଗ୍ରେଇ ହେଲା ଇ ସବୁ ଜମିବାଡ଼ିର୍ ବୁଡ଼ା କବାର୍ । ସେ ବି ଇ ଜମିର୍ ଖାଲ୍ ଢିପ୍ ସମାନ୍ କଲା, ଡୁଲି ବନାଲା, ଚୁଆଁର୍ ପାନି ବେଉସା ପାତି କଲା । ତାର୍ ଅଥକ୍ କବାର୍ ଦେଖିଁ, ଗାଁର୍ ମାଥିବର୍ ପଧାନ୍ ଘରେଁ ସା ଘରେଁ ଆର୍ ଆର୍ ଲୁକେ ହାତୀ ଦେମୁଁ ଘୁଡ଼ା ଦେମୁଁ ବଲି ତାହାକେ ଲୁଭେଇ ଦେଖିଲେ, ନ ସେ କାହିଁ ନେ ଖସ୍ରିଁ । ତାର୍ ପଢ଼୍ବାର୍ ବଏସେଁ ତାର୍ ବୁଆକେ ଗାଁର୍ ପଁଚୁ ମାଷ୍ଟେ କହେଲେ 'କନ୍ହେଇକେ ଇସ୍କୁଲ୍ କେ ପଠ' ।

ତାର୍ ବୁଆ କହିଥିଲା କହ୍ନେଇର୍ ସାମ୍ନେ "ଆଞ୍ଜା ଆମର୍ ଇସ୍‌କୁଲ୍ ବାହ୍ମନ୍ ଘରର୍ ଖେତ୍ ଆର୍ ଘର୍ । ମୋର୍ ପୁଓର୍ ପାଠ୍ ବାହ୍ମନ୍ ଘରର୍ ବୁତା କବାର୍ ଥିଁ ଯୁରି ହଇଥିବାର୍ ଭଲ୍ ମନ୍ଦ୍ ।"

ଇ ଖେତେଁ ତାର୍ ଜଗାଲା ଗଛ୍ ଖୁଁଟ୍ ସେ ଚାଲିଗଲା ବେଲେ ସେମାନକର୍ ଡ଼ାଲେଁ ପତ୍‌ରେଁ କହ୍ନେଇକେ ସଥେଁ ସୁଆଁଲି ନେସନ । ସେ ଭାବ୍‌ସି ସେ ନିଜେଁ ବି ବାହ୍ମନ୍ ଘରର୍ ଜଗାଲା, ପୁଷ୍‌ଲା ପାଲ୍‌ଲା ଗଛ୍‌ଟେ ଆଏ । ସେ ଇ ବାହ୍ମନ୍ ଘର୍‌କେ କେନ୍ତେଇ ଛାଡ଼୍‌ବା ? ତାର୍ ବିହା ବଏସ୍ ଗଡ଼ି ଯାଉଥିବାର୍ ଦେଖି ଲୋକ୍ ତାହାକେ ବିର୍ଝାଇ ବସନ୍ ହେଲେଁ ସେ କେଭେଁ ବି ସେ ବିଷେଥିଁ ନାଇଁ ଭାବିଁ । ଆର୍ତର୍ ବିହା ହେଲା ଯେନ୍ ଦିନ ସେ ଦିନେ ହିଁ ତାର୍ ବିହା କରେଇ ନେଇଥିଲା ବାହ୍ମନ୍ ବୁଢ଼ା ତାର୍ ମାମୁଁର୍ ଝି ଗୁରୁବାରୀ କେ । ଗୁରୁବାରୀ କହ୍ନେଇର୍ ଘର୍‌କେ ଖାଲି ଉଜଲ୍ ନେ କରିଁ, ତାର୍ ଛାତି ଭିତର୍‌ଟା ପୂରାପୂରି ଆବ୍‌ରି ବସି ବଏଠା ବାଗିର ଜଳୁଥିଲା । ଏଛନି ବି ତାର୍ ମଲା ଉତରୁ ସେ ବଏଠା ନୁହେ ଲିଭେ, ଜଳୁଛେ ।

ବିହା ହେବାର୍ ବଛର୍ ଦଶେ ବିତ୍‌ଲା ପରେ ଯାଇ ତାର୍ ପୁଓ ଜନମ ହଇଥିଲା । ଫଗୁ, ଫଗୁନ୍ ପୁନି ଦିନେ ଦିନେ । ଆର୍ତର୍ ପୁଓ ଭରତ ନୁ ପାଁଚ୍ ବଛରର୍ ପଛେଁ । ଫଗୁ ନର୍‌ଦି ଡ଼େରି ଆଇଥିଲା ନ, କାଏଁ ବେମାର୍‌ଟେ ଧଏଲା ଯେ ବଞ୍ଚିଁ ନାଇଁ ପାର୍‌ଲା । ବାହ୍ମନ୍ ବୁଢ଼ାର୍ ସବୁ ଉଷୋ କଷାକେ ଲାତ୍ ମାରି ପଲାଲା । ଗୁରୁବାରୀର୍ ଗୁର ମଧୁର୍ ବେଭାର୍, ତାର୍ ସେବା ଶାସନ୍ ତାହାକେ ଯେତ୍‌କି ବୁଡ଼େଇ ରଖିଥିଲା ପୁଓ ମଲା ପରେଁ ସେ ସବୁ ପାଏନ ଫାଟିଁଗଲା, ଆମଟ୍ ଧଏଲା । ପୁଓ ପୁଓ ବଲିଁ ଗୁରୁବାରୀ ବି ପୁଓର୍ ବାଟ୍ ଧଏଲା । ହେଁ ବଛର୍ ବାହ୍ମନ୍ ବୁଢ଼ା ବି ମଲା । ଆର୍ ଆର୍ତ ନଉକିରି ପାଏଲା । ସେ ଦିନୁଁ ସେ ଇ ବାହ୍ମନ୍ ଘରେଁ ଖାଉଛେ ଆର୍ ନିଜର୍ ଘରେଁ ଶୁଉଛେ । ତଥାପି ଆର୍ତ ତାର୍ ରାୟରିକ୍‌ମା ନିସ୍ତାର ପାତି ହିସାବ୍ କରି ବଛର୍ କେ ବଛର୍ ପୁଷି ପାଏଲା ବେଲ୍‌କେ ଟଁକା ଆକାରେଁ ଦେଇନେସି ।ଇ ଜମି ଦଶ୍ ଏକର୍ ଥିଁ ତାର୍ ହାତେଁ ସୁନା ଫଲ୍‌ଲା । ଏଛେନ ସିନା ବୁଢ଼ା ହେଲା ନିଯେ, ଖେତ୍‌ଖିଲାର୍ ବୁତା ନାଇଁ ପାର୍‌ବାର୍, ହେଲେଁ ଇ ସବୁ ତୁଲି ସେ ନିଜେଁ ବନେଇଛେ, ଇ ସବୁ ଗଛ୍ ଖୁଟ୍ ତାର୍ ହାତେଁ ହାତେଁ କରିଛେ । ଆର୍ତକେ ବି ଦଏବୀ ନେ ସହେଲା । ଭରତକେ କୁଡ଼େ ବଛର୍ ଭର୍‌ଲା କି ସେ ଭିଲ୍ ଆର୍ ଫାଲ୍‌କେ ପାହା ବଢ଼ାଲା । ସେ ବଛର୍ ଫେର୍ ଭରତ୍‌ର ଡ଼ାକ୍ତରୀ ପଢ଼ିଯିବାର୍ ଥାଏ ।

ଏଛ୍‌ନି ବି ତାହାକେ କେନ୍ତା ଲାଗ୍‌ସି ସେତେବେଳର୍ ମାଁର୍ ଚୁରି ନେ ଥିବାର୍ ମୋଲା ହାତ୍, ଧୋବ୍ କପ୍‌ଟା ଆର୍ ସେନ୍ଦୁର୍‌ଟିକା ନେ ଥିବାର୍ କନ୍ଦ୍ କନ୍ଦ୍ ନିଆଁ ଗୁଲ୍‌ଗୁଲା ମୁହଁର୍ ନିରାଶ୍ରିଭାବ୍ ସୁର୍‌ତା କଲେଁ । ଭରତ୍‌ର ଭେଲ୍‌କା ଅବାକ୍ ମୁହେଁ, କେନ୍‌କେ ଯାଏ

ସିଁ କାହିଁ ରହେସିଁ କା'ଣା କରସିଁ ର ଭାବ୍‌ନା କିହ୍‌ରି ବୁଲୁଥାଏ । ସେ ନିଜେଁ ଆର୍ତକେ କେତେ ଭଲ୍ ପାଉଥିଲା କହି ନାଇଁ ହଏ । ନିଜର୍ ପିଠିର୍ ଭାଏଟେ ଥିଲେଁ ହେତେ ଭଲ୍ ପାଇ ପାରିଥିତା କି ନି କେ ଜାନ୍‌ଏ ? ଆର୍ ଭରତ୍ ତାର୍ ଫଗୁର୍ ମଲା ପରେଁ ତାର୍ ମନ୍ ଭିତ୍‌ରେଁ ଯେନ ଟିକ ସେନ୍‌ହୋ ସରାଗ୍ ଥିଲା ସବୁତକ ଉଲ୍‌ଦି ହଇଥବଲା ଈ ଭରତ୍ ଉପରେଁ ।ଭରତକେ ବୁଆ ବଲିଁ ଡ଼ାକଲା ବେଲ୍‌କେ ତାର୍ କଲଜା ଭିତରର୍ ପଶ୍ ପଶ୍ ରକତ୍ ନିଥ୍ରେଇଁ ହଉଥିଲା ତାର୍ ଅଜାନ୍‌ତକେଁ ।

ଆର୍ତର୍ ମର୍‌ବାଟୋ ତାହାକେ ନିଜ୍‌କେ ଯେତେ ବାଧୁଥିଲା ସେଥିଁ ଉବ୍‌ରି ପାର୍‌ସି କି ନି ଭାବୁଥିଲା । ମାତର୍‌କ ଈ ମା ପୁଅକର୍ ଅବସ୍ଥା ଦେଖି ତାହାକେ ନିଜ୍‌କେ ଦମ୍ ଧର୍‌ବାକେ ପଡ୍‌ଲା । ଛାତି ବର୍‌କସ୍ କଲା । କହେଲା "କାଏଁ, ଭାଲ୍‌ନି କର୍‌ସ ? ମୁଇଁ ଅଛେ, ତମର୍ ଅଗି ଗୁଡ଼େ କଁଟା ନେ ଗଡ଼େ । ମୁଇଁ ସବୁ ସଁଭ୍‌ଲାମି । ଭରତ ପଢ଼ିଯିବା । ମୁଁଇ ଖଞ୍ଜେ ମି ।" ସେ କଥା ପଦକ୍ କୁଟୁମ୍‌ଟାକେ ରାଏଜେଁ ରଖିନେଲା । ଦିନ୍ ରାଏତ୍ ଗୁଟେ କରି ଦିହର୍ ରକତ୍ ପାଏନ୍ କରି ଈ ଦଶ୍ ଏକଡ଼୍ ଜମି ନୁ ସେମାନେ ଜୀଇଁଛନ୍, ଭରତ ପଢ଼ିଛେ, ଡ଼ାକ୍ତର ହଇଛେ ।

ଭରତ ସର୍କାରୀ ନଉକିରି ପାଏଲା ଉତ୍‌ରୁଁ କହିଥିଲା -

"ବାବା ! ତମେ ଆର୍ କବାର୍ ବୁଢ଼ା ନାଇଁ କରିନ । ବୁଢ଼ା ହେଲ ନ । ଲୋକ୍ ରଖି, ମୁଇଁ ସବୁ ଦେମି, ତମେ ଖାଲି ଦେଖିରେଖି କର । ମୋର୍ ବାପା ଥିଲେଁ ଯାହା କରତେ ତାହା କର । ମୁଇଁ ତମର୍ ଆର୍ ମୋର୍ ବାପାର୍ ଭିତରେଁ କେଭେଁ ଫରକ୍ ନାଇଁ ଦେଖିଁ ।" ସେ କଥାଟିକକେଁ କହ୍ନେଇ ସଥେଁ ସରଗ୍ କେ ଗଲା, ଆର୍ କିଛିଦିନ ଗଲା ପରେଁ ତାର୍ ଡ଼ିହ୍‌ବାରି ଟିକ ଭରତ ନାଏଁ ରେଜଷ୍ଟେରି କରିନେଲା । ଥାଏତ ଜୀବନର୍ କାଏଁ ଆଏତ ? ତାର୍ ମଲା ପରେଁ କିଏ କାଁ କରି ମାଡ଼ିବସ୍‌ବା । ପଧାନ୍ ଘରେଁ ତାର୍ ଡ଼ିହ୍‌କେ କେତେ ହଜାର୍ ଆର୍ ମରାଡ଼ି ତ ସଡ଼କ୍ ତରାର୍ ଜାଗା ବଲିଁ ଯେତ୍‌କି ବଏଲେଁ ସେତ୍‌କି ଗନିନେମି ବଲୁଛେ ତାଏଲ୍ । ଭରତ ତାର୍ ସାଙ୍ଗର୍ ଡ଼ାକ୍ତରେନ୍ ଟୁକେଲ୍‌ଟାକେ ବିହା ହେଲା ବେଲ୍‌କେ ତାହାକେ ପଚରେଇଥିଲା ଯେ, "ଜାତିର୍ ଟୁକେଲ୍ ଆଏ ବଏଲେଁ କାଏଁ ତମର୍ ମନ୍ ଊନା ହେବା" ବଲିଁ କହିଥିଲା ସେ ।

ମାଏ ଝି ମୁନୁଷ୍ ଦୁହେ ଡ଼ାକ୍ତର । ସରକାରୀ ନଉକିରି ପଏସ ବୁରୁଷ୍ଟି । ଅଭାବ୍ ନାଇଁ ଅସୁବିଧା ନାଇଁ । ଆଏଁଖି ମିଟ୍‌କା ମାରୁନ୍ ମାରୁନ୍ ବଛର୍ ଦଶ୍‌ଟା ପଲେଇ ଗଲା ।

ଭରତ ଆସି କାଏଲ୍ କହେଲା "ମୁଇଁ ଜମିନ୍ ସବୁ ବିକି ନଉଛେଁ ବବା । ଆମେ ସଭେ ସମଲ୍‌ପୁର୍ ଯିମା । ସେ ନ ନିଜର୍ ଡ଼ାକ୍ତରଖାନା କର୍‌ମା । ଘର୍ ବନା ସର୍‌ଲାନା । ଈ ଗାଁଥିଁ କା'ଣା କର୍‌ମା ? ବଏଁଶୀ ମାର୍‌ବାଡ଼ି ନଉଛେ ଚିମ୍‌ନି ଭାଟି କର୍‌ବା ପରେ ।"

ସେତ୍‌କି ବେଲ୍କୁଁ କହ୍ନେଇ ଖଟ୍ ଧରିଛେ ଯେ ନୁହେ ଛାଡ଼େ ।

ଇ ଜମି ଟିକ ସୃଷ୍ଟି ସିର୍ଜିନା ହେଲାଦିନୁ ହେଁଠାନେ ହେଣ୍ଡା ପରିଛେ । କେତେଲୋକ୍ ମୋର୍ ବଲିଥିବେ । କେ ବଲିଥିବା ମୁଗଁ ନେଲିଁ । ହେଲେଁ କିହେ କେଭେଁ କେନ୍‌ସି ଠାନ୍‌କେ ନାଇଁ ନେଇପାରିଁ । ଯେନିର୍‌ଟା ସେ'ନ ଅଛେ । ପଡ଼ିଆ ଥିଲା, ଖାଲ୍ ଢ଼ିପ୍ ଥିଲା; ସମାନ୍ କରି ଇର୍ ପାଏର ଛେଁକି ଜମିନ୍ କଲେ ଯେନ୍‌ମାନେ, ସେମାନ୍‌କର ନାଁ ନାଇନ । ଉଞ୍ଜା ଲୋକ୍ ହେଲେ ମାଲିକ୍।

କହ୍ନେଇ କେ ବାଧୁଥାଏ, ତାହାକେ ପଦେ ପଚ୍‌ରାଲା ନାଇଁ ପିଲାଟା, ବିକମା କି ନାଇଁ ବିକୁଁ: ବଲିଁ । ଭାବୁଥାଏ, ଇ ଜମିଟିକ ଅନାଜ୍ ଉପ୍‌ଜଉ ଥିଲା; କେତେ ଫଲ୍‌ମୁଲ୍ କେତେ ମୁଗ୍ ମୁଗ୍‌ଫଲି, କେତେ ମଡ଼ିଆ । ମୁନୁଷ୍ ଅଗ୍‌ବିର୍ ନୁହଁନ୍ ଲାଖ୍ ଲାଖ୍ ଚରେର ଚିର୍‌ଗୁନ୍ ଜଁତ୍ ଜାନୁଆର୍ ଚାଁଟି ମକ୍‌ରା ଠାନୁ ଜୀଉଁଥିଲେ । ଇଟାଭାଟି ହେଲେଁ ଖାଏବାକେ କା'ଣା ବାହାର୍‌ବା ?

ତାହାକେ ସମଲ୍‌ପୁର ଯିବାକେ କହୁଛନ୍ ଯେ କେନ୍ତା କରି ଯାଇ ପାର୍‌ବା ? ତାର୍ ଅଧୀନ୍ ତାର୍ ଦେଖ୍‌ରେଖ୍ ନେ ଇ ଜମିନ୍ ନେ ଥିଲେଁ ନେ ଥିବା, ଇ ଜମିବାଡ଼ି ନୁ ବୁଲି ଆଏବାକେ କେ ମନା କର୍‌ବା ? ଇନ୍ ତାର୍ ବୁଆ ଘନ ବରିହା ଅଛେ, ବାହ୍ମନ୍ ବୁଢ଼ୀ ଅଛେ ଆର୍ ଆର୍ତ ବି ଅଛେ । ଇନ୍‌କେ ଆଏଲେଁ ସେ ସମ୍‌କୁଁ ସୋର୍ କର୍‌ସି, ଦେଖ୍‌ଲା ବାଗିରତ୍ ଲାଗ୍‌ସି । ଇଁ ଗାଁ ନାଇଁ ଛାଡ଼େ । ଇ ଜମିନ୍ ଥିଁ ତାର୍ ଯେନ୍ ମୋର୍ ପଣିଆ, ନିଜର୍ ନିଜର୍ ଭାବ୍‌ଟେ ଗାଡ଼ି ହଇଛେ ସେତାକେ ଉସ୍‌କେଇ ପାର୍‌ବା କାଏଁ ? ଇ ଖେତର୍ ସବୁ ଢେଲ୍ ତାର୍ ଝାଲେଁ ବୁଥି ହଇଛେ, ସବୁ ପଥର୍ ସବୁ ଢ଼ିପାଥିଁ ତାର୍ ରକତ୍ ଲେସି ହଇଛେ । ଇନିର୍ ସବୁ ଗଛେଁ ଖୁଟେଁ ତାର୍ ନିଶାସ୍ ଖେଲିଛେ; ସବୁ ଆଁରି ତାର୍ ପାହାଚିହ୍ନା, ତାର୍ ବୁଆର୍ ପାହାଚିହ୍ନା ତାର୍ ଆଏଁଖିକେ ଦକ୍ କରୁଛେ । ଇ ଜମିନର ନଙ୍ଗଲ୍ ଗାରେଁ ସେ ବାହ୍ମନ୍ ଘରର୍ ଭାଏଗ୍ ସାଙ୍ଗେଁ ନିଜର୍ ବି କରମ୍ କପାଲ୍ ଖୁଜିଛେ ନୁରିଛେ । ଇ ନ ମାଏଟ୍ ଦୁଇହାତ୍ ପାଏଲେଁ ମୁର୍ଦାର ହଇଁ ଶୁଇବା; ମଲା ପରେଁ ପେଟେନ୍ ଭୁଟେନ୍ ହେଲେଁ ଇ ଖେତେ୍ ଟିକେଁ କିହ୍‌ରୁ ଥିବା । ମୁନୁଷ୍ ଜନମ୍ ପାଏଲେଁ ଇ ଜମିନର୍ ମାଏଟ୍ ସାଙ୍ଗେଁ ଫେର୍ ମାଏଟ୍ ହେବା; ଏନ୍ତାକି ଯଦର୍ପି ଗୋରୁ ଜନମ୍ ବି ପାଏ ତେବେଁ ଇ ଖେତେଁ ଫାନ୍ଦି ହେବା, ଇନର୍ ଇର ପାଏର୍ ନେ ଚରବା୍, ଇ ଖେତର୍ ଗଛ୍ ଛଏରା ତଲେଁ ଶୁଇଁ କାପ୍‌ଲି କର୍‌ବା । ସମଲ୍‌ପୁର୍‌କେ ସେ କାଁ କରି ଯିବା ? ସେ'ନ କା'ଣା ଅଛେ ? ତାର୍ କିଏ ଅଛେ, ଲାଗ୍‌ର କି ଲେସର୍ ?

ବନିହାଁ ବେଲ୍କୁଁ ସକାଲ୍ ପାହେଲା ନ । ଖରା ବଢ଼ରି ଆଏଲା ନ । ବନିହେନ୍ ଡ଼ାକ୍‌ଦୁ ପରେଁ ଯାଇ କହ୍ନେଇ ଓ କଲା । ଦେଖ୍‌ଲା ଯେ ତାର୍ ଖଟ୍ ପାଶେଁ ଭରତ ଆର୍

ତାର୍ କନିଆଁ ଦୁହେ ଠାଡ୍ ହଇଛନ୍ । ହଡ୍‌ବେଡ୍‌ଇ କରି ଉଠ୍‌ବାର୍‌କେ ଚେରେଷ୍ଟା କଲା; ମାତରକ ଉଠି ନାଇଁ ପାର୍‌ଲା କି ବସି ବି ନାଇଁ ପାର୍‌ଲା ।

ଡ଼ାକ୍ତର ଭରତ୍ ଦାଶ୍ କହେଲା "କାଁ ହେଲା ବବା! କେନ୍ତା ଲାଗ୍‌ଲା? କାଏଲ୍ ବନିହାଁ ରାଏତ୍ ତକ୍ ଟାକ୍‌ଲୁଁ, ଖାଇ ନାଇଁ ଗଲ ?"

ଡ଼ାକ୍ତରେନ୍ କଲ୍‌ପନା କହେଲା "ବବା! ଏ'ଦେ ମାଁ ଇ ଟିଫିନ୍ ଡ଼ବା ନେ କା'ଣା ଖାଏବାକେ ଦେଇଛନ୍, ଖାଇନିଅ । ଆମେ ଆଉଛଉଁ ଉଷୋକଷା କର୍‌ମା; ତମେ କିଛି ନାଇଁ ହ ।"

ଡ଼ାକ୍ତର ଦାଶ୍ ଫେର୍ ଯୁରିନେଲେ "ହଁ ବବା! ଆଏଜ୍ ରେଜେଷ୍ଟିଟା ଅଛେ ତ; ସଭେ ଆସିଥିବେ । ଆମେ ଆମର୍ ନିଜର୍ ମଟ୍‌ରେଁ ଯାଉଛୁଁ, ଜଲ୍‌ଦି ପଲେଇ ଆଏ ମୁଁ । ଆଏଲେଁ ବନ୍‌ଏ କରି ତୁମର୍ ଟ୍ରିଟ୍‌ମେନ୍ଟ କର୍‌ମୁ ।"

କହ୍ନେଇ ବଡ଼ା କଷ୍ଟେଁ ବେକ୍‌ଲେଇ କରି କହେଲା "ବୁଆ! ଗୁଟେ କଥା କର୍‌ବ । ମୁଇଁ ଆର୍ ଠହରମି ବାଗିରତ୍ ନେ ଲାଗ୍‌ବାର୍ ନ । ମୁଇଁ ମରିଗଲେଁ ହେଁ ଖେତେଁ ମାଏଟ୍ ଦୁଇହାତ୍ ଦେବ । ମତେ ମୋର୍ ମୁର୍ଦ୍ଧାର୍‌କେ ତୁପ୍‌ବାର୍ ଲାଗି ହେତ୍‌କି ନ । ହେଁ ଟିକକ ଛାଡ଼ିକରି ରେଜେଷ୍ଟରି କର୍‌ବ ।"

ଡ଼ାକ୍ତର ଦାଶ୍ ହର୍‌ବରେଇ କରି କହେଲା "ତମେ କାଁ ହେବ ଯେ ବବା! କିଛି ନେ ହ । ଏ'ଦେ ଆମେ ପଲେଇ ଆଉଛୁଁ ।" ସେମାନେ ଦୁହେ ପଲାଲେ କହ୍ନେଇ ଫେର୍ ମୁହଁ ଢ଼ାପିଁ ଶୁଇଲା । ଖାଏବାର୍ ପିଇବାର୍ କେ ମନ୍ ନାଇଁ କି ଉଠ୍‌ବାର୍ ବସ୍‌ବାର୍ କେ ବପୁ ନାଇଁ । ପରା ପାଟ୍‌କର୍ ଲୋକ୍ ସୋର୍ ପାଇ ଆଏଲେ, ପଚ୍‌ରା ଉଚ୍‌ରା କଲେ; କେ କେ କାଁ କା'ଣା ଆନିନେମୁଁ କାଏଁ, ଖାଏ ବୁ କାଏଁ ବଏଲେ । ସବୁକେ କହ୍ନେଇ ମୁଡ୍ ହଲେଇ ନାଇଁ କର୍‌ଲା । ଲୋକେ ଫେର୍ ନିଜର୍ ନିଜର୍ କାମ୍ କବାରର୍ ରଶି ଥିଁ ଘିଚିଟାନି ହଇଁ ଯେ ଯାହିଁ ଗଲେ ।

ବେଲ୍‌ହଉ ବେଲ୍, ଖରା ଉହୁରି ଆଉଛେ; କହ୍ନେଇ ବରିହା ସେନ୍ତା ଖଟେଁ ପରିଛେ । ତାର୍ ଦିହ୍ ଉପରେଁ ପଛ୍‌ରା ଖଣ୍ଡେଏ ଲଡ଼ା ହଇଛେ । ମାଛିମାନେ ପରବ୍ ପର୍‌ଲାମେତାଲ୍ ଭନ୍‌ଭନ୍‌ଉଛନ୍ । ଡ଼ାକ୍ତରେନ୍ ଦେଇ ଯାଇଥିବା ଟିଫିନ୍ ଡ଼ବାଟା ବିଲେଇ ଘୁରଘୁଡ଼େଇ ନେଇଛେ ଯେ ଖାପ୍‌ନି ହିଟିକରି ଥାଁ କରିଛେ; ମାଛି ବୁରୁଛନ୍ । ପାଶେଁ ଭରତର୍ ମା ପିଁଢ଼ାଟାକେ ବସିଛନ୍ । ତାକର୍ ଆଖିଁର୍ ପାଏନ୍ ତରା ତରା । କହୁଛନ୍ "ବଡ଼୍‌ଖୋଟା !" ଇ ମାଏନ ଥିଁ ସେ କହ୍ନେଇର୍ ସାଙ୍ଗେଁ ସବୁଦିନେ କଥାବାର୍ତ୍ତା କରି ଆସିଛନ୍। କନ୍‌ହେଇ ମାଏନ୍ ଥିଁ ଡ଼େଢ଼୍ ଶଶୁର୍ ଆଏତ । "କିଛିନାଇଁ ଖାଏଲ ଯେ । କେନ୍ତା ଲାଗୁଛେ?

ଏଖେଇ ଦିନ୍‌କେଁ ଏତେ ଦୁର୍ବଲ୍ ହଇଗଲ । କାଏଲ୍ ତକ ଈ ଶହେ ବଛରର୍ ଦିହେଁ ଭି ଖେଟୁଁ ଭାର୍ ବୁହିକରି ଆଉଥିଲ। କା'ଣା ହେଲା, କିଛି କହ । ଯାହା ବି ରୁଚୁଛେ ଖିଆପିଆ କର ।"

କହ୍ନେଇ ବରିହା ଆର୍ ବନ୍ଏ କରି କହି ନାଇଁ ପାର୍‌ବାର୍, ବେବ୍‌ଲଉଛେ । ଏତ୍‌କି ବୁଝି ହଉଛେ ତାର୍ କହେବାର୍ ଯେ "ବୁଆ ନୁହେ ଆସେ ? କେତେବେଲେଁ ଆଏ ବା ?"

ଡ଼ାକ୍ତର ଭରତ୍ ଦାଶ୍ ଆଉର୍ ଡ଼ାକ୍ତରେନ୍ କଳ୍ପନା ମଟ୍‌ରୁଁ ଉତ୍‌ରି ସିଧା କହ୍ନେଇର୍ ଘର୍‌କେ ଆଇଛନ୍ । ମା'କେ ସେନେ ଦେଖି ଭରତ୍ କହେଲା "ମା ! ରେଜିଷ୍ଟ୍ରିଟା ତମେ ଗଲେଁ ଯାଇ ହେବା । ତମର୍ ନାଁଥିଁ ଜମିନ୍ ଅଛେ ।"

ଈ କଥା ଶୁନି କହ୍ନେଇର୍ ମୁହେଁ ଦରହଁସିର୍ ଝଲକ୍‌ଟେ ଖେଲିଁ ଗଲା । ଭରତର୍ ମା ପଚରାଲେ "କା'ଣା ହଁସ୍‌ଲ ବଡ଼୍‌ଖାଟା ?"

କହ୍ନେଇ କିଛି କହି ନେ ପାର୍‌ଲା ସିନା ତାର୍ ମନେ ମନେ ଭାବୁଥିଲା ଯେନ୍‌ମାନେ ସେ ଜମିନ୍ ବନାକରା କଲେ, ଫୁଲାଲେ ଫଲାଲେ; ସେମାନେ ନେ ହେଲେଁ ବି ଚଲ୍‌ବା; ଯେ ଜମିନର୍ ସାମନ । କେଭେଁ ମାଡ଼ି ନାଇଁ, ଜମିନ୍ ଟା କେନ୍ତା ଦିଶ୍‌ସି ମନେ ବି ଭାବି ନାଇଁ, ଜମିନ୍ ତାର୍ ନାଁଥି ଅଛେ । ଧଏନ୍ ଧଏନ ଈ ସଂସାର । ଭରତ୍‌କେ ଦେଖି କହ୍ନେଇ ଉଠ୍‌ବାର୍‌କେ ଚେରେଷ୍ଟା କଲା ତାର୍ ହଜି ଯାଉଥିବା ସବୁ ବଲ୍‌ବଫୁ ସାଉଁଟି କରି କହେଲା "ବୁଆ ! ଏ'ଦେ ମୋର୍ ଜୀବନର୍ ସବୁ କମାନି ଧମାନି ମୋର୍ ମୁଡ଼୍ ଆଡ଼େଁ ଅଛେ । ଇଥୁଁ ପସେ କି ଅଧ୍‌ଲେ ମୋର୍ ନିଜର୍ ପିଁଧ୍‌ନା ଉଢ଼୍‌ନା କି ଖାନା ପି'ନା ନେ ଖର୍ଚା ନାଇଁ କରି, ଛଁଟି ରଖିଛେଁ । ସେଥିର୍ ଲାଗି ଦରକାର୍ ନାଇଁ ଥାଇ ବି । ସବୁ ତୁମେ, ତମର୍ ବାପ୍ ଅଜା ଦେଇଛନ୍ । ଈ ସାଙ୍ଗେଁ ଏ'ଦେ ମୋର୍ ଡ଼ିହ୍‌ବାରି ଟିକର୍ ରେଜେଷ୍ଟେରି ଇଷ୍ଟାମ୍ । ଈ ସବୁ ଭଁଜାଇ ନେବ ।"

ଭରତ୍ ପଚରାଲା "କା'ଣା ଭଁଜାମି ବବା ?"

କହ୍ନେଇ ବେବ୍‌ଲେଇ କରି କହେଲା "ଈ ପୁର୍ଥୀ ଭିତ୍‌ରେଁ ବି ପରେ ଗୁଟେ ଦେଶର ଟଁକା ଆର୍ ଆର୍ ଦେଶେଁ ନେ ଚଲେ । ମୁଇଁ ତ ଈ ପୁର୍ଥୀ ଛାଡ଼ି ପର୍ଚ୍ଚା ଦୁସ୍‌ରା ମୁଲକ୍ କେ ଯିମି । ସେ'ନ ଈଟା । କେ'ନ ଚଲ୍‌ବା ? ସେ ମୁଲ୍‌କେଁ ଯେନ୍ ପଯସା ଚଲ୍‌ବା ସେ'ଟା ଭଁଜେଇନେବ ।"

ଭରତ୍ କହେଲା "ବୁଝି ନାଇଁ ପାରଲିଁ ବବା !"

କହ୍ନେଇ ବନିହାଁ କଷ୍ଟେ କହେଲା ଅଟ୍‌କି ଅଟ୍‌କି -

"ହଁ ଈ ସବୁକେ ନେଇ କୁରିଆ ଗୁଟା ଦୁ ବନାଇ ନେବ । ସେ'ନ ମୋର୍ ମେତାଲ୍ ପୁଓ ମାଏ ପୋ ନେ ଥିବାର୍, କି ଯେନ୍ ମାନ୍‌କର୍ ପୁଓ ମାଏପୋ ଥାଇକରି ବି ନେ ପଚରାବାର୍, ଦେଖ୍ ରେଖ୍ ନୈ କର୍‌ବାର୍, ସେନ୍ତା ବୁଢ଼ାବୁଢ଼ୀମାନେ ରହେତେ । ସେମାନେ ଯେନ୍ତା ଟିକେ ସେବା ଶାସନ୍ ପାଏତେ, ଥିର୍ ଭୁକେ ପାଏତେ, ପାର୍‌ବ ବଏଲେଁ ହେନ୍ତା ବେବସ୍ଥା କରିନେତ । ମୁଇଁ ମୋର୍ ପୁଓ ମାଏ ପୋ ନାଇଁ ଥାଇ ଯେ ବନିହାଁ ଡ଼ରୁଥିଲିଁ, ହେଲେଁ ତମର୍‌ମାନ୍‌କର୍ ଧର୍‌ମୁ ମତେ କେନସି ଦଶା ଭୁଗ୍‌ବାକେ ନେ ପଡ଼୍‌ଲା । ମୋର୍ ମେତାଲ୍ ବୁଢ଼ାବୁଢ଼ୀ ଅଛନ୍, ଯେନ୍‌ମାନେ ଥିର୍ ଭୁକେ ନେ ପାଏବାର୍ ଭିଖ୍ ମାଗୁଛନ୍, କିଏ କେନ୍ ପିଁଢ଼ା ନ ତ କିଏ କେନ୍ ଗଛ୍‌ତଲେଁ କୁଆ କୁକୁରର୍ ଅଁପ୍ରା ଚିଁପ୍ରା ନ ଜୀବନ୍ ଦଣ୍ଡଛନ୍। ହେଁ ମାନ୍‌କର ଲାଗି ଏତ୍‌କି ଥିଁ ଯାହା ବନ୍‌ତା କର୍‌ତ । ଏଦେ ନିଅ ।" ବଲି ମୁଡ଼୍ ଆଡୁଁ ମୁଚ୍‌ଲା ଖୋଲ୍‌ଟେ ବାହାର୍ କରି ଖସ୍‌ରେଇ ନେଲା; ଯେନ୍ ଥିଁ କି ସବୁ ଭରା ହଇଥିଲା । ସେ'ଟା ଖସ୍‌ରାଲା ବେଲେଁ ନିଜେ ବି ଖଟୁଁ ତଲ୍‌କେ ଖସ୍‌ରି ପର୍‌ଲା, ଆଁ କରିନେଲା ଯେ ସେ ଆଁଟା ଆର୍ ମୁଜିଁ ନେ ହଇଁ ନ ।

ଏତକି ବେଲ୍‌କେ ବେଲ୍ ଲାଲ୍ ବରନ୍ ଧରି ପଛିମ୍ ଆକାଶେଁ ବୁଡ଼ି ବୁଡ଼ି ଯାଉଥାଏ ।

ଭରତର୍ ମା କାନ୍ଦି ପକାଲେ ହେଁକେଇ ହେଁକେଇ; ଆଖୁଁ ଲହ ଦାରୋ ଦରୋ ଗଦେଇ ହଉଥାଏ । କଲ୍‌ପନା ରୁମାଲ୍ ଥିଁ ଆଏଁଖ୍ ପୁଛୁଥାଏ । ଭରତ୍ ସଡ଼କ୍ ଦମ୍ ଠିଆ ରହିଥାଏ, ଟକ୍ ନୈ ଟଲୁଥାଇ । ତାହାକେ ସବୁ ଅଁଧାର୍ ଦିଶୁଥାଏ । ଯେତବେଲେଁ ତାର୍ ମୁହଁ ଫିଟ୍‌ଲା ସେ କହେଲା "ଆର୍ ଈ ଜମିନ୍ ନାଇଁ ବିକେଁ ନ ମା। ସମଲ୍‌ପୁରର୍ ସବୁ ବିକିନେମି ।"

କହ୍ନେଇ ବରିହାର୍ ଜାଏତ୍ କୁଁ ଧରି ତାର୍ କାମ୍ କାରଯ କର୍‌ଲା । ଭରତ୍ ଦାଶ୍ ସମଲ୍‌ପୁରର୍ ତାର୍ ବନାଲା ଘର୍ ଦୁଆର୍ ବିକି ନେଲା । ଆପ୍‌ନେ ଦୁହି ଲୁକ ନଉକିରି ଛାଡ଼ି ଗାଆଁନେ ରହେଲେ । ଖେତେଁ ଧାଡ଼ିକେ ଧାଡ଼ି ଘର୍ ତିଆରି ହେଲା । ତାର୍ ନାଆଁ ଦେଲେ "କହ୍ନେଇ କୁରିଆ" । ସେ ନ ଆଖର୍ ପାଖର୍ ନିରାଶ୍ରୀ ବୁଢ଼ାବୁଢ଼ୀ ଆସି ରହେଲେ । ନର୍ସ ଦୁଇଜନ୍ ରଖି ଭରତ୍ ଦାଶ୍ ଆର୍ କଲ୍ପନା ମା'ବାପ୍ ମେତାଲ୍ ସେମାନ୍‌କର୍ ସେବା କଲେ । ଜମି ଦଶ୍ ଏକଡ଼୍ ଥିଁ ଆଗର୍ ଠାନୁ ଆହୁରି ବଢ଼ିଆ ଚାଷ୍‌ବାସ୍ ହେଲା । 'କହ୍ନେଇ କୁରିଆ'ର୍ ବୁଢ଼ାବୁଢ଼ୀକୁଁ ଧରି ଭରତ୍ ଆର୍ କଲ୍‌ପନା ଦୁହେ ଦେହେ ଲଗେଇ କାମ୍ ଧାମ୍ କଲେ । ଗୁଡି କୁଠିଆ କି ଭୁତିଆର୍ ଆର୍ ଦର୍‌କାର୍ ନାଇଁ ହେଲା ନ । ଛିନା ବେଲେଁ ଯେନ୍‌ମାନେ ଚିହ୍ନିଛନ୍ କହ୍ନେଇ ବରିହା ସେ ଜମି ଦଶ୍ ଏକଡ଼୍ ଭିତ୍‌ରେଁ ଉଷତ୍ ମନେ ବୁଲୁଥିବାର୍ ଦେଖିଛନ୍ ବଲିଁ କୁହାବୁଲା ହେସନ୍ ।

କଲ୍‌ପନା କହେଲା "ବବା ଆମର୍ ଜୀବନ୍ -ଧରସା କେ ବନ୍‌ଏ ମୋଡ୍, ଆଚ୍ଛା ମୁରେନ୍ ଟେ ଦେଲେ ।"

ଭରତ୍ ମୁଡ୍ ହଲେଇ କହେଲା "ମୋଡ୍ ବଲ୍‌ସ, ଯୋଡ୍; ମୁରେନ୍ ନୁହେ ଯୁରେନ୍ ଆଏ" ।



ନିସାନ୍ ସାହିତ୍ୟ ସଂସଦ୍
ବାହାର୍ କଲା ବହି

ଭାଷା-କୋଶଲୀ (ସମଲ୍‌ପୁରୀ)

ସମଲ୍‌ପୁରର୍ କଥା (ପଦ୍ୟ)......ନୀଲମାଧବ ପାଣୀଗ୍ରାହୀ (ଖୁସ୍‌ରୋ)
ମହ୍‌ରା ଆର୍ ମହୁ (ଗଦ୍ୟ ସମାଲୋଚନା)
କୋଶ୍‌ଲିକା (ପଦ୍ୟ)
କବ୍ରାଚିତ୍ରା (ଗଦ୍ୟ ପଦ୍ୟ ବିଚିତ୍ରା-ଭିନ୍‌ଭିନ୍ ନାମୀ ଲେଖକ୍ ମାନ୍‌କର)
ସାବିତ୍ରୀ କଥାନି ୰ ଡ଼କ୍‌ଟର୍ ଶ୍ରଦ୍ଧାକର ସୂପକାର
କଥାନି ସତ୍‌ସତାନି (କଥାନି) ହେମଚନ୍ଦ୍ର ଆଚାର୍ଯ୍ୟ
(ପହିଲ୍ ଛୋଟ୍ ସଂସ୍କରନ)

Published on behalf of Nisan Sahitya Sansad, Sambalpur by Nilmadhab Panigrahi and Printed at Art & Artist Press, Jharuapara, Sambalpur.

Price- Rs. 20/-

ରଚନା:

ହେମଚନ୍ଦ୍ର ଆଚାର୍ଯ୍ୟ
ଗର୍ଭଣା-୭୬୮୦୩୩

*by: Hem Chandra Acharya*
*Garbhana- 768033*

*

ପ୍ରକାସିକା :

***Publisher:***

ଅନ୍ନପୂର୍ଣ୍ଣା ମହାପାତ୍ର
ସମଲ୍‌ପୁରି ପ୍ରକାଶନି

*Annapurna Mahapatra*
*Samalpuri Prakasini*

ସମଲ୍‌ପୁର୍

***Samlpur***

*

ପ୍ରଚ୍ଛଦପଟ ;

ମନୋଜ ଚୌଧୁରୀ

*

ଦାମ୍ ; ବାରଟଙ୍କା

*

ସତ୍ୟସାଇ ପ୍ରିଂଟର୍ସ, ସମଲ୍‌ପୁର୍ ନୁ ଶ୍ରୀମତୀ ଲକ୍ଷ୍ମୀପ୍ରିୟା ତ୍ରିପାଠୀଙ୍କରୁ ଦ୍ୱାରା ମୁଦ୍ରିତ ।

# ଦୁଇପଦ୍ କହେମି

ଆମେ ଯେନ୍ ଶବଦ୍ ମାନ୍‌କୁ କଥାଭାଷା ହେସୁ, ସେଥିଁ ଗୀତ୍ ବାଏଦ୍ ଭି ଅଏନ୍ ଲାଗ୍‌ସି । ଇ ଶବଦ୍ ସବୁକେ ଆମେ ଭାଷା କି ବୁଲି ବଲ୍‌ସୁଁ । ଆମର୍ ଇ ଭାଷାକେ ସମଲ୍‌ପୁରୀ ବଏଲେଁ ଭି ଇ'ଟା ଶାସନ୍ କି ଭୂଗୋଲ୍‌ର ସୀମା ରେଖା ନାଇଁ ମାନେ । ସମଲ୍‌ପୁର୍, ସୁନ୍ଦରଗଡ୍, ବଲାଙ୍ଗିର୍, କଲାହାଏଁଡ୍, ବଉଦ୍ ଫୁଲ୍‌ବାନୀ ଜିଲା ମାନ୍‌କେ ତ ଇଟା କଥା ହେବାର ଭାଷା ଆଏ । ମଧ୍ୟପ୍ରଦେଶର୍ ରାଏଗଡ୍, ରାଏପୁର୍, ଯଶ୍‌ପୁର୍, ବିଲାସ୍‌ପୁର୍ ଆର୍ ବସ୍ତର୍ ଆଦି ଜିଲା ମାନ୍‌କେଁ ଉଡ଼ିଆ ବୁଲାଉ ଥିବାର ଲୁକେ ଇ ଭାଷା ଥିଁ କଥାଭାଷା ଦୁଖ୍ ସୁଖ୍ ହେସନ୍ । ଅର୍ଥାତ୍ ଇ ଭାଷା ଥିଁ ଦୁଖ୍ ସୁଖ୍ ହେବାର ଲୋକ୍ ଅନ୍ତଜିଆ ଦେଲ୍ହେ ଦୁଇ କୋଟି ଲୋକ୍‌ନୁ କମ୍ ନାଇଁ ହଅନ୍ । ଆମର୍ ଇ ଲୁକେ କହେସନ୍ ଯେ ଆମର୍ ଭାଷା ଥିଁ ଗୀତ୍ ଗାଏଲେ ହେନ୍ତା ମନ୍ ହଦ୍‌ମଦାସି, ଯେନ୍ତା ନାଚ୍ ନାଚ୍ ବାଗିର୍ ଲାଗ୍‌ସି ଉଣ୍ଡା ଭାଷାର୍ ଗୀତ୍ କଥା ଥିଁ କେନ୍ ହେନ୍ତା ଲାଗ୍‌ସି ? ଆମର୍ ଇ ଭାଷା ଥିଁ ହଲିଆ ଗୀତ୍, ଡ଼ାଲ୍‌ଖାଇ, ରସର୍‌କେଲି, ହୁମୋ, କର୍‌ମା, ଦୁଲିଗୀତ୍, ଦୁଲାଗୀତ୍ ଆଦି ବନିହାଁ କରି କେତ୍‌ନି କେତେ ଦିନୁ ଗୁଆ ହଉଛେ ସିନା ଅଖର୍ ବନ୍ଧନ୍ ଥି ନାଇଁ ବନ୍ଧା ହଇଁ, ନାଇଁ ଲିଖାହଇଁ । ସଁଚାର୍ ବାହାକ୍‌ମାନେ କି ବଜ୍‌ନିଆଁମାନେ ନଚନିଆମାନେ କେନୁ କେନ୍ତା ଗୁଟେ ଖଣେ ଛି ନି ଛାନି କରି ଗାଏଲେ ଲୋକ୍ ସେ ଥିଁ ଝଁପେଇ ହେସନ୍ ଇ କଥା ପର୍‌ତଖ୍ ଆଏ । ଆଏଜ୍‌ତ ଇ ଦିଗେଁ ବନେ ଚେରେଷ୍ଟା ଚାଲିଛେ ; ରେଡ଼ିଓ ଥିଁ, ପତର୍ ପତ୍‌ରିକାମାନ୍ କେଁ ଭି ଲେଖାମାନେ ବାହାରୁଛେ । ଆଗୋ ଇ ଦିଗେଁ ଅର୍ଜୁଣ୍ଡା ଗାଆଁର୍ (ସୋହେଲା ଥାନା) କପିଳ ମହାପାତର୍ ହ୍ଁକ୍ ରାମେଣ୍ ଲେଖି ବନେ କବାର୍ ଟେ କରିଥିଲେ । ହେଲେଁ ସେତେବେଲେଁ କିହେସେଥିଁ ନଜର୍ ନୈ ଦେଲେ କି କାଣା ଯେ ସେଥିର୍ ଗୁଟେ ଅଧେ କାଣ୍ ଆଜିର୍ ମିଲୁଛେ । ବାକୀ ସବୁ କେନ୍ କେ ଗଲା କେଜାନେ ? ସମଲ୍‌ପୁରୀ ଗୁଟେ ଅଲ୍‌ଗା ଭାଷା ଆଏ । ଇଟା କେତେ ଜଲ୍‌ଦି ସାବିତ୍ ହେବା ଆମର୍ ପରର୍ ପୀଢ଼ିର୍ ପାର୍‌ବାର୍ ପନ୍ କହେବା । ଇଟା ଅଲ୍‌ଗା ଭାଷା ତ ଆଏ ହେଲେ ଇଟାକେ ଅଲଗ୍ କରି ବର୍କସ୍ କରି ଠିଆ କର୍‌ବାର୍‌ଟା ବନେ କଡ଼ା କବାର୍ ଟେ ଭି ଆଏ ।

ସଁସ୍‌କ୍ରୁତ୍ ଆର୍ ଉଡ଼ିଆ ଭାଷା ଭିତ୍‌ରେଁ ଯେତ୍‌କି ତଫାତ୍ ଅଛେ, ସମଲ୍‌ପୁରୀ ସେଥିରୁଁ ଟିକେ ପାଶ୍ ଆଏ । ଉଡ଼ିଆଠାନୁ ବଙ୍ଗ୍‌ଲା, ହିନ୍ଦୀ କି ଆସାମୀ ଭାଷା ମାନେ

ଯେତେ ପାଣ୍ ଆ'ନ୍ ସମ୍ଲପୁରୀ ସେଥିଗୁଁ ଟିକେ ଧୂରିଆ ଆଏ । ଭୁଗୋଲ୍ ଜାନ୍ଲା ଲୁକେ କହେସନ୍ । ଉପକୁଳ୍ ଅଁଚଲର୍ ଜିଲାମାନେ ପଛେଁ ତିଆରି ହଇଛେ ଆର ଇ ସମଲପୁରୀ ଭଷାଥିଁ କଥା ହେଉଥିବାର ଜିଲାମାନେ ଆଗୋ । ସଁସ୍କୃତି ଦେଖ୍ଲେଁ ଭି ଇ ଆଡ଼ର୍ ଟା କୁନ୍ହା ବାଗିର୍ ଜନା ପରସି ; ଯେନ୍ତା କି ବିକ୍ରମ୍ ଖୋଲ୍, ମାରାଗୁଡ଼ା, ରାନୀପୁର୍ ଝରିଆଲ୍ ନର୍ସିଙ୍ଗ୍ ନାଥ୍ ଆଦିକୁଁ ଆଉର୍ ଲୋକ୍ ମୁହଁର୍ ପର୍ବଚନ୍ ମାନ୍କୁ ପଚ୍ରାଲେ ବି କହେସନ୍ ।

ଇ ସମଲ୍ପୁରୀ ଭାଷା କହୁଥିବାର୍ ଲୁକେ ଉଡ଼୍ଶା ଦେଶେଁ ରହି ଉଡ଼ିଆ ଭାଷାକେ ଆଦ୍ରି ନେଲେ ଇସ୍କୁଲିଆଭାଷା ବଲିଁ । ସମଲ୍ପୁରୀ କେ ଉଡ଼ିଆ ଭାଷା ନିଜର୍ କରି ପାରିଥିଲେଁ ଦୁହି ଭାଷା ମିଶି ଗୁଟେ ବନେ ବଢ଼ିଆ ଆର୍ ବଡ଼୍ହଇ ପାରିଥିତା ; ହେଲେଁ ସମଲ୍ପୁରୀକେ ସବୁଦିନେ ଭିନ୍ ଆଖିଁ ଦେଖାହେଲା, କେନ୍ କନ୍ କେ କର୍ଖେଇ ନିଆହେଲା । ଏନ୍ତାକି କବି ମୂର୍ଧନି ଗଙ୍ଗାଧରବି 'ଛିନି', 'ନିଛି ବାଗିର୍ ଗୁଟେ ଖଁଡ଼େ ସମଲ୍ପୁରୀ ଶବଦ୍ ବେଭାର୍ କଲେ ଯେ ସେତେବେଲର୍ ସାହିତ୍ୟିକ୍ ବୁଲାଉଥିବା ବନିହାଁ ଲୁକର୍ ମନ୍କେ ନାଇଁ ଆଏଲା ; ଭାଷା-ରାଏକେଁ ରାଜ୍ ପାଟ୍ ପାଏଲା ବାଗିର୍ ହଉଥିବାର୍ ଲୁକେ ତ ପର୍ଛା ଅସକଟାଲେ । ଇ ଆଡ଼ର୍ ଲେଖକ୍ମାନେ ବହି ଉଡ଼ିଆ ଥି ଲେଖିଲେଁ ବି କିହେ ନାଇଁ ପରରାଲେ ତ, ସମଲ୍ପୁରୀ ଥିଁ ଲେଖ୍ଲେଁ କାଁ ମାଏନ୍ ପାଏବେ ? କେନ୍ଦ୍ରସାହିତ୍ୟ ଏକାଡ଼େମୀ କଥା ଛାଡ଼୍, ରାଜ୍ୟ ସାହିତ୍ୟ ଏକାଡ଼େମୀର୍ ଦୁଆର୍ ବନ୍ଧ୍ ମାଡ଼ବାକେ ବି ସମଲ୍ପୁରୀକେ ମନା, ସତେସେ'ନ ପାହା ପକେଇ ନେଲେଁ ଗୁବ୍ରେ ପାଏନ୍ ଝିଁଟା ଲାଗ୍ବାକି କାଣା ? ସମଲ୍ପୁରୀ ଯେ ଖାଲି ଅଲ୍ଗା ଭାଷା ଆଏସେତ୍କି ନୁହେ, ଇଥି ଗୀତ୍, କବିତା, ଛୋଟ୍କଥେନ୍, ଉପନିଆସ୍, କାଏବ୍ ପଢ଼୍ବାକେ ଶୁନ୍ବାକେ କେତେ ବଢ଼ିଆ ଲାଗ୍ସି ପଢ଼୍ଲା ଶୁନ୍ଲା ଲୁକେ କହେବେ । ଇ ଭାଷା ଥିଁ ଗୁଟେ ଭିନ୍ ରକମ୍ର ସୁଆଦ୍ ଅଛେ । ଦୁଷ୍ରା ଲହର୍ ଅଛେ ଆର୍ ଗୁଟେ କିସମ୍ର ଲଟକ ଅଛେ ଯେନ୍ତା କି ବୁଝିହେସି, ଧରି ହେସି କହି ନାଇଁହଏ । ଇ ଭାଷାର୍ ସୁଆଦ୍ ବାଆରି ହେସି । ଇ ଭାଷାର୍ ଶବଦ୍ ମାନ୍କେଁ କେତେ ଜାଗା ଥିସି ଯେ ଭରନ୍ ଭରନ୍ ଭାବ୍ ଧରାସି ଆର୍ ଗୁଟେ ଶବଦ୍ କେ ଫାରିନେଲେଁ ଯେତ୍କି ଭାବ୍ଲୁକେଇ ହେସି ଯେ ସେତାକେ ରଖି ଥୁଇ ବାଆରି ପାରଲେଁ କୁରୁତ୍ କୁରୁତ୍ ଲାଗ୍ସି । ଇ ସବୁକେ ପରତଖ୍ କର୍ବାକେ ଇ କାଏବ୍ ଆଏ । ଲୋକକାଁ ବଲ୍ବେ ଯେ କେଜାନେ । ଯଦର୍ପି କେନ୍ କନେ ଭି କିଏ ଜନେ ଇତାକେ ସହ୍ରାବା ବଏଲେଁ ଅଭିମନ୍ୟୁ ସାମଂତ୍ ସିଂହାର୍ କର୍ କହେଲା ବାଗିର୍ ମୋର୍ ଆୟୁଷ୍ ସଙ୍ଗେ ମୋର୍ ମିତାଲ୍ ଅନେକ୍ ଲୁକର୍ ଆୟୁଷ୍ ତାହାକେ ମିଲବା । ହେନ୍ତାଜନେ ବି ଜୀଇଁଥିଲେ ଇ ଭାଷାଟା ଜୀଇଁ ରହେବା ହେଁ ଥି ଟିଖେ ବି ଶଁକା ନାଏ'ନ ।

ଏହନି ଆର୍ ଗୁଟେ କଥା ନାଇଁ କହେଲେଁ ମୋର୍ କହେ ବାର୍‌ଟା ଦର୍ ଖଁଣିଆ ରହିଯିବା । ସେ'ଟା ହଉଛେ"ଇ ଭାଷାକେ ପଢ଼୍‌ବାର୍ ଲୋକ୍ ବାହାର୍ କର୍‌ବାର୍" । ଆମେ ଚାହେଁସୁ ସବୁକଥା ନୁକୋ ଭାବେଁ ହେତା ନ ନିଜର୍ ପଖେଁ ପାଏନ୍ ନାଇଁ ଲାଗ୍‌ତା । ଆମର୍ ମୁଡ଼୍ ଦୁଖା ଉଣାସ୍ କର୍‌ବାର୍ ଲାଗି ଉଞ୍ଚା ଲୁକେ ଉଷୋ ଲଗେଇ ହେତେ । ଛିଟା ମେଟୋଲା ମେତାଲ୍ ଦୁଇ ଚାଏର୍ ସଭାଥି କହିନେଲେଁ ଇ ଭାଷା ଠହର୍‌ବା କାଏଁ ? ଇ ଭାଷାର 'ୟୁଲିସିସ୍ ଆର୍ ସାଲେଗ୍ରାମ୍' ବାଗିର୍ କବିତା ବହିମାନେ ବାହାରିଛନ୍ । ଇ ଭାଷା ଥିଁ ଏହନି ଗୁଟେ ପତ୍‌ରିକା 'ନିସାନ୍' ବାହାରୁଛେ, 'ବିଲାସିନୀ'ବାଗିର୍ ସମଲ୍‌ପୁରୀ ଉପ୍‌ନିଆସ୍ ଛପା ହେଇଛେ ଆର୍‌ଭିକା'କା'ଣା ବାହାରୁଥିବା । ଇ ସବୁକେ ଆମେ ନାଇଁ ପଢ଼୍‌ଲେଁ କିଏ ପଢ଼୍‌ବା ? ଆମେ ନାଇଁ ଘିନ୍‌ଲେଁ କିଏ ଘିନ୍‌ବା ? ଖାଲି ଧୁକା ପିଇକରି ଭାଷା ନାଇଁଟିକେ, ନାଇଁ ଉଧାଏ, ନାଇଁ ଜୀଁଏ । ତାର୍ ଲାଗି କିଛିଟା ତିଆଗ୍ କର୍‌ବାକେ ପଡ଼୍‌ବା । ଆସୁନ୍ ସଭେ ମିଶି ସଭେ ହାତେଗୁଡ଼େ ଦେଇ ଇ ଭାଷାକେ ବଅଁଚାମା ଠିଆଡ଼୍ କରାମା ଚଲାମା, ବୁଲାମା, ଖେଲାମା ଦୁଲାମା ।

୩୧.୧. ୧୯୯୧ ହେମଚନ୍ଦ୍ର

# PREFACE

I extend, right at the out-set my heartist welcome and warmest congratulation to poet Shree Hemachandra Acharya, a gem lying rather in sad wilderness, for the light he has so successfully thrown on the hitherto unknown and consequently unexploited potentialities of our Sambalpuri language. He, as a true and dutiful son of our mother language has courageously chosen it as the medium of expression in this little but exceptionally dazzling literary creation a Kavya named 'Satar Sati Brundabati'. The mythological episode narrated in the Padmapuran, besides a number of other puranas, mainly concerning Jalandhara, the mighty anti-godly hero, his chaste wife Brundabati, and Lord Vishnu who molested her chastity so as to disqualify and disable it from serving as the defending, invincible armor of her husband, engaged in a war against Mahadeva, resulting ultimately in Jalandhara's death, is undoubtedly of abiding social interest, involving debatable ethical conduct of Lord Vishnu, the protector of human society and its moral ideas. So it is never a hackneyed subject matter and is even now befits a Kavya which, according to traditional Indian rhetoric, has a social purpose to serve (Shivatara Kshataye'- Mammata's Kavyaprakash), unlike most of so called modern poetry created just for gratification of a purely personal urge for creation.

But that is not why Satar Sati Brundabati should so strongly attract us. The unquestionable merit and capacity of its author as a consummate literary artist, demonstrated amply in his earlier Oriya Kavya Shavari Sandesh in Reeti pattern and exhibited in the present Kavya again, is not what I need to highlight here, for, the rears themselves cannot fail to notice these easily visible traits. What is of utmost relevance is that this Kavya Satar Sati Brundabati (which means truly chaste Brundabati) is a decisive piece of evidence to show the worthiness of Sambalpuri language as a suitable medium for expression of high and serious thoughts. Persons in the field of Sambalpuri language and literature are aware of how the language has been so far sneered as a folk language, fit at best for lyrics and

folk songs. The language has also been facing the apathy not only of the Oriya speaking litterateurs of Orissa who wrongly take it to be a corrupt form of Oriya or at best an Oriya dialect but also of almost all people who themselves speak the language but take resort to oriya when they have to write even a letter to their family members and friends. Despite all discouraging factors Sambalpuri language has been holding its own against the infiltration into west Orissa (formerly a part of the famous Kosal country) of Oriya language and literature which belongs, as scholars opine, to a different language-group, namely, Magadhi as against the Ardhamagadhi group to which Sambalpuri language belongs. Though Oriya speaking people do not understand Sambalpuri language and have never utilized it so as to enrich Oriya language integration of different people and regions of Orissa, people who matter or people in power do not recognize Sambalpuri as a language different from Oriya and so neglect it.

My humble appeal to all such people is to go through Satar Sati Brundabati and say if the language used in the Kavya is corrupt Oriya or, as I believe and can show, chaste Sambalpuri that should deserve as much patronage and incentives as enjoyed by Oriya. I need not remind scholars and people who matter that unity in diversity and variety being the character of our Indian culture, the development of Sambalpuri language and literature can only be neglected at the peril of an integrated Orissa.

Lastly I hope my friend Hema Chandra's hema made (golden) pen will not rest satisfied and be complacent with what it has produced. Sambalpuri language hopes ardently that her worthy sons like my friend will untiringly go on and on in their effort to raise their mother language to the status it richly deserves but is wrongly and sadly deprived of mostly due to their own idleness and undue magnanimity towards Oriya which is already affluent and is not in crying need of their service as is their own languishing mother language.

NilamadhabPanigrahi
18-02-1992

(President Sambalpuri Lakhak Sangha)

# ଅଭିମତ

ସମଲ୍‌ପୁରୀ ଭାଷାଥି ଆମର୍ ଇଲାକାର୍ ଲୁକେ ଯୁଗ୍ ଯୁଗ୍ ଧରି କଥା ବାର୍‌ତା, ଦୁଖ୍ ସୁଖ୍ ଆଉର୍ ଭାବର୍ ବିନିମଏ କରିଚଲି ଆସୁଥିଲେ ବି ଲେଖା ଯୁଖା କରି ତାକର୍‌ଭାବ୍ ପର୍‌କାଶ୍ କର୍‌ବାର୍ ଉଦ୍‌ଯୋଗ୍ ଗଲା କେତେ ବଛର୍ ଧରି ଯେନ୍ ତା ଚାଲିଛେ ଆଘ୍ ଲୁଁ ହେନ୍ତା ନାଇଁ ଥାଇ । ଲୋକ୍‌କଥା, ଗୀତ୍, କଥେନ୍, ଦଏକା ପୁର୍‌ନା ମାନ୍‌ତା ଗନ୍‌ତା ଲେଖକ୍ ମାନେ, ଗାହାକ୍‌ମାନେ ବଁଚେଇ ରଖିଥିଲେ ।

ଏଭେଁ ସମ୍ବଲ୍‌ପୁରୀ ଭାଷାଥି ବହୁତ ଲୋକ୍ ବହୁତ୍ କଥା ଲେଖିଛନ୍ ହେଲେ ବହି ପତର୍ ଛପା ଆଉର୍ ତାର୍ ପର୍‌ସାର୍ ଏତେ କମ୍ ଯେ ଆଂଗ୍‌ଠି ଆଗେ ଗନି ହେଇ ଯାଉଛେ । ସେଥି ଅବ୍‌ଗା ନିରତ୍ନା ସମ୍ବଲ୍‌ପୁରୀ ଭାଷାଥି ଉଚା ଦର୍‌ଜାର୍ ସାହିତ୍ୟ ସୁର୍‌ଷ୍ଟିକରି ଯେନ୍ କେତେ ଜନ୍ ଅଅମର ଭାଷାର ଭଣ୍ଡାର କେ ପୁରୋଉଛନ ସେମାନକର ମେହେନତ ଆଉର୍ ଦାନ ସାରା ଜାତିର୍ ଲାଗି ଗୁଟେ ବଡ୍ ଦାନ୍ ।

'ସତର୍‌ସତୀ ବୃନ୍ଦାବତୀ'ର୍ ଲେଖକ୍ ମାନ୍‌ତା ଗୁନ୍‌ତା ହେମଚନ୍ଦ୍ର ଆଚାର୍ଯ୍ୟ ପୁରାନ୍‌ର ଗୁଟେ ଉପାଖ୍ୟାନ୍‌କେ ଯେନ୍ତା ଘସିମାଜି କରି ଭାବ୍ ଭାଷାର୍ ଫୁଲ୍ ମାଳ୍ ଗୁଁଥି ମୁନୁଷର୍ ଜୀବନର୍ ସବୁଦିନିଆ କଥାକେ ନିଗୁଢ଼ ଆଧାତ୍ମିକଚିନ୍ତା, ଆଦ୍‌ରଶ୍ ଆଉର୍ ନୀତିକଥାମାନ୍ ସମଲ୍‌ପୁରୀ ଭାଷାଥି ଗୁଟେ କାବ୍ୟ ଆକାରଥି ଭଗବାନ୍ ଭକତ୍ ଆଉର୍ ଭକ୍ତି ମୁକ୍‌ତି ଆଦିର୍ ଧାରା ମୁଲୁ ଶେଷ୍‌ତକ୍ ମହାନଏଦର ନିର୍ମଲ୍ ପାଏନ୍ ଲେଖେ କାବ୍ୟଧାରା କେବୁ ହେଇଛନ୍ - ପାଠକ୍‌ମାନେ କାବ୍ୟଟା ପଢ଼୍‌ଲେ ଜାନି ପାର୍‌ବେ ।

ସମଲ୍‌ପୁରୀ କାବ୍ୟ ସାହିତ୍ୟକେ'ସତର୍‌ସତୀ ବୃନ୍ଦାବତୀ' ସରସ୍ ଆଉର୍ ଉନ୍ନତ୍ କର୍‌ବା ବଲି ଆଶା ।

ତ୍ରିବିକ୍ରମ ତ୍ରିପାଠୀ, ସଂପାଦକ, 'କୋଶଳ', ସମଲ୍‌ପୁର୍

**-୧-**

କେ'ନୁ ଆଇଛେଁ କେନ୍‌କେ ଯିମି, କେ'ନ ଅଛେଁ ନାଇଁ ଜାନେ;
କିଏ ଆଏଁ ମୁଇଁ କିଏ କହେବା ନୁରି ଦେଖୁଛେଁ ସବୁ ଠାନେ ।୧।
ଯାହାକେ ନେଇ 'ମୁଇଁ' କହି ହେସିଁ ବୁଲି ବୁଲି
ସବୁନ ସେ ଦେଖୁଥିସି ପଳାବାର୍ ତାହାକେ ଭୁଲି ଭୁଲି ।୨।
ସେ ଆଏ କାଏଁ ପବନ୍ ହଇଁ ଭୁବନ୍ ସାରା ବଅଁଚଉଛେ
ଉଜାଲା ହଇଁ ଜନ୍ ବେଲ୍‌କୁଏ ଜରିଆନ ପୁହୁଁଚଉଛେ ।୩।
ସେ ଗୁସିଆଁ ପାଏନ୍ ଆଏ କାଏଁ ତଲ୍ ଉପର୍ ସବୁଠାନେ
ତତ୍ତୁ କରି ଖୁଜ୍‌ଲେଁ ହେବା ସବୁ କଥାର୍ କାଏଁ ଗୁଟେ ମାନେ ।୪।
ଗୁଟେ ନାଡୀ ହାତେଁ ଲାଗ୍‌ବା ଚିପି ଦେଖ୍‌ଲେଁ କାଏଁ ସବୁ ନସ୍
ଯାହା ଦେଖ୍‌ସିଁ ସବୁ ଚିଜ୍‌କେ ଚୁଟ୍‌ମିଲେଁ କାଏଁ ଗୁଟେ ରସ୍ ।୫।
କେତେ ରକମ୍‌ର ରଙ୍ଗ୍ ଯଜ୍‌ବଜ୍ ଦେଖ୍‌ଲେଁ ଇ ଜଗତ୍‌କେ
ଗୁଟେ ରଙ୍ଗ୍ କାଏଁ ରଙ୍ଗି ବୁଲେ ଦିଶ୍‌ସି ଖାଲି ବକତ୍‌କେ ।୬।
ହାତୀ ହଇଁ କାଏଁ ଥିସି କିରା ହଇଁ କାଏଁ ଡ଼ିଁ ଡ଼ାଁ
ସିଂହର୍ ମୁହେଁ ଗର୍ଜନ୍ କାଏଁ ଚେରେର୍ ମୁହେଁ ଚିଁ ଚାଁ ।୭।
ସୁଖ୍ ସମୁଦ୍‌ରେଁ ପହଁରି ହଁସୁଥିସି କାଏଁ ହୋ ହୋ
ଦୁଖର୍ ଘନା ନ ପିଣ୍ଡି ହଇଁ ସେ କାନ୍ଦୁଥିସି ଫେର୍ ଭୋ ଭୋ ।୮।
ରଠ୍ ଖରାନ ଝାଉ ହଇଁ କାଏଁ ସେ ବୁଲ୍‌ସି ଜୁହିଁ ଜୁହିଁ
କନ୍‌କନିଆଁ ଜାକର୍ କୁଲେଁ କିନ୍ଦ୍ରୁଥିସି ଲୁହିଁ ଲୁହିଁ ।୯।
ଧାରା ଶରାବନେ ଝୋ ଝୋ ବର୍ଷେ ଯେ କାଏଁ ସେ ଆଏ
କଲାମେଘେଁ କାଏଁ ବିଜ୍‌ଲି ହଇଁ ମଲ୍‌କୁଥିସି ଘାଏ ଘାଏ ।୧୦।
ସେ ଆଏ କାଏଁ ଖେତ୍ ଗୁସିଆଁ ସଁସାର୍ ତାର୍ ଡୁଲି ଆଏ
ଯେ ଭି ଯାହିଁ ଯେନ୍ତା ଅଛେ ସଥେଁ ତାର୍ ଜୁଲି ଆଏ ।୧୧।
ଡୁଲି ତାର୍ ଉଜେର୍ ହେଲେଁ ଯେ ହଉନ ଦେସି ଡ଼ାଡିଁ
ସେ କଥାକେ ନେଇ ହେସି ବେଦ୍ ବେଦାଁତ୍ ପୁରାନ୍ କାଡିଁ ।୧୨।
ସେ ଝନେକେ ନୁରି ନୁରି ବାପ୍ ଅଜା କେତେ ପୁରୁଷ୍
କେତେ ହେଲେ କୁରୁତ୍ କୁରୁତ୍ କାହାକେ କେନ୍ତା ହେଲେଁ ଦୁରୁଶ୍ ।୧୩।
ଯାହା ଦେଖ୍‌ଲେ ପୁରା ବାଁଧି ଆମର୍ ଲାଗି ଦେଲେ ପୁରାନ୍
ନାଇଁ ଭୁକତି ଆମେ ହେସୁଁ ସୋଜ୍ ସୋଜ୍ କେତେ ହଏରାନ୍ ।୧୪।

ସେ ପୂରାନୁ ପୁରେ ମେତାଲ୍ ଆଜିର୍ ମୁଇଁ ଅଲ୍‌ଗାଉଛେଁ
କେନ୍ତା ଲାଗ୍‌ବା କେନ୍ତା ନାଇଁ ଲୁକ୍‌କର୍ ପତ୍‌ରେଁ ଠୁଡ୍‌ଗଉଛେଁ ।୧୫।
ଶୁନ ଶୁନ ମୋର୍ ଭାଏ ବହନେ ପଦମ୍ ପୁରାନର୍ କଥା
ଜଲନ୍ଧର୍ ରଜାର୍ କାର୍‌ରଇ ଦେଖି ଦେବ୍‌ତା ହେଲେ ଅଥା ।୧୬।
ମହାପ୍ରୁ ସାଙ୍ଗେଁ ଲଖମୀ ମାକେ ବାନ୍ଧି-ରଖ୍‌ଲା ଘରେ
ଆର୍ ଆର୍ ଅସୁହା କଥା କହେଲେଁ ନାଇଁ ସରେ ।୧୭।
ତାକର୍ ତାକର୍ ବିଚାର୍ ଆଚାର୍ 'କେନ୍ତା କର୍‌ମା କହ'
ଝନେ ବଏଲା "ଲଢ୍‌ଲେଁ ହାର୍‌ଲାଁ ଯାହା କର୍‌ବା ସହ ।୧୮।
ଆଉର୍ ଝନେ ବଏଲା "ଭାଇରେ ! ଗୁଟେ କଥା କହୁଁ
ଆଉର୍ ଥରେ ଲଢି ଦେଖୁଁ ଜିତୁଁ ଭାଏଲ୍ ହାରୁଁ " ।୧୯।
ସେ ଥର ମୁଇଁ ନାଇଁ ଥାଇଁ ଯେ ଡରେଇ ନେଲା ସମ୍‌କୁଁ
ମୁଇଁ ନେଇଁ ଥିଲେଁ କେ'ନ ସେ ଖାତିର୍ କର୍‌ସି ତମ୍‌କୁଁ ।୨୦।
ଝନେ ବଏଲା ପଛ୍ ଆଡୁଁ ଭାଇ ଭୋଲ୍-ଚୁଟା କଥା କହେସୁ
ଲଢେଇ ହେବାର୍ ଖବର୍ ପାଏଲେଁ କେ'ନ ଯାଇ ରହେସୁ ।୨୧।
ସର୍ଗର୍ ରଜା ଇନ୍ଦର୍ ବଏଲା "ଲଢେଇର୍ କଥା ଛାଡ
ଆଉର୍ କିଛି ଉପେ ଥିଲେଁ ସଭାର୍ ଭିତ୍‌ରେଁ ବାଢ" ।୨୨।
କେତେ ବଜର୍ ଦିହିଟା ତାର୍ ମୁଇଁ ସିନେ ଗା ଜାନ୍‌ସିଁ
(ମୋର୍) ବଜର୍ ବଏଲେଁ ସର୍ଲା କଥା ପଡ୍‌ତେ ସାଏର୍ ଭାଙ୍ଗ୍‌ସି ।୨୩।
ମହାପ୍ରୁକେ ଭାଏଲ୍ ଗୁହାରି କର୍‌ତାଁ ସେ ରହେଲେ ବନ୍ଧା
ମହାଦେବ୍ ପାଖ୍‌କେ ଗଲେ ଭାଏଲ୍ ଛିଡାବେ ଇ ଧନ୍ଦା ।୨୪।

## -୨-

ଇ ଆଡେ ଶୁନ ରଜାର୍ କଥା ହୀରାର୍ ମୁକୁଟ୍ ଭିରି
ମହାନ୍ ଠାଟେଁ ବସି ନେଇଛେ ସୁନାର୍ ଚଉକି ପାରି ।୧।
ମନ୍ତ୍ରୀ କଟୁଆଲ୍ ହଜାର୍ ହଜାର୍ ଧାଁ ଧପଡ୍ କରୁଛନ୍
କାନ୍ କାଟ୍‌ଲେଁ ବି କଥା ପଦେ କହେବାର୍‌କେ ଡ଼୍‌ରୁଛନ୍ ।୨।
ଗାଏ ଘୁଡା ହାତୀ ଓଟ୍ ଗୁହାଲ୍ ଗୁହାଲ୍ ଭରିଛନ୍
ଧଏନ୍ ଧଏନ୍ ସେ ବିଷ୍ଣୁର୍ କଥା ଯାହାକେ ଯେନ୍ତା କରିଛନ୍ ।୩।
କାହାକେ ଧନେ ପାଟି ନେଇଛନ୍ କିଏ ମରୁଛେ ଭୁଖେଁ
କେ ଭାଏଲ୍ ଦୁଖେଁ କାନ୍ଦି ନାଇଁପାରେ କେ ଶୁଇଛେ ସୁଖେଁ ।୪।

ଏନ୍ତା ବେଲେ ନାରଦ୍ ମୁନି ରଜାର୍ ପାଖେ ଆଏଲେ
ବୀନା ଧରି ମହାପ୍ରୁ ର୍ ନାଁ ମହାନ୍ କଣ୍ଠ୍ରେଁ ଗାଏଲେ ।୫।
ପାଦେଁ କଁଠଉ ମୁଣ୍ଡେଁ ଝୁରା କଲିର୍ ମୁନା ଖାକେଁ
ରାମ ନନ୍ଦିଆ ଚିତା କପାଲେଁ ଚନ୍ଦନ୍ ଟିକା ନାକେଁ ।୬।
ରଜା ଉଠ୍ଲା ଆସନ୍ ଛାଡି ଯୁହାର୍ ଭେଟ୍ ହେଲା
କେତେ ରକ୍‌ମେ ପୂଜା କରି ବନେ ମାଏନ୍ ଗୁନ୍ କଲା ।୭।
ଅଏନ୍ ସୁନ୍ଦର୍ ଆସନ୍ ଦେଇ ବସାଲା ହାତ୍‌କେ ଧରି
କହେଲା "ମୁନି ମୋର୍ ପୁର୍‌କେ ଆଏଲ କା'ଆଁ କରି " ।୮।
ନାରଦ୍ ବଏଲେ "କିଛି ନେଇଁ ରଜା ସୋଜ୍ ଆଇଛେଁ ବୁଲି
ଯାହା ହେଲେ ବି ତମକୁଁ କେନ୍ତା ନାଇଁ ପାରେଁ ମୁଇଁ ଭୁଲି ।୯।
ଆଏଲି ଗଲି ଦେଖ୍‌ଲି ଚାହେଁଲି ତମର୍ ସବୁ କଥା
ଧନ୍ ଦରବ୍ ଦେଖି ବସଲେଁ କିଏ ନେଇଁ ହେବା ଅଥା ।୧୦।
କେନ୍‌ସି ଚିଜର୍ ଅଭାବ୍ ନାଇଁ ସବୁ କଥା ପୂରିଛେ
ତିନ୍‌ହି ପୁରର୍ ଜିନିଷ୍ ଯିଏ ଯାହା ଚାହେଁବ ଭରିଛେ ।୧୧।
କାଁ କର୍‌ବ ଗୁଟେ କଥା ନାଇଁନ ତୁମର୍ ଠାନେ
ନାଇଁ ପାଏଲି ତୁମର୍ ପୁରେଁ ନୁର୍‌ଲିଁ ମନେ ମନେ ।୧୨।
ଏଛିନିକା ମୁଇଁ କଏଲାସ୍ ପୁରୁଁ ବୁଲିକରି ଆସୁଛେଁ
ଶିବ୍ ଘର୍‌ନୀ ପାର୍ବତୀକୁଁ ସୁର୍ତା କରି ହସୁଛେଁ ।୧୩।
ହେନ୍ତା ସୁନ୍ଦର୍ ଘର୍‌ନୀ ଝନେ ତମ୍‌କୁଁ  ଏକା ଚାହି
ଘର୍‌ନୀ ଜାନି ଘର୍ ଉଭାଗର୍ ନେହେଲେଁ ଇଥିଁ ତାହିଁ ।୧୪।
ତମର୍ ରାନୀ ବୃନ୍ଦାବତୀ ତାହାକୁଁ ବି ଦେଖିଛେଁ
ତାର୍ ଠାନେଇ ଯେ କିଛି ନୁହନ୍ ମୋର୍ ମନେ ମୁଇଁ ଲେଖିଛେଁ ।୧୫।
ଯାହା ହେବାର୍ ହେଉ ପଛେ ପାର୍‌ବତୀକୁଁ ଆନ
ହେଁଥିରୁ ଏକା ବଡ୍ କଥାଟେ ନାଇଁନ ଇଟା ଜାନ ।୧୬।
କର ନେଇଁ କର କହେଲିଁ ମୁଇଁ ଭଲର୍ ଲାଗି ତୁମର୍
ତୁମର୍ କଥା ତୁମେ ଜାନ କହେବାର୍ ଖାଲି ଆମର୍" ।୧୭।
ଏତ୍‌କି କହି ସଭା ଛାଡି ନାରଦ୍ ମୁନି ଉଠ୍‌ଲେ
ସରଗ୍ କେ ଯାଇ ଦେବ୍‌ତା ରଜା ଇନ୍ଦର୍‌କେ ଯାଇ ଭେଟ୍‌ଲେ ।୧୮।
"ନେଇଁ ଡର ନ ଜଲନ୍ଧର୍‌କେ ହଏ ହୋ ଦେବ୍‌ତା ମାନେ

ପାର୍‌ବତୀ କେ ଆନ୍ ବଲି କହେଲିନ ତାର୍ ଠାନେ ।୧୯।
ପାର୍‌ବତୀ ବଡେ ସୁନ୍ଦର୍ ବଲିଁ ତାର୍ ମନ୍ କେ ଲହପାଇଛେଁ
ଯାହା କଲେଁବି ସେ ନେଁ ମାନେ ବନିହାଁ କରି ତହଁକାଇଛେଁ ।୨୦।
ପାରବତୀ କେ ପାଏମି ବଲିଁ ଅସୁର ରଜା ମରବା
ଛୋଟ୍ କବାରେଁ ବଡ୍ କଥାଟେ ପର୍ଛା କରି ସର୍‌ବା ।୨୧।

–୩–

ସେ ଆଡେଁ ରଜା ଉଛନ୍ ହଙ୍ଗଁ ରାହୁକେ ପାଶେଁ ଡାକ୍‌ଲା
ରାହୁ ଆମର୍ ବନେ ବଲି ଦୁଇ ଚାଏର୍ ପଦ୍ ଫାଁକ୍‌ଲା ।୧।
ବଏଲା "ବାବୁ ରାହୁରେ ତୁଇଁ ସବୁ କଥାକେ ପାର୍‌ସୁ
ଯେ ନିକେ ବି ପଠେଇ ନେଲେଁ କେ'ନ କାହାକେ ଡର୍‌ସୁ ।୨।
ଜଲ୍‌ଦି ଯା କୈଳାସ୍ କେ ତୁଇଁ ମହାଦେବ୍ କେ କହେବୁ
ରଜାକେ ତୁଇଁ କିଛି ନେଁ ଦେଇଁ କେନ୍ତା ଭାବେଁ ରହେବୁ ।୩।
ଯେ ଯେନ୍ତା ଦେବ୍‌ତା ମାନେ କିଛି କିଛି ଦଉଛନ୍
ଯାହାକେ ଯାହା ବର୍‌ଗି ନେଲେଁ ନେଁ ଟାଲିକରି ଯାଉଛନ୍ ।୪।
ତମର୍ ଘର୍‌ନୀ ପାର୍‌ବତୀକୁଁ ରଜାର୍ ମନ୍‌କେ ଆଇଛେ
ତାହାକୁଁ ତମ୍‌କୁଁ ଦେବାକେ ହେବା ରଜା ଇଟା କହିଛେ" ।୫।
ରଜାର୍ କଥା ରାହୁ ବିଚ୍‌ରା ବନେ କରି ଶୁନ୍‌ଲା
କେନ୍ତା ହେବା କେନ୍ତା ନାଇଁ ମନେ ମନେ ଗୁନ୍‌ଲା ।୬।
"ଯାହାହଉ ଯାଏସିଁ ଇନୁ ଭାବ୍‌ମି କଏଲାସ୍ ପାଖେଁ
କହେଲା କଥା ନେଁ କଲେଁ କାଏଁ ରହେମି ଇତାର୍ ଦେଖେଁ " ।୭।
'ହଁ' ବଲି ହୁଁ କାର୍ ଦେଇ ଆକାଶେଁ ଯାଇଁ ଉଡ୍‌ଲା
ଜାନ୍‌ଲା ଲୁକେ ସଭେ ବଏଲେ ରଜା ଏତ୍‌କେଁ ବୁଡ୍‌ଲା ।୮।

–୪–

କଏଲାସ୍ କେତେ ସୁନ୍ଦର ବଲି କେ ପାର୍‌ବା କହି
କେନ୍ତା ସୁନ୍ଦର ଥିବା ଯେ'ନ୍‌ନ ଈଶ୍ୱର୍ ଅଛନ୍ ରହି ।୧।
କେତେ ରଙ୍ଗର୍ ଫୁଲ୍ ଫୁଟିଛେ କେତେ ଗଛର୍ ଡ଼ାଲେଁ
ରାହୁ ଦେଖି ଚମ୍‌କି ପଡ୍‌ଲା ନେଁ ଦେଖି କେନ୍ କାଲେଁ ।୨।
ବାଘର୍ ଛାଲେଁ ବସି ମହାଦେବ୍ ଆଏଁଖ୍ ତିନ୍‌ହିଟା ମୁଜିଛନ୍

ଦିହ୍‌ମୁଡ୍ ଯାକ ସାଁପ୍ ସରସର ଜନ୍ ଟେ ମୁଡେଁ ଖୁଚିଛନ୍ ।୩।
ବଢେ ଜାବର୍ ଗଙ୍ଗାର୍ ଧାର୍ ଜଟୁଁ ତଲେଁ ପଡୁଛେ
ପାଶେଁ ଠିଆ ମହାଘୋର୍ ଷଣ୍ ମନ୍ କଲେଁ ଘାଏ ରଡୁଛେ ।୪।
ଗୁଟେ ହାତେଁ ଡ଼ମ୍‌ରୁ ଗୁଟେ ବଡ଼ା ରକ୍‌ମେ ବାଜୁଛେ
ଆର ହାତେଁ ତିର୍ଶୂଲ୍ ଦେଖି ରାହୁର୍ ଗିଆନ୍ ହଜୁଛେ ।୫।
କହେମି କି ନି ବଲି ମନେ ଭାଳୁର୍ କୁଟୁର୍ ହଉଛେ
କହେମି ବଲି ଦମ୍ କଲେଁ ଫେର୍ ସବୁ ପାଶ୍ରି ପକଉଛେ ।୬।
ଯାହା ହେଲେଁ ଭି କହେମି ବଲିଁ ମନେ ସାହାସ୍ ବାନ୍ଧ୍‌ଲା
ନାଇଁ ବୁଝଲେଁ ଯାହା ହେବା ସୁରତା କରି କାନ୍ଦ୍‌ଲା ।୭।
ଖାସି ଖେଁକାରି ବନେକରି ଗଲାକେ କଲା ସାଫ୍
"କଥା ଗୁଟେ କହେମି ମହାଦେବ୍ ଦୋଷ୍ କରବ ମାଫ୍ ।୮।
ଜଲନ୍ଧର୍ ରଜାର୍ ଖବର୍ ଧରି ତୁମର୍ ଠାନକେ ଆଇଛେଁ
ନାଇ ଆଏଲେଁ କାହିଁ ଚଲ୍‌ତା ଦାନା ପାନି ତାର୍ ଖାଇଛେଁ ।୯।
ଏତ୍‌କି କହି ରଜାର୍ କହେଲା କଥା ସବୁ କହେଲା
କହିକରି ଫେର୍ କାଣା କହେବା ଶୁନ୍‌ବାର୍‌କେ ରହେଲା ।୧୦।
କା'ଣା କହେଲେ ସେ କଥାକେ କେ'ନ ରାହୁ ଶୁନୁଛେ
ମହାଦେବ୍ ବୁଢାର୍ ରିଶ୍‌ମି ଦେଖି ମର୍‌ମି ଇଟା ଜାନୁଛେ ।୧୧।
"ପଲା ଯା ରେ ଖବର୍ ବୁହା ବଲି ଛାଡ଼୍‌ଲାଁ ତତେ
ଜଲନ୍ଧର୍‌ଟା ଭକୁଆଟା ଆଏ ନୁହେ ଚିହ୍ନେ ତାଏଲ୍ ମତେ" ।୧୨।
ଏତ୍‌କି ଯେନ୍ତା ପଡ଼୍‌ଲା କାନେ ଜୀବନ୍ ଧରି ପଲାଲା
ହଜି ଯାଇଥିଲା ବୁଧି ବେଉସା ବାଟେଁ ଯାଇକରି ଠୁଳାଲା ।୧୩।
ରାହୁ ବିଚ୍‌ରା ପ୍ରହୁଁଚ୍‌ତେ ସାଏର୍ ପାଏନ୍ ପିଇଲା ପେଟେ
ତେଭେଁ ଯାଇ ସରମ୍ ପାଏଲା ତେହେଁଁ ରଜାକେ ଭେଟେ ।୧୪।
ଯାହା ଯାହା ହେଲା ମୂଳୁଁ ଶେଷ୍ କରି କହେଲା
ରଜାର୍ ମନ୍ ବଡ଼ା ଖାଁଟ୍ ତାର୍ କଥା ନୈ ଲହେଲା ।୧୫।

-୫-

ଇନୁ ଇଆଡ୍ ଶୁନୁଥ ମାହାପୁର୍ ନାଁ ଗୁନୁଥ
ଶିବ୍ ଜଲନ୍ଧର୍ ଲଢ଼୍‌ଲେ;
କିଏ କାହାକେ ନୁହନ୍ କମ ଦୁହେ ମାର୍‌ବେ ଦୁହିକର୍ ଦମ୍

ସମାନ୍ ନିମାନ୍ ପଡ଼୍‌ଲେ ।୧।

ଜଲନ୍ଧର୍ ବି ବନିଛେ    କେତେ କେତେ ବୀର୍ ହାନିଛେ
କାହାକେ ନାଏଁନ ଡ଼ର୍
ଘୁଡ଼ା ଚାଏର୍ ପଟ୍ ଫାନ୍ଦିଛେ    ରଥେଁ ହତିଆର୍ ବାନ୍ଧିଛେ
ହାତେଁ ଧରିଛେ ଧନୁ୍‌ଶର୍ ।୨।

ଅସୁରମାନେ ଟହଲୁଛନ୍    ଚଁପା ବାଗିର୍ କହଲୁଛନ୍
ସୁଆଁଲି ନଉଛନ୍ ମେଛା
କେ ବଲୁଛେ ଦେଖିବ ଶଲେ    କେତା ବୀର୍ ମୁଇଁ ଘଲେ
ଥିଏରି କରସି ପର୍ଛା ।୩।

ଯାହା ପାରଲେ ହାକୁଛନ୍    ମହାଦେବ୍‌କେ ଟାକିଛନ୍
ହାତ୍ ହତିଆର୍ ଧରି
କେ ବଲୁଛେ ପାଏଲେଁ ସଙ୍ଗେଁ    ମହାପ୍ରଭୁ ମହାଦେବ୍ ନାଇଁ ବୁଝେଁ
ଟେଁଟି ଦେମି ମୁରି ।୪।

ଏତ୍‌କି ବେଲେଁ ଷଣ୍ଢେଁ ବସି    ମହାନ୍ ରିଶ୍ମି କଏଲାସ୍‌ବାସୀ
ସେ ଠାନ୍‌କେ ଆଏଲେ
ଯୁଗ୍‌ନୀ ମାନେ ଦଉଡୁଛନ୍    ହାତୀ ଘୁଡ଼ା ଘଉଡୁଛନ୍
ଯେ ଯେନ୍ତା ଧାଏଁଲେ ।୫।

–୬–

କେତେ କହେମି ଲଢେଇର୍ କଥା ବୁଆମାନେ ଡରବେ
ଡ଼ରୁହା ଯେତେ ସର୍‌ମି ଯିବେ ଭର୍‌ମି ଭାଏଲ୍ ପରବେ ।୧।
ଦୁହି ଆଡ଼ର୍ ସଏନ୍ ସାମଁତ୍ ଧୂମ୍ ଧଡ଼୍‌କା ଲାଗିଛନ୍
ଖଁଡିଆ ଓଁଡିଆ ମରା ହଜା ଯେ ଯେନ୍ତା ମାଗିଛନ୍ ।୨।
ଦେଖିଲା ଯେନ୍ତା ଜଲନ୍ଧର୍ ତାର୍ ଫଉଜ୍‌ଟା ପଲଉଛନ୍
ରଥୀମାନ୍‌କୁଁ ତହଁକାଲେଁ ଭି ଜାନିବୁଝି କରି ହେଲଉଛନ୍ ।୩।
ହାର୍‌ମି ଭାଏଲ୍ ବଏଲା ମନେ ଶୁମ୍ଭର୍ ପାଶ୍‌କେ ଆଏଲା
"ସଁଭାଲ୍ ଟିକେ ଶୁମ୍ଭ ହୋ ମୁଇଁ ଆଉଛେଁ ଠାନ୍‌କୁଁ" ବଏଲା ।୪।
ଖଁଡେ ଦୂର୍‌କେ ଆସି ଜଲନ୍ଧର୍ ଷଣ୍ଢ ପଟ୍‌କେଁ ବସିଛେ
କେନ୍ତା ରକମ୍ କପଟ୍ ରଚି ମହାଦେବ୍ ମେଡାଲ୍ ଦିଶୁଛେ ।୫।

ଏନ୍ତା କବାରେଁ ବଢେ ପାର୍‌ବାର୍ ଯେତ୍‌କି ଅଛନ୍ ଅସୁର୍
କେନ୍ତା ରକ୍‌ମେ ବେଶ୍ ବାନ୍ଧ୍‌ବେ ଚିହ୍ନ୍‌ବା କେନ୍ ଶଶୁର୍ ।୬।
ଅସୁର୍ କେତେ ଯୁଗ୍‌ନୀ ବେଶେଁ ପାଶେଁ ଅଁତ୍‌ରେ ଚହଟୁଛନ୍
କେତେ ଧୂରିଆ କଏଲାସ୍ ବଲିଁ ମନେ ମନେ ଉହାଟୁଛନ୍ ।୭।
ଅଧା ଲାଜ୍ ଅଧା ଡ଼ର୍ ଅଧା ସାହ୍‌ସେଁ ଆଏଲେ
ମହାଦେବ୍ ଦେଖି ସଖୀମାନେ ପାର୍ବତୀକେ ଯାଇ କହେଲେ ।୮।
ଲଢେଇ ଜିତି ତମର୍ ପତି ଆଏଲେ ନ ଗୋ ଆସ
ବନ୍ଦେଇ ଆନ୍‌ମା ଜାଗର୍ ଜାଲି କଲସ୍ ଗୁଟେ ବସ ।୯।
ପାର୍ବତୀ ଆସି ଦେଖ୍‌ଲେ ଶିବ ବଢେ ସୁନ୍ଦର୍ ଦିଶୁଛନ୍
ଗୁଟେ ଆଁଖି ଦେଖି ଘାଏ ଘାଏ ଏକ୍‌କେରିଆ ହସୁଛନ୍ ।୧୦।

## -୭-

ଜଲନ୍ଧର୍ ରଜା ଉଛନ୍ ହେଲା ପାର୍‌ବତୀକୁଁ ଦେଖି
ଦୁର୍‌ଦାର୍ କରି ହିଟି ପଡ଼୍‌ଲା ଜ୍ଞାନ୍ ନୈ ପାରି ରଖି ।୧।
ପାର୍ବତୀ ଦେଖି ଏନ୍ତା କଥା ଭାବ୍‌ଲେ ଶିବ ନୁହେସନ୍
ମୋତେ ଦେଖି କାଏଁ ହିଟିପଡ଼୍‌ତେ, ନୁହେସେ ଇଟା ଆମର୍ ଷଣ୍ ।୨।
'ନିଶ୍ଚେ ଇଟା ଅସୁର୍ ରଜା ଭାବି ମନେ ପଲାଲେ
ଖିଡ୍‌କି ଦେବାକେ ହାତୀଦାଁତର୍ କବାଟ୍‌କେ ଯାଇ ଠେଲାଲେ ।୩।
ଜଲନ୍ଧର୍‌କେ ଅଜ୍ଞାନ୍ ଦେଖି ଅସୁର୍ ମାନେ ଧୁକୁଛନ୍
ମୁହେଁ ମାରି ପାଏନ୍ ଛିଟ୍‌କା କାନେ ଘାଏ ଘାଏ ଫୁକୁଛନ୍ ।୪।
ଅସଲ୍ ଘଡ୍‌କେଁ ପାଏଲା ଚେତା ସଁଭ୍‌ରିକରି ଉଠ୍‌ଲା
କହେ "କାହିଁ ଗା ପାର୍ବତୀ ମୋର୍ ଗିଆନ୍ ଗୁଟର୍ ଲୁଟଲା" ।୫।
ଦେଖ୍‌ଲା ପାଖେଁ ନାଇଁନ କିହେ ତାକର୍ ଭିଲିର୍ ଛଡା
'ଯାଉଁଛେ' ବଲି କହେଲା 'ସଁଖ୍‌ଲ ତର୍‌ବାର୍ ବର୍ଛା ଖଁଡା' ।୬।
ଏତ୍‌କି କହି କିର୍‌କିରାନୁ ପଲେଇ ଆଏଲା ରଜା
ଲଗା ଲୁତ୍‌ରି ନାରଦ୍ ଉଡାଲେଁ ଦେଖୁଛନ୍ ଇ ମଜା ।୭।

-୮-

"ଏ ମା ! ଇଟା କାଣା ହେଲା ଜାନି ପାଏଲିଁ ଭଲେ"
ପାର୍ବତୀ ମନେ ହୁରଗୁନି ହଉଛନ୍ ଗୁଡ଼ୁମୁଡ଼୍ କେ ହଲେ ।୧।
"ଭଲେ ରଇ ହିଟି ପଡ଼୍ଲା ତେହେଁରୁ କାଏନ ଜାନ୍ଲି
କେନ୍ତା ବୁଦ୍ଧି ହେଲା ମୋର୍ ଷଣ୍ ପଟ୍‌କେ ଚିହ୍ନଲି ।୨।
ନେଇ ହେଲେଁ ମୋର୍ ସତୀ ପନ୍‌ଟା କେନ ଆଉର୍ ଥିଲା
ଅସୁର୍ ଗାଡ଼୍‌ଶୁଆର୍ କେତେ ବୁଦ୍ଧି କେନ୍ତା ଫାନ୍ଦ୍ କଲା" ।୩।
ଏତ୍‌କି ଭାବି ମହାପ୍ରୂକେ ସୁର୍‌ତା କଲେ ମନେ
"ହେ ବିଷ୍ଣୁ ! କେନ୍ତା ମାୟା କର୍‌ଲ ମୋର୍ ଠାନେ ।୪।
ଜଗତ୍ ଯାକର୍ ସବୁ କଥା ତୁମେ ଏକା ଜାନୁଛ
ଯାର୍ ଯେନ୍ତା ବିଚାର୍ ଆଚାର୍ ସବୁ ତୁମେ ଗନୁଛ ।୫।
ସା'କାର୍ ଆଖି ଝୁମ୍‌ରା ଦେଇ ଚୁରର୍ ଆଗେଁ ଧନ୍
ସତୀର୍ ଆଗେଁ ସୁନ୍ଦର୍ ପତି ଥୁଇ ବିଡ଼ୁଛ ମନ୍ ।୬।

-୯-

ଉମାର୍ କଥା କଲା ଅଥା ଇ ଘଡ଼ିସଁଧି ବେଲା ନ
ମହାପୁରୁକେ ମହାଧୂର୍‌କେ ଭାବ୍‌ନା-ରାଏଜେଁ ନେଲାନ ।୧।
ପାର୍‌ବତୀକେ ଭଗ୍‌ବତୀକେ କାଣା କହେବେ ଭାବୁଛନ୍
ଜଲନ୍ଧର୍‌କେ ବହଙ୍ଗର୍‌କେ ଆପନେ ପରେ ଢ଼ାବୁଛନ୍ ।୨।
"ସାରା ସଁସାର୍ ଅଶୁଭ୍ ଅସାର୍ ଯାହା ହେସି ମୋର୍ ଆଏ
ଟିକେ ବନେ ହେଲେଁ ଝନେ ନେଇ ସହରାନ୍ କେଭେଁ ଘାଏ ।୩।
ସମୁଦର୍‌ଟା ଘେଁଟା ଚିଟ୍‌କା ହେଲା ପରେଁ ହଲାହଲ୍
ପିଇଲା ପରେ ନୁହେ ସରେ ଶିବ୍ ତୁଷ୍ଟିର୍ କୁଲାହଲ୍ ।୪।
ଜଗତ୍ ଯାକର୍ ସବୁ ଲୁକର୍ କାମ୍ ଫଲର୍ ବିଷମ୍ ବିଷ୍
ଢ଼ାଲିନେଲେଁ ଭି ଗିଲି ନଉଛେଁ କେଭେଁ କାଏଁ କର୍‌ସିଁ ଇସ୍ ।୫।
ତ'ଭି ମତେ ଯେତେ ତେତେ ନିନ୍ଦା ଶୁନ୍‌ବାର୍ ପଡୁଛେ
ବିହଜ୍ ନୁହେ ସହଜ୍ ନୁହେ ମର୍ମେ ମର୍ମେ ଗଡୁଛେ ।୬।
ଦୁଷ୍ଟ ଦଲନ୍ ଶିଷ୍ଟ ପାଲନ୍ ଇ'ଟା ମୋର୍ କାମ୍ ଆଏ
ହେଁ କବାର୍ ନେଇ କର୍‌ବାର୍ ବଏଲେଁ ମୋର୍ ବଦ୍‌ନାମ ।୭।

ସେ ବଦ୍‌ନାମ୍ ମୋର୍ ଅପମାନ୍ କେ'ନ କିଏ ଜାନୁଛନ୍
ପିରବତୀ ମୋର୍ ପାର୍‌ବତୀ ଭି ସେ କଥା ଥିଁ ହାନୁଛନ୍ ।୮।
ଶଳା ବଳି ପରେ ହେଲା କଳି ଜଲନ୍ଧର୍‌କେ ମାର୍‌ବାକେ ?
ପୁଓ ନାତି ଗୋତ୍ ଗିଆଁତି ମାର୍‌ଲି ପରେ ; ପାର୍‌ବାକେ ।୯।
ଭାବର୍ ରଙ୍ଗେଁ ମୋର୍ ସାଙ୍ଗେଁ ରହେସି-ଯେ ସେ ମୋର୍ ଆଏ
ଭାବ୍ ନାଇଁ ତ ଥାବ୍ ନାଇଁ ତାର୍ ଯେ ହେଲେଁ ବି ଚୋର୍ ଆଏ ।୧୦।
ଦୁଷ୍ଟର୍ ପକ୍ଷିଆ ଦୁଷ୍ଟର୍ ରକ୍ଷିଆ କହେଲେଁ ସହେବାର୍ କାଏଡ଼୍
ପରଶଁସା ଭାଏଲ୍ ପରେଁ ଥାଉ ନିନ୍ଦା ବଏଲେଁ ଭାଏଡ଼୍ ଆଏଁ ।୧୧।
ଭାବ୍‌ଗିରିକେ (ଭାବଗ୍ରାହୀ) ଭାବ୍-ଗିରିକେ ତୁରତି ଢ଼େହେଁକା ପଡ଼୍‌ଲା
ପାର୍‌ବତୀର୍ ସେ ଅପାର୍ ଦରଦ୍ - ଦରିଆ ଲହଁକା ପଡ଼୍‌ଲା ।୧୨।
ସଁଭ୍‌ରି କରି ବସ୍‌ଲେ ହରି ପାର୍‌ବତୀ ଆଡ଼େ ମୁହୁଁ
"ଜଗତର୍ ମାଁ ଶୁନ ଉମା" ପାରବତୀ କଲେ ହୁଁ ।୧୩।

-୧୦-

ଭଗ୍‌ବତୀ ତୁମେ ଭାଏଗ୍‌ବତୀ କେତେ ମହାଦେବ୍ ହାତ୍ ଧରି
ହେନ୍ତା କେନ୍ ବୁଡା ଅଛେ ତୁମେ ନେଇ ପାର କରି ।୧।
ଡ଼ଗ୍‌ରେଇ ନେଲେଁ ଡ଼ଙ୍ଗର୍ ମାନେ ଭି ଘାଏକେଁ ଯିବେ ଜଳି
କେନ୍ ବଳର୍ ବଳ୍ ଜଲନ୍ଧର୍ ନ ଯେ ତମ୍‌କୁଁ ଯିବା ବଳି ।୨।
ଭଏଁରା ଭିତ ସୁନିଥିବା ଭଏଁ ସାସୁରର୍ କଥା
ଦେବ୍‌ତା ବିଚ୍‌ରେ କାଣା କର୍‌ଡେ ମୁଇଁ ବି ଥିଲି ଅଥା ।୩।
କେନ୍ ଅକ୍‌ଲେଁ ଅକ୍‌ଡ଼େଇ ନେଲା ନେଇ ପାଏଲା ସୋର୍
ବର୍ ପାଇକରି ବର୍‌କସ୍ ହଇଁ କେଡ଼େ ଜାଙ୍ଗଲ୍ ଯୋର୍ ।୪।
ବାପ୍ ହେଲେଁ ବି ସାଫ୍ କର୍‌ଲ ଦଏତ୍ ରଜାର୍ ଅହଙ୍କାର୍
ଏ ବୁଆ ମୁଇଁ ନେଇ ଦେଖି ତମ୍‌କୁ ଚେ ଭୟାଙ୍କାର୍ ।୫।
ସବୁ ଶକ୍ତିର୍ ଜନମ୍ ଜାଗା ତୁମେ ଜଗ୍‌ତର୍ ମାଆଁ
ଶକ୍ତି ବଏଲେଁ ଏକ୍‌ଲା ତୁମେ ବଦ୍‌ଲୁଥିସି ନାଆଁ ।୬।
ପୁର୍ଥୀ ସଙ୍ଗେଁ ଗ୍ରହ ନଖତର୍ ଗୁଟ୍‌କ ବାଗିର୍ ଖେଲୁଛ
ଖସ୍ପିଲେଁ କେ କେତେବେଲେଁ ଥିଲା ଠାନ୍ କେ ଠେଲୁଛ ।୭।

ଭଗ୍‌ବତୀ ମୁଇଁ ତୁମର୍ ଶକ୍‌ତି ବଲେଁ ସିନା ଭଗବାନ୍
ତୁମର୍ ବଲେଁ ସବୁକାଲେଁ ମୁଇଁ ବୁଲାସିଁ ବଲବାନ୍ ।୮।
ଶଲ୍ ଯାଏତା ଜଲନ୍ଧର୍ ତୁମେ ଚାହେଁଲେଁ ଘାଏ
ବଡ୍ ଘରର୍ ପୋ ହଏ ନି ଯେ ହଉ ଲଖ୍‌ମୀର୍ ଭାଏ ।୯।
ନିଜର୍ ନୀତି ନିଜର୍ ଗତି ଭାଙ୍ଗ୍‌ବାର୍ ମନ୍ ନାଏଁନ
ସତୀର୍ ହାତୁଁ ଚୁରି ଗଲେଁ ହସିନେବେ ଲୋକ୍ ଝାଏଁନ ।୧୦।
ଛନ୍‌ଏ ଛଡ଼ାଛଡ଼ି ନୁହନ୍ ପୁରୁଷ୍ ଆର୍ ପରକୃତି
ବାନ୍ଧି ନେଇଛେ ନୈ ପଲାନ୍ ଇ କୁତି କି ସେ କୁତି ।୧୧।
ମାଏଝି ମୁନୁଷ୍ ଅଲ୍‌ଗା ଦିହ୍, ଜୀବନ୍ ଆଏ ଗୁଟେ
ଧରମ୍-ରଶି ବନ୍ଧା ହଇଛେ ସହଜେଁ ନାଇଁ ହିଟେ ।୧୨।
ସେ' ରଶିର୍ ଚିହ୍ନାକେ କାଏଁ ଆଏଜ୍ ବଲୁଛନ୍ ଚୁରି
ଜୀବନ୍ ମନ୍ ଗୁଟେ ଯେଭ୍ଭୁଁ ଗଁଠ୍‌ଲା ଯୁରା ଯୁରି ।୧୩।
ନାରୀ କହେବା ପୁରୁଷ୍‌କେ ତାର୍ ପତି ପରମେଶର୍
ପୁରୁଷ୍ ବଲ୍‌ବା ତିରୀ ଆଏ ମୋର୍ ଲଖ୍‌ମୀ ଅଠିପର୍ ।୧୪।
ପୂଜା କରେ ଯେ ପରମେଶର୍‌କେ ପତିର୍ ଠାନେ ଥାପି
ସତୀ ଆଏ ସେ, ଯତିମାନେ ଭି ତାର୍ ନ ଯାଏସନ୍ କଁପି ।୧୫।
ଯାହାକେ ଦେଖ୍‌ବା ରିଶ୍‌ମି ଆଖିଁ ସେ ମର୍‌ବା ଜଲି
ତାର୍ ନାଆଁ କେ ସୁର୍‌ତା କଲେଁ ପାପ୍ ବଲ୍‌ସି ମଲିଁ ।୧୬।
ସେନ୍ତା ସତୀ ବୃନ୍ଦାବତୀ ଜଲନ୍ଧର୍ ତାର୍ ପତି ଆଏ
କେ ଅଛେ ତାର୍ ମୁଡ଼ର୍ ସେନ୍ଦୁର୍ ମେଟେଇପାର୍‌ବା ଘାଏକର୍ ଘାଏ ।୧୭।
ସତୀ ପନ୍‌କେ ପାଲ୍‌ବାର୍‌ଟା ବନିହାଁ ବଡ଼ା ବରତ୍ ଆଏ
ସତୀର୍ ହାତୁଁ ଚୁରି ନାଇଁଯାଏ ବନେ ଗୁଟେ ସରତ୍ ଆଏ" ।୧୮।
ପରମେଶରର୍ କଥା ଶୁନି କହେଲେ ତେତ୍‌କେଁ ପାର୍‌ବତୀ
"କଥା ଥିଁ ତମ୍‌କୁଁ ପାରିହେବା କାଏଁ ଘର୍‌ନୀ ଯାର୍ ସର୍‌ସତୀ ।୧୯।
ମୋର୍ ମନେ ମୁଇଁ ଯାହା ଭାବିଛେଁ ଜନେଇ ନେମି ତମ୍‌କୁଁ
ସବୁକଥା ହେଲେଁ କହିହେସି କାଏଁ ସବୁବେଲେଁ ସମ୍‌କୁଁ" ।୨୦।

-୧୧-

କଏଲାସ୍ ପର୍ବତେଁ ଆଜିର୍ କଥା ହଇଁଗଲା ଯାଜି
ମହାପ୍ରୁର୍ ସାଙ୍ଗ୍ ନେ ଛାଡ଼୍‌ବାର୍ ମହାଦେଈ ପାର୍‌ବତୀ
ଦୁଖର୍ ସୁଖର୍ କେତେ କଥା ଛିଡ଼େ ନାଇଁ, ଲାଗେ ଲେତା
ନେ ପାର୍‌ବାର୍ ଶିବ୍ କେନ୍ତା ଜଲନ୍ଧର୍‌କେ ଜିତି ।୧।
ଶୁନ୍‌ବେ ବଲି କଥାଭାଷା ଆଖିଁ ପଡ଼େଁ ନାଇଁ କ
ଚରେ ଚିର୍‌ଗୁନ୍ ଜଁତ୍ ଜାନୁଆର୍ ଜବନ୍ଦ୍
ଜଡ଼୍ ହେଲେଁ ବି ପଥର୍‌ମାନେ ଶୁନ୍‌ବେ କର୍ପନ୍-କାନେ କାନେ
ଧୋବ୍ ଫର୍‌ଫର୍ ବରଫର୍ ଶାଲ୍ ଉଢ଼ି ଅଛନ୍ ତବଧ୍ ।୨।
ବେଲ୍ ବିଚ୍‌ରା ମେଘ୍ ଉଢ଼ାଲେଁ ତୁନ୍ ପଡ଼ିଛେ କଲେଁ କଲେଁ
କେଢ଼େ ମନ୍ ତାର୍ ଶୁନ୍‌ବା ବଲି ଇ ଦୁହିଁକର୍ କଥା
ଜନ୍ ହଁସ୍‌ତା ମୁଲ୍ ମୁଲ୍ ହେତା ଯଦି କଥାର୍ ମୂଲ
ଝଟ୍ କରି ଇ ଦିନ୍ ଯାଇକରି ରାଏତ୍ ଯଦର୍ପି ହେତା ।୩।
ସବୁ ଗଛର୍ କହଡ଼୍ ମାନେ ଶୁନି ବୁଝିବେ କଥାର୍ ମାନେ
ବଲି ଗଲେନ ସଙ୍ଗେଁ ସଙ୍ଗେଁ ବଗ୍‌ବଗାନୁ ଫୁଟି
ଲହ୍‌ମାନେ ବି ଲହଁପିଗଲେ ମନ୍‌କେ ମନ୍ ତହଁକି ଗଲେ
ପାରୁଥିଲେଁ ଭାଏଲ୍ ଦୁରିଆ ଠାନୁ ପାଶ୍‌କେ ଯାଏତେ ଉଠି ।୪।
ଗଛ୍ ଗୁହୁଡ଼ା ପତର୍-କାନେ ଶୁନ୍‌ବେ ବଲି ନିଜର୍ ଠାନେ
ଘଡ଼ିକେ ଘଡ଼ି ଡ଼ିଡ଼ି ହଇକରି ଉହାଟିଲା ବାଗିର୍ ଦିଶୁଛନ୍
କିଏ ବଢ଼ିଛେ ବଡ଼୍‌ରେଁ ବଡ଼୍‌ରେଁ କିଏ ଚଢ଼ିଛେ ପଥ୍‌ରେଁ ପଥ୍‌ରେଁ
ଏକା ସାଙ୍ଗେଁ ଦେଖ୍‌ମା ବଲିଁ ଗୁଟାକେତେ ଫେର୍ ମିଶୁଛନ୍ ।୫।
ପବନ୍ ବହେ ଚୁପ୍‌ଚାପ୍ ବରଫ୍ ପଡ଼େ ଟୁପ୍ ଟାପ୍
ପାର୍ବତୀ କାଣା କହେବେ ବଲିଁ କାନ୍ ଅଛେ ସମ୍‌କର୍
ସେ କଥାନୁ ଶୁନ୍‌ବେ ଟପେ ପାର୍ବତୀ ଭାଏଲ୍ ମାଗ୍‌ବେ ଉପେ
କେନ୍ତା କରି ଜଲନ୍ଧର୍‌କେ ମାରି ପାର୍‌ବେ ଶଙ୍କର୍ ।୬।
ଭୂଇଁକେ ଆବ୍‌ରି ଜଟାବୁଟା ହଇ ଯାଉଛନ୍ ବସାଉଠା
ସେ କଥା ନୁ ପଦେ ଅଖ୍‌ରେ ଶୁନି ପାର୍‌ସନ୍ କି ନାଇଁ
ହେଲେଁ ବି ସେ ସର୍ବାର୍ ସାନ୍ ସୁରୁ ସୁରୁ ପତ୍‌ଲା କାନ୍
ଡ଼େରି ଯଥଏ କେ ରଙ୍ଗି ରଙ୍ଗି କେ ଲମୁଛେ ଶୁଇ ।୭।

ସେ ଦୁହିଙ୍କର୍ କଥା ବାରତା    ଘଡ଼େ ଛନ୍‌କେଁ କାଏଁ ସରତା
ଅସରଲା ସୂତା ମେତାଲ୍ ଲମିଛେ ଯେ ଲମିଛେ
ଗଙ୍ଗା ଯେନ୍ତା ହିମାଲୟନୁ    ବାହାରି ବୁହେ ଅନୁଖନୁ
ସମୁଦର୍ ଥିଁ ସବୁ ସମିୟା    ସମିଛେ ଯେ ସମିଛେ    ।୮।
ଉମା କହେଲେ ଜଗତ୍ ପତି ! ସତର୍ ସତୀ ବୃନ୍ଦାବତୀ
ମୁଇଁ ନୁହେ ଖାଲି ତାକର୍ କୀର୍ତି ଯେ ହେଲେଁ ବି ଗାଏବେ
ମରିଗଲେଁ ବି ନାମ୍ ତାକର୍    ଝୁରି ହେବେ ଜଗତ୍ ଯାକର୍
ଇ ଜନ୍ ବେଲ୍ ଯେତେଦିନ୍ ତକ୍ ଉଦି ବୁଡ଼ି ରହେବେ    ।୯।
ହେଲେଁ ପର୍ଭୁ ତାକର୍ ପତି    ଉତ୍‌ପାତ୍ ଅତି ନୁ ଅତି
ସତୀ-ସଂସାର୍ ଉଜ୍‌ରିଯିବା ସେ ଜୀଇଁଥିବା ଯାଏ
ସତୀ ମାନ୍‌କୁଁ ନୁରି ନୁରି    ସତୀପନ୍‌କେ ହୁରି ଜୁରି
କରୁଥିବା କାଏଁ ହଏ ହୋ ହରି ! ଭାବିଦେଖ ଘାଏ    ।୧୦।
ଗୁଟେ ସତୀପନ୍‌କେ ବଅଁଚାବାକେ    ତାର୍ ଥିତିକେ ପୁହୁଁଚାବାକେ
ତିନ୍‌ହି ଲୁକେଁ ଆର୍ ନାଇଁ ରହେ ସତୀପନର୍ ଚିନ୍‌ହାଁ
ଅଧରମ୍ ବି ବଢ଼େ ବଢ଼େ    ଧରମର୍ ଉଢ଼ାଲେଁ ବଢ଼େ
ଧରମ୍ ରକ୍ଷାକାରୀ ଯିଏ ହଇଁଯାଏସି ବନା    ।୧୧।
ଧରମର୍ ଉଧାକେ ନେଇ    ଅଧରମ୍ ଯଦି ହଏ ଛାଇ
ସେ ଧରମ୍‌ଟା କହ ହେଲେଁ କେନ୍ ଧର୍ମେ ଲେଖା ଆଏ
ଗୁଟେ କର୍ମର ଖୁଲେଁ ଫେର୍    ଅଧରମ୍ ଯଦି ହେବା ଢ଼େର୍
ସେ କରମ୍ କେ ସତ୍ କରମ୍ କହେବା ଯେ ଇଖା ଆଏ    ।୧୨।
ହେ ମହାପ୍ରୁ ! ହେଥିର୍ ଲାଗି    କେଭେଁ କିଛି ନାଇଁ ମାଗି
ଦେବ ବଏଲେଁ ହାତ୍ ପସାରିଁ ଆଜିର୍ କିଛି ମାଗୁଛେଁ
ଜଲନ୍ଧର୍ ଲେଖେଁ ଅତ୍ୟାଚାରୀ ଥିଲେଁ ମୋର୍ ମେତାଲ୍ ନାରୀ
ଦରଦ୍ ମଥା ମନର୍ କଥା ଆଖିର୍ ପାନି ପାଗୁଛେଁ    ।୧୩।
ଚିନ୍ତାମଣି କେନ୍ତାକରି    ଜଲନ୍ଧର୍‌କେ ହେବା ମାରି
ସେଥିର୍ ଉପେ ଯାହା କରବ କରିପକ ତାହୁତ୍
ଧରତୀକେ ହେଲା ଭାରି    ନାଇଁ ପାର୍‌ବାର୍ ଧୀରଯ୍ ଧରି
ଦିନ୍‌କେ ଦିନ୍ ତାର୍ ଉତ୍ପାତ ବଢ଼େ ବହୁତ ବହୁତ    ।୧୪।

ବିଷ୍ଣୁ ବଏଲେ ବନେ କଥା କହେଲ ; ହେଲେଁ ଜଗତ୍‌ମାତା
କେନ୍ତାକରି ନୈ ବନ୍‌ବାର୍ କଥାଟାକେ ବନାମା
ସତୀ ଧରମ୍ ତ ଧରମ୍ ଡାଗିର୍ ଦିଶୁଛେ ଇ ଜଗତ୍ ଲାଗିର୍
ସେ ଧରମ୍ କେ ଅଧରମ୍ ବଲି କେନ୍ତା କରି ଜନାମା ।୧୫।
ସତୀ ଆନ୍ ତ ବୃନ୍ଦାବତୀ ମରବାକେନ୍ତା ତାକର୍ ପତି
ରାଆଁଡ଼ି ହେବା ଯଦି ସତେଁ ସତୀ-ରାଏଜର୍ ରାନୀ
ସତୀ ବରତଟା ମୂଲୁଁମେଟି ଯିବା ନାଇଁ କାଏଁ ଜଗତ୍ ମାଟିଁ
ବଦ୍‌ନାମିଆଁ କଥା-କଟାରେଁ ଲୋକ୍ ଦେବେ ନୈ ହାନି ? ।୧୬।

## -୧୨-

ମହାପ୍ରୁବର୍ କଥା ଶୁନି ମାହେଶରୀ ଫେର୍ ବହେଲେ
ହାତ୍ ଦୁଇଟା ଯୁଡ଼ିକରି ବନେକରି ଟିକେ ଲୁହିଲେ ।୧।
"ବିରାଟ୍ ତୁମେ ନିରାଟ ସନ୍ ନିଷ୍ଟିତ୍ ରୂପେଁ ଚେତା
ଆନନ୍ଦ୍ ଛଡା ତୁମର୍ ରୂପ୍ ଆନ୍ କିଛି କାଏଁ ହେତା ? ।୨।
ସବୁ ଯିବାଁର୍ ଗତି ତୁମେ ସବୁ ଥିବାରେଁ ଥିତି ଅ
ଇ ଜଗତର୍ ଗତ୍ ସତେଁ ସବୁ ନିୟତର୍ ନୀତି ଅ ।୩।
ସବୁ କାମର୍ କରତା ତୁମେ ସବୁ କବାରର୍ କାରନ୍
ସବୁ ଜୀବେଁ ଜୀବନ୍ ଏକା ସବୁ ମରବାର ମାରନ୍ ।୪।
ସବୁ ହେବାର୍ ହେତୁ ତୁମେ ଜା'ଣା କିଏ ହେତାବା ?
ତୁମର୍ ମନେ ସବୁ ହେସି କିଏ କାଁ ବଲି ବତାବା ? ।୫।
ହଅନି ଯାହା କିଛେ ହେବା ଆଟ୍‌ତିରିଆ ବାନ୍ଧଛ
କେନ୍‌ଟା କରାବ କା'ର୍ ହାତେଁ ଭାବି ଚିନ୍ତି ଫାନ୍ଧିଛ ।୬।
ଯାହା ଚାହେଁସ ତାହା ହେସି ଯେ ଜାନେ ସେ ସୁମ୍‌ରେ
ଇ ସଂସାର୍ ଡପ୍‌ଲା ଖେଯେଁ ବେଡା ବସି ଝୁମ୍‌ରେ ।୭।
ଦିନ୍‌କାଲ୍ ତାର୍ ନୁହେ ହଏ କାଏଁ ହୀନ୍ ଆଚାରୀ ଜଲନ୍ଧର୍
କାହାରି ଆଡ୍‌ବେ ନିଘା ନାଇଁ ତାର୍ ବାହା ପିଟୁଛେ ବହଙ୍ଗର୍ ।୮।
ପୁଂଜିକରି ପାଏଲା ବଲିଁ ବୃନ୍ଦାବତୀର୍ ଧରମ୍‌କେ
ରୁଝି ରୁଝି ଉଜି ନଉଛେ ନିଜର୍ ଲାଜ୍ ସରମ୍‌କେ ।୯।

ଆଜିର୍ କଥା ଶୁନ୍‌ଲ କି ନି କହେସିଁ ଆଗେଁ ତମର
ବେସରମ୍‌ଟା ବେଶ୍ ବାଁଧିକରି କାର୍ତିକର୍ ବାଆର୍ ଆମର ।୧୦।
କଏଳାସ୍‌କେ ଆସିଥିଲା ହଏରାନ୍ କରିଥିତା
ମୁଇଁ ଆର୍ କାଏଁ ମୁହଁ ଦେଖାତିଁ କଥା ସରିଥିତା ।୧୧।
ହେଟା ଭାଏଲ୍ ତାର୍ ମରନ୍ ବାଟ୍ ଆପେଁ ଆପେଁ କହେଲା
ଜୀବନ୍-ନଏଦ୍ ହେତ୍‌କି ବେଲୁଁ ଉଲଟିଆ କାଏଁ ବହେଲା ।୧୨।
ଧର୍ମର ଟିକେ ଛିଁଛା ପାଇ ଦେଖ ତ ଅଧରମ୍ କେ
ଧର୍ମର୍ ବେଁକ୍ ମୁର୍କୁଟୁଛେ ମସ୍‌ମସାସି ମରମ୍‌କେ ।୧୩।
ଅମୃତ-ମଠିଆର୍ ଉଲେଁ ଉଲେଁ ବିଷର୍ ଗଛ୍‌ଟେ ବଢୁଛେ
ମଠିଆ ଥାଇ ଅମୃତ୍ ଟିକ କାଢ଼୍‌ଲେଁ କଥା ଛିଡୁଛେ ।୧୪।
ପାର୍ବତୀର୍ ଇ କଥା ପଦ୍‌କ ବିଷ୍ଣର୍ ମନ୍‌କେ ଢୁକ୍‌ଲା
ଧର୍ମାଧର୍ମର୍ ଭରମ୍ ଯାହା ବିନ୍ କହେଁ କେ'ନ ଲୁକ୍‌ଲା ।୧୫।
ବିଷ୍ଣ କହେଲେ "କମ୍ ଅଖରେଁ ବନିହିଁ କଥା ପାର୍‌ବତୀ !
କହି ପାର୍‌ସ ବଲିଁ କହେସନ୍ ତୁମ୍‌କୁଁ ମହା ସର୍‌ସତୀ ।୧୬।
କତା ତଲର୍ ଶସ୍ ମେତାଲ୍ କଥା ଭିତରର୍ ରସ୍ ଆଏ
ବାହାର୍ କରି ବାଆରି ପାର୍‌ଲେଁ ଜୀବନ୍ ଅଏନ୍ ସରସ୍ ଆଏ ।୧୭।
ଯାଉଛେଁ ମୁଇଁ ମାହେଶରୀ ଗୋ କର୍‌ମା ଯାହା ଦିଶ୍‌ବା
ତୁମର୍ ଉହାଟ୍ ମୋର୍ ଅକଲ୍ ଯେନ୍ତା କଲେଁ ମିଶ୍‌ବା" ।୧୮।

-୧୩-

ପୃଥୀ ରାନୀ କଲା ମିସ୍ ମିସ୍ ଅଁଧାର୍-ଶାଢ଼ୀ ପିନ୍‌ହିଛେ
ତରା-ଫୁଲର୍ ବୁଟା ସର୍‌ସର୍ କେନ୍ ବୁନ୍‌କାର୍ ବୁନିଛେ ।୧।
ଡ଼ଙ୍ଗର୍ ତଲେଁ ଅଙ୍ଗର୍ ପନତ୍ ଘାଏକେ ଘାଏ ଝାରୁଛେ
ପହର୍ ଦେଖି କର୍ ଲେହେଟେଁ ଝିଁ କାରୀର୍ ହାଇ ମାରୁଛେ ।୨।
ଆକାଶ୍-ବାଲେଁ ଦିଗର୍ ମୁଲେଁ ଢ଼ଲିଆ ଖୁଷା ଖୁସୁଛେ
ମନ୍ କଲେଁ ଘାଏ ଜୁଲ୍‌ଜୁଲିଆ- ମୁହେଁ ମୁଲ୍‌କି ହସା ହସୁଛେ ।୩।
ତାହାକେ କିଏ ଡ଼ାକ୍‌ଲା ବାଗିର୍ କରୁଛେ କାଏଁ ଆଏଁ
ସେଟା ଶୁନି ଲୋକ୍ ବଲୁଛନ୍‌ରାଏତ୍ କରୁଛେ ଝାଏଁ ।୪।
ଜନ୍‌ଟା ଆଜିର୍ ନାଇଁନ ବଲି ମନ୍‌ଟା ତାର୍ କେଡ଼େ ଦୁଖ୍

କାହାର୍ ସାଙ୍ଗେଁ ମୁହାଁମୁହିଁ ବସିହେବା ଦୁଖ୍ ସୁଖ୍ ।୫।
ରାଏତ୍‌ଚରୀ ଜାଏତ୍ କୁଲିହା-ମୁହେଁ ହୁକେ ହୋ ଭୁକୁଛନ୍
ଓ କରି କାଏଁ ଗାଁ ଭିତ୍‌ରୁ କୁକୁର୍ ଭୋଭୋ ଭୁକୁଛନ୍ ।୬।
ଚରେ ମାନଙ୍କୁ ନିଦେଁ ଗରେଁଇ ଜୀଇଁ ଚରେଟା ଚେତିଛେ
ସଟେ ଘଟେକେ କେନ ଅଛେ ତାର୍ ସମିୟା ଘାତିଛେ ।୭।
ମଣି ମାଣିକର୍ ଉକିଆ ଜଲେ ରାଜ୍ ମହଲର୍ ଭିତ୍‌ରେଁ
ଅପସରିଁ ଯାଏ ଅଁଧାର୍ ସେ'ନୁ ନେଁ ରହିପାରେ ସୁତ୍‌ରେଁ ।୮।
ହେଁଥିର୍ ଲାଗି ଫଟିକ୍ ଦିଶେ ବୁର୍ଦ୍ଧାରାନୀର୍ ଦିହ୍‌ଟା
ସାରା ସଂସାର୍ ରୂପ୍-ମହଲର୍ ଥାଏ କାଏଁ ସେଟା ନିହ୍‌ଟା ।୯।
ମଣି ମାଣିକର୍ ଉଜାଲା ଜିତି ଦିଶେ ଦିହର୍ ବରନ୍
ଧଏନ୍ ଧଏନ୍ ସେ ବିଧାତା ଯେ ଗଡ଼୍‌ହିଛେ ଇ ଗଡ଼୍‌ହନ୍ ।୧୦।
ହାତୀ ଦାଁତର୍ ପଲଁକ୍ ଉପ୍‌ରେଁ ସତୀର୍ ଶରୀର ଝଟ୍‌କୁଟେ
ଧୋବ୍ ଫରଫର୍ ବାଦଲ୍ ଦଲେଁ ବିଜ୍‌ଲି ଗାରେ କାଏଁ ଅଟ୍‌କିଛେ ।୧୧।
ଗଙ୍ଗାର୍ ଧୋବ୍ ଧାରେଁ ଚଁପାର୍ ହାର୍ ପକେଇ କେ ଦେଖୁଛେ
ରୂପାର୍ ପର୍ଲା ପକେଇ କେ କାଏଁ ସୁନାର୍ ହାର୍‌କେ ଯୁଖୁଛେ ।୧୨।
ମନ୍ ବୁଲୁଛେ କାହିଁଟା କାହିଁ ତନ୍ ପଡ଼ିଛେ ପଁଲ୍‌କେଁ
ରାନୀ ହଉଛନ୍ ଘାଁଟି ସାନି ନିଦ୍ ନାଇଁ ପଡ଼େ ପଲ୍‌କେଁ ।୧୩।
ପତି ଯାଇଛନ୍ ଲଢ଼େଇ ଜିତି ଅଏରି କଏଲାସ୍ ପତି
କେନ୍ତା ହେବା କେନ୍ତା ନାଇଁ ହୁର୍‌ଗୁନି ହଉଛନ୍ ସତୀ ।୧୪।
"କିହେ କାହାକେ ମାନନ୍ ନାଇଁ କାଏଁ ଲଢ଼େଇ ଯେ ଲଢୁଛନ୍
ଦୁହି ପକ୍ଷୁଁ ସଏନ୍ ସାମଁତ୍ ଗଦା ଗଦା ତ ଗଡୁଛନ୍ ।୧୫।
ଲାଖ୍ ଚୁରି ମୋର୍ ବର୍କସ୍ ଥାଉ ହେ ପତି ପର୍ମେଶର୍
ଦକ୍ ଦଗୋଉ ଥାଉ ମୁଢ଼େଁ ମୋର୍ ସେନ୍ଦୁର୍ ଅଠିପର୍ ।୧୬।
ଦିହ୍-ଦଉଲର୍ ଦେବ୍‌ତା ତୁମେ ମନ୍-ମୁଲ୍‌କର୍ ରଜା
ଗତି ମୁକ୍ତି ସବୁ ତୁମେ, ତୁମେ ମୋର୍ ପୂଜାଧଜା ।୧୭।
ତମ୍‌କୁଁ ଛାଡ଼ି ଆର୍ ଦେବ୍‌ତା କିହେ ଥିବାର୍ ଜାନେ ନାଇଁ
ତମର୍ ବିନା ମହାପ୍ରୁ ମୋର୍ ଥାଉ ନେଁ ଥାଉ ମାନେ ନାଇଁ ।୧୮।

ରାଏତ୍ ଆଉଛେ ପାହି ପାହି ଲିଭି ଯାଉଛନ୍ ତରା
ନେଁ ଲିଭେ ଖାଲି ମୋର୍ ଭିତ୍‌ରେଁ ଜଳେ ଯେନ୍ ଅଁତରା ।୧୯।
ଘାଏ ହଉଛେ ଛାଏ ନିଦିଆ ଥିଲିଁ ଘଡ଼୍‌କର୍ ମାଏନ୍
ତମେ ଆଏଲ ରଙ୍କା ମୁହେଁ ନେଁ ଥାଇଁ ତ ପାଏନ୍ ।୨୦।
ଦିହ୍‌ମୁଡ଼୍ ସବୁ ତେଲ୍ ସର୍‌ସର୍ ତଲେଁ ପଡ଼େ ଥିପି
ବାସ୍ ବସ୍ତର ଦିହେଁ ନାଇଁ ଫେର୍ ଥିଲ ପୁଡ଼ର୍ ପିଠି ।୨୧।
ଦଖିନ୍ ଦିଗେଁ ମୁହଁ ଥାଇ ମନ୍ଦାର୍ ମାଲ୍ ବେକେଁ
କଟା ମୁଡ଼୍‌ଟେ ହାତେଁ ଉଲ୍‌ମେ ଅଏଲଖନିଥିଁ ଲେଖେ ।୨୨।
ସେତ୍‌କି ବେଲୁଁ ବାଏବିଛୋ ମନ୍ ହଏ ଘାଁଟି ସାନି
ସତ୍ ଆଏ କି ସପନ୍ ଆଏ ନେଁ ପାର୍‌ବାର୍ ଜାନି ।୨୩।
ଭୁଜ୍‌ନି ଗୋଡ୍ ଭୁଜ୍‌ନି ବାହା ଭୁଜ୍‌ନି ଆଏଁଖ୍ ଫର୍‌କୁଛେ
ନଜ୍‌ରେ ନେଁ ଦେଖିବାର୍ ତକ୍ ଅଦର୍ବା ମନ୍ ଦର୍କୁଛେ ।୨୪।
ରାଏତ୍ ଯାଉଛେ ରାଏଜ୍ ଛାଡ଼ି ଅଁଧାର୍ ସବୁ ସଁଖିଲୁଛେ
ରାନୀର୍ ମୁଡ଼େଁ ଅଛେ ଢ଼ିଁ ଡ଼େ ଯାଏତା କାଏଁ ଉଖିଲୁଛେ ।୨୫।
ଘରର୍ ଆଗେଁ ଘର୍‌ନୀ ମାନେ ଦେଲେ ପାହାଁଡି ଛରା
ନିଘା କଲେଁ ଦିଶ୍‌ଲାନ ଭି ମହଲ୍ ସିଘେଁ ଖରା ।୨୬।
ସିଧା ମହଲ୍ ଉପ୍‌ରେଁ ହାଏ ! ବସି ନେଇଛେ ଗିଧାଟେ
ଚାରି ଆଡ଼୍‌କେ ବୁଲାଇ ନଉଛେ ନିର୍ଭଏ ଥିଁ ନିଘାଟେ ।୨୭।
ରାଜ୍ ଦୁଆରେଁ କୁଆର୍ ରାଏଜ୍ କେତେ ହୁଟା ହୁଆ
ନେଁ ବାହାରୁନ୍ ରାନୀର୍ ମୁଡ଼େଁ ବସିନେଲାନ କୁଆ ।୨୮।
ଗୁହାଲେଁ ଗୁହାଲେଁ ଗାଏ ଭଏଁସ ନିରଘଟିଆ ରଡୁଛନ୍
ନରିହାମାନେ ପାଶ୍‌କେ ଗଲେଁ ଯୁଡ଼ା ଲାତ୍ ଝାଡୁଛନ୍ ।୨୯।
ଅମଙ୍ଗଲ୍‌ର ସୂଚକ୍ ଦେଖି ରାନୀର୍ ଜୀବନ୍ ଡ଼ରୁଛେ
ପୁଛୁଥିଲେଁ ବି ଆଁଖିର୍ ପାଏନ୍ ମନା ନେଁ ମାନି ଝରୁଛେ ।୩୦।
ପାଏନ୍ ନେଁ ରହେ ଆଖିଁ କି ମନ୍ ନେଁ ରହେ ମହଲେଁ
ମହଲ୍ ଛାଡ଼ି ବାହାରି ପର୍‌ଲେ ନାଇଁ ମାନନ୍ ଯେ କହେଲେଁ ।୩୧।

## -୧୪-

ଘର୍ ଜଞ୍ଜାଲ୍ ଟାଲିଟାଲି   ଖାଲି ପାଦେଁ ଚାଲି ଚାଲି
ରାନୀ ମନେ ଭାଲି ଭାଲି କେନ୍‌କେ ଯିବେ ଯେ ଯାଉଛନ୍;
ଦାସୀ ଦୁଇଜନ୍ ସାଁଗେ ସାଁଗେ  ଝନେ ପଛେଁ ଝନେ ଆଗେଁ
ବେଲ୍ ବେଲ୍ ଧରି ଲାଗେଁ ଲାଗେଁ ଧଡ଼୍‌ପଡ଼ାନୁ ଧାଁଉଛନ୍   ।୧।
ବେଲ୍ ଉବେଲ୍ ନାଇଁ ଜାନି   କଁଟା ଝଁଟା ନାଇଁ ମାନି
ଆଖିଁ ଅଛେ ଆଖିଁର୍ ପାନି, ମନ୍ ଅଛେ ପତିର ନ;
ପତି ସିନା ସତୀର୍ ଧନ୍   ପତିର୍ ବିନା ସତୀର୍ ମନ୍
କେ'ନ ହେସି ଛନ୍ ଛନ୍, ଆର୍ କେନ୍, ସଂପତିର୍ ନ   ।୨।
ରାଜ୍ ମହଲ୍ ରହେ ଦୂରିଆ  କାହିଁହେଲେଁ ଫୁଟେ କୁରିଆ
ନାଇଁ ଦିଶ୍‌ବାର୍, ସବୁ ପରିଆ ଗଛେଁଗଛ୍ ଭରିଛନ୍
କେନ୍ ଗଛ୍‌କେ କିଏ ଆବ୍‌ରେ   କାହାର୍ ଉଧେଁ କିଏ ସଁଭ୍‌ରେ
ଭୀଡ଼୍ ଭିତ୍‌ରୁଁ କେ ଉବ୍‌ରେ   କାହାକେ କେ ଧରିଛନ୍   ।୩।
ସଭେ ସମ୍‌କୁଁ ସହି ଲହି   ସଭେ ଅଛନ୍ ସମ୍‌କୁଁ ଚାହିଁ
କେ ଠିଆ ତ କିଏ ଲୁହିଁ 'ତୋର୍' 'ମୋର୍' ଭାବ୍ ନାଇଁ
କାହାର୍ ଦିହେଁ କାହାର୍ ଡ଼ାଲ୍  ବାଜଲେଁ ଭି ସବୁକାଲ
ନାଇଁନ କେଭେଁ ଗୁଲ୍‌ମାଲ୍   ରାଗ୍ ରିଶ୍‌ମି କାହିଁ   ।୪।
କେତେ ଗଛର୍ ଡ଼ାଲେଁ ଡ଼ାଲେଁ   ଲହ ଲହଁପେ ଗେଲେଁ ଗେଲେଁ
ବାଗର୍ ବୁଟା ସାଗର୍ ମେଲେଁ  ମୁଲ୍‌କିହସା ମାରୁଛନ୍;
କେ କହେ କାଏଁ ଜୁନ୍‌ହା କଥା   ଭାବି ନାଇଁ ହୁଅ ଅଥା
ଛାଡ ବର୍ଲି ମୋର୍ ମେତାଲ୍,  ଶୁଖା ପତର୍ ଝାରୁଛନ୍   ।୫।
କେନ୍ ଗଛ୍ ଭାଏଲ୍ ପିକଉଛେ   ନୂଆଁ ନିଶା ନ ଝଁକଉଛେ
ଦୁଖ୍ ଦରଦ୍‌କେ ଲୁକଉଛେ,  ଯେ ଦେଖ୍‌ବା ତାର୍
ଦେଖି ଦେଖି ବୁର୍ହାରାନୀ   ଜାନି ଭି ନାଇଁ ପାରନ୍ ଜାନି
ପହଁରେ କେତେ ସୁଖର୍ ପାନି,  ଇ ଗଛ୍ ସଂସାର୍   ।୬।

ଇ ସଂସାରେଁ ଲଢ଼େଇ ନାଇଁ ବଡ଼ ଅଛନ୍ ବଡ଼େଇ ନାଇଁ
ସାନ୍ ଦେଖି ବି ଛଡ଼େଇ ନାଇଁ, ଇନ କାହାରିର୍ କିଏ
ଗାଏଲ୍ ଝଗର୍ ମାର୍ ଧର୍ କୁହାବୁଲା କି କର୍‌ବର୍
ଟିଖେ କାଇଁ ନିଜ୍ ପର୍ କିହେ ଦେଖନ୍ ନିହେ ।୭।
ଆସିକରି ବି ଇ'ଠାନେ ଦେବ୍‌ତା ଅସୁର୍ ମୁନୁଷମାନେ
ନାଇଁ ବୁଝନ୍ ଇ କଥାର ମାନେ, ବଡ଼ା ଦୁଖର୍ କଥା
ରାଗ୍ କୁଏ ଥିଁ ସୋଜ୍ ସୋଜ୍ ପୁଡ଼ି ମରୁଛନ୍ ରୋଜ୍ ରୋଜ୍
ମୁଡ଼େଁ ବୁହି '"ମୁଇଁ'ର୍ ବୋଝ୍ କେତେ ହେସନ୍ ଅଥା ।୮।
ଆଗେଁ ରାନୀ ଦେଖିଲେ ଡ଼ଙ୍ଗର୍ ମୁଲ୍ ମୁଟା ସିଘ୍ ଲିଗର୍
କାହିଁ ନାଇଁନ ଗୁଠେ ଡ଼ଂଗର୍ ଚଢ଼୍‌ଲେ ବି ତଥାପି
ବାଟ୍ ହେଲେଁ କାଏଁ ଉସୁଛେ ଝାଲ୍ ପଶ୍ ପଶ୍ ପସୁଛେ
ଗୋଡ଼୍ ଘାଏ ଘାଏ ଖସୁଛେ ହାତ୍ ହଉଛେ ଥାପି ।୯।
ଦାସୀ କହୁଛନ୍ କାଁ କରି ମା ! ଡ଼ଙ୍ଗର୍ ଚଢ଼ି କାଁ କରମା
କେତେବେଳେଁ ଫେର୍ ଫିରମା, ବେଲ୍ ବାଟେଁ ବେଲ୍ ଢ଼ଲ୍‌କୁଛେ
କଥା ନାଇଁ କି ଭାଷା ନାଇଁ, ପିତା ନାଇଁ କି କଷା ନାଇଁ
ରାନୀର୍ ମନେ ଆଶା ନାଇଁ, ଆଖିଁ ପାଏନ୍ ଛଲ୍‌କୁଛେ ।୧୦।
ଦେଖି ପାଏଲେ ଏତେବେଳେଁ ଟରେ ଦୁଇଟା ଗଛର୍ ଡ଼ାଳେଁ
ବସି ରହିଛନ୍ କଳେଁ କଳେଁ ବଅଁକରି ବାଇ୍ ଆଏଲା
ଦୋଷ୍ ନାଇଁ କି ଗୁନ୍‌ହା ନାଇଁ ଜନା ନାଇଁ କି ଶୁନା ନାଇଁ
କାହିଁ କିଛି କଟ୍‌କନା ନାଇଁ, ଟରେ ପଟେକେ ଧଏଲା ।୧୧।
ଆର୍ ପଟ୍‌କ ଉଡ଼ି ଉଡ଼ି ନୁରି ନୁରି ସାଙ୍ଗର୍ ଯୁଡ଼ି
ତାର୍ ଭାଷାନ ରଡ଼ି ରଡ଼ି ଯାହା ପାର୍‌ଲା କାନ୍ଦୁଛେ
ସୁଜି ପଡ଼୍‌ଲେଁ ଠନ୍ ଠାନ୍ କଲା ବାଗିର୍ ଶୁନ୍‌ଶାନ୍
ଗଛ ପତର୍ ତ ତୁନ୍ ତାନ୍ ରାନୀର୍ ଭିତର୍ ଘୁନ୍ଧୁଛେ ।୧୨।
ସତୀର ଛାତି ଧକ୍ କଲା ଅମାନିଆଁ ମନ୍ ସକ୍ କଲା
ଅମଙ୍ଗଲ୍ ଆଡ଼୍‌କେ ଠକ୍ କଲା ଧାଇଁଗଲା ତୁରତି
ଏତ୍‌କି ବେଳେଁ ଯୁଡ଼େ ରାଖସ୍ ଭୀମ୍ କଲିଆ କୁହା ଝନ୍‌ଖାଏ

ଆଏଲେ ଭିରିଭାରୀ ଚୌକସ୍ ଧମ୍‌କି ଗଲା ଧରତୀ ।୧୩।
ଦଅଁରାପୂରୁ ଦେହେମାନ୍ ତେଲାନି ନୁ ଭି ବଢ଼େ କାନ୍
ଦାତୁଁ କଷ୍‌ନା ହେବା ସାନ୍ ତାଲ୍ ମେତାଲ ଢ଼େଙ୍ଗ୍
ଛାତିମାନ୍‌କେଁ ଯେନ୍ତାକରି ବନାଲେଁ ବନ୍‌ବା ଚୌରୀ ବଖ୍‌ରୀ
ଯାହା ଅଛେ ଆଏଁଖ୍ ବଲିକରି ଯୁ'ଡ଼େ ଡୁଡ଼ା ବେଙ୍ଗ୍ ।୧୪।
ରଡ଼ିନେଲେ ସେ ଯେଡ଼୍‌କି ତୁଡୁଁ ହଲ୍‌ଲେ ସଭେ ଗୁଡୁ ମୁଡୁ
ଝାଲେଁ ହଇଁ ସୁଡୁ ବୁଡୁ ଧାଏଁଲେ ଜୀବନ୍ ନେଇ
କଁଟା ଖୁଟା ଧରି ଧରି ଶାଢ଼ୀ ହେଲେ ଚିରି ଚିରି
ଦେହେ ହେଲା ଖାରି ଖାରି ରକତ୍ ଝୋଲ୍ ହେଇ ।୧୫।
ତିନ୍‌ଟା ଜନ୍‌କେ ଦୁଇଟା ରାହୁ କୁଦ୍‌ଉଛନ୍ କାଏଁ ଜୁଟି କାହୁଁ
ଶୁନିଛେ କେ କାଏଁ କାହାର୍ ମୁହୁଁ? ସଥେଁ ବାଗିରତ୍ ଦିଶୁଛେ
ପାହାଡ଼୍ ଦୁଇଟା ଦଉଡୁଛନ୍ ଝର୍ ମାନେ କାଏଁ ଠହରୁଛନ୍?
ଆଗୋ ଆଗୋ ସେ ପଲଉଛନ୍ ଏନ୍ତା ମନ୍‌କେ ଆସୁଛେ ।୧୬।
ଦାସୀ ମାନ୍‌କର୍ ସାଙ୍ଗେଁ ସତୀ ପଲେଇ ଆଏଲେ ଯେନ୍ କୁତି
ସେନ ଝନେ ମହାନ୍ ଯତି, ଯୋଗ୍ ଧିଆନେ ବସିଛନ୍
ଯେନ୍ ରସ୍ ନ ପଶ୍‌ଲେଁ ଘାଏ ସଂସାର୍ ଛିଇ ନୈ ପାରେ ଛାଏ
ଯେ'ନୁ ଫିର୍‌ବାର୍ ମନ୍ ନୈ ଥାଏ ସେ ରସ୍ ଥିଁ ରସିଛନ୍ ।୧୭।
ଦେଖୁନ୍ ଦେଖୁନ୍ ସେ ଠାନେ ପୁହଁଚିଗଲେ ଅସୁର୍‌ମାନେ
ତାକର୍ ରଡ଼ି ଯତିର୍ କାନେ ପଡୁନ୍ ଭାଙ୍ଗ୍‌ଲା ଧିଆନ୍
ମଁଡ଼୍‌ରୁ ଥିଲା କେ'ନ ମନ୍ ଫିରି ଆଏଲା ସଙ୍ଗେଁ ସଙ୍ଗ୍
ଚରିଁଗଲା ଫେର୍ ଅଙ୍ଗେଁ ଅଙ୍ଗ୍, ଦିହେଁ ଦେହେ ଗିଆନ୍ ।୧୮।

## -୧୫-

ଯୁଗୀ ଯେନ୍ତା ଜାଗ୍‌ଲେ କି ଅସୁର୍ ଦୁହେ ଭାଗ୍‌ଲେ
କିଏ ଜାନ୍‌ବା କେ'ନୁ ଆସି କେନ୍‌ଠାନେ ଯାଇ ଲାଗ୍‌ଲେ ।୧।
ମନ୍-ମହଲେଁ ମଏଲା ଥିଲେଁ ମାଛି ହେସନ୍ ଅସୁର୍
ପଛେଁ ଆମେ ପସ୍ତାଇ ହଇଁ ବଲ୍‌ସୁଁ କଲି କସୁର୍ ।୨।
ମନ୍-ରାଏଜେଁ ରାଏତ୍ ଦେଖି ଆଏସନ୍ ଚରି ବୁଲି

ସେଥିର୍ ଲାଗି ରାଏତ୍‌ଚରୀ ବଲି କହେସି ଆମର୍ ବୁଲି ।୩।
ବର୍ହେଇ ହେବା ମଏଲା, ଆଏଲେଁ ମନ୍-ମୋହନ ମନ୍‌କେ
ରାଏତ୍ ହେଲେଁ କାଏଁ ପଶି ପାର୍‌ବା ଦିନବନ୍ଧୁ ଥିଲା ଠାନ୍‌କେ ।୪।
ଯୁଗୀ ଆଏ ଯେ ତାର୍ ଲାଗି ଦିନ୍ ରାଏତ୍‌ର ପରାଭେଦ୍
ନୈ ଥାଏ ବଲି କହେସି ପୁରାନ୍ ବେଦାଙ୍ଗ୍ ସାଙ୍ଗେଁ କହେ ବେଦ୍ ।୫।
ମନ୍-ସୂତାଥିଁ ମହାପ୍ରୁ ସଙ୍ଗେଁ ଯୁଡ଼ି ହେବାର୍‌ଟା ଯୋଗ ଆଏ
କୁଟେ ନ ଭି ଗୁଟେ ନୈ ଥାଆନ୍ ଜଗତ୍ ଲାଗି ଦୁର୍ଯୋଗ୍ ଆଏ ।୬।
ଅସୁର୍ ଡ଼ର୍ ଗଲାର୍ ପର୍ ସୁରେଁ ରହେଲେ ରାନୀ
ପରାନ୍ କେ ବି ପାଶ୍‌ରି ଥିଲେ ସେ ତିନ୍‌ହି ପରାନୀ ।୭।
ସତୀ ସାଙ୍ଗେଁ ଦାସୀମାନ ଯଦି ପାଶ୍‌କେ ଖସିର୍ଲେ
ଯୁଗୀ ଦେଖି ଭୁଗିଥିବା ଦଶା ସବୁ ପାଶିର୍ଲେ ।୮।
ଝାଏଁ କରୁଛେ ଝାର୍ ପତ୍‌ରା ଦିଗ୍ ପଡ଼ିଛେ ନିଝାଟ୍
ଝୁର୍‌ମୁରାଏ ରାନୀର ଚେହେରା ଋଷିର୍ ଚେହେରା ଉଝାଟ୍ ।୯।
ଚୁର୍‌ବୁର୍ କାହିଁ ଶୁଭେ ନାଇଁ ଧୁକା ହୁର୍ ହୁର୍ ଧୁକୁଛେ
ନିଅ ନାଇଁ ନିଅ ଆନନ୍ଦ୍ ରସ୍ ଯାହା ପାରୁଛେ ଲୁକୁଛେ ।୧୦।
ଋଷିର୍ ଆଗେଁ ଦାସୀ ସାଙ୍ଗେଁ ରାନୀ ମୁଡ୍ ଲୁହାଁଲେ
କହେବାକେ ତ ମୁହଁ ଫିଟେନାଇଁ ଆଖିଁ ଲହ୍ ବୁହାଲେ ।୧୧।
ଉଦି ଆଏଲା ବେଲ୍‌ର୍ ଆଗେଁ ସଏଦ୍ ଫୁଟ୍‌ଲା ପଦମ୍
ଲହଁସି କରି କହେସି କାଏଁ ରାଏତ୍ ସାରାର୍ ଅଦମ୍ ।୧୨।
କହେମି ବଲିଁ ଭାବ୍‌ଲେଁ ରାନୀ ନୈ ପାର୍‌ବାର୍ ହେଁକଉଛନ୍
ଦାସୀମାନେ ଭାଏଲ୍ କାଁ କର୍‌ବେ ଧଁ ସଁ ହଇ ଧକଉଛନ୍ ।୧୩।
ହାତ୍ ପସାରି ଋଷି କହେଲେ "କାଁ କରି ଗୋ ଡ଼ରୁଛ
ସଡ଼କ୍ ଦମ୍ ଠିଆ ହଇ ନଖେଁ ଭୁଇଁ ଚିରୁଛ ।୧୪।
ମୋର୍ ଥାଆତେଁ ଦେଖିମା ତ ଘାଏ କିଏ କା'ଣା କର୍‌ବା
କାହାର୍ ଜୀବନ୍ ଶସ୍ତା ଅଛେ ଜାନି ଜାନି ସୋଇ୍ ମର୍‌ବା ? ।୧୫।
ଅଧୀର୍ ହେବାର୍ ସୁନ୍ଦର ନୁହେ ଥିର୍ ହଇ ଘାଏ ରହନ
ଡ଼ର୍ ଭାଏଲ୍ ଆର୍ କାହାକେ ଅଛେ ଯାହା କହେବାର୍ କହନ" ।୧୬।

ରାନୀର୍ କଲା କଜଲ୍ ଗାର୍ ଆଁଖିର୍ ପାନି ଉହ୍ଲୁଛେ
ଆଏଁଖ୍ ପତାକେ ଢ଼େଗିକରି ଗାଲ୍ ମାନ୍‌କୁଁ ବିହିଲୁଛେ ।୧୭।
ଉଦି ଆଏଲା ବେଲ୍ ବାଗିରତ ମୁଡ଼ର୍ ସେନ୍ଦୁର୍ ଟିକାଟା
କାଁ ହେଲା ଯେ କେତେବେଲ୍‌ଁ ଦିଶେ ପର୍ଛା ଫିକାଟା ।୧୮।
ରାନୀର୍ କପାଳ-ଆକାଶ୍-କୁଲ୍‌ଁ ଉଦି ଆଏଲା ବେଲ୍‌କେ
ଘିଚି ଆନି କେ ଖୁଚିନେଲା କାଏଁ ଜନ୍‌ଟେ ଏନ୍ତା ବେଲ୍‌କେ ।୧୯।
ସତୀ ବଏଲେ "ଯତି ମହାରାଜ୍ ! ଆମ୍‌କୁଁ ଆଜିର୍ ବଅଁଚାଲ୍
ଢ଼ର୍ ସମୁଦରେଁ ବୁଡ଼ି ଯାଉଥିଲୁ ଖଏଣ୍‌କେ ଆନି ପୁହୁଁଚାଲ ।୨୦।
ଯୁଗୀ ତୁମେ ସବୁ କଥା ଜାନ୍‌ବ ଯୁଗର୍ ବଲେଁ
ପତିର୍ ବିନା ସତୀ କେନ୍ତା ପଡ଼୍‌ସି କଲବଲେଁ ।୨୧।
ଅଶୁଭ୍ ସପନ୍ ଦେଖି ରାତିଁ ପହ୍‌ପହ୍‌ନୁ ବାହାରିଛେଁ
ଏ ମା ! କେତେ ବୁଡ଼ି ଉପ୍‌କି ଦରଦ୍-ନଦୀଁ ପହଁରିଛେଁ ।୨୨।
ବିପତିକେ କାଏଁ ଡ଼ର୍‌ତେ ? ବୀର୍ ପତି ମୋର୍ ଲଢ଼େଇ କେ
ଯାଇ ଲଢୁଛନ୍ ଶିବର୍ ସାଙ୍ଗେଁ; ଯିବା ଭାଏଲ୍ ଛଡ଼େଇ କେ ? ।୨୩।
ଲଢ଼େଇର୍ ଖବର୍ ନେଇ ପାଏବାର୍ ମନ୍ ହଏ ଘାଁଟି ସାନି
କେ ଜାନେ ମା ! ଲଢ଼େଇ ଠାନେ ଲାଭ୍ ହେବା କି ନୁକସାନି ।୨୪।
ଅଶୁଭ୍ ସପନ୍ ଦେଖ୍‌ଲା ବେଲ୍‌ଁ ଅସୁଖ୍ ଲାଗେ କେତ୍‌ନି
ଛନ୍ଦେ ଛନ୍ଦେ କେ ଉଛନ୍ ମନ୍ ପାଏବାକେ ସେ ବାତ୍‌ନି ।୨୫।
ମୁନି ! ତୁମେ ମନର୍ ମୁନିବ୍ ଭୁର୍‌ତାଇ ଥିବ ମନ୍‌କେ
ଜାନ୍‌ବ ସବୁ; ପଠାଇ ସବୁକାଲ୍ ସବୁ ଠାନ୍‌କେ ।୨୬।
ମନ୍‌ଟାକେ ମୋର୍ ମନାଇ ପାର୍‌ମି ତୁମର୍ ଠାନୁ ଶୁନ୍‌ଲେଁ
ଜାନ୍ ଟା ମୋର୍ ଥାବେ ରହେବା ଭଲ୍ ଅସାର୍ ଜାନ୍‌ଲେଁ" ।୨୭।
ଏତ୍‌କି ଶୁନି ମୁନି ମହାରାଜ୍ ଆଏଁଖ୍ ଦୁହିଟା ମୁଜ୍‌ଲେ
ମନ୍ ଭିତ୍‌ରେଁ ଅଁଡ଼ାଲି କରି କଥା କା'ଣା ଆଏ ଖୁଜ୍‌ଲେ ।୨୮।
ସଏଦ୍ ଫୁଟା ପଦମ୍ ଫୁଲ କାଏଁ ମୁହେଁ ଆନି କେ ବସେଇଛେ
କଅଁଲି କଅଁଲି ମେଛା ଦାଢ଼ିର୍ ଭମର୍ ଗୁହୁଡ଼େ ରସେଇଛେ ।୨୯।
କଲା ମିସ୍ ମିସ୍ ଭୁଲ୍‌ତା ଆଏ କାଏଁ କାମ୍ ଦେବ୍‌ତାର୍ ଧୁନ୍

ଶର୍ କଷିଛେ ସଙ୍କେ ପାଏଲେଁ ମାର୍‌ବା ଅନାଧୁନ୍ ।୩୦।
ମଝ୍ କପାଲେଁ ଚନ୍ଦନ୍ ଚିତା ଟିକାଟେ ତାର୍ ଭିତ୍‌ରେଁ
ନାଲିଆ ମେଘେଁ ଠାଡ୍ ମଙ୍ଗଲ ମଲ୍‌କେ କାଏଁ ତାର୍ ବତ୍‌ରେଁ ।୩୧।
କୁଚୁକୁଚିଆ କଲା ବାଲ୍ ଖନ୍ଦ୍ ଉପରେଁ ପଡୁଛେ
କାଲୀ ନାଗ୍ କାଏଁ ଗେଛେ ଛୁଆ ତମାଲ ଗଛେଁ ଛାଡୁଛେ ।୩୨।
ଦିହେଁ ଏକା ଦକ୍ କରୁଛେ ପାହା ଚିହ୍ନାଟେ କାହାର୍ ଆଏ ?
ମୁନିକେ କେ ଲାତ୍ ମାର୍‌ବା ଇଟା ଅନ୍‌ମାନ୍ ବାହାର୍ ଆଏ ।୩୩।
ପିନ୍‌ହ୍‌ଲା କରିଆ ଗେରୁଆ ନୁହେ ସୁନା ମେଡାଲ୍ ହଲ୍‌ଦିଆ
ସୋଇ୍ ଦିନେ ଅବ୍‌ଦିଥିତେ ଆଏଜ୍ ତ ଆଖ୍ଁ ଧୂଏଲ୍‌ଦିଆ ।୩୪।
ସବୁ ଚେରେଷ୍ଟା ଅଚଲ୍ ରଖି ମୁନି ବସିଛନ୍ ଜବଦ୍
ସୋର ଶବଦ୍ କାହିଁ ନାଏନ ଝାର୍‌ଟା ପୂରା ତବଧ୍ ।୩୫।
ବନେ ଘଡ଼େ ଗଲା ଉତ୍‌ରୁଁ ଆଏଁଖ୍ ଦୁହିଟା ଫିଟାଲେ
ଧିଆନ୍ ଭିତ୍‌ରେଁ ପାଏଲେ କା'ଣା ମୁହଁ ଫିଟାଇ ହିଟାଲେ ।୩୬।
ବୃନ୍ଦାବତୀ ରାନୀ ! ତୁମେ ସତୀ ପୂରାପୂରି ସତ୍
ତ'ବି ତୁମେ କେନ୍ କାର୍‌ନୁ ହେସ ଏତ୍‌କି ଦହସତ୍ ।୩୭।
ମଝି ଗୁଟେ କା'ଣା ଏନ୍ତା ଅଡ଼୍‌ଚନ୍ କଥାଟେ ହେଲା ?
ସେ କଥାକେ କଲା କାଏଁ ପର୍ଚ୍ଛାକରି ଅବ୍‌ହେଲା ? ।୩୮।
ସେନ୍ତା କିଛି କଥା ଥିଲେଁ କହ ମୁହେଁ ତମର୍
ଶୁନ୍‌ଲା ପରେ କରି ଦେଖ୍‌ମା ଆଏଦ୍ ଉପେ ଆମର୍ ।୩୯।
ଜଲନ୍ଧର୍ ତ ଭୁକ୍‌ତି ଥିତା ନିଜର୍ କପାଲ୍ କରମ୍
ଏତ୍‌କି ଦିନ୍ ବଅଁଚେଇଛେ ତୁମର୍ ସତୀ ଧରମ୍ ।୪୦।
ସତୀର୍ ଧରମେ ପତିର୍ କରମ୍ ବଦ୍‌ଲିବାର୍ ନୁହେ ଆଶ୍ରିଯ
ସତୀ ହେଲେଁ କାଁ କର୍‌ବା ପତି ହେଲେଁ କଦ୍‌ରିଜ୍ ।୪୧।
ଜାନିଛ ତ କହ ହେଲେଁ ଯଦି କିଛି ଘଟିଛେ ?
ସତୀ ବର୍‌ତେଁ ବଢ଼୍‌ବାର କଥା ଭିତ୍‌ରେଁ ଭାଏଲ୍ ଘୁଟିଛେ ।୪୨।
ଏକେ ରାତୁଁ ରାନୀର ମୁହେଁ ପାଏନ୍ ନାଇଁ ଝାଉଁଲିଛେ
ଅଜାନତେଁ ଦୁଖର୍ ଗଜା ପତର୍ ମେଲି ପାଆଁଲିଛେ ।୪୩।

ମୁନିର୍ କଥା ଶୁନି ରାନୀ ଅଗି ଜିଭ୍‌କେ ଚାବ୍‌ଲେ
କାନ୍ଦ୍‌ବାର୍ ମନ୍ ହେଉଥିଲା ପାରୁପରଯାଁତ୍ ଦାବ୍‌ଲେ ।୪୪।
ସତୀ କହେଲେ ପତି ତାକର୍ ଧରି ମହାଦେବ୍ ଦେଶ୍‌କେ
ପାର୍‌ବତୀକେ ପାଏମି ବଲି ଗଲେ କଏଲାସ୍ ବେଶ୍‌କେ ।୪୫।
ଭମାର୍ ରୂପେଁ ମୋହ ଯାଇଁ ଗିଆନ୍ ଗୁଚର୍ ହାର୍‌ଲେ
ଶିବର୍‌ଠାରୁ ନାଇଁ ହାରି ପାର୍‌ବତୀକେ ନାଇଁ ପାର୍‌ଲେ ।୪୬।
ପାର୍‌ବତୀ ତ ସତୀ ଆ'ନ୍ ତାକର୍ ଠାନେ କପଟ୍
କଲା ଦିନୁ ମତେ କେତା ସବୁ ଲାଗ୍‌ସି ଅଟ୍‌ପଟ୍ ।୪୭।
ଏତ୍‌କି କହି ବୃନ୍ଦାବତୀ ପର୍ଛା ହେଲେ ମଉନ୍
ମନ୍ ମରିଛେ ତନ୍ ଥରୁଛେ ନିଜ୍‌କେ ଲାଗେ ନିଭନ୍ ।୪୮

-୧୬-

ଅଥା ହଲକରି ମଏଧାନ୍ କାଏଁ ଥାକ୍‌ମାରି ଘାଏ ସୁତ୍ତେଇଛେ
ଚେହେରା ଢ଼ାପି ଛଏରା ତଲେଁ ଅହେରା ମାରି ନିତ୍ତେଇଛେ ।୧।
ଏଛ୍‌ନି ଏଛ୍‌ନି ଛନେ ହଉଛେ ମୁଡ୍ ଉପ୍‌ରୁ ବେଲ୍ ଢ଼ଲ୍‌କୁଛେ
ଘାଏ ହେଲାନ ଗଛର୍ ଛାଏ ମୁଲ୍‌କେ ଛାଡ଼ି ମଲ୍‌କୁଛେ ।୨।
କାଁ କଥା କାଏଁ କହେ ମଏଧାନ୍ ଝାରର୍ ପତର୍ କାନେ କାନେ
ଝାର୍ ବି 'ହୁଁ' କାର୍ ଦିଏ ପଣ୍‌କାର୍ ଘୁଟୁଘୁଉଁ ତାନେ ତାନେ ।୩।
ଧୁକା ବିଚ୍‌ରା ଥକା ମାରି ନୈ ଶୁନିପାରିଁ ଭୁଉଲଛେ
"କାଁ କଥା ଗା କହ" ବଲିଁ ପତର୍ ମାନ୍‌କୁଁ ହଲଉଛେ ।୪।
ଗଛର୍ ଫାଁକା ଦେଖି ବେଲ୍‌ଟା ଖରାର୍ ହାତେ ଉଠଉଛେ
ହଏରାନ୍ ହେଲା ମେତାଲ୍ ମଏଧାନ୍ ଜାନିକରି ବି ମଠଉଛେ ।୫।
ହେର୍ଣ୍ଣା, ଚିଥଲ୍, କୁରରି, ସମ୍ବର୍ ଭିଲ ବାନ୍ଧିକରି ଶୁଇଛନ୍
ବାଘ୍ ଭାଲୁ ସିଂହ୍ ଶାର୍ଦ୍ଦୁଲ୍ ଜାଗା ଜାନିକରି ଜୁହିଛନ୍ ।୬।
ସହଜ୍ ସୁତର୍ ସରଲ୍ ଲୁକର୍ ସତେଁ କାହିଁ ଥାବ୍ ନାଇଁ
ସେମାନ୍‌କୁଁ ଘାତି ଥିବାର୍ ଲୁକର୍ କେଭେଁ ଅଭାବ ନାଇଁ ।୭।
ଠାନ୍‌କେ ଠାନ୍ ସାଁପ୍‌ମାନେ ଜିଭ୍ ଲମାଇ ରଇଛନ୍
ନିଜର୍ ନାଇଁ ପରର୍ ଦୁଲିଁ ପଶ୍‌ବାର୍‌କେ ଡୁଇଛନ୍ ।୮।

ଭାବ୍‌ବାରକେ ନାଇଁ ପଡ଼େ ଇ କଥାଟା ସାଫ୍ ଆଏ
ପରର୍ ଚିଜ୍‌କେ ନିଜର୍ କରବାର ଲୋକ୍ ସଂସାରେଁ ସାଁପ୍ ଆଏ ।୯।
ସତୀ ବସିଛନ୍ ଯତିର୍ ଆଗେଁ ପତିର୍ କଥା ଶୁନ୍‌ବେ ।
କୁଲ୍‌କୁଲା ହଇ ଫାଟ୍‌ଲା ମନ୍ କେ ଆଏଜ୍ ଭାଏଲ୍ ତୁନ୍‌ବେ ।୧୦।
ପତିବର୍‌ତା ପନ୍ ଉପରେଁ ସତେଁ କେତେ ଭର୍‌ସା ଥିଲା
ଆଜିର୍ କେନ୍ତା ସେ ଭାବ୍‌ଟା ଆପେଁ ଆପ୍ ପରସି ଢ଼ିଲା ।୧୧।
ଗୋଟ୍ ଗୋଟ୍ କରି ପଛର୍ କଥା ସବୁ ଦକ୍ ଦକ୍ ଦିଶୁଛେ
ଫଟା ଛାତିଁ କଁଟା ବାଗିର ଚର୍‌ଚରାନୁ ପଶୁଛେ ।୧୨।
ଯେନ୍ତା ଭାବେଁ ମହାଦେବ୍-ବେଶ୍ ବାଁଧିଲେ ତାକର୍ ପତି
ସେ ବେଶେଁ କାଏଁ କେଭେଁହେଲେଁ ଠଗେଁ ପରତେ ପାର୍‌ବତୀ ।୧୩।
ସେ କଥାଟା କାଲ୍ ହେଲା କାଏଁ ଭାବି ମନ୍‌ଟା ଘୁରୁଛେ
ଅମଙ୍ଗଲର୍ ଭାବ୍‌ନା ମାନ୍‌କୁଁ ଗୁଟ୍ ଗୁଟ୍ କରି ଛୁଁଉଛେ ।୧୪।
ଏତ୍‌କି ବେଲେଁ ଘୋର୍ ଗର୍ଜନ୍ ଶୁଭ୍‌ଲା ରାନୀର କାନ୍‌କେ
ଦୁହୁଲାଇ ନେଲା ପୁର୍ଥୀ ଆକାଶ୍ ଦହଲାଇ ନେଲା ଜାନ୍‌କେ ।୧୫।
ଉହାଟି ଦେଖିଲେ ଉପରକେ.ସେ ଆକାଶ୍ ସାରା ମେଘ୍ ନାଇଁ
ଚାରହିଁ ଦିଗ୍‌କେ ନିଘା କଲେ ନାଇଁତ ପାଶେଁ ବାଘ୍ କାହିଁ ? ।୧୬।
ପରାସ୍ ପୂରା ହରାସ୍ ମନେ ଚାରିଦିଗ୍‌କେ ଦେଖୁଛନ୍
ସତୀର୍ ଧରମ୍ ପତିର୍ କରମ୍ ମନ୍-ନିକ୍‌ତି ନ ଯୁଖୁଛନ୍ ।୧୭।
ମାକର୍ ଦୁଇଟା କେ'ନ ଥିଲେ ଯେ ତାକର୍ ଆଗେଁ ଠିଆଡ଼୍
ହାତ୍‌ଗୋଡ଼ ଦିଶେ ଗଛ୍ ମେଡାଲ୍ ଦିହ୍ ଦୁଇଟା ପାହାଡ଼୍ ।୧୮।
ଝନ୍‌କର୍ ହାତେଁ କଟାମୁଡ୍ ଗଏଁଡ଼୍ ଆର୍‌କର୍ ହାତେଁ
ତଲେଁ ପକାଇ ରାନୀର୍ ଆଡ଼୍‌କେ ଢୁଲ୍‌ଗାଇ ନେଲେ ଲାତେଁ ।୧୯।
ସଏଦ୍ କଟା ଗଏଁଡ଼୍ ମୁଡ୍ ରକତ୍ ଶୁଖେ ନୁହେ
ମୁହେଁ ଚମ୍‌କେ ବୀରର୍ ତେଜ୍ ଅବ୍‌ତକ୍ ଲୁକେ ନୁହେ ।୨୦।
ଦିହେଁ ଦିଶୁଛେ ଲଢ଼େଇର୍ ପୁଷାକ୍ ହାତେଁ ସୁନାର୍ ବଳା
ବାହାମାନ୍‌କେଁ ବାଜ୍‌ବନ୍ଧ୍ ବେକେଁ ମାନିକ୍ ମାଳା ।୨୧।

ମୁଡ଼୍‌କେ ଦେଖି ଚିହ୍ନଲେ ରାନୀ ଇ'ଟା ତାଙ୍କର୍ ପତି ଆନ୍
ଯୁଗରାଇ ହଇଁ ପରଲେ ଭୁଇଁ ନୈ ରହେଲା ଦିହେଁ ଗିଆନ୍ ।୨୨।

## -୧୭-

ଘଡ଼େ ଛନ୍‌କେଁ ଚେତା ପାଇ ମନ୍ ହଉଛେ ରହି ଦହି
କୁତ୍‌କୁତା ଗୁବ୍‌ଗୁବା ହଇ ବୃନ୍ଦାବତୀ କାନ୍ଦୁଛନ୍
ମନର୍ ଦୁଖ୍ ଭିତର୍ ବଥା କେତେ କରୁଛେ ଅଥାବିଥା
ଦିହେଁ ନାଇଁନ କପଡ଼ାଲତା ରାନୀ କେ'ନ ଜାନୁଛନ୍ ।୧।
ଆଗେଁ ଥିଲେଁ ମଲା ପତି କା'ଣା ହେବା ନାରୀର୍ ଗତି
ଯେ ହଇଥିବା ସତେଁ ସତୀ ସେ ଅନ୍‌ମାନ୍ କରିବା
ଭୁକ୍‌ତି ଥିବାର୍ ମୁନୁଷ୍ ହେଲେଁ ଜାନ୍‌ବା ସିନା; କହେବା ବଏଲେଁ
ଭାଷା ନୁହେ ହଏ କେନ୍‌ସି କାଲେଁ, କେନ୍ ଭାଷା କହି ପାର୍‌ବା ? ।୨।
ସେ ଭାଷାର୍ ଅଖର୍‌ମାନେ ଲିଖା ଥିସନ୍ ମନର୍ କନେ
ପଢ଼ି ବୁଝ୍‌ବା ତାହାର୍ ମାନେ, ମନେ ମନ୍ ଯେ ଦେଖିବା
ଥୁଆ ମନ୍ ମୋର୍ ବୁଥା କଲମ୍ ପୁହୁଁଚିବାକେ କାଇଛେ ଦମ୍
ଯାହା ଲେଖିବା ହେବା କମ୍ ପାର୍‌ଲେଁ ହେଲେଁ ତ ଲେଖିବା ।୩।
ପତିର୍ କଥା ସୁମ୍‌ରି ସୁମ୍‌ରି ସତୀ କାନ୍ଦନ୍ ଗୁମ୍‌ରି ଗୁମ୍‌ରି
ଦୁଖର୍ ଛାଏ ସଁଭରି ସଁଭରି ଝାର୍ ଭରଭର୍ ଉଠେ
ରାନୀର୍ କକର୍ଥନା କାନ୍ଦି ଝାର୍ ପତ୍‌ରାର୍ ଅନ୍ଧି ସନ୍ଧି
ଗଛେଁ ପତର୍ ଦିଏ ବାନ୍ଧି ନାଇଁ ହଲ୍‌ବାର୍ ଗୁଠେ ।୪।
ସଭେ କରୁଛନ୍ ହାଏ ! ହାଏ ! ଥେବି ଯାଉଛେ ଧୁକା ଘାଏ
ଦୁଖେଁ ଦୁହୁଲି ଗଛର୍ ଛାଏ ଯାଆନ୍ ଲମି ଲମି
ଦୁଖ୍ ଉଠେ ବର୍‌ଲି ବର୍‌ଲି ବେଲ ବସେ କାଏଁ ତର୍‌ଲି ତର୍‌ଲି
ପଛିମ୍, ଆକାଶେଁ ସର୍‌ଲି ସର୍‌ଲି ଯାଉଛେ ସମି ସମି ।୫।
ଜୋର୍ ନଳିଆ ଝର୍‌ନା ନଈ ରାନୀର ଆଏଁଖ୍ କେ ଲହ୍ ଦେଇ
କାନ୍ଦି କାନ୍ଦି ମୁହଁ ଉଲ୍‌ମାଇ ଘାଉଁ ଘାଏକେ ଶୁଖୁଛନ୍
ବୁଝିକରି କାଏଁ କାନ୍ଦିର୍ ମାନେ ଝାରର୍ ଯେତେ ଚରେମାନେ
କାନ୍ଦି କାନ୍ଦି ନିଜର ତାନେ ଗୁଡ଼ାମାନ୍‌କୁଁ ଢୁକୁଛନ୍ ।୬।

ରାନୀର୍ କାନ୍ଦି ସରେ ନାଇଁ ଝାର୍ ଉଛଲେ ଧରେ ନାଇଁ
ରାଗ୍ ଘାଏ ଘାଏ ଫିରେ ନାଇଁ ଘଡ଼ିକେ ଘଡ଼ି ମୁର୍ଛା
କେଭେଁ ଚେତା ପାଇକରି କଟାମୁଣ୍ଡ୍ କେ ଆବ୍ରି ଧରି
କାନ୍ଦଲେଁ ପଡ୍‌ସି ଝିର ଝରି କଲଜା ଫାଟି ପର୍ଛା ।୭।
"ପତି ଗୋ ! ମୋର୍ ପରମେଶ୍ୱର ବର୍ହ୍ମାଠାନୁ ପାଇ ବର
ଦେହେଁ ତମର୍ କେତେ ବଲ୍ କେ ପାରବା ଜାନି
ଦେବ୍‌ତାମାନେ ଡ଼ରି ଡ଼ରି ରହୁଥିଲେ ଥରି ଥରି
ନୈ ଥକୁଥାଇଁ କରି କରି ତୁମର୍ ହୁକୁମ୍ ମାନି ।୮।
ତିନ୍‌ହି ପୁର୍‌କେ କରି ଖାଲି କେନ୍ ପୁର୍‌କେ ଗଲ ଚାଲି
ସେ ପୁର୍‌କେ ଛାଡ଼ିକରି ନୈ ଆସ କାଏଁ ଫିରି
ଆସ୍‌ବ ବଲି ଲଢ଼େଇ ଜିତି ମନ୍-ଦୁଆରେଁ ଦେଇ ଝୁଁଟି
ଆଶା-ଜାଗ୍‌ରେଁ ଜାଲି ବତୀ, ବାଟ୍ ଦେଖୁଥିଲି ।୯।
କେନ୍ ରାଏଙ୍କେଁ ରଜା ଆଜିର୍ ତମର୍ ସାଙ୍ଗେଁ ମୁଇଁ ବି ହଜି
ଯାଉଛେଁ ନୈ ପାଏଁ ଖୁଜି, ନିଙ୍କେଁ ନିଜ୍‌କେ ନୁରୁଛେଁ
ତମର୍ ଠାନେ ପରମେଶର ଦେଖୁଥିଲିଁ ତ ଅଠିପର୍
ନୈ ପାଇଁ ହଏ ହର୍‌ବର୍, ବାହାର୍ ଭିତର୍ ଝାରୁଛେଁ" ।୧୦।
ରାନୀର ଇ କଥା ଶୁନି ତରକ୍ ମରକ୍ ହେଲେ ମୁନି
ମୁନି କହେଲେ ଶୁନ ରାନୀ, ମୋର୍ ମନ୍‌ଟା କହୁଛେ
"ମା'ର୍ ଗରଭୁଁ ମଶାନ୍ ପଦା ଝରି ଝରି ସିଧା ସିଧା
ପାଣ୍ଣ୍ ପାଞ୍ଜର୍ କରି ଉଦା, ଜୀବନ୍-ନଏଦ୍ ବୁହୁଛେ ।୧୧।
କେନ୍‌ଟା ବେଶୀ କେନ୍‌ଟା କମ୍ କେନ୍‌ଟା ଛୋଟ୍ କେନ୍ ଲମ୍
ଜାନ୍‌ବାକେ ନୈ ବାହାରି ଦମ୍ ଝନେ ଏକା ଜାନୁଛେ
କମ୍ କାଦୋ ଜହ୍ ପାଏନ୍ ଥିଲେଁ ଥିସି ନଦୀର ମାଏନ୍
ସଭେ କଲେଁ ଧଏନ୍ ଧଏନ୍ ସେ ଭି ତାହାକେ ମାନୁଛେ ।୧୨।
ଯେନ୍ ନଦୀର୍ ପାଏନ୍ କାହିଁ ମୁହେଁ ଦେଇ ହୁଏ ନାହିଁ
ସେ ନଏଦ୍ ଥାଇ ନୈ ଥାଇ, ପର୍‌ଭେଦ୍ ନାଇଁ ଟିକେ
ନଦୀ ବୁହିଲେଁ ବିଷାନ୍ ପାନି ସବୁ ପରାନୀର୍ ହେଲେଁ ହାନି

ଗୁସିଆଁ ହେଲେଁ ଜାନି ଜାନି, ରଖିବା କାଏଁ ସେ ନଦୀକେ ।୧୩।

"ମୁନି ! ତୁମର୍ କଥାର୍ ଛଲ୍ ବୁଝିବାକେ ନାଇଁ ମନର୍ ବଲ୍
ଯାହା ଜାନିଛ ଭଲ୍ ଅଭଲ୍ ଫଟିକ୍ କରି କହ
ପତିର୍ ବିନା ସତୀର୍ ଗତି ଯାହା ହେସି ଜାନ ଯତି
ସେ କଥାକେ ଇଥି ସେଥି ନାଇଁ କର ଜହ" ।୧୪।

"ଶୁନ୍ ତେବେଁ ବୃନ୍ଦାବତୀ" ଯତନ୍ କରି କହେଲେ ଯତି
"ଜଳନ୍ଧର୍ ଯେ ତମର୍ ପତି, ଲଢ଼େଇ ଗଲେ ହାରି
କାଲ୍ ରୂପ କଏଲାସ୍ ପତି ଦେଲେ ପ୍ରାନୀର୍ ପରମ୍ ଗତି
ଯେନ୍ତା କାମ୍‌କେ ସେନ୍ତା ଭୁତି, ରଖିନେଲେ ଜାରି ।୧୫।

ପାପର୍ ବଢ଼େ ଜାବର୍ ଭରନ୍ ଜଲ୍‌ଜଲ୍ ଦିଶେ ଜଲନ୍ଧରନ
ଜାନି ଭିଆଲେ ମହାନ୍ ମନ୍ ଶିବ୍ ମଙ୍ଗଲ୍ ମୂର୍ତି
ଦେବ୍‌ତାମାନେ ହେଲେ ଥୟ ଉଭିଗଲା ତାକର୍ ଭୟ୍
ଗାଏଲେ ଶିବର୍ ଜୟ ଜୟ, ହାଏ କଲା ଘାଏ ପୃର୍ଥୀ ।୧୬।

ଶିବ୍ ଗଣକର୍ ଆଏଲା ଚଏନ୍ ଦୁଖ୍ ନଦୀନ ଧଏଲେ ଖଏଣ୍
ଧରି ରଜାର୍ ମୁଡ଼୍ ଗଏଣ୍ ନନ୍ଦି ଆଉର୍ ଭୃର୍କୁଟୀ
ନୈ ଦେଖିଲ ମାକର୍ ବେଶେଁ ଆସି ପକାଲେ ତମର୍ ପାଶେଁ
କହିଗଲେ କାଏଁ ତାକର୍ ଠାସେଁ ପାପ୍ ହେଲା କୁର୍କୁଟି ।୧୭।

ବୃନ୍ଦାବତୀ ଆଁଖିର୍ ପାନି କଥା ମାନ୍‌କୁଁ ସାନି ସାନି
କହେଲେ "ମୁନି ! ସତ୍‌ସତାନି ନାଇଁ ଲାଗିବାର୍ ଟିକେ
ସତୀ ଥାଇ ପତିର୍ ଜାନ୍ ଗଲେଁ ପତି ବରତର୍ ମାନ୍
କେ'ନ ରହେବା କାହିଁ ଠାନ୍ ? ପଲାବା କେନ୍ ନିକେ ? ।୧୮।

ସତର୍ ବନ୍ଧା ବର୍‌ଜନିଆଁ ଜାଇଁତା ଗଛ୍ ଦୁଇକେନିଆଁ
ଟାଡ଼୍‌ବାକେ ହୀନମନିଆଁ ? ଫାଲେ ରଖି ଫାଲେକେ
ଇ'ଟା କାର୍ ମାୟା ମହାନ୍ ମୁନି ! ତମର୍ ଧନ୍ ଧିଆନ୍
ଜାନିପାରବ ସେ କିଏ ଆନ୍ ? ମହାନ୍ ମାୟା ଚାଲ କେ ୧୯।

ମୁଇଁ ତ ଅଛେ ଜୀଇଁକରି ପତି କେନ୍ତା ଯିବେ ମରି
ଦିହ୍‌ରହେ କାଏଁ ଜୀବନ୍ ଧରି, ଆତ୍‌ମା ନାଇଁ ଥିଲେଁ

ସେ ଆତ୍‌ମା ନ ମିଶ୍‌ଲା ଦିନୁ ପରର୍‌ମାତ୍‌ମାକେ ଅନୁଖନୁ
ଦେଖୁଛେଁ ନାଇଁପାଣ୍ଡି ମନୁ, କେଭେଁ କେନ୍‌ସି କାଲେଁ" ।୨୦।
ଯତି କହେଲ "ସତୀପନେ କେତେ ବିଶ୍ୱାସ୍ ତମର୍ ମନେ
ମହାପ୍ରୁ ଦେଖି ପତିର୍‌ଠାନେ ଆଶ୍ରିକ୍ କଲ ପୁର୍ଥୀକେ
ମହାପ୍ରୁନ ପତି ଦେବ୍‌ତା ଦେଖିକର ତାର୍ ଚିନ୍ତା
ଦିନ୍ ସାରା ଆର୍ ରାଏତ୍ ସର୍‌ତା ଥିଇଁ ପତିର୍ ମୂର୍ତିକେ ।୨୧।
ମଲାଲୋକ୍ ତ ବଅଁଚେ ନାଇଁ ଛାଡ୍‌ଲା ଠାନ୍‌କେ ପୁହୁଁଚେ ନାଇଁ
ମର୍‌ବାର୍ ଠାନ୍ ଇ ମରତ୍ ଭୁଇଁ ଇ'ଟା ନୁହେ ଆନ୍
ତବି ସତେଁ ସତୀନାରୀ ସଏତ୍ ଯୁଗ୍ ନ ସାବିତିରୀ
ମୃତ୍ରୁର ମୁହୁଁ ଆନ୍‌ଲା ଧରି ପତି ସଏତ୍‌ବାନ୍ ।୨୨।
ହେନ୍ତା ହିଁ ତ ଜଗତ୍‌ପତି ଥାଆନ୍ ସବୁ ଜୀବର୍ ପତି
ସେ'ହିଁ ସମ୍‌କରର୍ ଗତି ମାନ ନାଇଁ ମାନ
ସେ'ହିଁ ସତର୍ ପତି ଜାନି ଘାଏ ହେଲେଁ ଦେଖ ମାନି
ଇଟା ମୁନିକର୍ ମତ୍ ରାନୀ। ଜବର୍ କରି ଜାନ" ।୨୩।
ଏତ୍‌କି କହି ମହାନ୍ ଯତି ଯୋଗ୍ ଧିଆନେ ରଖିଲେ ଥିତି
ସତ୍ କରି ସେ କଥା ସତୀ ସେ ବି ବସ୍‌ଲେ ଧିଆନେ
କାଁ କର୍‌ତେ ଦାସୀମାନେ ବୁଝ୍‌ଲେ କି ନି ଯୋଗର୍ ମାନେ
ଆଏଁଖି ମୁଜ୍‌ଲେ ନିଜର୍ ଠାନେ ଥାଉ ନାଇଁ ଥାଉ ଗିଆନେ ।୨୪।
ଝାର୍‌ଟା ବି ନିଝାଟ୍ ପରିଁ ସେ ଯୋଗେଁ କାଏଁ ହେଲା ଯୁରି
ଚରେମାନେ ଭି ତୁନ୍ ପରି ଧରି ବସ୍‌ଲେ ଗୁଡ଼ା
ଇ ଯୋଗର୍ କାଏଁ ପାଇଁ ଅଁତ ସର୍‌ପଟିଁ ଗଲେ ଝାର୍‌ର୍ ଜଁତ
ସଭାବ୍ ଛାଡ଼ି ହେଲେ ସଁଥି ନାଗ୍ ଚିଡି ବୁଡ଼ା ।୨୫।

## -୧୮-

ଜୀବନ୍ ପାଆଁଲିବାର୍ ବାଗିର୍ ପବନ ବୁହେ ହୁର୍‌ହୁର୍
ଝାରର୍ ଦିହୁଁ ମନର୍ ଚରେ ଛନ୍‌କି ଉଡ଼େ ଫୁର୍‌ଫୁର୍ ।୧।
କାଏଁ ମନ୍ତର ନେଇ ଆଏଲା ଇ ପବନ୍‌ଟା କେ ଜାନେ

ଜୀଇଁତା ଜଗତ୍ ତ ଉଲ୍‌ସି ଉଠେ ଶୁଖା ଠୁଠା ବି ନାଇଁ ମାନେ ।୨।
କେନ୍ ମହକ୍ ନେଇ ଆଏଲା ଧୁକା ବହଁକି ବହଁକି ବୁଲୁଛେ
ଦିହ୍‌କେ ଲହଁକି ମନ୍ ଭିତର୍‌କେ ତହଁକି ତହଁକି ଚାଲୁଛେ ।୩।
କେ ଲେସିଛେ କାଁ ଲେପ୍ ଯେ ବେଲର୍ ଧାସ୍ କେଡ଼େ ସୁରୁତ୍
ତପ୍‌ଲା ଦିହ ଗୁପ୍‌ଲା ମନ୍ ବାଟ୍ ଧରେ କେଡ଼େ ତୁରୁତ୍ ।୪।
ଫିର୍‌ଲା ଫଗୁନ୍ ଗୁନ୍‌ଗୁନାଇ ମହୁମାଛିର୍ ସୁରେଁ ସୁରେଁ
ଜୀବନ୍-ଗୀତର୍ ଗୁଟେ ରାଗ୍ କୁଇଲି ଧରେ କୁରେଁ କୁରେ ।୫।
ଆମ୍ ଗଛ୍‌ମାନେ ସମିୟା କାଣା ନାଇଁ ବାଆରି ଧଏଲେ ବଉଲ୍
କିଏ କାଁ କରି କୁଛି ବଲ୍‌ତା କୁଚି ଧରି ଆଏଲେ ମହୁଲ୍ ।୬।
ପଲ୍‌ସା ଫୁଲର୍ ଉଠେଁ ଉଠେଁ ଝାର୍ ପତ୍‌ରା ହଁସୁଛେ
କଅଁଳି କଅଁଳି ଲାଲିଆ ପତର୍ ଜିଭ୍ ଅଁଡ଼୍‌ଲାଇ ରସୁଛେ ।୭।
ଝାରର୍ ଚେହେରା ଫୁଲ୍ ହଇକରି ବଗ୍‌ବଗାନୁ ଗଲେ ଫୁଟି
ଆକାଶ୍ ବଲେ ରାତିର୍ ବେଶ୍ ତାର୍ କେତେବେଚ ନେଲା ଲୁଟି ।୮।
ନିଶବଦେଁ ଶବଦ୍ ହେଲା ଅଁଧାର୍ ଭିତର୍ ହେଲା ଉକିଆ
ପାଁଚ୍ ଭାଇ ହେଲେ ଭିତ୍‌ରୁଁ ବାହାର୍ ମନ୍‌କେ କରି ମୂଳ ମୁଖିଆ ।୯।
ଯୋଗ ବନ୍ଧନୁ ମନ୍ ମୁକ୍‌ଲେ ରାନୀର ଧିଆନ୍ ହେଲା ଆନ୍
ସତ୍ ଥିତିନୁ ସତୀ ଫିର୍‌ଲେ ଦିହ୍‌କେ ଫିର୍‌ଲା ଦେହେ ଗିଆନ୍ ।୧୦।
ମୁଢ୍‌ଲା ଆଏଁଖ୍ ଫିଟ୍‌ଲା କି ଖୁଜ୍‌ଲା ଲେଖେଁ ଦେଖୁଛେ
ଯାହାକେ ଦେଖୁଥିଲା ଅବ୍‌ତକ୍ ସେ ନାଇଁ କେନ ଲୁକୁଛେ ।୧୧।
ଆଏଁଖ୍ କେ ସେ ବାହାରୁଁ ମୁରି ଭିତର୍ ଆଡ଼୍‌କେ ମୁହାଁଇଥିଲା
କେଡ଼େ ବିରାଟ୍ ପର୍ମେଶର୍‌କେ ପତିର୍ କଁଟ୍‌କେ ଲୁହାଇଥିଲା ।୧୨।
ପର୍ମେଶ୍ୱର୍ କାଁ ରୂପ୍ ଆଏ ନାଇଁଜାନି ତ କେନ୍‌ସି ଦିନେ
ପତିର୍ ରୂପେଁ ପର୍ମେଶର୍‌କେ ବାଁଧି ରଖିଥିଲା ଧ୍ୟାନେ ।୧୩।
ପର୍ମେଶର୍ ତାର୍ ପତିର୍ ବେଶେଁ ମନ୍-ବେଦୀ ନ ଥିଲେ ବସି
ବୁଚ୍‌କେଇ କରି ତନ୍ ମନ୍‌କେ ସେନୁ ବାଁଧିଥିଲା କଷି ।୧୪।
ତନ୍ ଅଛେ ଆର୍ ମନ୍ ବି ଅଛେ, ମନର୍ ଦେବ୍‌ତା ଗଲେ କାହିଁ ?
ତାର୍ ଢଲାକା ନ ଆଏଁଖି ନୁରୁଛେ ମନ୍ ନୁରୁଛେ ଯାହିଁତାହିଁ ।୧୫।

ତାକର୍ କଥା ଶୁନ୍‌ବାର ଲାଗି କାନ୍ ଟାକିଛେ ଆଶା କରି
ତନ୍ ହଉଛେ ତତାପନା ପାହାଧୁଏଲ ଥିଁ ଯିବା ଗଡ଼ି ।୧୬।
ଜିଭ୍ ଲଲ୍‌ଚାଏ ପାଦ୍-ପଦ୍‌ମୁ ଝରଲା ମହୁ ନେବା ଚାଖି
ଫୁଲର ରେଣୁ ଅନୁଖନୁ ଶରୀର୍ ସାରା ହେବା ମାଖି ।୧୭।
ପଚ୍‌ରାବାକେ ନିଘାକଲେ ମୁନି ଯେନ ଥିଲେ ବସି
ସେନ କେନ ଥିତେ ମୁନି  କେନ୍ ଆଡ଼୍‌କେ ଗଲେ ଖସି ? ।୧୮।
ରାନୀର ଚୁରୁବୁରୁ ଶୁନି ଦାସୀ ଦୁଇଜନ୍ ଉଠ୍‌ଲେ ନ
ମୁନିକେ ଖୁଜା ନୁରା କାମେ ରାନୀର ସାଙ୍ଗେଁ ଜୁଟ୍‌ଲେ ନ ।୧୯।
ଉହାଟି ଉହାଟି ଚାରହି କୁଡି ସତୀ ନୁରୁଛନ୍ ଯତିକେ
ଆଶ୍ରିଜ୍ ହେଲେ ତାକର୍ ଆଡ଼୍‌କେ ଆସ୍‌ବାର ଦେଖି ପତିକେ ।୨୦।
ଶୁଖା ଠୁଠା ଟିକେ ନାଇଁ କେଡ଼େ ଡ଼ଉଲ୍ ଦିଶୁଛନ୍
ଦୁଖର୍ ଚିହ୍ନାବନା ନାଇଁ ମୁଲ୍‌କି ମୁଲ୍‌କି ହସୁଛନ୍ ।୨୧।
ଶଁଖ୍ ମରମର୍ ପଥର୍ ମେତାଲ୍ ଶରୀର୍ ସେନ୍ତା ଝଟ୍‌କୁଛେ
ଦେଖ୍‌ଲେଁ ଆଏଁଖ୍ ଫିରେ ନାଇଁ ଅଏନ୍ ଘଡ଼େ ଅଟ୍‌କୁଛେ ।୨୨।
କୁଚ୍‌କୁଚିଆ ବାଲର୍ ଉପରେଁ ହୀରାର୍ ମୁକୁଟ୍ ଭିରିଛେ
ରୂପ୍ ରାଏଜକେ ଲୁଟ୍ କରି ଏହ୍ନି କାଏଁ ଫିରିଛେ ।୨୩।
କୁନ୍ଦ୍‌ଲା ଚନ୍ଦନ୍ କାଠ୍ ଲେଖେଁ ଗୋଡ଼୍ ଦୁଇଟା କେଡ଼େ ଧଟା୍
ତାର୍ ଉପରେଁ ପାଟ୍ ପହରନ୍ ଧୋବ୍ ଖିଅ ଫୁଲ୍ ଚୁରସ ଧଙ୍ଗନ ।୨୪।
ହାତୀ ଶୁଣ୍ଢର୍ ମେତାଲ୍ ହାତ୍ ଅଁଟା ଛିଡି ଆଙ୍ଗୁରି ଲାମ୍
ବିଁଏ ଉପାରର୍ ମହାନ୍ ଛାଥି କବାଟ୍ ଅନ୍ଧୁ ଛିଡି ଥାଏ ।୨୫।
ରେଙ୍ଗାଲ୍ ନର୍ଡ଼ା ମେତାଲ୍ ବାଣ୍ଡା କେତେ ଫେଇଚେ ମ୍ରି ମୁ।
ଦେଖ୍‌ଲା ମାତ୍‌ରେଁ ଶତ୍‌ରୁ ବି ତ ମରୁଥିବେ ଝୁରି ଝୁରି ।୨୬।
ପୁଛି ଆନ୍‌ଲା ଲେଖେଁ କପାଲ୍ ତାହିର୍ ଭିତ୍‌ରେଁ ଟୀକା
କାଁ ରଙ୍ଗର୍ ଯେ ମୁହଁର୍ ଟେଙ୍ଗେ ଧଣ୍ଡା ଦିଶେ ଫିକା ।୨୭।
ଦୁହିଆଡ଼େ ଭୁଲ୍‌ତାନାନେ ଲୋକା ମିଧି ମିଧି ଧୁନ୍ ଧାଗିର୍
ଆଏଁଖ୍ ଦିଶୁଛନ୍ ବେଲ୍ ଦୁଇଟା ବସିଛନ୍ କାଏଁ ଲାଗିର୍ ଲାଗିର୍ ।୨୮।
ରାନୀ ଦେଖ୍‌ଲେ ଜୀବନ-ରାଏଜର୍ ରଜା ତାକର୍ ଆଏଲା ଫିରି

ପାଏନ୍ ଧାର୍ କାଏଁ ଆଏଲା ମାଡ଼ି ଶୁଖା ଭଟେଁ ଥିଲା ଝୁରି ।୨୯।
ପାଏନ୍ ଫାଟ୍ଲା ମନର୍ ଭାବ୍ କାଣା କହେତେ ବୃନ୍ଦାବତୀ
ଆଖୁଁ ଥିପ୍ଲେଁ ଥପ୍ ଥପ୍ ଶାମ୍କୋଲନୁ କାଏଁ ଝରେ ମୁତି ।୩୦।
ପାହାତଲେଁ ଘାଏ ପଡ଼୍ବେ ବଲି ଦଉଡ଼ି ଦଉଡ଼ି ଗଲେ ରାନୀ
କାଏଁ ପଡ଼୍ତେ ଉପ୍ରେଁ ଉପ୍ରେଁ ରଜା ଅଙ୍ଗେଁ ନେଲେ ଛିନି ।୩୧।

**–୧୯–**

ଜଲନ୍ଧରକେ ବୃନ୍ଦାବତୀ    ଜୀବନ୍ ଭର୍ ପାର୍ବେ ଭେଟି
ଆଶା ନାଇଁ ଥାଇ
ଗୁର୍ହେଇ ନେଲେ ଦେହେଁ ଦେହେ    କୁର୍ହେଇ ନେଲେ ସବୁ ସେନେହେ
ଭାଷା ନାଇଁ ପାଇଁ ।୧।
ଛଡ଼ାଛଡ଼ି ହେଲା ଦିନୁ    ଦୁଖ୍ ତ ନାଇଁ ଯାଇ ମନୁ
ପଥରେଇ ଯାଇଥିଲା
ସେ ସବୁ କାଏଁ ପାଏନ୍ ହଇଁ    ଆଖିର୍ ବାଟେଁ ବୁହି ବୁହି
ଆଏଜ୍ ନିଥିରେଇ ହେଲା ।୨।
ରାନୀ ଯେତ୍କି ଥିଲେ ଦୁଖୀ    ପତିରନ୍ ହସିଟିକ ଦେଖି
ସେତ୍କି ହେଲେ ଉଷତ୍
କେଭୁଁ କେଭୁଁ ମୁକି ହଇ    ଚଣ୍ ଦୁହିତା ଥିଲେ ରହି
ଆଏଜ୍ ପାଏଲେ ଫୁର୍ସତ୍ ।୩।
ପାଚ୍ଲା କୁନ୍ଦ୍ରୁ ଲମେ ଲମ୍    ଚିର୍ଲା ମେତାଲ୍ ସମେ ସମ୍
ମୁହଁ ଫିଟ୍ଲା ରାନୀର୍
"ଚାଲ୍ ଯିମା ଜୀବର୍ଧନ୍    ରାଜ୍ ମହଲ୍କେ ସଙ୍ଗେଁ ସଙ୍ଗ୍
ରହେମା ଆନିର୍ ବାନୀର ।୪।
ତମେ ଯାହିଁ ମୁଇଁ ତାହିଁ    ଛନେ ଆଉର୍ ଛାଡ଼େ ନାଇଁ
ଛଏରା ମେତାଲ୍ ଥିମି;
କୁଶେର୍ ଡ଼ାଙ୍ଗେଁ ଗୁର୍ ଯେନ୍ତା    ମଡ଼ାର୍ ସାଙ୍ଗେଁ ପୁର୍ ମେତାଲ୍
ଯାହିଁ ଯିବ ଯିମି" ।୫।

ଅଲପ୍ ହସି ଜଳନ୍ଧର୍ କଥା କହେଲେ କି ସୁନ୍ଦର୍
ରାନୀର ହାତ୍ ଧରି;
"ଧଏନ୍ ତୁମେ ବୁର୍ନ୍ଦାବତୀ ! ସତୀ ପନେ ଜୀଆଁଲ ପତି
ସ୍ତିରୀ ସଂସାରେ ଶିରୀ ।୬।
ମୋର୍ ଉପରେଁ ପଡ଼୍ଲେଁ, ଛିନି ନୈ ପାର୍ଲେଁ କାଏଁ ପତି ହେମି
ଧିକ୍ ପତି ହେବାର୍
ନିଜର୍ ଭାବେଁ ଲେଶ୍ ନାଇଁ ରଖିଁ, ସଁପି ହେଲେଁ ଯାଇ
ସତ୍ ସ୍ୱାମୀ ବଲ୍ବାର୍ ।୭।
ତୁମେ ମତେ ପତି କଲ ସ୍ୱାମୀ ବଲିଁ ବରିନେଲ
'ଏକ' ନାଇଁ ହେଲେଁ
କାଁ ଲାଭ୍ ଇ ଦେହ୍ ଧରି ଏକ୍ ନାଇଁ ପାର୍ଲେଁ କରି
କା'ଣା ଥାଏ ଆଉର୍ କାଁ କଲେଁ ।୮।
ନଏଦ୍ ସାଗର୍ ଭେଟାଭେଟି ହେଲେଁ କାଏଁ ଯାଏସନ୍ ଉଠି
ନୁରି ହେସନ୍ କାଏଁ ଠାନ୍?
ଦୁଇଟା ଦିହ୍ ପାଶାପାଶି ରହି କର୍ସନ୍ ମିଶାମିଶି
ଦୁହି ଆତ୍ମା ପ୍ରାନ୍ ।୯।
କେଡ଼େ ସୁନ୍ଦର୍ ଛିନା ଠାନ୍ ଦେଖିଲେଁ ଉଷତ୍ ମନ୍ ପ୍ରାନ୍
ଇ ଠାନୁ କାହିଁ ଠାନ୍ ?
ମନର୍ ଭୋକ୍ ମରେ ଯେନ ଦିହର୍ ଭୋକ୍ କାଏଁ ରହେ ସେନ
ଉଛୁର୍ ନୈ ସହେ ପ୍ରାନ୍ ।୧୦।
ଏତ୍କି କହି ରାନୀର୍ ଗାଲେଁ ଛିଇଁ ନେଲେ କଲେଁ କଲେଁ
ଗାଲେଁ ଉଦ୍ଲା ବେଲ୍ ;
ଅଁଧାର୍ ସବୁ ରାନୀର ଭିତ୍ରେଁ ପଲାଲେ ନିଜର୍ ବତ୍ରେଁ ବତ୍ରେଁ
ଉଜାଲା ହେଲେ ମେଲ୍ ।୧୧।
ଦୁଇଟା ରାଏଜେଁ ବାଜ୍ଲା ବଜା ଜଲନ୍ଧର୍ ସେ ଭାବର୍ ରଜା
ବୁର୍ନ୍ଦା ହେଲେ ରାନୀ
ପଲେଇ ବସ୍ଲେ ତତାପନା ଯେତେ ଯାହା ଦେହ୍ ଭାବ୍ନା
ହେଉଥିଲେ ସାନି ।୧୨।

ଦୁହି ରାଏଜର୍ ସୀମାରେଖା   କାହିଁ ଟିଖେ ନାଇଁଦେଖା
ଦୁହେ ସୀମାହୀନ୍ ;
ମନ୍-ଟାପୁ ନ ଥିଲା ଗର୍‌ଜି   ଯେନ୍ 'ମୁଇଁ' ସେ ଗଲା ହଜି
କାହିଁ ଛିନ୍ ଭିନ୍  ।୧୩।
ଦେହେ-ଖୋଲ୍‌କେ ତଲେଁ ଛାଡ଼ି   ସେ ରାଏଜ୍‌କେ ଗଲେ ଉଡ଼ି;
ଜନ୍ ବେଲ୍ କୁଏ,
ଯେନ୍ ରାଏକେଁ ତେଜ୍ ଧରି   ନେି ଠହରନ୍ ସାହସ୍ କରି
କେଭେଁ ହେଲେଁ କିହେ  ।୧୪।
ମନ୍ ପରାନ୍ ଗିଆନ୍ ଜିତି   କେତେ ଉପ୍‌ରେଁ ତାକର୍ ଥିତି
ନାପି ପାର୍‌ବା କିଏ ?
କେତେ ଗହେରେଁ ରହେଲା ଦିହ୍   ଦୁହୁଲିଗଲା ତାହାର୍ ନିହ୍
ଦୁହେ ଜାନନ୍ ନିହେ  ।୧୫।
ଅଖଣ୍ ରସ୍‌କେ ଚାଖି ଚାଖି   ମନ୍ ହଏ ଘାଏ ହେତେ ମାଖି
ହେଲେଁ ହେବେ କାଁ ଥି ?
ଦିହ୍ ରହେଲା କାହିଁଟା କାହିଁ   ସେ ନିକେ ଫେର୍ ଫିର୍‌ଲେଁ ଯାଇ
ହେବେ ମାଖି ରେଁତି  ।୧୬।
ଯେତେବେଲେଁ ହଁନ୍ଦଲେଇ ହେଲେଁ   ଚେତନା-ସମୁଦର୍ ଜଲେଁ
ଲହରୀ ଯାଏସନ୍ ଉଠି
ସେ ଲହରୀ ଯିବା କେନ୍‌କେ ?  ଉତାର୍‌କେ ଉତାର୍ ଦିହ୍-ଖଏଣ୍‌କେ
ଆସି ହେସି ପିଟି  ।୧୭।
ସୁଖ୍ ଦୁଖ୍ କି ଲାଜ୍ ସରମ୍   ଜାନ୍‌ବାର କି ମନର୍ ଭରମ୍
ନେଇ ଜୀବନ୍ ସତା ।
ଦିହ୍ ଖଏଣ୍ ଥିଁ ଠିଆ ହେଲେଁ   ସେ ଛଏରା ଚେତ୍‌ନା-ଜଲେଁ
ଆନ୍‌ସି କୁଆର୍ ଭଟା  ।୧୮।
ଆନନ୍ଦ-ସାଗ୍‌ରେଁ ପହଁରି ପହଁରି   ଦିହ୍ ଖଏଣ୍‌କେ ଆଏଲେ ବାହାଡି
ଏକ ହେଲା ଫେର୍ ଦୁଇ ।
ସମୁଦର୍ ରହେ ତାର୍ ଭାବେଁ   ନଏଦ୍ ବିଚ୍‌ରି ଥାବେଁ ଥାବେଁ

ଫେର୍ ଚାଲ୍‌ଲା ବୁହି ।୧୯।

ଖଞ୍ଜିଛେ ଯେ ବରାବର୍ ରାଜ୍-ହଂସ୍‌କେ ସରୋବର୍
ସାନ ଚରେକେ ଗୁଡ଼ାଟେ
ଖଞ୍ଜି ରଖିଛେ ଅଠିପର୍ ତିମି ମାଛ୍‌କେ ସମୁଦର୍
ଝାଇଁ ଝୁରିକେ ଗୁ ଡ଼ାଟେ ।୨୦।
ଯେ ଯେନ୍ତା ବୁଲି ଖେଲି ସାରି ଆଏସନ୍ ଠାନ୍‌କେ ଫିରି
ଚୁମକ୍ ସେଥିଁ ଲାଗିଛେ
ଯାହିଁ ଥିଲେଁ ବି ଆନ୍‌ବା ଟାନି ସାନ୍ ବଡ଼୍ କିଛି ନାଇଁ ମାନି
ଛାଡ଼ି କିଏ କେନ ଭାଗିଛେ ।୨୧।
ଜଲନ୍ଧର୍ ଆର୍ ବୃନ୍ଦାବତୀ ଫିରି ପାଏଲେ ଦିହର୍ ଥିତି
କେନୁ ଥାଇ କେନ୍‌କେ ଆଏଲେ କା'ଣା ହଜାଇ କା'ଣା ପାଏଲେ
ଭାବ୍‌ନା-ଭିତ୍‌ରେଁ ଭାସୁଛନ୍ ।୨୨।

## -୨୦-

ଗଙ୍ଗାଧର୍ ଆର୍ ଜଲନ୍ଧରର୍ ମାରଧର୍ ସରେ ନିହେ
ଅଡ଼େଇ ନୁହନ୍ ଲଡ଼େଇ ଠାନୁ ବଡ଼େଇ ନାଇଁ ଛାଡ଼ନ୍ କିହେ ।୧।
ବାହାବଲ୍‌ର ବାହାଦୁରି ଥି ବାଃ ବାଃ ନୁରେ ଯେଁ ପାଏବାକେ
ପଶୁର୍ କବାର୍ ଅସୁର୍ ବେଭାର୍ ସୁର୍-ସଂସାରେଁ ସହେବା କେ ? ।୨।
ଦିହ୍‌କେ ଯେ ନିହ୍‌କରି ଇହ୍‌କାଲର ମହଲ୍ ବନାଏ
ପରକୁତ୍ ଥିଁ ପରକାଲ୍ ତାର ପରମାଦ୍ ନ ଭନ୍‌ଭନାଏ ।୩।
ଜଡ଼୍ ଶରୀର୍ କେ ଜଡ଼୍ କରି ଯେ ବଡ଼୍ କର୍‌ସି ଥିତିକେ
ନିଜେଁ ବଜେଇ ନିଜର ବଜା ଖିଜେଇ ହେସି କ୍ଷିତିକେ ।୪।
ସଁକ୍‌ରି ଯାଏସନ୍ ଦେବ୍‌ତାମାନେ ଙ୍କ୍‌ରି ଉଠ୍‌ବାର୍ 'ମୁଁ' କାର୍ ଦେଖି
ତାର୍ ଦେଲା ଦିହେଁ ଦିମାକ୍ କେତେ ଦିହ୍-ଦିଆ ଦେବ୍ ହେସି ଦୁଖୀ ।୫।
ଦେହେଥିଁ ଟାନ୍ ତାମ୍ନିକ ଧାନ୍ କେତେ ଧର୍‌ବା ଯେ 'ମୁଇଁ ମୁଇଁ'
ହେସି ଅବ୍‌ତାର ମହାଦେବ୍‌ତାର ନିଘା କର୍‌ସି ଜୁହିଁ ଜୁହିଁ ।୬।
ଦେହ୍-ଦେବ୍‌ତାର ଦେହେରୀମାନେ ତପ୍ ତପ୍‌ସନ୍ ଦେହର୍ ଲାଗି
ମରତ୍ ଭୁଇଁ ନ ଜନମ୍ ନେଇ ଅମର୍ ବର୍ ମରନ୍ ମାଗି ।୭।

ଦେହ୍‌ଟା ଯାହାର୍ ସର୍ବସ ଆଏ  ଦିହ୍‌ଟାକେଁ ଭୋକ୍ ମରେ ନାଇଁ
ଦେହ୍-ଲଲ୍‌ହିଆ ଦେହ୍ ଦେଖିଲେଁ ଉବ୍‌ଡ଼ା ପଡ଼୍‌ବାର ସରେ ନାଇଁ ।୮।
ଦେହ୍-ଭାଉଁରେ କିନ୍ତୁଥିସି ଦେହ୍-ଧରମୀର  ଧରମ୍ କରମ୍ ;
ଧରମ୍ ନୁହେ କି କରମ୍ ନୁହେଁ ନାଇଁଜାନେ ସିନା ପର୍ଛା ଭରମ୍ ।୯।
ହେନ୍ତା ଝନେ ଜଲନ୍ଧର୍ ଆଏ ଧରତୀକେ ହଏ ଅଲ୍‌ହନ୍‌ଟେ
ମନ୍ ଅରନା ତନ୍ ଅରନା ଅଲ୍‌ନା କଲା ଜୀବନ୍‌ଟେ ।୧୦।
ଜଲନ୍ଧରର୍ ଜୀବନ୍-ନଏଦ୍  ସଁପୁର ଧାରାଟେ ବୁହୁଥିଲା
କଲେଁ କଲେଁ ଶୁଖିବାର୍‌କେ କାଲ୍ କେଭୁଁ ଜୁହୁଥିଲା ।୧୧।
ହାତ୍ ଧଏଲା କି ବୃନ୍ଦାବତୀର୍ ସାତ୍ ସମୁଦରର୍ ପାଏନ୍ ଆସି
କେ କଲ୍‌ବା ସେ ଧାର୍‌କେ ଯେଭୁଁ ଧାରେଁ ଗଲା ମିଶି ।୧୨।
ସତୀ ବୃନ୍ଦାପତିର୍ ଠାନେ ଥାପି ରଖିଲା ପରମେଶର୍
ଜୀବନ୍ ଜୁଗ୍‌ଲା ଜୀବନ୍ ଦାତା ଦେହ୍‌ଟା ସିନା ଜଲନ୍ଧର ।୧୩।
ପରସିରୀ ନ ମନ୍ ଦେଇ ସେ ମହାନ୍ ଧାର୍ରୁଁ ବିଖିରିଗଲା;
ପାଟ୍ ସାଙ୍ଗେଁ ପଟ୍ ବଟି ହଇଥିଲା ପଟ୍ ଆପେଁ ଆପ୍ ଉଖିଲିଗଲା ।୧୪।
ବୃନ୍ଦାବତୀ ପତିର୍ ଠାନୁ ପରମେଶର୍‌କେ ଘୁଚେଇ ନେଲା;
ପର୍ମେଶର୍ ନ ପତିର୍ ରୂପ୍‌କେ ଧିଆନ୍ ବଲେଁ ଉଁଚେଇ ନେଲା ।୧୫।
ଜଲନ୍ଧର୍ ନ ରହେଲା ଖାଲି ଅସୁର୍ ବଲର୍ ଗଏଣ୍‌ଟେ
ଜୀବନ୍-ନଦୀର୍ ଧାର୍ ଶୁଖିଲା ରହେଲା ଗଖା ଖଏଣ୍‌ଟେ ।୧୬।
ଲଢ଼େଇ ନୁ ତାର୍ ବଢ଼େଇ ଗଲା ଦେବ୍ ଶକ୍‌ତି ନାଚୁଛେ;
ମହାକାଲ୍ ସେ ମହାଦେବ୍ ଆଏଜ୍ ଅସୁର୍ ମରନ୍ ପାଁଚୁଛେ ।୧୭।
ଦେହର୍ ଶେଷଟା ଖାର୍ ଆଏ ଖାଲି ସେ ଖାର୍ ସେ ମାଖିସି
ଦେହ୍‌କେ ନେଇ 'ମୁଁ କାର୍' ଯେତେ ହୁଁ କାର୍ କଲେଁ କାଏଁ ରଖିସି ? ।୧୮।
ଶିବ୍ ନାଚୁଛନ୍ କିନ୍ଦ୍ରି କିନ୍ଦ୍ରି ଅସୁର୍ ସଏନ୍ କଧରୁଛନ୍
ଭେଲା ବାନ୍ଧକରି ଲଢୁଥିଲେ ଯାହା ଖଣ୍‌ଖେଣ୍ ହଇ ବିନ୍ଦୁଛନ୍ ।୧୯।
ଜଲନ୍ଧରର୍ ନିଡ଼ର୍ ମନେ ଡ଼ର୍ ପଶିକରି ଘାଁଟୁଛେ;
ଘାଏଲା ବାଘ୍ କାଏଁ ଦେହର୍ ଘା'କେ ଲେହେଁଟି ପୁଲ୍‌ଟି ଚାଟୁଛେ ।୨୦

"ଇ ମହାଦେବ୍ ମହାନ୍ ଆଏ ଲଡ଼େଇ ଭୁଇଁ ନ ନାଚୁଛେ
ଘାଏ ହଁସି ବନେ ଘାଏ ଘାଏ ରାଗେଁ ରାଗେଁ ଫେର୍ ପାଚୁଛେ ।୨୧।
ତନ୍‌କେ ଦେଖାଇ ଡ଼ବ୍‌ଡ଼ବାନୁ ନାଚେ ତାଣ୍ଡବ୍ ନାଚିଟେ
ମତେ ଆର୍ ନାଇଁ ଡ଼ର୍‌ବାର୍ ତାର୍ ନଙ୍କ୍‌ରେଁ ମୁଇଁ ମାଛିଟେ ।୨୨।
କେଡ଼େ ତୁଡୁଁ ତାର୍ ତିର୍ଶୁଲ୍ ତୁର୍‌ତି ତୁର୍‌ତି ବେଧୁଛେ
ପାଶୁପତ୍‌ଟା ଅସୁର୍ ସଏନ୍‌କୁ ପାଶୁ ପାଶୁ ଛେଦୁଛେ ।୨୩।
ଘୁମ୍‌ରି ଯାଉଛେ ଡ଼ମ୍‌ରୁଟାକ ଆଁ କରୁଛନ୍ ସାଁପ୍‌ମାନେ
ଡ଼ଁସି ନେଉଛନ୍ ଭିଲେଁ ପଶି ଝନେ ବି ନୈ ରଖନ୍ ଜାନେ ।୨୪।
ଗଙ୍ଗାର୍ ଧାରେଁ ଯେ ପଡୁଛେ ଭଙ୍ଗା ହାଡ୍‌ଗୁଡ଼େଁ କପ୍‌ସୁଛେ
ଷଣ୍ ବଲ୍‌ଦ୍‌ଟା ଗୁଡ଼େଁ ମୁଡ଼େଁ ଯାହାକେ ପାଉଛେ ହାପ୍‌ସୁଛେ ।୨୫।
"ମୋର୍ ବେକେଁ ଫାଶ୍ ପକାଇ କେ ଘାଉଁ ଘାଏକେ ଭିଡୁଛେ
ମତେ ଲାଗ୍‌ସି ଜୀବନ ଗଛର ମୁଷ୍‌ଲି ଚେର୍ ମୋର୍ ଛିଁଡୁଛେ" ।୨୬।
ରସ୍‌ଲା ବାଗିର୍ ଲାଗେ ଦିହ୍ ବସ୍‌ଲା ବାଗିର୍ ଦୁହି ଧର୍
କା'ଣା ହେଲା କାରଣ ନୁରେ ଅବାରଣ୍ ସେ ଜଲନ୍ଧର୍ ।୨୭।
ଉମାର୍ ଚେହେରାର୍ ଚରା ଆନି ଗରିକଁଟା ଥି କେ ଫାନ୍ଦ୍‌ଲା
ସଂସାର୍-ସାଗରର୍ ତିମିଙ୍ଗିଲ୍‌ଟାକେ ମନ୍‌ମାନା ଆଏଜ୍ ବାନ୍ଧ୍‌ଲା ।୨୮।
କିଏ ଜାନିଥିଲା ସେ କବାରେଁ ମିଲ୍‌ସି ବର୍ଲି ଏନ୍ତା ସଜେ;
ପରର୍ ଚିଜ୍‌କେ ଲୁଭେଇହେଲେଁ ସତେଁ ଗିଆନ୍ ଗୁଚର୍ ହଜେ ।୨୯।
ସ୍ୱର୍ଗାକରେ "ବୃର୍ଥା କର୍ଲି ଜୀବ୍‌ଟାକେ ସୋଜ୍ ସୋଜ୍
ପୁର୍ଥୀର ସାଜୋ ହଇଥିତିଁ ମରେଁ ଆଏଜ୍ ହଇଁ ବୋଝ୍" ।୩୦।
ଏତ୍‌କି ବେଲେଁ ତିର୍ଶୂଲ୍ ଆସି ହୁର୍ଶୁଲି ହେଲା ଛାତିଁ ତାର୍
ଗର୍ଏଁଡ଼୍ ସେନ ଗଦେଇ ହେଲା ପ୍ରାନ୍ ପଲାଲ ପର୍ ପାର୍ ।୩୧।

## –୨୧–

ଦୁଖୁଁ ମୁକ୍‌ତି ପାଏଲା ଜାନି କେତେ ତୁର୍‌ତି ପୁର୍ଥୀରାନୀ
ସୁନେଲି ପନତ୍ ଆନ୍‌ଲା ଟାନି ମୁଡ଼େଁ ଦେଇ ଟୁଡ଼େଁ ହଁସୁଛେ
କଲା ରାଏତ୍‌କେ ଖେଦି ଖେଦି ବେଲ୍ ଆଉଛେ ଉଦି ଉଦି

ଅଁଧାର୍ ସଥେଁ ନର୍‌ଦି ନର୍‌ଦି ପଛିମ୍ ପୁର୍‌କେ ପଶୁଛେ ।୧।
ରାତିର ଯେତେ ତରାମାନେ ବିଛି ହେଲେନ ସବୁଠାନେ
ନାଇଁ ଜାନିକରି ଜଗତ୍ ଜନେ ତାହାକେ ବଏଲେ ଖରା ଆଏ
ଦିନର୍ ବେଲେଁ ପୁର୍ଥୀ ସାରା ତର୍ହୁଁ ଠୁଲୁଁ ସବୁ ଭରା
ରାତି ମହତ୍ ଯାଏ ମାରା ମଝି ଥିଲେଁ ବି ତାରା ଆଏ ।୨।
ହଁସି ଫୁଲେଁ ଫୁଲେଁ ଲେସି ଜଲ୍‌ଦି ଦୁଖ୍ ଉଲ୍‌ଦି ନେସି
ଚରେର୍ ସୁରେଁ ଗୁନ୍‌ଗୁନାସି ମହାଦେବ୍ ତାର୍ ଗୁନ୍‌କେ ।
ଗଛେଁ ଡ଼ାଲେଁ ପତ୍‌ରେଁ ପତ୍‌ରେଁ ଉଜାଲା ନଚାଇ ବତ୍‌ରେଁ ବତ୍‌ରେଁ
ବୁଝୁଛେ ଭାଏଲ୍ ଭିତ୍‌ରେଁ ଭିତ୍‌ରେଁ କେ ଶୁଝେ ତାର୍ ରନ୍‌କେ ।୩।
ରାଏତ୍ ସରେ ବୃନ୍ଦାବତୀର ସପନ୍ ସରେ ନାଇଁ ସତୀର୍
ଯେନ୍ ସୁଖ୍ ସେ ପାଏଲା ପତିର୍ ଭିତର୍ ବାହାର୍ ଘୁମ୍‌ରୁଛେ
"ଇ ସୁଖ୍ ତ କେଭେଁ କାହିଁ ଘାଏକର୍ ଘାଏ ପାଇ ନାଇଁ
ସେ ଥିଲେ ତ ଥିଲି ମୁଇଁ, ଆଜିର୍ ସୁଖ୍‌କେ ସୁମ୍‌ରୁଛେ ।୪।
ହେଉଥିଲା ତ ପତିର୍ ସଙ୍ଗ୍ ଭୁଲିହୁଏ ସେ ଭାବର୍ ରଙ୍ଗ
ସଙ୍ଗେଁ ସଙ୍ଗ୍ ବି ହଏ ଭଙ୍ଗ୍ ପାଏନ୍ ଲେଖେଁ ଯାଏ ଅଁଟି
ରସ୍ ବଏଲେଁ ଇ'ଟା ଆଏ ସେ'ନ ବୁଡ଼ି ପାର୍‌ଲେଁ ଘାଏଁ
କେତେ ଜନମ୍ ମନୁ ନାଇଁଯାଏ କେତେ ଗଛେର୍ କେ ପାରେ କଁଟି ।୫।
ମୋର୍ ପତି ତ ଜଲନ୍ଧର୍ ଆଏଜ୍ କେନ୍ତା ଏତେ ସୁନ୍ଦର୍
ତେଇଁ ହାର୍‌ବେ ସୁରୁଜ୍ ଚନ୍ଦର୍ କେନ୍ କାର୍‌ନୁ ନାଇଁହେବାର୍ ଜାନି
ରହେତା ପରେ ଆଜିର୍ ଥିତି ସରଗ୍ ମତେ ହେତା କ୍ଷିତି
ଅନୁଖନ୍ ଦେଖୁଥିତିଁ ଜଗତ୍ ଜିତା ତାକର୍ ରୁପ୍‌ଠାନି ।୬।
ଏତ୍‌କି ଭାବି ବୃନ୍ଦାବତୀ ପତି ଆଡ଼୍‌କେ ଦେଖ୍‌ଲେ ସତୀ
ପତିର୍ ଠାନେ ଜଗତ୍‌ପତି ବସି ମୁଲ୍ ମୁଲ୍ ହଁସୁଛନ୍
ହଁସି ନୁହେଁ ହଁସିଆ ନେଇ ସତୀ ଦୁର୍‌ଦୁଁ ଆନ୍‌ଲେ ଜାଣି
ସତୀ ଥିଲା ଯେନ୍ ଫଲ୍ ଫଲାଇ ଆର୍ ଥିବା ଭାଏଲେ ତୁଷୁଛନ୍ ।୭।
ବିଷ୍ଣୁ ଦେଖି ଏନ୍ତା କିହେ ଉଷତ୍ ନାଇଁ ହଇ ରହେ ?
କାଠ୍ ହେଲା ବୃନ୍ଦାର୍ ଦେହେ ଆଜିର୍ ଉଲ୍‌ଟିଆ କଥା

ପର୍ ପୁରୁଷ୍‌କେ ପତି କରି ସଙ୍ଗ୍ କରିଥିଲେଁ ସତୀ ନାରୀ
ଜୀବନ୍ କେନ୍ତା ନାଇଁଯାଏ ବଲି ରୁଷ୍ ରୁଷ୍ କାନ୍ଦୁଛନ୍
ଯେନ୍ ଦିହ୍ ଦେଖିବାର୍ ଲାଗି ଯୁଗ୍ ଯୁଗ୍ ଯୁଗୀ ରହନ୍ ଜାଗି
ସେ ଦେହର୍ ସେ ହେଲେ ଭାଗୀ ହେଟା କେନ ଜାନୁଛନ୍ ।୯।
"ଇ ଜୀବନ୍ ନେଇ କାହିଁ ଜୀଇମି ଇ ମନ୍‌କେ କାହିଁ ଥୁଇମି
ଇ ଦେହର୍ ବୋଝ୍ କେନ୍ତା ବୁହିମି ହଇଁଗଲାନ ଅଏଁଠା
ବିନ୍ ପାନିର୍ ମୁଇଁ ହେଲିଁ ଦରିଆ ବିନ୍ ଛାନିଥିଁ ମାଏଟ୍ କୁରିଆ
ବିନ୍ ଘାସେଁ ଫେର୍ ଶୂଇନ୍ ପରିଆ ବିନ୍ ବଏଲ୍‌ତାର ବଏଠା" ।୧୦।
ବିଷ୍ଣୁ ମୁହଁକେ ସାମ୍‌ନା ସାମ୍‌ନି ନୈ ଦେଖିପାରନ୍ ବୃନ୍ଦାରାନୀ
ଆଉ୍ ମୁହେଁ ପୁଛି ଆଖିର୍ ପାନି ହେଁକେଇ କହେଲେ "ହରି !
ତୁମେ ଧରମ୍ ରକ୍ଷାକାରୀ ଚାରିଯୁଗେଁ ପଡ଼୍‌ସି ହୁରି
ସତୀ ଧରମ୍ ମୋର୍ କାଣାକରି କଲ ଚୁପ୍‌ଚାପ୍ ଚୁରି ।୧୧।
ସୋର୍ କରୁଛେଁ ଚୋର୍ ବାଗିର୍ ଘୋ ମାୟା ମୋର୍ ଲାଗିର୍
କରି, କପଟ୍ ବେଶ୍ ଯୁଗୀର୍ ଘାଏକେଁ ଧରି ପକାଲ
ଶଏ କଥାଥିଁ ଭୁଲ୍‌ବା ସତୀ ବର୍ଲି ହେଲ ମିଛର୍ ଯତି
ମାକର୍ ହାତେଁ ମୋର୍ ପତିର୍ କଟା ମୁଡ୍ ଗଏଁଡ୍ ଦେଖାଲ ।୧୨।
ଯାହା ବୁନ୍‌ଲେଁ ତାହା ଫଲ୍‌ସି ଯେନ୍ତା କଲେଁ ସେନ୍ତା ମିଲ୍‌ସି
ସବୁ ନୀତି ନିୟମ ବଲ୍‌ସି ସତ୍ ଆଏ ଇଟା ମାନ
ତୁମେ ଦିନେ ଯତିର୍ ବେଶେଁ ବୁଲି ବୁଲ୍‌ବ ଅରେନ୍ ଦେଶେଁ
ଚୁରି ହେବା ଫେର୍ ପର୍ ପୁରୁଷେଁ ତମର୍ ନାରୀ ଜାନ ।୧୩।
ତୁମର୍ ମାୟା ମୁଡ୍ ମାକର୍ ଆନି ପକାବେ ପାଶେଁ ତାକର
ଯାଚି ହେବା ଜଗତ୍ ଯାକର୍; ହୀନ୍ କପାଲୀ କହୁଛେ
ତାକର୍ ଏକା ସତୀପନ୍ କିହେ ନାଇଁ କରନ୍ ହରନ୍
ନାରୀ (ମୁଇଁ) ଜାନେ ନାରୀର୍ ମନ୍, ସେ'ଟା କେନ୍ତା ଦହୁଛେ" ।୧୪।
ବିଷ୍ଣୁ ବଏଲେ "ବୃନ୍ଦାରାନୀ ! ତୁମର୍ ଶାପ୍ ନେଲି ଛିନି
ସତେଁ ମୁଇଁ ତ ହେସି ଘିନି, ଆଏଲ୍ କାଁ କରି ନଟ୍‌ମି;

ଭଲ୍ ହେଉ କି ମନ୍ଦ୍ ହେଉ          କପଟ୍ ହେଉ କି ଛନ୍ଦ୍ ହେଉ
ଆର୍ ଭାଏଲ୍ କେନ୍ ଦ୍ୱନ୍ଦ୍ ହେଉ କାଁ ହେଲା ଯେ ଘାଏ ହଟ୍‌ମି ।୧୫।
ତନ୍‌ଧାରୀର୍ ମନ୍‌କାମନା          କର୍‌ବାକେ ପୂରା ଭରନା
ଦିହ୍ ଧର୍‌ବାର୍ ମୋର୍ ଭାବ୍‌ନା          ବନିହାଁ ଦିନୁ ବି ଅଛେ;
ନେମି ଦିନେ ରାମ୍ ଅବ୍‌ତାର          ଇ କଥାର୍ ଥିଲା ଦର୍‌କାର
ଦେଇ କଲ୍ ବଡ଼ ଉପକାର ଯେ ଯାହା ବଲୁ ପଛେ ।୧୬।
ମୁନୁଷ୍ ଦିହର୍ କୁର୍ତା ପିନ୍‌ହି          ତୁମର୍ ଶାପର୍ ପଏସା ଗନି
ଜଗତ୍-ଯାତ୍‌ରା ଦେଖି ଆଏମି ଇ କଥା କାଏଁ ନୂଆଁ ଆଏ
ଦିହ୍‌ର ଦୁଖ୍‌କେ ଦୁଖ୍ ବଲି          ଦିହ୍‌ମନା ମାନେ ମରନ୍ ଭୁଲି
ଦିହ୍‌ଟା ଯାହାକେ ପିନ୍ଧ୍ ନା ଖାଲି ଦୁଖ୍ ତାହାକେ ଧୁଆଁ ଆଏ ।୧୭।
ତୁମର୍ ପତିବର୍‌ତା ଆଚାର          ହଇଥିଲା କେତେ ପର୍‌ଚାର
ସତୀର୍ ବୁଦ୍ଧି ଶୁଦ୍ଧି ବିଚାର୍ ଅସୁର ସଙ୍ଗେଁ ଥି ନଶାଲ;
ପତିର୍ ଠାନେ ମତେ ଆନି          ତାର୍ କଁଟେଁ ଘିଚି ଟାନି
ମନ୍-ଦଉଲେଁ ମନର୍ ରାନୀ! ବନେ ବର୍‌କସେଁ ବସାଲ ।୧୮।
ଜଳନ୍ଧର୍‌କେ ଗୁଡ଼ା କରି          ମତେ ନେଇ ଦେଲ ଭରି
ଭକ୍ତି-ରସର୍ ରଶି ଭିରି ବାନ୍ଧିଛନ୍ଦି ରଖିଲ
ଭକ୍ତି ଥି ମୁଇଁ ହେସିଁ ସାଏତ୍          ନାଇଁ ଉହେ ମୋର୍ ରଁଚେ ଆଏତ୍
ସବୁଥାଇ ହେଲେଁ ଭକ୍ତିର କାଏତ୍ ମତେ ଆର୍ କେନ ଦେଖିଲ ।୧୯।
ସେ ଗୁଡ଼ା ନେଇ ଆଏଲି ପାଶ୍‌କେ          କାହିଁ କାଟ୍ ତିଁ ତମର୍ ଆଶ୍‌କେ
ଉସ୍ତୋ ହଇ ନିରଦୋଷକେ ଶଁପିକାଟି ପକାଲ;
ଦୋଷ୍ ଦୁର୍ଗୁନ୍ ମତେ ଦେଇ          ରୋଷ୍ ରାଗ୍ ନୁ ପାଏଲ ତ୍ରାହି
କାଲ୍ ସିନ୍ଧ୍‌କେଁ ଯଶ୍‌କେ ଥୁଇ ମୁଦେଁ ନାଁ ଦେଇ ଲେଖାଲ ।୨୦।
ସବୁଠାନେ ସବୁ ଦେହେଁ          ଜୁହି ଜୁହି ମୁଇଁ ରହେଁ
ଯେ'ଭି ଯେଭେଁ ଯେନ୍ତା ଚାହେଁ          ସେନ୍ତା ତାହାକେ ମିଳ୍‌ସିଁ
ଜଳନ୍ଧରର୍ ରୂପେଁ ମତେ          ଖୁଜା ନୁରା କଲ ଯେତେ
ନାଇଁ ଆଏଲେଁ କହେତ କେତେ କାଁ ଢ଼ଙ୍ଗେଁ ହେଲେଁ ଟାଳ୍‌ସି" ।୨୧।
ବିଷ୍ଣୁ କଥା ଶୁନି ଶୁନି          ବୃନ୍ଦା ସତୀ-ରାଏଜ୍-ରାନୀ

ରଖି ନୈ ପାରି ଆଖିର ପାନି କହେଲେ "ମୁହିଁକେ ତଲ୍ କରି;
ଦିହ୍ ଦେଇକରି ମନ୍ ଦେଇଛ ତାହିର୍ ଭିତ୍ରେଁ ଯାଇ ରହିଛ
ଜାନି ଜାନିକରି କାଏଁ ଥିଇଛ ଅମୁହାଁ 'ମୁଇଁ'ଟେ ଭଲ୍‌କରି ।୨୨।
ରାଜ୍‌କରେ ସେ ଦିହ୍-ରାଏଜେ ଦିହ୍‌କେ ନିଏ ନିଜର୍ ସଙ୍ଗେଁ
କରେ କାଁ ଭାବି କାଁ କାଯେଁ ଦିହ୍‌କେ ଦୁଖର୍ ଚୁଆଁଟେ;
ଦିହ୍-ଘର୍‌କେ ରୋଜ୍ ରୋଜ୍ ଡ଼ାକି ଆନ୍‌ସି ସୋଜ୍ ସୋଜ୍
ସୁଖ୍‌କେ କାଟି ଦେସି ଭୋଜ୍ ଦୁଖର୍ ନୂଆଁ କୁନୁଆଁଟେ ।୨୩।
କାଁ କରେଁ ଇ ଅଏଁଠା ଦିହ୍ (ଯେ) ଯାଉ ମେଟୁ ' "ମୁଇଁ'ର୍ ଡ଼ିହ୍
ମୁଟା ମନ୍ ବି ଯାଉ ଜିହିଁ", ଯୋଗର୍ ଜୁଏ ଜାଲ୍‌ଲେ ।
ଦିହ୍‌ଟା ପୁଡ଼ି ହେଲା ଖାର୍ ଉଜାଲା ଆସେ ବିଷ୍ଣୁର ପାର୍
ମିଶ୍‌ଲା ଦିହେଁ ଚାର୍ ତାର୍; ବିଷ୍ଣୁ ବନିହାଁ ଭାଲ୍‌ଲେ ।୨୪।

ଲେଖିଛନ୍
ଶ୍ରୀ ହେମଚନ୍ଦ୍ର ଆଚାର୍ଯ୍ୟ
ଗର୍ଭଣା - ୭୬୮୦୩୩
ଜି.ବରଗଡ଼

ଛପେଇଛନ୍ -
1 ପ୍ରକାଶ ଚନ୍ଦ୍ର ଦେବତା
ପୂର୍ବତନ ମନ୍ତ୍ରୀ ଏବଂ ବିଧାୟକ
ଓଡ଼ିଶା ସରକାର

ପହେଲା ଛାପା - ୧୯୯୭
ଦୁହୁରି ଛାପା - ୨୦୦୪

ଡ଼ି.ଟି.ପି ଓ ଛାପା -
ଆକୃତି, ସୋହେଲା
ଫୋନ- ୨୨୦୬୫୮

ମଲାଟ୍ ଫଟୁ କାଟିଛନ୍ -
ଗୌର ଚରଣ ପ୍ରଧାନ
ଆକୃତି, ସୋହେଲା

NUNI
By-
**Hema Chandra Acharya,** Garbhana-768033
Dist-Bargarh
Publisher-
**Prakash Chandra Debta,** Ex-Minister & M.L.A, Govt. of Orissa
First Edition-1997
Second Edition- 2004 D.T.P & Printing, Akruti Sohela
Ph. 220658, Cover Design, Goura Ch. Pradhan, Akruti. Sohela

ସୋହେଲା ସାହିତ୍ୟ ସଂସଦ, ସୋହେଲା

## ବହି ଛପା ବିଷୟେ ନ ପଦେ...

ସମଲପୁରୀ ଭାଷା ସାହିତ୍ୟର୍ ଜନେ ବର୍‌କସ୍ ସାଧକ୍ ଭାବେ ଶ୍ରୀଯୁକ୍ତ ହେମଚନ୍ଦ୍ର ଆଚାର୍ଯ୍ୟ ବନେ ଆଦର୍ ଲାଭ୍ କରିଛନ୍ । ତାଁକର୍ ବନିହାଁ ବହି ବାହାରି ସାରିଛେ । ସାଧାରଣ୍ ମୁନୁଷ୍, ଗାଁର୍ ଜୀବନ୍, ଗାଁ ଲୁକ୍‌କର୍ ଭିନ୍ ଭିନ୍ ସମସ୍ୟା ଆରୁ ସମାଧାନ୍ ବିଷୟ ନ ନୁନୀ କାବ୍ୟ ନ କହିଛନ୍ । ବହିଟା ସୁନ୍ଦର୍ ହେଇଛେ । ମତେ ବହିଟା ଛାପ୍‌ବାର୍ ଲାଗି ସୁଯୋଗ୍ ଦେଇକରି- ଭାଷା ମା'ର୍ ସେବା ଲାଗିଁ କିଛିଟା ଯୋଗଦାନ୍ କରି ପାରିଥିବାର୍ ଲାଗିଁ ଆନନ୍ଦ୍ ଲାଗୁଛେ ।

ନୁନୀ କାବ୍ୟକେ ପାଣ୍ଡୁଲିପି ଗ୍ରହଣ କର୍‌ବାର୍ ଦିନୁ ବହି ଆକାରେଁ ଉକିଆ ଦେଖିବାର୍ ତକ୍ ଆଦରଣୀୟ ଅଧ୍ୟାପକ ଟେକ୍‌ଚାନ୍ଦ ଦୁଆନ ପଛେଁ ପଛେଁ ଲାଗିଛନ୍ - ତାହାକୁଁ ସାଧୁବାଦ ।

ଆମର୍ ଫାଲର୍ ପରମ୍ପରା, ସଂସ୍କୃତି, ଇତିହାସ୍ ସବୁକେ ଜାନ୍‌ବାର୍ ଲାଗିଁ ଇ ବହି ସାହେଯ୍ କର୍‌ବା ବଲିଁ ଆଶା କରୁଛେଁ ।

ପ୍ରକାଶ ଚନ୍ଦ୍ର ଦେବତା

ମହାଷ୍ଟମୀ

ତା.୨୧.୧୦.୨୦୦୪

ସୋହେଲା

# ପଦେ ନାଇଁ କହେଲେଁ ନାଇଁ ଚଲେ..

ନୁନୀ କାଏବ୍‌ଟା ସଚେର୍ ସଚା ବୃନ୍ଦାବତୀ କାଏବ୍ ପରେଁ ଜନମ୍ ନେଲା । ଇ ଭାଷାକେ ଭଲ୍ ପାଉଥିବାର୍ କେତେ ଜନ୍ ସାଂଗ୍ ସରସିଆ କହେଲେ ସମାଜିକ୍ କାଏବର୍ ଅଭାବ୍ ଅଛେ। ଆମର୍ ଇ ଅଂଚଲର୍ ଥିତି, ରୀତି, ନୀତିକେ ନେଇ ଗୁଟେ କାଏବ୍ ଲେଖି ଆମର୍ ସମାଜ୍‌କେ ନୁକୋ ବାଟ୍ ଦେଖେଇ ପାର୍ ଲେଁ ସାହିତ୍ୟ ର୍ ନାଁ ସାଫୁଲ୍ ହେତା ।

ହେତା ଚେରେଷ୍ଟାଟେ କରିଛେଁ, ସାଫୁଲ୍ ହଇଛେ କି ନି ପଢ଼୍‌ଲା ଲୁକେ କହେବେ ।

ବନ୍‌ଏ ଦିନାଦୁ ପଡ଼ି ରହେଲା ନୁନୀ। ଛାପାଖାନା ଦେଖି ନାଇଁ ପାରଲା । ଶ୍ରୀମାନ୍ ପ୍ରକାଶ ଚନ୍ଦ୍ର ଦେବତା, ମତ୍ସ୍ୟ ଉନ୍ନୟନ୍ ଆର୍ ପଶୁ ପାଲନ୍ ବିଭାଗର୍ ରାଷ୍ଟ୍ରମନ୍ତ୍ରୀକର୍ କାନ୍‌କେ ଗଲା ଇ କଥା କି ସେ ବାବୁ ନିଜର ଆଡୁଁ ଆଗ୍ରହ ଦେଖେଇ ନୁନୀକେ ଛାପାଖାନା ଦେଖାଲେ । ନୁନୀର୍ ପାଳକ୍ ପିତା ସେ ଆନ୍ କହେଲେଁ ଆଦୁଁ ଅନ୍ନିୟେ ନାଇଁ ହଏ ।

ତାକର୍ ଭାଷା ମାଁ କେ ଯେନ୍ ଶରଧା ଭକ୍ତି ଇଥିଁ ସେ ଦେଖାଲେ ଯଦର୍‌ପି କେଭେଁ ଇ ଭାଷାର୍ ଇତିହାସ୍ ଲିଖା ହଏ ତାକର୍ ନାଆଁ ଅମେଟା ଅଖର୍ ଥିଁ ରହେବା ଇଥିଁ ସଁଶ୍‌ଏ ନାଇଁନ ।

ମାତୃଭୂମି ଆର୍ ମାତୃଭାଷାର୍ ଲାଗିଁ ତାକର୍ ସେନ୍‌ହୋ ଶରଧା ବଢୁ, ଇଥର୍ ଲାଗିଁ ମହାପ୍ରଭୁକର୍ ନ ବିନ୍‌ତି କରୁଛେଁ ।

ହେମଚନ୍ଦ୍ର

ସମଲ୍‌ପୁର୍

ତା. ୨୪.୦୨.୧୯୯୭

# ମୁଖବଂଧ

ଶ୍ରୀଯୁକ୍ତ ହେମଚନ୍ଦ୍ର ଆଚାର୍ଯ୍ୟ ନିଜେଁ ସମ୍ବଲପୁରୀ ଭାଷାର୍ ଏଛେନ୍‌କାର୍ ମୁର୍ଦ୍ଧନୀ କବି । ସମଲ୍‌ପୁରୀ କବିତା ଲେଖା ଥିଁ କେତେ ଜାଗା ନେ ବଡ୍ ବଡ୍ ସାହିତ୍ୟ ସଭା ମାନ୍‌କେଁ ସମ୍ମାନୀତ୍ ହଇକରି ଆମର୍ ସମଲ୍‌ପୁରୀଆକର୍ ଗର୍ବ ବଢ଼େଇ ଦେଇଛନ୍ । ଏନ୍ତା ଜନ୍‌ଏ କବିର୍ ନୁନୀ ଭଲିଆ ଉଚା ଦର୍‌ଜାର୍ କାବ୍ୟର୍ ମୁଖବଂଧ ଲେଖବାର୍ ଦାୟିତ୍ୱ ସେ ମତେ ଜେନ୍ତା ଦେଲେ ଆର୍ ମୁଇଁ ବି ମଲ୍‌ମଲିଆ ଜେଖେଁ ହଁ ବଏଲିଁ ଇହାଦେ ସେ କଥାଟା ଭାବିକରି ମତେ ସଂକୋଚ ଲାଗୁଛେ । କେନ୍ତା ବଏଲେଁ ଯେନ୍ ମହାତ୍ମା ସମଲ୍‌ପୁରୀ ଭାଷା ସାହିତ୍ୟର୍ ସେବାଥିଁ ନିଜ୍‌କେ ପୂରାପୂରି ସଁପି ନେଇଛନ୍, ତାକର୍ ଲିଖା କାବ୍ୟର୍ ମୁଖବଂଧ ଲେଖିବାର୍ ତାକତ୍ ମୋର ନାଇଁନ । ତଥାବି କାମ୍ ଟା ଯେତେବେଳେଁ ମୁଡ଼େଇଛେଁ ତାକର୍ ଆଶୀର୍ବାଦ୍‌କେ ଆଶ୍ରା କରି ନୁନୀ କାବ୍ୟକେ ମୁଇଁ ଥର୍ ପାଁଚେ ସାତେ ପଢ଼ଲା ଉତାରୁଁ ଯାହା ବୁଝିଛେଁ, ସେଟାକେ ଇନ ଉପସ୍ଥାପନ୍ କର୍‌ବାର୍ ଲାଗି ଚେଷ୍ଟା କରିଛେଁ । ଇଟା ଚାଁଟି ହଇ ହାଥୀର୍ ବଫୁ କସ୍‌ବାଟ୍ କଥା । ଇଟା ମୋର୍ ଲାଗି ଗୁଟେ ବଡ୍ ପରୀକ୍ଷା ଆଏ

ଇହାଦେ କାବ୍ୟ କବିତା, କଥାନି, ପ୍ରବନ୍ଧ, ନାଟକ ମାଧ୍ୟମ୍ ଥିଁ ସମଲ୍‌ପୁରୀ ଭାଷା-ସାହିତ୍ୟ ଉପ୍‌ରେଁ ଜୋର୍‌ଦାର ଆନ୍ଦୋଳନ୍ ଚାଲିଛେ, ଯେନ୍ ଟା ସମଲ୍‌ପୁରୀଆକର୍ ଲାଗି ଗର୍ବ ଆର୍ ଗୌରବର୍ କଥା । ସମଲ୍‌ପୁରୀ ଗୀତ୍, ନାଚ୍, ବଜା ଆର୍ ନାଟକ୍ ଇ ଉଡ଼ିଶା ତ ଉଡ଼ିଶା ଭାରତର୍ ସୀମା ଡେଗିକରି ବିଦେଶ୍ ମାନ୍‌କେଁ ସମ୍ମାନୀତ୍ ହଇକରି ଜଲ୍‌ଦିସ୍ ପାଇସାର୍‌ଲାନ । ଇଟା କମ୍ କଥା ନୁହେ । ସମଲ୍‌ପୁରୀ ଭାଷାଥିଁ ଜହ ନଇଁହେଲେଁ ଭି ଯେନ୍ କେତେଟା କାବ୍ୟ ଲିଖାହେଲା ନ ସେ ଭିତରୁ ନୁନୀ କାବ୍ୟଟା ଗୁଟେ ଭିନେ ଦର୍‌ଜାର୍ କାବ୍ୟ ଆଏ । କବି ଆଚାର୍ଯ୍ୟ, ପହେଲା ଶିକ୍ଷକ, ତେହେଲୁଁ ସମାଜ୍ ସଂସ୍କାରକ୍ ଆର୍ ଶେଷେଁ କବି । ତାକର୍ କବିତ୍ୱ ତାହାକୁଁ ଅମର୍ କରି ରଖିବା

କାବ୍ୟର୍ ନାୟିକା ନୁନୀ ଗାଆଁର୍ ଗଅଁତିଆର୍ ଝି, ଆର୍ ନାୟକ ଶଶି ହଉଛେ ଝାଁକରର୍ ପୁଓ । ମାଷ୍ଟରର୍ ପୁଓ କଲେଜ ପଢ଼ା ପିଲା ରବିର୍ କଥାକେ ବନ୍‌ଏ କରି ବୁଝି ସମ୍‌ଝି ଶଶି ଗାଁକେ ଏକ୍‌ଦମ୍ ସୁଧରେଇ କରି ଆର୍ ନିଦାନ୍ ବେଲ୍‌କେ ଗାଁ ଲାଗି ତାର ଜୀବନ୍ କେ ଭି ପାଏନ୍ ଛଡ଼େଇ ନେଇଛେ । ଶଶିକେ ହେତୁ କର୍‌ବାର୍ ଲାଗି ସେ ଗାଁର୍ ନା ହେଇଛେ ଶଶିଭୂଷଣପୁର୍ ।

# ମୁଖବଂଧ

ଶ୍ରୀଯୁକ୍ତ ହେମଚନ୍ଦ୍ର ଆଚାର୍ଯ୍ୟ ନିଜେଁ ସମ୍ବଲପୁରୀ ଭାଷାର୍ ଏନ୍ଥେନ୍‌କାର୍ ମୁର୍ଦ୍ଧନ୍ୟ କବି । ସମଲ୍‌ପୁରୀ କବିତା ଲେଖା ଥିଁ କେତେ ଜାଗା ନେ ବଡ଼୍ ବଡ଼୍ ସାହିତ୍ୟ ସଭା ମାନ୍‌କେଁ ସମ୍ମାନୀତ୍ ହଇକରି ଆମର୍ ସମଲ୍‌ପୁରୀଆକର୍ ଗର୍ବ ବଢ଼େଇ ଦେଇଛନ୍ । ଏନ୍ତା ଜନ୍‌ଏ କବିର୍ ନୁନୀ ଭଳିଆ ଉଚା ଦର୍‌ଜାର୍ କାବ୍ୟର୍ ମୁଖବଂଧ ଲେଖବାର୍ ଦାୟିତ୍ୱ ସେ ମତେ କେନ୍ତା ଦେଲେ ଆର୍ ମୁଇଁ ବି ମଲ୍‌ମଲିଆ ଲେଖେଁ ହଁ ବଏଲିଁ ଇହାଦେ ସେ କଥାଟା ଭାବିକରି ମତେ ସଂକୋଚ ଲାଗୁଛେ । କେନ୍ତା ବଏଲେଁ ଯେନ୍ ମହାନ୍ ସମଲ୍‌ପୁରୀ ଭାଷା ସାହିତ୍ୟର୍ ସେବାଥିଁ ନିଜ୍‌କେ ପୂରାପୂରି ସଁପି ନେଇଛନ୍, ତାଙ୍କ୍ ଲିଖା କାବ୍ୟର୍ ମୁଖବଂଧ ଲେଖିବାର୍ ତାକତ୍ ମୋର ନାଇଁନ । ତଥାବି କାମ୍ ଟା ଯେତେବେଳେଁ ମୁଢ଼େଇଛେଁ ତାକର୍ ଆଶୀର୍ବାଦ୍‌କେ ଆଶ୍ରା କରି ନୁନୀ କାବ୍ୟକେ ମୁଇଁ ଥର୍ ପାଁଚେ ସାତେ ପଢ଼ଲା ଉତାରୁଁ ଯାହା ବୁଝିଛେଁ, ସେଟାକେ ଜନ ଉପସ୍ଥାପନ୍ କର୍‌ବାର୍ ଲାଗି ଚେଷ୍ଟା କରିଛେଁ । ଇଟା ଚାଁଟି ହଇ ହାଥୀର୍ ବଫୁ ବହିବାର୍ କଥା । ଇଟା ମୋର୍ ଲାଗି ଗୁଟେ ବଡ଼୍ ପରୀକ୍ଷା ଆଏ ।

ଇହାଦେ କାବ୍ୟ କବିତା, କଥାନି, ପ୍ରବନ୍ଧ, ନାଟକ ମାଧ୍ୟମ୍ ଥିଁ ସମଲପୁରୀ ଭାଷା-ସାହିତ୍ୟ ଉପରେଁ ଜୋର୍‌ଦାର ଆନ୍ଦୋଳନ୍ ଚାଲିଛେ, ଯେନ ଟା ସମଲପୁରିଆକର୍ ଲାଗି ଗର୍ବ ଆଉ ଗୌରବର୍ କଥା । ସମଲପୁରୀ ଗୀତ, ନାଚ, ବଜା ଆଉ ନାଟକ୍ ଇ ଉଡ଼ିଶା ତ ଉଡ଼ିଶା ଭାରତର୍ ସୀମା ଡେଗିକରି ବିଦେଶ୍ ମାନ୍‌କେଁ ସମ୍ମାନ୍ [illegible] ପାଇସାର୍‌ଲାନ । ଇଟା କମ୍ କଥା ନୁହେ । ସମଲ୍‌ପୁରୀ ଭାଷା [illegible] କେତେଟା କାବ୍ୟ ଲିଖାହେଲା ନ ସେ ଭିତରୁ ନୁନୀ [illegible] ଧରୋର କାବ୍ୟ ଆଏ । କବି ଆଚାର୍ଯ୍ୟ, ପହେଲା ଶିକ୍ଷକ, [illegible] ଆଉ ଶେଷେଁ କବି । ତାକର୍ କବିତ୍ୱ ତାହାକୁଁ ଅମର୍ କରି ରଖେ

କାବ୍ୟର୍ ନାୟିକା ନୁନୀ ଚାଆଁର୍ ଗଉଁଟିଆର୍ ଝି, ଆର୍ ନାୟକ ଶଶି ହଉଛେ ଝାଁକରର୍ ପୁଅ । ମାଷ୍ଟରର୍ ପୁଅ କଲେଜ ପଢ଼ା ପିଲା ଚରିତ୍ର କଥାକେ ବନ୍‌ଏ କରି ବୁଝି ସମ୍‌ଝି ଶଶି ଗାଁକେ ଏକ୍‌ଦମ୍ ସୁଧରେଇ କରି ଆର୍ ନିଦାନ୍ ବେଲ୍‌କେ ଗାଁ ଲାଗି ତାର ଜୀବନ୍ କେ ଭି ପାଏନ୍ ଛଡ଼େଇ ନେଇଛେ । ଶଶିକେ ହେତୁ କରବାର୍ ଲାଗି ସେ ଗାଁର୍ ନା ହେଇଛେ ଶଶିଭୂଷଣପୁର୍ ।

ନୂନୀ ହଉଛେ ଗୁଟେ କାଲ୍ପନିକ ସଂସ୍କାରଧର୍ମୀ କାବ୍ୟ । କାବ୍ୟ ମାତରକେଁ ନାୟକ-ନାୟିକାର୍ ଭାବ୍ ପୀରତିକେ ମୁଲ୍ କରିଁ ଅନେକ କିସ୍‌ମର୍ କଥା ଫୁଲ୍ ଗୁଁଥିଲା ଲେଖେଁ ଯୁରି ଯୁରି ଲେଖା ଯାଇଥିସି । ନୂନୀ କାବ୍ୟଥିଁ ନାୟକ ଅଛେ ନାୟିକା ଭି ଅଛେ, ଦୁହିଁକର୍ ମନ୍ ଭିତ୍‌ରେଁ ନ ବାନ୍ଧିକରି ରଖି ଦେଇଛନ୍ ; ବଏଲେଁ କବିକର୍ ମତଲବ୍ ଅଲଗା ଆଏ । ଗାଁର୍ ଲୁକ୍‌କର୍ ମୁଣ୍ଡୁଁ ଅନ୍ଧବିଶ୍ୱାସ ଆର୍ କୁସଂସ୍କାର୍ କେ ହଟେଇ କରି ଗାଁ ଟେ ସୁଧିରାବାର୍ ଟା ହଉଛେ କବିଙ୍କର୍ ଉଦ୍ଦେଶ୍ୟ । ଖାଲି ଏତ୍‌କି ନୁହେ, ସମଲ୍‌ପୁର୍ ଇଲାକାର୍ ପୁରଖାପାତିର୍ ଇତିହାସ୍, ନଏଦ୍‌ନଲିଆ, ଝାର୍ ଜଙ୍ଗଲ୍, ଦେ-ଦେବ୍‌ତା, ଦଉଳ୍ ମହଲ୍, ଦେବ୍‌ତା ବାଗିର୍ ବଇଦ୍, ଗୁରୁ, ବୌଦ୍ଧଧର୍ମର୍ ବିଖ୍ୟାତ୍ ଗ୍ରନ୍ଥର୍ କବି, କଲାକାର୍, ଇ ମାଟିର୍ ବଡ଼୍‌ତି - ଇ ସବୁ କଥା ନୂନୀ କାବ୍ୟଥିଁ କବି ଗୁଟ୍ ଗୁଟ୍ କରି ବର୍ଣ୍ଣନା କରିଛନ୍ । ଇ କାବ୍ୟଟା ଜନ୍ଏ ମନ୍ ତନ୍ ଦେଇକରି ପଢ଼ଲେଁ, ସମଲ୍‌ପୁରର୍ ସଂସ୍କୃତି, ଇତିହାସ୍, ପରଂପରା ଜାଣା ଆଏ ଯେ ଜାନି ପାର୍‌ବା ।

ନରସିଂହନାଥ୍, ଅଷ୍ଟଶମ୍ଭୁ, ମା ସମ୍‌ଲେଶ୍ୱରୀ, ଇମାନେ ସମଲ୍‌ପୁରର୍ ମାନ୍ ବଢ଼ାବାର୍ ଲାଗିଁ କେନ୍ତା ସରଗ୍‌ପୁରୁଁ ସାଙ୍ଗେଁ ଦେବ୍‌ତା ମାନ୍‌କର୍ ଗୁରୁ, ବଇଦ୍, କବି ମାନ୍‌କୁଁ ଧରିକରି ସମଲ୍‌ପୁର୍ କେ ଆଏଲେ ବଲିଁ କବି କେଡ଼େ ସୁନ୍ଦର୍ ବର୍ଣ୍ଣନା କରିଛନ୍

ଏନ୍ତା ଭି ତ ଆସି ଗଲେନ କେତେ ଦିନୁଁ ନିଙ୍କେଁ ହରି
ମୂଷା-ଅସୁର୍ ମାର୍‌ବାର୍‌କେ ବିଲେଇ-ସିଂହର୍ ବେଶ୍ ଧରି ।୧୯।

-- -- -- --

ତାକର୍ ଦେଖା ଶିଖା ଆଏଲେ ମହାଦେବ୍ ବି ମହାନ୍ ବତ୍‌ରେଁ
ଆଠି ଶମ୍ଭୁର୍ ରୂପ୍ ଧରି ଉଭା ହେଲେ କେନ୍ ସୁତ୍‌ରେଁ ।୨୧।
ସବୁ ଦେବ୍‌ତା ତତାପନା ଆଏବାର୍‌କେ ଇ ଠାନ୍‌କେ
ସରବ୍ ମାଏନ୍‌ତା ସମଲ୍‌ପୁରର୍ ବଢ଼ାବେ ବଲିଁ ମାନ୍‌କେ ।୨୨।
ବିଚାର୍ କଲେଁ ସବୁ ଦେବ୍‌ତାର୍ ଶକ୍‌ତି ଆର୍ ସବୁ ଶିରୀ
ଧରି ଆସନ୍ ସେ ଧରତୀ କେ ମାଁ ଦୁର୍ଗା ସମଲେଶିରୀ ।୨୩।
ଏକ୍‌ଲା ସେ ଗଲେଁ ଆମେ ସଭେ ଗଲା ବାଗିର୍ ଆଏ
ଆର୍ କାହାକେ ନୁରା ନାଇଁ ସମଲ୍‌ପୁରର ଲାଗିଁ ଘାଏ ।୨୪।
ପାଶେ ଥିଲେଁ ଧନ୍ୱନ୍ତରୀ ଦେବ୍‌ତା ମାନ୍‌କର୍ ମାଏନ୍‌ତା ବଏଦ୍

ବଏଲେ ମୁଇଁ ଯାଇଁ ହେମି ଗୋପୀନାଥ ଷଡ଼ଙ୍ଗୀ ସଏଦ୍ ।୨୫।
ବୃହସ୍ପତି ଦେବ୍ତା ଗୁରୁ କହେଲେ ସେ ନ ହଁସିକରି
ପାଠ୍ ପଢ଼ାମି ବାଟ୍ ଦେଖୁଛେ ପରେ ପରିମଳ୍ ଗିରି ।୨୬।
ନାଗାର୍ଜୁନ ହେବା ନାଁ ମୋର୍ ଯେନ ସାରା ବିଶ୍ୱର୍ ପାଠ୍
ପଢ଼େଇ ନର୍କେ ସିଂହ୍ ବନାମି ସେଠାନ୍ ହେବା ନରସିଂହନାଥ୍ ।୨୭।
ରସ୍ରସିଆ ରାମେଣ୍ ଲେଖ୍ମି ପୀତ୍ବାସିଆ ନାଁ ଧରି
କପିଲ ମହାପାତ୍ର ହଇଁ ଲେଖ୍ମି ଅବଲ୍ ସମଲ୍ପୁରୀ ।୨୮।
ପଛେଁ କେତେ କାଏବ୍ କବିତାର୍ ଧାର୍ ଝର୍ବା କଲମ୍ରୁ ମୋର୍
ଗଙ୍ଗାଧର୍ ମେହେର ନାଁ ହେବା ଯୁଗ୍ ଯୁଗ୍ ଲୋକ୍ କର୍ବେ ସୋର୍ ।୨୯।
ଦେବ୍ତା-ରଜା ଇନ୍ଦର୍ ବଏଲେ ମୁଇଁ କାଏଁ ନୈ ଯିମି ଘାଏ
ଅସୁର୍ ଉପ୍ରେଁ ଦେବ୍ ବଲ୍ ଦେଖାମି ହଇ ସୁନ୍ଦର୍ ସାଏ ।୩୦।

ବର୍ଣ୍ଣନା କରୁନ୍ କରୁନ୍ କବି ହରେକ୍ କିସ୍ମର୍ ଗଛ ପତର୍, ପଶୁ ପଖୀର୍ ଯେନ୍ ତାଲିକା ଦଇଛନ୍ ସେଟା ଭାଷା, ପରିବେଶ ଉପ୍ରେଁ ଗବେଷଣା କରୁଥିବା ବିଦ୍ୱାନ୍ ମାନ୍କୁଁ ଯେତ୍କି ଫାଏଦା ହେବା, ବନୌଷଧି ଅଭିଧାନ୍ କେ ଭି ସେନ୍ତା ଆଂଚଲିକ୍ ଶବ୍ଦ ଯୁଗେଇ ଦେବା । କାବ୍ୟର (୧ମ ସର୍ଗ) ୩୯ ପଦ୍ନୁ ୫୦ ପଦ୍ ତକ୍ ଇଥିର୍ ବର୍ଣ୍ଣନା ହଇଛେ । ଅନୁମାନ୍ କରି ହଉଛେ ଶଶି, ରବି, ମାଷ୍ଟର୍, ଝାଁକର୍ ବୁଢ଼ା ଆର୍ ହେନ୍ତା କେତେ ଗାଁ ବାସୀକୁଁ, ଶଶି ରବିର୍ ଜରିଆନେ ଏକ୍ଜୁଟ୍ କରି ଗାଁର୍ ଉନ୍ନତି ଆଡ଼େଁ କବି ନିଘା ରଖିଛନ୍ । ମାତର୍କ କାବ୍ୟ ମାଧମ୍ ଥିଁ ସମଲ୍ପୁରର୍ ଗୌରବ୍ ଇତିହାସ କେ ଲୋକ୍ ମାନ୍କୁଁ ଜନେଇ ଦେବାର୍ ଟା ହଉଛେ କବିକର୍ ଅସଲ୍ ଉଦେଶ୍ । ବର୍ଣ୍ଣନା ଭିତରେଁ କବି ଏନ୍ତା ରକମର୍ ତୁଲନା ମାନେ କରିଛନ୍ ଯାହାକି ବିଦଗ୍ଧ ସାହିତ୍ୟର୍ ଚିତ୍ରକଳ୍ପ ଅଲଙ୍କାର୍ ଥିଁ କେନ୍ସି ରକ୍ମେ କମ୍ ନୁହେ । ମଉକା ଦେଖି କରି ଯେନ୍ ଇ ରକମର୍ ପ୍ରୟୋଗ୍ ମାନେ କରିଛନ୍, ସେଟାହିଁ ତାକର୍ ବାହାଦୁରୀ, କବିତ୍ୱର ପ୍ରମାଣ । ଉଦାହରଣ୍ ହିସାବେଁ ହେନ୍ତା ପଦେ ଦୁଇ ପଦ୍ ତଲେଁ ଉତ୍ରା ଯାଉଛେ ; -

ଠିଆଫୁଲି ଜନକ୍ ରାଏତ୍ ମଝା ଖୁଲିଁ ପରିଛେ
ଧୋବ୍ ଫର୍ଫର୍ ଦରି ଖଁଡ଼େ ସମ୍ କରି କେ ପାରିଛେ । ।୨୩। (୨ ସର୍ଗ)

-- -- --

ତାକର୍ ସାଙ୍ଗେଁ ଭିଲ୍ ଟା ଯାକ ଚାଲନ୍ ଅଯୋବାଜୋ
କେ ଆଝିର୍ ଇ ଛିନା ବାଟ୍‌କେ ପିନ୍‌ହାଲା ଏତେ ସାଜୋ ।୬୧। (୨ ସର୍ଗ)

-- -- --

ରବି ଯେତେ ବେଳେଁ ସମଲ୍‌ପୁର୍‌ରୁଁ ଫିର୍ ଲା କି ନୁନୀର୍ ଉସତ୍ ଦେଖେ କିଏ ? ନୁନୀର୍ ଚେହେରା, ଚାଲିଚଲନ୍ ଦେଖିକରି ପଢ଼ା ପିଲା ରବିର୍ ମନ୍ ଦଉଲେଁ ନୁନୀ ଲେଖେଁ ଦେବୀ ପୁତ୍‌ଲାଟେ ଖାଲି ଝଟ୍‌କୁଛେ । ରବିର୍ ମନର୍ ଭାବ୍‌ନା କେ କବି ସୁନ୍ଦର୍ ସୁନ୍ଦର୍ ଅଲଙ୍କାର୍ ଦେଇକରିଁ ଫୁଟେଇଛନ୍ ।

ସୁନା ଆନି ବିଜ୍‌ଲି ସାଙ୍ଗେଁ ସାନି ସାନି କେ ଘାରିଛେ
ଚୁନ୍ଦିର୍ ଜାଗା ଛାଡ଼ି ସାରା ଶରୀର୍ ସର୍ଲେଇ ସାରିଛେ । ।୧୨। (୩ ସର୍ଗ)

-- -- --

କେ ନୁ ପାଏଲା ଏଡ୍‌କି କଲାରଙ୍ଗ୍ ଆନିଛେ ନୁରି
ବୁଡ଼େଇ ନେଇଛେ ମୁଡ଼ର୍ ବାଲ୍ କେ ମେଘ୍ ଯାଉଛେ ଡ଼ରି ।୩। (୪ ସର୍ଗ)

-- -- --

ଉଜଲ୍ ପଖର୍ ଦୁତୀୟା ଦିନର୍ ଜନ୍ ମେତାଲ୍ ଦିଶ୍‌ସି । ।୩୫। (୭ ସର୍ଗ)

ଇ ହିସାବେଁ ନୁନୀ କାବ୍ୟଟା ପଢ଼ିକରି ନିରପେକ୍ଷ ଭାବେଁ କୁହାଯାଇପାରେ ଯେ, ବିଦଗ୍ଧ ଉଡ଼ିଆ ଭାଷାର୍ କେନ୍‌ସି ଭି କାବ୍ୟନୁ ଇଟା କେନ୍‌ସି ଗୁନେ କମ୍ ନୁହେ । ହଁ, ସମଲ୍‌ପୁରୀ ଗୀତ୍, କବିତାନେ ଛନ୍ଦ, ଯତିପାତ୍ ଆଦି ଅଖର୍ ଉପ୍‌ରେଁ ନିର୍ଭର୍ ନାଇଁ କରିଁ ଧ୍ୱନୀ, ଉଚାରନ୍ ଉପ୍‌ରେଁ ଜହ ନିର୍ଭର କର୍‌ସି । ପଢ଼୍‌ବାର୍ ଲୋକର୍ ପଢ଼୍‌ବାର୍ ଢ଼ଙ୍ଗ୍ ଉପ୍‌ରେଁ କେନ୍ ପଦ୍ ବଢ଼୍‌ସି ତ କେନ୍‌ଟା ଛିଡ଼୍‌ସି । ସେଥିର୍ ଲାଗି କେନ୍ କେନ୍ ଠାନେ ପଦ୍ ବଢ଼ି ଯାଇଥିବାର୍ କି କମି ଯାଇଥିବାର୍ ଜନା ପର୍‌ସି । ସେ ସବୁ ସୁଧିରେଇ କରି ପଢ଼ି ବି ହେବା ।

ସମ୍‌ଲ୍‌ପୁରୀ କାବ୍ୟନେ ସବୁ ଶବ୍ଦ ସମଲ୍‌ପୁରୀ ହେବାର୍ କଥା ବଲି କେତେ କହେବେ, ହେନ୍ତା ତ ପ୍ରାୟ ପ୍ରାୟ ହଇଛେ ବି, ଯେନ୍ ଠାନ୍‌ଏ ଅଧେ ଉଡ଼ିଆ ଶବ୍ଦ ରଖାଯାଇଛେ, ସେ ଟା ପଢ଼୍ ଲେଁ ସୁନ୍ଦର୍ ଲାଗ୍‌ବା ବଲିଁ ଯତିପାତ୍ ଆଦିର୍ ଲାଗିଁ କି ଶବ୍ଦାଲଙ୍କାର୍ ଦୃଷ୍ଟି ନୁ ରଖାହଇଛେ ଲେଖେଁ ଜନା ପର୍‌ସି । ମାତର୍‌କ ସମଲ୍‌ପୁର୍ ଅଂଚଳର୍ ଲୋକ୍ ବୁଝି ନାଇଁ ପାର୍‌ଲା ମେତାଲ୍ ଶବ୍ଦ ନାଏଁନ । ଗୁଟେ ଦୃଷ୍ଟି ନୁ ତ ଇଂରାଜୀ ଭାଷା ଦୁସ୍‌ରା ଭାଷା ମାନ୍‌କର୍ ଶବ୍ଦ ମାନ୍‌କୁଁ ନିଜର୍ ନାଇଁ କରି ଥିଲେଁ ଭାଷା ଟା ଧରିବ୍ ହଇଁ ଯାଇଥିତା । ତ ଆମେ ଆମର୍ ଭାଷାକେ ହେଡେଟେ ସାଁକୁର୍ମନିଆଁ କାଁ କରି କର୍‌ମା ।

ଇ ରକ୍‌ମେ ଆଲୋଚନା କରତେଲ୍ ଗଲେଁ ସମୀକ୍ଷାନୁ ଢଳ ହଗିଁଯିବା ମୁଖବନ୍ଧ । ସେ ଯାହାହଉ ଇ କାମ୍‌ଟା ମତେ ଦେଇକରି କବି ଆଚାର୍ଯ୍ୟ ଆଜ୍ଞା ମତେ ଯେନ୍ ଗୌରବ୍ ଟା ଦେଇଛନ୍ ହେଥିର୍ ଲାଗି ମୁଇଁ ତାକର୍ ଠାନେ କୃତଜ୍ଞ । ଶେଷ୍ କେ ପଦେ ଅସଲ୍ କଥା କହୁଛେଁ କାବ୍ୟଟା ଲୋକ୍‌କର୍ ପାଶ୍‌କେ ପୁହୁଁଚିଲେଁ ଯାଇ କବିର୍ ପରିଶ୍ରମ୍ ସାର୍ଥକ୍ ହେବା । ପାଠକ୍ ମାନେ କାବ୍ୟର୍ ମଜା ପାଏବେ । ଇଥିଁ ଅବିଶ୍ୱାସ୍ କରବାର୍ କଥା ନାଇଁନ ।

କବି ଅଚିନ୍ତା ନିରୋଗ୍ ରହିଁ ବହୁତ୍ ଜୀଉଁନ୍ ଆର୍ ଏନ୍ତା କାବ୍ୟ କବିତା ଲେଖିଁ ସମଲ୍‌ପୁରୀ ଭାଷାର୍ ସେବା କରୁଥାଉନ୍ ବଲିଁ ମହାପ୍ରଭୁକୁଁ କୁଟି କୁଟି ଯୁହାର୍ କରି ରହୁଛେଁ ।

ଉପାଧ୍ୟକ୍ଷ, ଓଡ଼ିଆ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ

ସ୍ୱ-ନିମାଇଁ ଚରଣ ପଣ୍ଡା
ତା. ୦୫.୧୦.୧୯୯୬

# ୧

କେନ୍ତା ଅଛେ ସରଗ୍ ରାଏଜ୍ ନୁହେ ଦେଖେଁ ତାଏଲ୍
ପରତେ ନାଇଁ ମୋର୍ ଭାରତ୍ ଭୁଇଁକେ ଜିତିଯିବା ଭାଏଲ୍ ।୦୧।
ଯୁହାର୍ ତାହାକେ ବାହାର୍ କରସି ପାଏନ୍ ପଥର୍ ଫାରି
ତାର୍ ଛୁଆକୁଁ ଗୁରସ୍ ମେତାଲ୍ ପିଆସି ସଁଶେ କରି ।୦୨।
ଜନ୍ ଉଦ୍‌ସି ବେଲ୍ ବୁଡ଼୍‌ସି କେଡ଼େ କଁଟେ ନାପେଁ
ଖରା ବରଷା ଶୀତ୍ ଆସି ହାଜର୍ ହେସନ୍ ଆପେଁ ।୦୩।
ତାର୍ ଇଲାକା ଡ଼େଇଁକେ ନାଁ ଦରିଆ ଥାଇ କେତେ ଦିନୁ
ଲହଡ଼ା-ହାତେଁ ଧୁଇଥିସି ମାଆଁର୍ ପାହା ଅନୁଖୁନୁ ।୦୪।
ପଥର୍ ମାନେ ଗଦା ଗଦା ମୁକୁଟ୍ ମେତାଲ୍ ହେଲେ ଖଞ୍ଜି
କେନ୍ ଶକତି ଆମ୍‌ରତୁ ଆନି ବରଫ୍ ବାଟେଁ ଦେସି ରଞ୍ଜି ।୦୫।
ମୋର୍ ମା'କେ ଗାଧିବା ବଲି ନିଜର୍‌ଠାନେ ହସିଖୁସି
ଦରିଆ-ଦାସୀ ମେଘ୍-ମଠିଆ ଭରି ପାଏନ୍ ପଠେଇ ନେସି ।୦୬।
ଅଗମ୍ ମୋର୍ ମାଆର୍ ଗୁନ୍‌କେ ଗମି ଦେଖୁଛେ ଗାଇ ଗାଇ
ଅଗନା ଦିନୁ ଗଙ୍ଗା ନଏଦ୍ ଯେ ଏତ୍‌କି ଦିନ୍‌ତକ୍ ସାରେ ନାଇଁ ।୦୭।
ଇତାର୍ ଅଙ୍ଗେଁ ଇଲାକାଟେ ତାହାକେ ବଲ୍‌ସନ୍ ସମଲ୍‌ପୁର୍
ରାମ୍ ସାଗ୍‌ରେଁ ବଗ୍‌ବଗାନୁ ଫୁଟ୍‌ଲା ଲେଖେ ପଦମ୍ ଫଲ୍ ।୦୮।
ଅକଥନ୍ ଆଏ ସମଲ୍‌ପୁରର୍ ସୁନ୍ଦର୍‌ପନ୍ ତ ଏକେଁ
କେ କହେବା କାହିଁ ଅଛେ ଇଲାକା ତାହାର୍ ଲେଖେଁ । ।୦୯।
ମହାନଏଦ୍ ଯାହାର୍ ପାହା ତଲକେ ହଦ୍‌ରେ ନାଇଁ ଧୁଇବାର୍‌କେ
ହୀରା ସୁନା ଯାହାକେ ଯେତେ ବେଲ୍ ନାଇଁ ଲାଗେ ପାଏବାର୍‌କେ ।୧୦।
"ଇ ବୁଆ ! କେତେ ସୁନା ହୀରା" ବଲି ଇବ୍ ଆଏଲା ଧାଇଁ
ଡ଼େଗି ଡ଼େଗି କେତେ ଡ଼ଙ୍ଗର୍ ଖାଲ୍ ଢ଼ିପ୍ ଜଙ୍ଗଲ୍ ଭୁଇଁ ।୧୧।
ଘିଡ଼୍‌ଘିଡ଼ାନୁ ଦଉଡ଼ି ଆଏଲେ 'ଭେଡ଼େନ୍' ଆର 'ମାଲ୍‌ତୀ' ଯୋର୍
ପାନିର୍ ଦିନେ ଜାନି ହେସି ତାକର୍ ଦିହେଁ କେତେ ଜୋର୍ ।୧୨।

ଇବ୍ - ମହାନଏଦର୍ ଉପନଏଦ୍ ।

ଭେଡ଼େନ୍, ମାଲ୍‌ତି - ବର୍ଷା ଦିନେ ହାତୀ ଉହୁଲେଇ ଆନ୍‌ଲା ମେତାଲ ଧାର୍ ।

ଅଙ୍ଗ୍ ଆଏଲା ଅଙ୍ଗା କରି ଆଦ୍‌ର୍‌ମି ବର୍ଲି ପାହାକେ
ପେସ୍‌ରେଇ କରି ଶୁରଙ୍ଗୀ ଆର୍ ଜୌଁକ୍ ବାଗିର୍ ବାହାକେ ।୧୩।
ଘେଁସ୍‌ରି ଘେଁସ୍‌ରି ଘେଁସାଲି ବୁପ୍‌ରି ଶିଶୁପାଲ୍ କେ ଛାଡ଼ି
ଉତାଲି ସାଙ୍ଗେଁ ଉତ୍‌ରି ଆଏଲେ କେତେ ଗାଁ ଭୁଇଁ ମାଡ଼ି ।୧୪।
ଜୀରା ଆଏଲା ଧୀରା ଧୀରେଁ ଚୂରାକୁଟା ଗାଆଁନୁ
କହି ହଉଥିଲା ରହିହେବା କାଏଁ ଏତେ ଦୂରିଆ ମାଁର୍ ନୁ ।୧୫।
ଦଁତା ଗିର୍‌ଶୁଲ୍ କହେଲେ ନାନୀ! ରହ ଏକା ସାରି ଯିବା
ରାଁଜ୍ ଝାଓଁ ବି ଟାକିଛନ୍ ତ ତାହାଙ୍କୁ ଭିଲ୍ ସାଙ୍ଗେଁ ନେମା ।୧୬।
ମହାନଏଦ୍ ବଲେ, ଯିବ ବଏଲେଁ ଆସ ନ ଲୋ ସଲୋ ସଲୋ
ଯେନ୍ତା ଆଏଲେ କୁଇଲିଘୁଘର୍ କେଁକ୍‌ରାଡ଼ି ଆର୍ ଦୁହି କେଲୋ ।୧୭।
ବାହାରି ଆସି କାହାରିର୍ ବି ନୈ ରହେଲା ଟିକେ ସୋର୍,
ମାଁର ରୂପେଁ ମଜି ଯାଇଁ ପର୍ଛା ହଇଗଲେ ଭୋଲ୍ ।୧୮।
ଏନ୍ତା ଭି ତ ଆସିଗଲେନ କେତେ ଦିନୁ ନିଜେଁ ହରି
୧-ମୂଷା ଅସୁର୍ କେ ମରବାର୍ କେ ୨-ବିଲେଇ ସିଂହର୍ ବେଶ୍ ଧରି ।୧୯।

ଅଙ୍ଗ୍ – ମହାନଏଦର୍ ଉପ୍‌ନଏଦ୍

ଶୁରଙ୍ଗୀ - ଅଙ୍ଗର୍ ଉପ୍‌ନଏଦ

ଜୌଁକ୍ – ଖଡ଼ିଆଲ୍ ସମଲ୍‌ପୁରର୍ ମଝି ଅଙ୍ଗ ପାଶେ ବୁହୁଛେ ।

ଶିଶୁପାଲ୍ ପର୍ବତ୍ – ମଧ୍ୟପ୍ରଦେଶ – ଓଡ଼ିଶାର୍ ସୀମାନେ ଅଛେ ।

ଘେଁସାଲି, ଉତାଲି – ମଧ୍ୟପ୍ରଦେଶ – ଓଡ଼ିଶାର୍ ସୀମାନ୍ତ ପର୍ବତ୍ରୁ ବାହାରିଛନ୍ ।

ଜୀରା – ମହାନଏଦର୍ ଉପ୍‌ନଏଦ୍ । ଉସାର୍ ଶଯ୍ୟା ତ ଧୀର୍ ଧୀରେ ଯାଏସି

ଚୂରାକୁଟା - ମଧ୍ୟପ୍ରଦେଶ ଆର୍ ଉଡ଼୍‌ଶାର୍ ମଝିଁ ସମଲ୍‌ପୁରୀ କହୁଥିବା ଲୋକ୍ ବସ୍‌ତି ଗାଁ ଟେ ।

ଦଁତା, ଗିର୍‌ସୁଲ୍, ରାଁଜ୍, ଝାଓଁ – ଜୀରାର୍ ଉପ୍‌ନଏଦ୍

କେଁକ୍‌ରାଡ଼ି, କୁଇଲିଘୁଘର୍, ସାନ୍‌କେଲୋ, ବଡ଼୍‌କେଲୋ – ମହାନଏଦର୍ ଖରସ୍ରୋତା ଉପନଏଦ୍ ମାନେ ।

ମୂଷା ଅସୁର କେ ମାରବାକେ ବିଲେଇ ସିଂହର୍ ବେଶ୍ ଧରବାର୍‌ଟା ନୃସିଂହ ମନ୍ଦିରର୍ ପୁରାଣିକ୍ କଥା ।

କହୁଛନ୍ କାଏଁ ଦୁଏଲ୍ ବିନୁଆଁ ଯେତେ ହଉଥିଲେ ପାପ୍
ନାଇଁ ବଅଁଚେ ଯାହିଁ ଲୁକ୍‌ଲେଁ ପର୍ଛା କରିନେମି ସାଫ୍ ।୨୦।
ତାକର୍ ଦେଖାଶିଖା ଆଏଲେ ମହାଦେବ୍ ବି ମହାନ୍ ବତ୍‌ରେଁ
୩-ଆଠି ଶମ୍ଭୁର ରୂପ୍ ଧରି ଉଭା ହେଲେ କେନ୍ ସୂତ୍‌ରେଁ ।୨୧।
ସବୁ ଦେବ୍‌ତା ତତାପନା ଆଏବାକେ ଈ ଠାନକେ
ସରବ୍ ମାଏନ୍‌ତା ସମଲ୍‌ପୁରର ବଡ଼ାବେ ବର୍ଲି ମାନ୍‌କେ ।୨୨।
ବିଚାର୍ କଲେଁ ସବୁ ଦେବତାର୍ ଶକ୍‌ତି ଆର୍ ସବୁ ଶିରୀ
ଧରି ଯାଉନ୍ ସେ ଧରତୀକେ ମା ଦୁର୍ଗା ସମ୍ଲେଶିରୀ ।୨୩।
ଏକ୍‌ଲା ସେ ଗଲେଁ ଆମେ ସଭେ ଗଲା ବାଗିର୍ ଆଏ
ଆର୍ କାହାକେ ନୁରା ନାଇଁ ସମଲ୍‌ପୁରର୍ ଲାଗି ଘାଏ ।୨୪।
ପାଶେଁ ଥିଲେଁ ଧନ୍ୱନ୍ତରୀ ଦେବତା ମାନ୍‌କର୍ ମାଏନ୍‌ତା ବଏଦ୍
ବଏଲେଁ ମୁଇଁ ଯାଇଁ ହେମି ଗୋପୀନାଥ୍ ଷଡ଼ଙ୍ଗୀ ସଏଦ୍ ।୨୫।
ବୃହଷ୍ପତି ଦେବତାଗୁରୁ କହେଲେ ସେନ ହସି କରି
ପାଠ୍ ପଢ଼ାମି ବାଟ୍ ଦେଖୁଛେ ପରେ ପରିମଲ୍ ଗିରି ।୨୬।
ନାଗାର୍ଜୁନ୍ ହେବା ନାଆଁ ଯେ'ନ୍‌ନ ସାରା ବିଶ୍ୱର ପାଠ୍
ପଢ଼ାଇ ନରକେ ସିଂହ ବନାମି ସେଠାନ୍ ହେବା ନରସିଂହନାଥ୍ ।୨୭।
ରସ୍‌ରସିଆ ରାମେଣ୍ ଲେଖିମି ୧-ପୀତ୍‌ବାସୀଆ ନାଁ ଧରି
୨-କପିଲ୍ ମହାପାତର୍ ହଇଁ ଲେଖିମି ଅବଲ୍ ସମଲ୍‌ପୁରୀ ।୨୮।
ପଛେଁ କେତେ କାଏବ୍ କବିତାର୍ ଧାର୍ ଝର୍‌ବା କଲ୍‌ମୁ ମୋର୍
ଗଙ୍ଗାଧର୍ ମେହେର୍ ନାଁ ହେବା ଯୁଗ୍ ଯୁଗ୍ ଲୋକ୍ କର୍‌ବେ ସୋର୍ ।୨୯।

ଅଷ୍ଟଶମ୍ଭୁ – ହୁମା, ମାନେଶ୍ୱର୍, ସୁର୍ଣ୍ଣା, ଗାଇସୀମା, ଦେଗାଁ, ନୀଲ୍‌ଜି, ଅମାଭୋନା, ଚର୍ଦ୍ଧା (ବଲାଙ୍ଗିର୍ ଜିଲ୍ଲା)

ଗୋପୀନାଥ ଷଡ଼ଙ୍ଗୀ – ରାଜବୈଦ୍ୟ ଆର୍ କବି ।

ପରିମଲ ଗିରି - ନର୍ସିଂନାଥ୍ ; ଇନ ନାଗାର୍ଜୁନ ବିଶ୍ୱବିଦ୍ୟାଳୟ ଖୁଲି ପାଠ୍ ପଢ଼ଉଥିଲେ ।

୧. ପୀତ୍ ବାସିଆ ସାହୁ ସାତ କାଣ୍ ରାମେଣ୍ ଲେଖିଥିଲେ ।

ଜନ୍ମସ୍ଥାନ-ଗ୍ରାମ-ଗର୍ଭଣା, ଥା. ସୋହେଲା ଜି. ସମଲ୍‌ପୁର

୨. କପିଲ୍ ମହାପାତର୍ ଢ଼ଙ୍ଗ୍ ରାମେଣ୍ ଲେଖିଥିଲେ ।

ସମଲ୍‌ପୁରୀ ଭାଷାର୍ ପହେଲା ସାହିତ୍ୟ

ଅସୁର୍ ଉପରେଁ ଦେବତା ବଲ୍ ଦେଖାମି ହଇ ସୁନ୍ଦର ସାଏ ।୩୦।
ସେ ଧରତୀ ସମଲପୁରେଁ କେତେ ପର୍ବତ ପାହାଡ଼୍ ଡ଼ଙ୍ଗର୍
କେତେ ସୁନ୍ଦର୍ କେତେ ଆକାର୍ ଆର୍ କେତେ କେତେ ଢ଼ଙ୍ଗର୍ ।୩୧।
ସେ ଭିତ୍‌ରେଁ ଲମି ଯାଇଛେ ପର୍ବତ୍ ନାଁ ବାରପାହାଡ଼୍
ସଭେ ବଲ୍‌ବେ ତାହାକେ ଦେଖ୍‌ଲେଁ ସମଲପୁରର୍ ମେରୁହାଡ଼୍ ।୩୨।
ସେ ପର୍ବତ୍ ପାଖେଁ ଅଛେ ଅଏନ୍ ସୁନ୍ଦର୍ ଡ଼ଙ୍ଗର୍‌ଟେ
ବଡ଼୍ ନୁହେ କି ଡ଼େଙ୍ଗ୍ ନୁହେ ସୁରୁ ହଇକରି ବାଙ୍ଗର୍‌ଟେ ।୩୩।
ସେଥିର୍ ତଲେଁ ଢ଼ଲ୍‌କେନ୍ ଦେଖି ଲଟା ସରସର୍ ଦୁହୁଲା
କେ କହେବା କେତେ ଦିନୁ ଝର୍‌ଟେ ସେନୁ ବୁହିଲା ।୩୪।
ସେ ଝର୍‌ଟା ଡ଼େଗି ଡ଼େଗି ତଲୁଁ ତଲକେ ଯାଏ ବୁହି
ସମୁଦର୍‌କେ ନର୍‌ଦିଯାଏ ପର୍ବତର୍ କେନ୍ ବାରତା ବୁହି ।୩୫।
ସରସା ଚେହେରା ବର୍‌ଷା ଦିନେ ନର୍‌ଦି ଡ଼େଗି ଫୁଁକ୍‌ରାସି
ଇଠାନର୍ ଟାନ୍ ଜନାଇ ସାନ୍ ହେଲେଁବି ହୁଁକ୍‌ରାସି ।୩୬।
ଖରାକାଲେଁ ଦର୍‌ହାକୁଲେଁ ଥାକ୍‌ସି ଥାଇସୁତର୍
ପାଶ୍ ପାଁଜରର୍ ପ୍ରାନୀ ମାନ୍‌କର ହେସି ପାଏନ୍ ଛତର୍ ।୩୭।
ଚାଁଟିଠାନୁ ହାତୀତକ୍ ଯେ ଆଏଲେଁ ମନା ନାଇଁ
ସାନ୍ ବଡ଼ର ପରାଭେଦ୍ ଜନ୍‌ମୁ ତାହାକେ ଜନା ନାଇଁ ।୩୮।
କଅ, କୁମ୍ଭି, କେନ୍ଦୁ, କର୍ଲା, କୁର୍ଲୁ, କଏଥ୍, କେକଟ୍
କୁରେ, କୁସମ୍, ଖଏର୍, ଖଏସ୍, ଖଜୁର୍ ଥିସନ୍ ନିକଟ୍ ।୩୯।
ଗଁଭେର୍, ଘଁଟୋ, ଜାମ୍, ଜମର୍ଡ଼ି, ଅଁଏଲା, ଆଁଛି, ଧାମନ୍
ଧଅଁରା, ପଲ୍‌ଶା, ବୁରୋ, ବର୍‌ଙ୍ଗା, ବେଲ୍, ବିଜା, ବାନ୍ଦନ୍ ।୪୦।
ଭେରୁ, ମୁଇଡ଼୍, ସର୍ଗି, ଶିଶୁ, ସାହାଜ୍, ସେନ୍‌ହାଁ, ଶାଗୁନ୍
ଶାଲିଆ, ହଲନ୍ କିଏ ଏକ୍‌ଲା କିଏ ହଇ ଗୁଣ୍‌ପୁଣ୍ ।୪୧।
ଦେଖୁଥିସନ୍ ଇ ଝର୍‌କେ କିଏ ଫୁଲେଁ କିଏ ପତ୍‌ରେଁ
କିଏ ଭାଏଲ୍ ତାର୍ ଛଏରା-ହାତେଁ ଛିଇ ନଉଥିସି ବତ୍‌ରେଁ ।୪୨।
ଉଲେଁ ଉଲେଁ ଝର୍‌ନାକୁଲେଁ ବ୍ରାହ୍ମୀ ସାଙ୍ଗେଁ ଭୃଙ୍ଗ୍‌ରାଜ
ଶୁନୁଥିସନ୍ ଗୀତ୍ ଗାଏଲେଁ ସାରୀ, କୁଇଲି, ଭେଙ୍ଗ୍‌ରାଜ ।୪୩।

ପାରା, ପଣ୍ଡ୍‌କା, କୁକ୍‌ରା, ରୂପ, ରାମି, ମଏନା, ଚଁଟିଆ
ଝର୍ ଛାଡ଼ି ନାଇଁ ଯାଆନ୍ ଗୁଲିହା, କୁମାଟି ଆର୍ ଟିହା ।୪୪।
ଗୁଁରଲ୍ଲୁ, ତିତେର୍, ଚଁପାଚରେ, ପିଚୁ ଆଉର୍ ଫୁଲ୍‌ଚୁହି
ବାଘ୍‌ଟେରା ସାଙ୍ଗେଁ ଧୂବେନ୍ ଇନ ହେସନ୍ ଗୀତ୍ ଗୁଆଗୁଇ ।୪୫।
ବରଷା ଦିନେ ମୟୁର୍, ଡ଼ାହୁକ, ଏଣକ୍‌ଗୁଲି, କରାଲି
ପଚ୍‌ରା ଉଚ୍‌ରା ହେସନ୍ କୁଁଡ଼ାଭୁସ୍‌କି ଆର୍ ହଁସ୍‌ରାଲି ।୪୬।
କୁଆ, ଗିଧା, ଚିଲ୍, ରାବଣ୍ ଉପ୍‌ରେଁ ଉଡ଼ି ଉଡ଼ି
ଦେଖିଥିସନ୍ କେ କେନ କାଏଁ ଅଛନ୍ ପଡ଼ି ଉଡ଼ି ।୪୭।
ନେଉଲା ମୂଷା, ଶଲ୍, ସାଇ ସାଙ୍ଗେଁ କେତେ ଖରା
କିଏ ସର୍ଲିକିଏ ଉର୍ଲ୍ଲି ନାଇଁ ଛାଡ଼ନ୍ ଝର୍ ତରା ।୪୮।
ହେର୍ଣ୍ଣା, ସମର୍, ଧୂମା, ଚିଥଲ୍, ରୁଟ୍‌ନା, ଗଏଲ୍, କୁରରି
ମରଲୁଥିସନ୍ ତର୍‌କି ତର୍‌କି କିଏ ସିଙ୍ଘାଡ଼୍ କିଏ ମୁରରି ।୪୯।
ବାଘ୍, ଭାଲୁ, ଚିତା, ହୁଁଡ଼ାର୍, ଲେଞ୍ଜହା, ଫେକାରି କୁଲିହା
କେନ କେନ୍ତା ହାତୀ, କେନ ଭିଲ୍ ବାନ୍ଧିଁ କୋକ୍ ବଲୁଆ ।୫୦।
ପାଏନ୍ ପିଇସନ୍ ତାକର୍ ଲାଗି ଠାନ୍ ଠାନ୍ ଅଛେ ଦରହା
ପାଏନ୍ ପିଇ ଫେର୍ ଭେଲା ପଡ଼୍‌ସନ୍ ବନ୍‌ପୋଡ଼୍ ଆର୍ ବରହା ।୫୧।
ପଠାର୍ ଦେଖି ଆଯୋ ବାଯୋ ମାୟା ବଢ଼ଲ୍ ଲାଗିଛେ
ମାକର୍ ହନ୍‌ମାନ୍ ଆଏଲେଁ ବୁଆ ! ତାକର୍ କପାଲ୍ ଜାଗିଛେ ।୫୨।
ଚକର୍‌କେଦାର୍, ପାତାଳ୍‌ଗରୁଡ଼୍ ଗଛ୍ ଭମର୍‌ମାରୀ
ଅଛନ୍ ବଳି ସାଁପ୍ ଜାଏତ୍‌ଟା ନାଇଁଦିଶନ୍ ଭାରୀ ।୫୩।
ଇ ନଲିଆର୍ ଖଁଡ଼ି ବସେ ଚାତର୍ ଦେଖି ଗାଆଁଟେ
ସାନ୍ ଆଏ ଆର୍ ହେତୁ ହେଲା ମିତାଲ୍ ନୁହେ ନାଆଁଟେ ।୫୪।
ଗାଁ ସେ ମୁଡ଼େଁ ମୁଡ଼େ ମିତାଲ୍ ପାଏନ୍ ଥିବାର୍ ମୁଡ଼ାଟେ
ଇ ମୁଡ଼୍‌ସେଁ ବଢ଼େ ବର୍‌ଗଛ୍ କୁଗ୍‌ଲା ଲେଖେଁ ବୁଢ଼ାଟେ ।୫୫।
ବର୍‌ତଲେଁ ଅଛେ ଟିକନ୍ ପଥର୍ ଦେବ୍‌ତା ଗରାମ୍‌ପତି
ଡ଼ର୍‌ନରାନି ବରମ୍ ଲାଲ୍ ସେନ୍ଦୁର୍ ରେଁଡି ରେଁତି ।୫୬।

ଖୁଟ୍ କାଟି ଯେ ଗାଁ ବସାଲେ ତାକର୍ ପୁଓ ନାତି
ଏକ୍ ହଇ ଅଛନ୍ ନାଇଁ ହେଲେଁ ବି ଏକ୍ ଜାତି ।୫୭।
ବାଙ୍ଗର୍ ବାଙ୍ଗର୍ ଘର୍‌ମାନେ ଉସାର୍ ପିସାର୍ ଖୁଏଲ୍
ସାଫ୍ ସୁତର୍ ମନ୍ ମାନେ ନାଇଁ ହ'ନ କିହେ ଗୁଏଲ୍ ।୫୮।
ଗାଁ ମଝିଥିଁ ଚଉରୀ ବଖ୍‌ରୀ ବନ୍ଏ ମାଟିର୍ ଘରଟେ
ପାଶ୍‌ରି ନାଇଁ ହେଲା ବାଗିର୍ ଦେଖିଥିଲେଁ ବି ଥରଟେ ।୫୯।
ମାଏଟ୍ ଗୁବର୍ ଲିପ୍‌ଲା କୋଡ୍ ତାର୍ ଉପ୍‌ରେ ଛୁଇ
ଶିରୀ ଆସି କାଏଁ ଖସରି ନାଇଁ ଦେଖ୍‌ଲା ବେଲ୍‌କେ ଛୁଇ ।୬୦।
ଈ ଘର୍ ଯାର୍, ହାତେଁ ତାକର୍ ଗାଆଁର୍ ଗଉଁତି ଥିଲା
ଗଜ୍‌ଗଜାଉଥିଲା, ମଝି, ନାଇଁ ଥାଇ ଛୁଆପିଲା ।୬୧।
ହାଲେଁ ସାଲେଁ ଅଏନ୍ ସୁନ୍ଦର୍ ଟୁକେଲ୍ ଗୁଟେ ଜନ୍‌ମିଛେ
ଷଠି କୁଠି ଅଁଛି ନେଇଥିଲା ଏଛ୍‌ନି ଭାଏଲ୍ ଭର୍‌ମିଛେ ।୬୨।
ଗାଁ ମାଁ ବସି ଏକ୍‌ଶିଆକେ ଭାବ୍‌ଲେ ଦେମା କାଁ ନାଁ
'ନୁନୀ' ହଉ ରୂପ୍ ଗୁଣ୍ ଗରାମ୍ କିଛି ନାଇଁ ଉ'ନା ।୬୩।
ବାପ୍ ଡ଼ାକ୍‌ଲା ମାଁ ଡ଼ାକ୍‌ଲା ଗାଁ ଡ଼ାକ୍‌ଲା ନୁନୀ
ଦର୍‌କୁ ଥିବାର୍ ହୁରୁଦ୍ ମାନ୍‌କୁଁ ଛୁଆ ଦେଲା ତୁନି ।୬୪।

## ୨

ଲୁଭ୍‌ଲୁଭାନି ଚେହେରା ନୁନୀର୍ ସମ୍‌କୁଁ ନେସି ଘିନି
ଛୁଆପୁତାନୁ ବୁଢ଼ାବୁଢ଼ୀ ତକ୍ ହେସନ୍ 'ନୁନୀ' 'ନୁନୀ' ।୦୧।
କିଏ ନେଇକରି କୁଲେଁ ଧର୍‌ସି କେ କର୍‌ସି ପାଯି
କିଏ ଦଉଥିସି ଚୁମା କିଏ ଗାଲକେ ଦେସି ଛିଈ ।୦୨।
କେ ଦେଲେଁ ମୁଡ଼େଁ ତେଲ୍ ହାତେ କିଏ ମଖାସି କଜଲ୍
କିଏ କପାଲେଁ କଲାଟିକା, ନାଇଁ ପର୍‌ବା ନଜର୍ ।୦୩।
ମାଁ ହେସନ୍ ଅଥାବିଥା ଗୁରସ୍ ଟାନ୍‌ଲେଁ ଘାୟ
କେତେ ନୁର୍‌ବେ ଗାଁ ସାରା ଯେ କେ'ନ ଥିବା ହାୟ ।୦୪।
କିଏ ନିଜର୍ କିଏ ପରର୍ ନୁନୀ ବାଆରେ ନାଇଁ
ପର୍‌ଘରେଁ ଥାଇ ଅଠିପର୍ ବି କାନ୍ଦି ବାହାରେ ନାଇଁ ।୦୫।

କଥା ପର୍‌ଲେଁ ବାପ୍ ବଲ୍‌ସନ୍ ଛୁଆଟାକ ଗାଆଁର ଆୟ୍
ନାଇଁ ବଲ୍‌ବ ବାପର୍ ବଲି ନାଇଁ ବଲ୍‌ବ ମାଆଁର ଘାୟ୍ ।୦୬।
ଗାଆଁର୍ ମାଆଁର୍ ହଇ ଭାଇ ! ଛୁଆଟାକ ଜୀଇଁଥାଉ
ଝି ହେଲେଁ ବି ବଅଁଶ୍ ରହେବା ସୁଖେଁ ଘରଟେ କରି ଖାଉ ।୦୭।
ଉଜଲ୍ ପଖର୍ ଜନ୍ ମେତାଲ୍ ନୁନୀ ଦିନୁଦିନ୍ ବଢୁଛେ
ଦିନ୍‌କ ପଟରେ ପକେଇ କାଏଁ ମାସ୍‌କ ପଗେ ଛାଡୁଛେ ।୦୮।
କାଥିଁ କୋଡ଼୍ ଧରି ଠିଆ ହେଲାନ ରଙ୍ଗା ଘେଁସ୍‌ରା ଛାଡ଼ି
କିଏ ଆନି ଗୁଟେ ଦେଇ ଗଲାନ ଛୁଆ ଖେଲ୍‌ବାର୍ ଗାଡ଼ି ।୦୯।
ଆଁକରି ଗଲାନ ଦାଁତ୍ ଗୁଟାଦୁ ଆଁ କର୍‌ଲେଁ ଦିଶୁଛେ
ହଁସ୍‌ଲେଁ ତାହିଁ ଦେଖିଲା ଲୁକର୍ ମନ୍‌ଟା ଯାଇ ଫଶୁଛେ ।୧୦।
କୁଚ୍ କୁଚ୍ ହଇ କଳା ମିସ୍ ମସ୍ କେଡ଼େ ଅଏନ୍ ବାଲ୍
ଆଏଁଖି-ଝୁରିମାନେ ଉସ୍‌କନ୍ ନାଇଁ କେ ପକେଇଛେ ଜାଲ୍ ? ।୧୧।
ଖଁଡ଼ାଧାର୍ ମେତାଲ୍ ନାକ୍ ଭଟ୍‌କି ଟିକେ ନାଇଁ
ସୁରୁ ଶାମ୍‌କୋଲ୍ ଲେଖେଁ ଆଏଁଖ୍ ଟିପ୍‌ରା ପାଏବ୍ କାହିଁ ? ।୧୨।
ଧାଇଁ ଧୁପି ଆଏଲା କି ଫେର୍ ଖେଲେଁ ହେଲାନ ବାଇ
ନାଇଁ ରହେବାର୍ କାଖେଁ କୁଡ଼େଁ ନାଇଁ ହେବାର୍ ନ ପାୟି ।୧୩।
ସଙ୍ଗ୍ ସାଥୀ ଚିହ୍ନ୍‌ଲା ନ ତ ନୈ ଦେଖିଲେଁ କାନ୍ଦୁଛେ
ଯେ ଆଏଲା ସେନ୍‌ହୋ-ରଶି ଥି କଷି କଷି ବାନ୍ଧୁଛେ ।୧୪।
କେ ଆନୁଛେ କାଁଚିକୁଁଡ଼ି କେ ଆନୁଛେ କୁଲେଇ
କିଏ ଭାଏଲ୍ ଦୁଲି ଫାନ୍ଦି ଦିଏ୍ ଘାଏ ଘାଏ ଦୁଲେଇ ।୧୫।
ଚାଲି ଜାନ୍‌ଲା ଦିନୁ ଘରେଁ ଘାୟ୍ କର୍ ଘାୟ୍ ରହେ ନାଇଁ
କାହିଁ ଯାଉଛେ କାଁ କରି ଯେ କାହାକେ ବି କହେ ନାଇଁ ।୧୬।
ମାଆଁ ବୁପ୍‌ରୀ ନୁରି ନୁରି ଗାଆଁ ସାରା ଘୁରୁଛନ୍
ମାଏଝି ମାନେ ତାହାକୁଁ ଦେଖି ମାଛି ମେତାଲ୍ ବୁଲୁଛନ୍ ।୧୭।
'ନୁନୀର୍ ମାଁ ଗୋ ! ନୁନୀର୍ କଥା କହେଲେଁ ସରେ ନାଇଁ
ଛୁଆଟେ ବଲି କେ କହେବା ସିଆନ୍ ପାର୍‌ବା କାହିଁ ।୧୮।

କେଡ଼େ ସୁନ୍ଦର୍ କଥାବାର୍ତ୍ତା ଚଲନ୍ କେଡ଼େ ଅଏନ୍
ଉପ୍‌ଡ଼େଗ୍ରିର୍ ନାଆଁ ନାଇଁ ବଡ଼୍‌କୁଁ କେତେ ମାଏନ୍" ।୧୯।
ଚାଏର୍ ଡ଼େଗି ନୂନୀର୍ ବଏସ୍ ପାଁଚ୍‌କେ ଆସି ଛିଲା ନ
ବୁ'ପିଆ ଛାଡ଼ି ଆଗର୍ ଆଗର୍ ଦାଁତ୍ ଗୁଟାଦୁଏ କୁହିଲାନ ।୨୦।
ସଉକ୍ କରି ଦିହେଁ ମୁଡ଼େଁ ଗୁରେଇ ହଉଛେ କପ୍‌ଟି
'ଛି' ଲୋ ଲାଇ' 'ଲୁକ୍‌ଲୁକାନି' ଖେଲ୍‌କେ ଯାଉଛେ ଲପ୍‌ଟି ।୨୧।
ବାପ୍ ବଏଲେ "ନୂନୀର୍ ମା ! ଏତ୍‌କେଁ ପାଠ ଇସ୍କୁଲ୍"
ମାଁ ବଲ୍‌ସନ୍ "ଏଭୁଁ କାଏଁ ପାଠ୍ ? କଥା କହେସ ମସ୍କୁଲ୍" ।୨୨।
ଠିଆଫୁଲି ଜନକ୍ ରାଏତ୍ ମଝା ଖୁଲି ପରିଛେ
ଧୋବ୍ ଫର୍‌ଫର୍ ଦରି ଖଁଡ଼େ ସମ୍ କରି କେ ପାରିଛେ ।୨୩।
ଉଛ୍‌ନା ମାନ୍‌କର ଛଏରା ନେଇ କୁମ୍ପ ପକେଇଛେ ଧଡ଼ି ନ
ପିର୍ଦ୍ଧା-ଦିହେଁ ବାପ୍ତା ଶାଢ଼ୀ ଗାଁ ପିନ୍ଧେ ଇ ଘଡ଼ି ନ ।୨୪।
ଜନକ୍ ରାତିଁ ଦକ୍ କରୁଛେ ମୁନଗା ଗଛର୍ ଫୁଲ୍
ତରା ଦେଖି ନିଲଜ୍ ହଁସି ହସନ୍ ମୁଲ୍ ମୁଲ୍ ।୨୫।
ସବୁଠାନୁ ବନ୍‌ଏ ଆଶ୍ରିଜ୍ ଜନ୍ ହଉଛେ ଲାଜେଁ
ନୂନୀର୍ ମୁହଁକେ ଦେଖିକରି କି ନିଜେଁ ନିଜର୍ ତେଜେଁ ? ।୨୬।
ପାର, ଭାର, ଜମଓ, ଜାଇ, ବିନ୍‌ଓ ଆଉର୍ କୁମ୍‌ଓ
ସାଙ୍ଗ୍ ମାନ୍‌କୁଁ ନେଇ ନୂନୀ ଖେଲେ ଖୁଲିଁ ହୁମ୍‌ଓ ।୨୭।
ଟାକର୍ ଟାକର୍ କଥାବାର୍ତ୍ତା "କାଲ୍‌ହୁଁ ଯିମା ପଢ଼ି
ମୁରୁଖ୍ ହେମା କାଏଁଲୋ ? ହେଲେ ଯେନ୍ତା କାକୀ ବଡ଼ି" ।୨୮।
ଘର୍‌କେ ଆସି ପଢ଼୍‌ବାର୍ କଥା କହୁନ୍ ସାଏର୍ ନୂନୀ
ବାପା ଆନ୍‌ଲେ ସେ ଘଡ଼ି ଖଡ଼ି ସିଲଟ୍ ଘିନି ।୨୯।
ପଢ଼ିଗଲା ନୂନୀ ହାତେଁ ଖଡ଼ି ସିଲଟ୍ ଧରି
ବଟାଲା ବାଟେଁ ବାଟ୍‌ମୁହୁଁ ମା ନାଇଁ ପାରନ୍ ଫିରି ।୩୦।
ନୂନୀ ଦିଶୁଥିବା ଯାଏ ଗଲା ବାଟ୍‌କେ ଦେଖୁଛନ୍
ଛଏରା ନାପି ଆଏବାର୍ ବେଲା ମନେ ମନେ ଯୁଖୁଛନ୍ ।୩୧।

ଖେଦି ଆନୁଛେ ଛିନା ଘର୍ ମନ୍ ନାଇଁ ରହେ ଘରେଁ
ବିତ୍‌ବିତା ଲାଗେ ନୁନୀର୍ ଲାଗି ଲାଗ୍‌ସି ଅଛନ୍ ଝାରେଁ ।୩୨।
ଛୁଆ ଗାଆଁର୍ ନୂଆଁ ଇସ୍କୁଲ୍ ନୂଆଁ ଆଇଛନ୍ ମାଷ୍ଟର
ସଭେ କହୁଛନ୍ ଭଲ୍ ଲୋକ୍‌ଟେ, ଜାନିଛନ୍ ପାଠ୍ ଶାସ୍ତର୍ ।୩୩।
ଉଷୋ କଷା ଫୁକା ଝରା ସବୁକଥା ଫେର୍ ଜାନିଛନ୍
ଗୁରୁ ବଲି ଗାଆଁ ସାରା ମହାପୁରୁ ମେତାଲ୍ ମାନିଛନ୍ ।୩୪।
ଗଜା ବଏସ୍‌କେ ରଜା ମେତାଲ୍ ଚେହେରା ଆସି ଜୁଟିଛେ
ଦେଖ୍‌ଲା ଲୁକ୍‌କର ମନ୍ ମାନ୍ କୁଁ ମାଏନ୍ ମନ୍‌ସା ଲୁଟିଛେ ।୩୫।
କହେଲେଁ କଥା ଝର୍‌ସି ମହୁ ହଁସଲେଁ ଝରେ ମୋତି
ସଭେ କହୁଛନ୍ ବନ୍‌ଏ ଲୋକ୍ ଆନ୍ ବନ୍‌ଏ ଗତି ମତି ।୩୬।
ଇସ୍କୁଲ୍ ଭିତ୍‌ରେଁ ଘର୍ ବଖ୍‌ରେ ସେଟା ଗୁରୁକର୍ ଡ଼େରା
ଖପର୍ ଘର୍‌ଟେ ପର୍‌ଛିଟିକ ବାଉଁଶ୍ ଟାଏଟ୍ ଘେରା ।୩୭।
ଗୁରୁମା'ତ ଆହୁରି ଅଏନ୍ ଗୁରୁକର୍ ନୁ ଜିତି
ବିଚାର୍ ଆଚାର୍ ସବୁ ସୁନ୍ଦର, ସୁନ୍ଦର୍ ଗଜି ରୀତି ।୩୮।
ପଢ଼ା ଛୁଆକୁଁ ବଡ଼ା ଆଦର୍ ସେନହୋ ଦେସନ୍ କୁର୍‌ହେଇ
ଛୁଆମାନେ ବି ମାଆଁ ମେତାଲ୍ ହଉଥିସନ୍ ଗୁର୍‌ହେଇ ।୩୯।
ଲୁଖ୍‌ରା ଶୁଖ୍‌ଲା ଦେଖ୍‌ଲେଁ କାହାକେ ଦେସନ୍ ରାପିଁ କୁରି
ମୁଢ଼େଇ କରି କେ ମୁଡ଼୍ ଖୁଜାଲେଁ ଉକେନ୍ ଦେସନ୍ ନୁରି ।୪୦।
ନଖ୍ ବଢ଼ିଥିଲେଁ ଝଟ୍ କାଟ୍‌ସନ୍ ଭୁର୍‌ତା ଭୁର୍‌ତି କରି
ନାକ୍ ବୁହୁଥିଲେଁ ସାଫ୍ କର୍‌ସନ୍ ଗେଲେଁ ଲାଢ଼େଁ ଧରି ।୪୧।
ନୁନୀକେ ଦେଖି ବୁନି ହେଲାନ ଆଦର୍ ସରାଗ୍ ତାକର୍
ସେନ୍‌ହୋର୍ ସୁରୁ ଚୁଆଁଟା ନେଲା ଆକାର୍ ସାଗର୍ ଟାକର୍ ।୪୨।
କେନ୍ ସରଗୁଁ ଖସ୍‌ରି ଆସିଛେ ଅପ୍‌ସରୀଟେ କାଏଁ
ରଙ୍ଗି ସର୍‌ଲି ସୁନ୍ଦର୍‌ପନ୍‌ଟା ଦିହୁଁ କରୁଛେ ଝାଏଁ ।୪୩।
ତର୍‌ଲିଲା ମେତାଲ୍ ତରା ଦୁଇଟା ଆଏଁଖ୍ ଦୁହିଥି ବସିଛନ୍
ନୁନୀର୍ ମୁହଁକେ ଜନ୍ ବଲି କାଏଁ ଅଜାନ୍‌ତକେଁ ରସିଛନ୍ ।୪୪।
ନୁନୀ ଠାନେ ଘିନି ହେଲେ ଦୁହି ପରାନୀ ସୋଜ୍
ରହି ନୈ ପାରନ୍ ସହି ନୈ ପାରନ୍ ନୈ ଦେଖ୍‌ଲେଁ ରୋଜ୍ ।୪୫।

ଗୁଟେ ବଲି ପୁଓ ଯେ ସେ ଯାଇ ସମଲପୁରେଁ
ପାଠର୍ ପେଟର୍ ଘିଚାଟନାଥିଁ ମା'ର୍ ନୁ ଛୁଆ ଦୂରେଁ ।୪୬।
ପିଲାର୍ ଭାଗି ଥିଲା ଦୁହିଁକର୍ ସେନେହୋ ସରାଗ୍ ଯେତ୍କି
ବାଟ୍ ନାଇଁ ପାଇ ଭିତ୍ରେଁ ଭିତରେଁ ଉଛୁଲୁଥିଲା ଉତ୍କି ।୪୭।
ପଢ଼ା ଛୁଆକର୍ ଗୁହୁଡ଼ା ଉପ୍ରେଁ ବାଟ୍ ପାଇ ଆଏଜ୍ ଝଲ୍‌ଦି
ବିଛି ହେଲେଁ ବି ନୁନୀର୍ ଆଡ଼କେ ବନିହାଁ ହଏ ଉଲ୍‌ଦି ।୪୮।
ନୁନୀକେ ଦେଖି ମାନି ନଉଛନ୍, ଗୁରୁ ଗୁରୁମା ଦୁହେ
କେତେ ଜନ୍‌ମର ଚିହ୍ନ ପର୍‌ଚେ ଗୁଟେ ଜନ୍‌ମର୍ ନୁହେ ।୪୯।
ଘର୍ ଛାଡ଼ିକରି ପଢ଼ାଘରେଁ ରହେବାର୍ ଜାନି ଜହ
ମାଆଁର୍ ମନ୍‌ଟା ଘାଁଟି ସାନି ହଏ ଅହରହ ।୫୦।
ପାଖେ ପାଖ୍‌ରେଁ ମାଁ ଗୁରୁମାଁ ମଝି ଅଛେ ନୁନୀ
ସେନେହ୍ ରଶି ବନ୍ଧା 'ହଇଛେ ଦୁହେ ଦେଖୁଛନ୍ ଟାନି ।୫୧।
ନଏଦ୍ ଟାକର୍ ଖଏଣ୍ ଦୁହିଟା ନୁନୀ ପାଏନ୍ ଧାର୍ ମଝି
ଦୁହି ଖଏଣ୍ ଛିଇ ବୁହି ଯାଉଛେ କାହିଁ ଯାଏ ନାଇଁ ଅଲ୍‌ଝି ।୫୨।
ଦୁହି ଖଏଣ୍ କେ ଗୁଟେ କରି ବୁହିଲା ଦିନ୍‌ଏ ପାଏନ୍ ଧାର୍
ଗୁରୁମାଁକୁ ମନାଇ ବୁଝାଇ ଆନ୍‌ଲା ଘର୍ ପାର୍ ।୫୩।
ମହାନଏଦ୍ ସାଙ୍ଗେ ତେଲ୍ ମିଶ୍‌ଲା ବର୍ଲି ପର୍‌ଲା ଜନା
ଇବ୍, ଅଙ୍ଗ୍, ଜୀରା, ଝାଓଁ, ସୁଖ୍‌ତେଲ୍ କାହିଁ ମାନ୍‌ତେ ମନା ।୫୪।
ଗାଁ ଯାକର୍ ମାଁ ମାନେ ନୁନୀ ଘର୍ ନ ଠୋଲ୍
କଥା ଭାଷାର୍ ନିଶା ଘାଏକେଁ ସମ୍‌କୁଁ କଲା ଭୋଳ୍ ।୫୫।
କେ ବଲୁଛେ ଆମର୍ ଘର୍‌କେ ଯିମା ଚାଲ ଘଡ଼େ
ବାସି କାଞ୍ଜି ଯାହା ଥିବା ନେହେଲେଁ ପାଏନ୍ ଗଡ଼େ ।୫୬।
କେ ବଲୁଛେ ଆମର୍ ଘରେଁ ପିଇବ ଚାହା ଢୁକେ
ଛୁଟା ଟୁଡ଼େଁ ଫିର୍‌ବ ବଏଲେଁ କାଁ ବଲ୍ ବେ ଲୁକେ ।୫୭।
ନୁନୀର୍ ମା ବଏଲେ "ଛାଡ଼ ଛାଡ଼ ଘିଚା ଟନା
ନୈ ଦେଖିବାର୍ ରନ୍ଧା ଘର୍‌କେ ? ନୁନୀର୍ ଚାହା ବନା ।" ।୫୮।
"ଟିକେ ରଁଚେ ନୁହେ ବହେନ୍! ଢେକ୍‌ଚେ ପାଏନ୍ ବସାଲା ନ ।୫୯।

କଥା ନାଇଁ ସରେ ସିନା ଦିନ୍ ଯାଉଛେ ସରି
ବୁଡା ଅଛେ ବର୍ଲି ଡଡାପନା ଗୁରୁମା ବସ୍‌ଲେ ଫିରି ।୬୦।
ଡାକର୍ ସାଙ୍ଗେଁ ଭିଲ୍‌ଟୋ ଯାକ ଚାଲନ୍ ଆଯୋ ବାଯୋ
କେ ଆଏଛ୍ ଈ ଛିନା ବାଟ୍‌କେ ପିନ୍ଧାଲା ଏତେ ସାଜୋ ।୬୧।
କଏଁଫୁଲ୍ ଫୁଟା ବନ୍ଧଟେ କାଏଁ ଚାଲେ ଝୁଲି ଝୁଲି
ବିଗ୍‌ରି କରି ଗଡ୍ତୁଛେ କାଏଁ ମୁଡିର୍ ଗୁଟି ମାଲୀ ।୬୨।
କିଏ ଧରିଛେ ସଁପୁର୍ ଚାଉଲ୍ କିଏ ଛର୍‌ଲା ଦାଏଲ୍
ଛିଟ୍‌ନେ ବାଏଗନ୍ ଧରି ବଲେ କେ ନୁହେ ବାହାରେ ଡାଏଲ୍ ।୬୩।
କିଏ ଧରିଛେ ମୁନ୍‌ଗା ପେଁଡ଼େ କିଏ ଭାଏଲ୍ ଶାଗ୍ କେରେ
କିଏ ଧରିକରି କଲିଆ କୁଶେର୍ ପର୍‌ଛି ନ ନେଇ ଡ଼େ଼ରେ ।୬୪।
ନଡ଼ିଆ ସର୍‌ସର୍ ଶାଲ୍ ଉଖ୍‌ରା କିଏ ଧରିଛେ ଥାଲେ
କିଏ ଚାଉଲ୍ ଧୁଏ ପାତଲଘଁଟା, କିଏ ମାଖନ୍ ଫାଲେ ।୬୫।
କିଏ ଧରିଛେ କଦେଲ୍ ଫେନ୍‌ଏ କିଏ ଅମ୍‌ରତ୍ ମଡ଼ା
ଥାଲୀ ଭର୍ ଭର୍ ଭେଲି ଗୁର୍ କେ, କେ କ୍ଷୀର୍‌ସା ମୁଡ଼ା ।୬୬।
ଫିର୍‌ଲେ ସଭେ ଯୁହାର୍ ଭେଟ୍ କିଏ କହେ ହଇ ଉଲ୍‌ଗି
"କେନ୍ ଆଡ଼ଉଁ ବେଲ୍ ଉଦ୍‌ଲା ଯେ ଗାଁ ଏଁ ଗଲ ଠୁଡ଼୍‌ଗି ।୬୭।
ଏନ୍ତା ଘାଏ ଘାଏ ଆଉଥିବ ନ ନାଇଁ ପକାବେ ପାଶ୍‌ରି
ଦିନ୍‌କ ଥରେ ନାଇଁ ହେଲେଁ ବି ଦୁଇ ଚାଏର୍ ଥର୍ ମାସ୍‌ରି" ।୬୮।
"ଉସ୍ତାର ଦେଖି ସମିୟା ଜାନି ନିଶ୍ଚେ ଘାଏ ଘାଏ ଯିମି
ଗାଆଁ ନ ରହି ଗାଁ ମାଁକେ ଛାଡ଼୍‌ଲେଁ କାହିଁ ଜୀଇଁମି ?" ।୬୯।
ନୁନୀକେ ଛାଡ଼ି ସଭେ ଫିର୍‌ଲେ, ଗୁରୁ ଫିରନ୍ ନୁହେ
ଆଏବାର୍ ଡକ୍ ଥାଉ ନୁନୀ ଟୁରୁବୁରୁ ହଇ ଦୁହେ ।୭୦।

## ୩

ଗୁରୁ ଆଏଲେ ସମଲ୍‌ପୁରୁ ସାଙ୍ଗେଁ ପୁଓ ରବି
ମା'ର୍ ଉଷତ୍ ବଗ୍‌ରି ଯାଉଛେ ନୈ ରହେବାର୍ ଦବି ।୦୧।
ଗୋଡ଼୍ ପଡ୍ତୁଛେ ଈ ଆଡ଼୍ ସେ ଆଡ଼୍ ମନ୍‌ଟା ଡନାବନା
ଖଁଜି ଦେଖୁଛନ୍ କେତେ ତୁନ୍ ଶାଗ୍ କେତେ ପିଠାପନା ।୦୨।

ରବିର୍ ପାଶ୍ ଛାଡ଼େ ନାହିଁ କେତେବେଲେଁ ବି ନୁନୀ
ତାହାର୍ ମୁହଁର୍ ସହର୍ କଥା ପାଠର୍ କଥା ଶୁନି ।୦୩।
ସକାଲ ପୁଆକେ ବିରହି ଚକେଲ୍ ମାଁ ମନ୍ ଦେଇ ଉତ୍‌କାଲେଁ
ଗୁରସ୍ ସାଙ୍ଗେଁ ଜମେନ୍ ଗୁର୍ ନୁନୀ ଆନ୍‌ସି ତତ୍‌କାଲେଁ ।୦୪।
"ଅଏରସା ପିଠା ଖାଏତା କାଏଁ ଗା" ମାଁ ଦେଖିଲେଁ କହି
ତୁରତା ତୁରତି ଚୁନା କୁଟି ନୁନୀ ଦେସି ଥୁଇ ।୦୫।
ଭାଜୁର୍ କୁଟୁର୍ ମାଁ ବେଲହଉ କା'ଣା ଖାଏବା ବଲି
ନୁନୀ ଆନ୍‌ସି ଭାଜିକରି ମୁରହିର୍ ସାଙ୍ଗେଁ ମୁଗଫଲି ।୦୬।
ସିଝେଇ ଆନ୍‌ଲେଁ କଁଚା ଝୁନ୍‌ଗା ଆର୍ କନ୍ଦମୂଲ୍ କନ୍ଦା
ରବି ବଲ୍‌ସି "ସବୁବେଲେଁ କାଏଁ ଖାଲି ଖାଏବାର୍ ଧନ୍ଦା ।୦୭।
ଆ ଟିକେ ମୋର୍ ପାଶେଁ ବସ୍, କେନ୍ତା କରବୁ କହ,
ଇ ଗାଁର୍ ପାଠ୍ ସରବା ଏସୁର୍ ନାଏଁନ ଇନ୍ କହ,
ନୁନୀକେ ବସେଇ ପାଶେଁ ଦେହ୍‌ମୁଡ଼୍ କେତେ ସୁଆଗେଁ ସୁଆଁଲୁଛେ ।୦୮।
ପଢ଼ାମନର୍ କଢ଼ାମରା - ସଉକ୍ ସଥେଁ ପାଆଁଲୁଛେ ।୦୯।
ସାଁକୁର୍ ପାଁକୁର୍ ମନ୍ ଭିତରେଁ ଉପ୍‌କି ଆସେ ଦଉଲଟେ
ତାର୍ ଭିତ୍‌ରେଁ ବେଦୀ, ବେଦୀ ଉପ୍‌ରେଁ ପୁତ୍‌ଲା ଡ଼ଉଲ୍‌ଟେ ।୧୦।
ସାରା ସଂସାରର୍ ସୁନ୍ଦର୍ ସୁନ୍ଦର୍ କିନିଷ୍ ନୁରି ନୁରି
ଯେ'ନ ଯେନ୍‌ଟା ଭିର୍‌ବା ସେ'ନ ସେଟା ଦେଇଛେ କାଏଁ ଯୁରି ।୧୧।
ସୁନା ଆନି ବିଜ୍‌ଲି ସାଙ୍ଗେଁ ସାନି ସାନି କେ ଘାରିଛେ
ଚୁନ୍ଦିର୍ ଜାଗା ଛାଡ଼ି ସାରା ଶରୀର୍ ସର୍ଲେଇ ସାରିଛେ ।୧୨।
ସେ ଭିତ୍‌ରେଁ ହଜ୍‌ଲା ନିଜେଁ ଉବ୍‌ରି ପାରେ ନାହିଁ
ତବଦ୍ ଦେହେଁ ଜବଦ୍ ମନ୍ ହଏ ଇଥିଁ ତାହିଁ ।୧୩।
ତତାପନା ତନ୍‌ତନ୍ କରି ନୁରି ଦେଖେ ତାର୍ ତନ୍‌କେ
ଛାପ୍‌କି ଦେଖିଲା କାହିଁ ରହେଲା ଯେ ଅମନା ତାର୍ ମନ୍‌କେ ।୧୪।
ଥାବ୍ କଲା ମନ୍ ଯାଇକରି ପୁତ୍‌ଲା ତଲେଁ ଉରଙ୍ଗିଛେ
କେ ଜାନେ ବୁଆ କାଣା କରବା ଯେ ପାହା ନିକେ ସଲଙ୍ଗିଛେ ।୧୫।
ଫୁଲ୍ ନୁରେ କାଏଁ ମୂଲ୍ କରବା ପୂଜାବିଧି କେନ୍ ଠାନୁ
ଉକିଆ ଥିଁ ତ ଆଏଁଖି ଝଲସେ ଜାଗର୍ ଜଲ୍‌ତା କେନୁ? ।୧୬।

ବାସି ନାଇଁ ରହେ ବାସ୍‌ନା ସେ'ନ ହେସି ନିର୍‌ମା ମୂଳ
କାଁ ସରମେ ଚଢ଼ାବା ସେ'ନ କେନ୍ ବାସ୍‌ନାର୍ ଫୁଲ ? ।୧୭।
ଭୋଗ୍ ରାଗର୍ ଲାଗି ବନ୍‌ଏ ଜିନିଷ୍ ମନେ ମନେ ଉହାଟୁଛେ
ଲାଏକ୍ ନୁହେ ଭାଏଲ୍ ଫେର୍ ଅଲ୍‌ଗାବାକେ ସାଆଁଟୁଛେ ।୧୮।
ପୁତ୍‌ଲା ନ ଦେଖ୍‌ଲା ଆଗୋ ନୁନୀର୍ ଚେହେରାର୍ ଝଲକ୍‌ଟେ
ନୁହେ ବଲି କହେ ଥରେ ଝୁପ୍‌ଲା ଝୁମ୍‌ରାର ଝପକ୍‌ଟେ ।୧୯।
ଦେଖ୍‌ଲା ଆଏ ମାଁ, ଆଏ ବହେନ୍, ଆଏ ନାରୀ
ଭର୍‌କୋ କରି ନର୍‌କେଁ ପରବା ତାହାକେ ଦେଲେଁ ନା'ରି ।୨୦।
ଦେଖି ଜାନ୍‌ଲେଁ ଦେବୀ, ସରବ୍, ସୁନ୍ଦରୀ ଅରନ୍ ଦାତ୍‌ରୀ
ନାଇଁ ଜାନ୍‌ଲେଁ ଝିଟ୍‌ରିମୁଡ଼ୀ, କାଲୀ କରାଲୀ ଦାଁତ୍‌ରା ।୨୧।
ଲହ୍ ଲହ୍ ଜିଭେଁ କହ୍ କହ୍ ହୁଏ 'ଦେ ରକତ୍‌ଧାର'
କାହାର୍ ରକତ୍ ? କେ ଜାନେ ମା ! ଛୁଆ ନୁହେ କେ ତାର ? ।୨୨।
ସୁଖ୍ ପାଏବାର୍ ମୁଲୁଁ ଶେଷ୍ ତକ୍ ରାଗ୍ ଅନ୍‌ରାଗ୍ ଶକତ୍
ସେ ରାଗ୍‌କେ ଏକ୍ ଧରିଆ କଲେଁ ହଉଥିବା ରକତ୍ ।୨୩।
ତାର୍ ଲାଗି ସେ ରକତ୍‌ଧାର୍ ଯେ ପରଛା ପାର୍‌ସି ଢ଼ାଲି
ତାର୍ ହେସି ସେ ତାହାକେ ଛାଡ଼ି ନୈ ଯାଇପାରେ ଚାଲି ।୨୪।
ସେ ଥିତି ନଥିଲା ଯେନ୍‌କେ ସୋଜ୍ ପୁହୁଁଚି ହୁଏ ନାଇଁ
ପୁହୁଁଚି ପାର୍‌ଲେଁ ଆଲ୍‌ମାଲ୍ ସହଜେଁ ଘୁଚି ହଏ ନାଇଁ ।୨୫।
ଢ଼ିଲା ହେଲା ପିଁଜ୍‌ରା ଭିତ୍‌ରୁଁ ପିଲା ମନର୍ ଚରେ
ଆକାଶେଁ କିନ୍ଦ୍‌ରା ସୁଖ୍ ଛାଡ଼ି କାଏଁ ସହଜେଁ ଆର ଫିରେ ? ।୨୬।
ମାଁ କହେଲେ 'କାଁ କରୁଛୁ ? ନୁନୀର୍ ମା'ବା' ଆସିଛନ୍
କଥାବାର୍ତା କରମା ବଲି ବନିହାଁ ବେଲୁଁ ବସିଛନ୍' ।୨୭।
ତବି ଯାଇ ରବି ଆଏଲା ଉପରୁଁ ତଲ୍‌କେ ଖସ୍‌ରି
ନୁନୀକେ ବଲେ ମୁଇଁ ତ ସବୁ ଯାଇଥିଲିଁ ବୋ ପାଶ୍‌ରି ।୨୮।
ଦୁହି କୁଟୁମ୍‌ର୍ ଛ'ହି ଜନ୍ ଅ ବସି କର୍‌ଲେ ସାର୍
ଯା'ହେଲେଁ ବି ବନ୍ଦ ନୈ ହଏ ନୁନୀର୍ ପଢ଼୍‌ବାର୍ ।୨୯।
ତାର୍ ପଢ଼୍‌ବାର୍ ଲାଗି ଯାହା ଦର୍‌କାର୍ ତାହା କରମା
ଯାହା ସର୍‌ବା ସବୁ ଖର୍‌ଚାର ଲାଗି କାଁଏଁ ଡ଼ର୍‌ମା ? ।୩୦।

ପଢ଼ା କଥାଶୁନି ବଡ଼ା ଉଷତ୍ ହେଲା ନୁନୀ
ପଢ଼ା ବହି ସମଲ୍‌ପୁରୁଁ ରବି ଆନ୍‌ବାର୍ ଜାନି ।୩୧।
ଦେଖ୍‌ଲା ଦିନୁ ଅନୁବରତ୍ ରବିର୍ କଥା ଭାବୁଛେ
ଦୁସ୍‌ରା ଭାବ୍‌ଲେଁ ମନ୍-ଆଏଁଖ୍‌କେ ତାର୍ ଚେହେରା ଢ଼ାବୁଛେ ।୩୨।
ଛୁଆ ଦିହେଁ ନୂଆଁ ମନ୍‌ଟେ କେତ୍‌ନି କେତେ ସରଲ୍
ବଏସ୍ ଗୁନୁ କେତେବେଲେଁ ଘାଏ ହଏ ସିନା ତରଲ୍ ।୩୩।
ଯେନ୍ ଦିନୁ ତାର୍ ମନ୍ ରାଏଜେଁ ରବିର୍ ଚେହେରା ପଶି
ଆସନ୍ ପାରି ଶାସନ୍ କଲା ଢ଼ଙ୍ଗେ ଗଲା ବସି ।୩୪।
ସେ ଦିନ୍‌ଠାନୁ ଶୁଭେ ନାଇଁ ସେନ କାହାରିର୍ ଟୁଣ୍
ଏକ୍‌ବଗି ଖାଲି ଖେଲି ବୁଲେ ରବିର୍ ରୂପ୍ ଗୁଣ୍ ।୩୫।
ଗୁରା ତକ୍‌ତକ୍ ଚେହେରା ମୁଡ଼େଁ କଲା ଟର୍‌ଟର୍ ବାଲ୍
ଉଦ୍‌ଲା ବେଲର୍ ତେଜ୍ ଆଖିଁ, କୁଦ୍‌ଲା ସିଂହର୍ ଚାଲ୍ ।୩୬।
କଲା ମିସ୍ ମିସ୍ ଭୁଲ୍‌ତା ତଲେଁ ନୂଆଁ ମେଛା ଢ଼ାଢ଼ି
ଭମର୍ ଗୁହୁଡ଼େ ରହିଛନ୍ କାଏଁ ପଦମ୍ ଫୁଲ୍‌କେ ବେଢ଼ି ।୩୭।
ଚଣ୍ ଦୁହିଟା ପାନ୍ ଖାଏଲା ଲେଖେଁ ଦିଶେ ଲାଲ୍
ପୁଛି ଆନ୍‌ଲା କପାଲ୍ ତଲେଁ ଉପ୍‌କି ଆସେ ଗାଲ୍ ।୩୮।
ଲମ୍ କଲମ୍ ଠାଟ୍‌କେ ସାଜେ ଉସାର୍ ପିସାର୍ ଛାତି
ଖନ୍ଦ୍ ଦୁହିଟା କେନ୍ ଷଁଢ଼ର୍ କାଏଁ ସଏଦ୍ ଉଠିଛେ ମାତି ।୩୯।
ଅମରତ୍ ସନା କଥା ଶୁନ୍‌ଲେଁ କିଏ ନେ ହେବା ନିଜର୍
ଦିହ୍‌କେ ଛିଇଲେଁ ଏ ବୁଆ ଗୋ ଲୁହା ଲେଖେଁ ବଜର୍ ।୪୦।
ମନ୍-ରାଏଜେଁ ବୁଲି ବସ୍‌ଲେଁ ସେ ହଉଛେ ଛନ୍ଦ୍‌ଲେଇ
ଦୁସ୍‌ରା ବିଷେ ପାଶରି ହେସି ତାର୍ କଥା ହଇ ଗୁନ୍ଦ୍‌ଲେଇ ।୪୧।
ଗୋତ୍ କୁଟୁମ୍ ଲାଗର୍ ଲେଶର୍ କିଛି ନୁହେ ତ ସିଏ
ତବି କେନ୍ତା ହେତ୍‌କି ନିଜର୍ ନାଇଁ ଲାଗନ୍ ଆର୍ କିହେ ।୪୨।
କେ'ନ ଜାନ୍‌ସି କାଁ ଗଛ୍ ଆଏ କେଭେଁ କେନ୍‌ସି ଲହ
ପାଏଲେଁ ଗୁର୍‌ହେଇ ହେବାର୍ ଲାଗି ହେସି ଗହଗହ ।୪୩।
ଗଛ୍ ହେଲେଁ ବି ଡ଼ାହିର୍ ହାତେଁ ଆବ୍‌ରି ଆନ୍‌ସି ଲହକେ
ସେ ଆହାଲାଦ୍ ପାଏଲେଁ ଲହ ଡ଼ାହିକେ ଡ଼ାହି ଲହଁପେ ।୪୪।

ଲେତେଁ ଗୁତେଁ ତଲେଁ ଉପରେଁ ନାଏଁନ ନିଜର ଭାଏ
ଉକ୍‌ବୁକି ଲାଗେ ଟୁକେଲ୍ ଜୀବନ୍ କେନ୍ତା କଟ୍‌ବା ହାଏ ? ।୪୫।

## ୪

ପନ୍ଦର୍ ଥର୍ ଚାଲି ଗଲାନ୍ ନୂନୀର୍ ଦିହେଁ ବଛର୍
ତାହାର୍ ପାହାର୍ ଚିହ୍ନ ଲେଖେ ସୁନ୍ଦର୍ ପନର୍ ଅଖର୍ ।୦୧।
ରୁଖା ରୁଖା ହାତ୍‌ଗୋଡ଼୍‌କେ କୁନ୍ଦେଁ ନେଇ ବସେଇଛେ
ଗାଲ୍ ମାନ୍‌କୁଁ ଗୁଲାପ୍ ରଙ୍ଗେଁ ମନ୍ ଦେଇକରି କଷେଇଛେ ।୦୨।
କେ'ନୁ ପାଏଲା ଏଡ଼୍‌କି ଗଲା ରଙ୍ଗ ଆନିଛେ ଜୁରି
ବୁଡ଼େଇ ନେଇଛେ ମୁଡ଼ର୍ ବାଲ୍‌କେ ମେଘ୍ ଯାଉଛେ ଡ଼ରି ।୦୩।
ମେଘର୍ ଡ଼ର୍ ଭାଙ୍ଗ୍‌ବାକେ କାଏଁ ଧୁନ୍ ଦେଇଛେ ଢ଼େରି
ଇନ୍ଦର୍ ରଜା, ଭୁଲ୍‌ତା ମାନ୍‌କେଁ ସହଜେଁ ହଏ ବା'ରି ।୦୪।
ଧୁନ୍‌କେ ଦେଖ୍ ହିରନ୍ ଆଏଁଖ୍‌ମାନେ ତାର୍ ତଲେଁ
ଭିର୍କି ଭିର୍କି ଇଆଡ୍ ସେଆଡ୍ ହୁଅନ୍ କଲେଁ କଲେଁ ।୦୫।
ରୂପ ନାକର୍ ଠାସ୍ ଆନିକରି ନାକ୍ ଉପରେଁ ସଜେଇଛେ
ରଙ୍ଗ୍ ନେଇକରି ଚଣ୍ ଦୁହିଥିଁ ଯତନ୍ କରି ରଁଜେଇଛେ ।୦୬।
ଶଁଖ୍ ନେଇକରି ବେକେଁ ଥୁଇ ପୁଛି ଆନି ତାର୍ ରଙ୍ଗ୍‌କେ
ପିଷି ପିଷି ମଖେଇ ଆନିଛେ ନୂନୀର୍ ସାରା ଅଙ୍ଗ୍‌କେ ।୦୭।
ମନ୍ ହଉଛେ ଇଆଡ୍ ସେଆଡ୍ ନାଇଁ ରହେବାର୍ ଥାବେଁ
ନାଇଁ ଜାନ୍‌ବାର୍ ବୁଢ଼ି ରହୁଛେ କେତେବେଲେଁ କେନ୍ ଭାବେଁ ।୦୮।
ଗୁରୁ ବଏଲେ "ନୂନୀ ଗା ! ତୋର୍ ଇଟା ଶେଷ୍ କିଲାସ ଆଏ
ବୃତ୍ତି ପାଏଲେଁ ତୋର୍, ମୋର୍, ମା'ବାପର୍ ଉଲାସ ଆଏ ।୦୯।
ପରହୁର୍ ସାଲେଁ କଥା ମାନି ପାଠ୍ ପଢ଼୍‌ଲା କଷି
ସ୍ପର୍ଦ୍ଧା କରତ ବୃତ୍ତି ପାଏଲା ଝାଁକର୍ ଘରର୍ ଶଶି" ।୧୦।
ଶଶିର୍ କଥା ଶୁନ୍‌ଲା ପରେଁ ନୂନୀର୍ ମନର୍ ପାନିଁ
ଲହରୀ ଉଠି ହଁଦ୍‌ଲେଇ ହେଲା କିଏ ପାର୍‌ବା ଜାନି ? ।୧୧।
ଜହ ଦିନ୍ ତ ନୁହେ ହଏ ପନ୍ଦରେହଇ ଦିନର କଥା
ସେ ଦିନର କଥା ସେନ୍ତା ଥାଇ ଆଏଜ୍ କରୁଛେ ଅଥା ।୧୨।

ଆଖିର୍ ଆଗେଁ ଖେଲିଗଲା ଏଛନି ସତେଁ ଦେଖୁଛେ
ଗୋଟ୍ ଗୋଟ୍ କରି ମନର୍ କନେ ମୋଟ୍ କରି କାଏଁ ଲେଖୁଛେ ।୧୩।
ସବୁ ଦିନ୍ ଲେଖେଁ ସେ ଦିନେ ବି ବେଲ୍ ଯାଉଥାଏ ବୁଡ଼ି
ଚରେ ସଂସାର ଗୁଡ଼ା ଧରେ ଛଁନୁ ସେ'ନୁ ଉଡ଼ି ।୧୪।
ପଛିମ୍ ଆକାଶ୍ ଲାଲ୍ ପନ୍‌ତେଁ ଢ଼ାପି ଦେଖେ ଛାତି
ତରା ହେବେ ତରା ତରା ଏଦେ ଆଏବା ରାତି ।୧୫।
ରଙ୍ଗ୍ ବିରଙ୍ଗର୍ ପାଟ୍ ବେନ୍ଦଲା ଫୁଟେ ଦୁଆରି ଦୁଆର
ରାଁଜ୍ ମାନ୍‌କେ ଜହ୍ନି ଫୁଲର୍ ଲାଗି ଯାଇଛେ ତିହାର୍ ।୧୬।
ଗାଆଁକେ ଫିରନ୍ ପଢ଼ାଛୁଆ ସାରି ପଢ଼ାପଢ଼ି
ଚରହୁଆ ସାଙ୍ଗେଁ ଗୋରୁଆ ଫିରନ୍ ଆଉର୍ ଛେଲ୍ ମେଢ଼ି ।୧୭।
ପାଶର୍ ଗାଆଁର୍ ବଡ଼ ଇସ୍କୁଲୁଁ ଆପନେ ପଢ଼ି ଫିରୁଛେ
ଗରାମ୍‌ପତି ଗୁଡ଼ି ଠାନେ ଗାଆଁର ବାଟ୍‌କେ ମୁରୁଛେ ।୧୮।
ଗୁଡ଼ି ବରହ୍ମା ଚତ୍‌ରା କରୁଥିଲା ସେ'ନ ଶଶି
ଆମ୍‌କୁ ଦେଖି ଅଟ୍‌କି ଗଲା ଲଟ୍‌କିଲା ମୁହେଁ ହସି ।୧୯।
ମୋର୍ ସାଙ୍ଗେଁ ଥିଲା ଖାଲି ସାଙ୍ଗର୍ ଟୁକେଲ ଉଦିଆଁ
କହେଲା ଦଦା ଅଛେ କାଏଁ କାର୍ ଦେବୀ ପୂଜା ବଦିଆଁ ? ।୨୦।
ତୋର୍ ବାଆ କାଏଁ ନାଏଁନ୍ ଗାଁଏଁ ବର୍ଗି ଯାଇଛେ ତତେ
ପଢ଼ାପଢ଼ି କାଏଁ ଛାଡ଼ିନେଲୁ ନ ମତେ ନାଇଁ ଲାଗେ ପରତେ ।୨୧।
ବନ୍ଏ କରି ସେବା କର୍ ଯେ ଦେବା ଦେବୀ ଦରଶନ୍
ଧନ୍ ଜନ୍ ସାଙ୍ଗେଁ ଗୋପ୍ ଲଛମୀ ପାଏବୁ ହେଲେଁ ପରସନ୍ ।୨୨।
'ନାଇଁ କହ ନାଇଁ କହ' ବଲି କେତେ କର୍‌ଲିଁ ମନା
କେ'ନ ମାନ୍‌ତା ଉଦିଆଁ କହିନେଲା ତତାପନା ।୨୩।
କହେବା୍ ତାର୍ ଦେଖି ମୋର୍ ଦେହ୍‌ମୁଡ଼୍ ସବୁ ଥରୁଛେ
ସାଲଓ୍ୱାର୍ କୁର୍ତା ଝାଲ୍ ସର୍‌ସର୍ ଚିପ୍‌ଲେଁ ଥିପି ପରୁଛେ । ।୨୪।
କା'ଣା ହେବା କା'ଣା ନାଇଁ, ନାଇଁ ବୁଝ୍‌ଲେଁ ଶଶି
ଚାରହି ଆଡ଼େଁ ଜାରି ହେବା ମତେ ଉଡ଼ାବେ ହସି ।୨୫।
ଜିଭ୍ ଚାବିକରି ରହିଗଲିଁ ସାଙ୍ଗେଁ ସାଙ୍ଗ୍ ଦେଲା ଜର୍
ସର୍‌ପଟି ଯାଏ ତନ୍ ମନ୍ ମୋର୍ ଉଡ଼ି ଯାଉଥାଏ ସର୍ ।୨୬।

ହସିକରି ଶଶି ବଏଲା "ପାଏଁଲି ଦେବୀର୍ ଦରଶନ୍
ନୁହେ ଜାନେଁ ତାଏଲ୍ ଦେବୀ ହେଲା କି ନି ପରସନ୍" ।୨୭।
ହେତ୍‌କି କହି ଯେତ୍‌କି ବେଲେଁ ମୋର୍ ଆଡ଼୍‌କେ ଦେଖ୍‌ଲା
କହି ନି ହେବାର୍ କଥା କାଏଁ ମୋର୍ ଭିତ୍‌ରେଁ ଲେଖ୍‌ଲା ।୨୮।
ସେ ଦେଖା ଥିଁ କା'ଣା ଥିଲା ଯେ ଦେଖ୍‌ଲା ଲୋକ୍ ଜାନିଛେ
ମୋର୍ ବଳି ଥିଲା ଯେନ୍ ଟିକ୍‌କ ଟିକ୍ ଟିକ୍ କରି ହାନିଛେ ।୨୯।
ସୁଆଁଳି କରି କୁଆଁରୀ ମନ୍‌କେ ଭିତ୍‌ରୁ ଆନ୍‌ଲା କାଆଁରି
ଭାବ୍‌ନା ଗୁହ୍ଲୁଡ଼ା ଦଉଡ଼ିଛନ୍ ତ ବନ୍ଧା ହଇକରି ଦାଆଁରି ।୩୦।
ମୋର୍ ହଇକରି ଜାଇଁନ ମୁଇଁ ବୁଡ଼େଇ ନେଇଛେ ସୋର୍
ଛିଡ଼େଇ ନୁହେ ଗୁଡ଼େଇ ହଇ ଯାଇଛେ ଯେନ୍ ଡ଼ୋର୍ ।୩୧।
ଉଦରି ବିଦ୍‌ରି ଗଲା ମୋର୍ ମନ୍-ମଚାର ତଲି
ପଢ଼ାଶୁନା ଯାହା କର୍ଲି ଥୁଇଲେଁ ଯାଉଛେ ଗଲି" ।୩୨।
ଇ ଭାବ୍‌ନା ଭିତ୍‌ରେଁ ବନା ହଇ ଯାଉଛେ ନୁନୀ
ଗୁରୁକର୍ କଥା ଶୁନିକରି ବି ନାଇଁ ପାର୍‌ଲା ଶୁନି ।୩୩।
କିଛି ନି କହି ତାକର୍ ମୁହଁକେ ଭକ୍ ଭକ୍ ଦେଖଛେ
ଅଠାନର୍ ଉଠାନ୍ କେ କାଏଁ ସୋର୍-ଜୁଏ ଥିଁ ସେଁକୁଛେ ।୩୪।
ପାଁଚ୍ ବଛରର୍ ଦିନୁ ନୁନୀକେ ଦେଖି ଆଉଛନ୍ ଗୁରୁ
ଅବ୍‌ତକ୍ ଭି ତାକର୍ ଆଖିଁ ଦିଶୁଥିଲା ସେ ସୁରୁ ।୩୫।
ଆଜିର୍ ଦେଖ୍‌ଲେ ନୁନୀର୍ ବିଚାର୍ ଭାବ୍ ରଙ୍ଗ ଦୁସ୍‌ରା
ନିଘା କଲେ ନୁନୀର୍ ଆଏଁଖି ଶାଗୁଆ ସପନ୍ ପସରା ।୩୬।
ଗୁରୁର୍ ଆଗେ ନୁନୀ ବସିଛେ କଥା ବାର୍‌ତା ନାଇଁ
ସବୁଦିନର୍ ସେ ମେଲା ମନର୍ ଖୁଲାପନ୍ କାହିଁ ? ।୩୭।
କାଣା କହେତା କା'ଣା ନାଇଁ ମୁହୁଁ ଫିଟ୍‌ବାର୍ ନାଇଁ
ଲାଜର୍ ଲାଲିଆ ରଙ୍ଗ୍‌ଟା ଆସି ମୁହଁ ଦେଲା ନ ଛାଇ ।୩୮।
ସୁନ୍ଦରପନ୍‌ର ଗଛ୍‌କେ କିଏ ଝନ୍‌ଏ ଝୁନି ଝୁନି
ଫୁଲ୍‌ଫଲ୍ ଯାହା ଝରେ ନୁନୀର୍ ଦିହେଁ ଖଁଜେ ଆନି । ।୩୯।
ଘରେଁ କହେଲେ ଥରେ 'ନୁନୀ ରାଏଇକେ ସୁନ୍ଦର୍ ହେଲା ନ'
ସେଥିର୍ ମାନେ ବୁଝି ନାଇଁ ପାରଲେ ଗୁରୁ ପହେଲା ନ ।୪୦।

ବାପର୍ ଆଏଁଖ୍ କେ ଦିଶ୍‌ସି କେନ ଝିଅର୍ ସୁନ୍ଦରପନ୍
ଶହ ଶହ ପଛେଁ ସହରଉଥିସନ୍ ଦେଖିଲା ଲୋକ୍ ଜନ୍ ।୪୧।
କାଏବ୍ କବିତାର୍ ରସ୍ କବିର୍ ଆଖିଁ ପଡ଼େ ନାଇଁ
ପଢ଼ଲା ଲୋକ୍ ସେଥିଁ ଗାଧି ବୁଡ଼ି ହେସନ୍ ବାଈ ।୪୨।
ଅଏସ୍ କରବା ବଲିଁ ଯୁଆନ୍ ବଏସ୍ ଦିହେଁ ବସ୍‌ଲାନ
ପରଘେଇ ଆନ୍‌ବା ବଲି ଅରଘ୍ ନେଇ ଶରୀର୍ ହଁସଲାନ ।୪୩।
ଅଏନ୍ ଭାବେଁ ଠିଆ ନାଇଁ ହୁଏ ମାଏନ୍‌ତା ଲୁକର୍ ଆଗେଁ
ମନେ ମନେ ବାଟ୍ ନୁରୁଥାଏ ପଲାବା କେନ୍ ବାଗେଁ ।୪୪।
ମାଆଁ ନୁରୁଥିବା ବଲି ଗାଆଁ ଆଡ଼୍‌କେ ମୁହାଁଲା
ଗୁରୁକର୍ ଆଗେଁ ଚେହେରାଟାକ ବନ୍‌ଏ କରି ଲୁହାଁଲା ।୪୫।

୫

ନଏଦ୍ ନଲିଆ କଟା ବନ୍ଧ୍ ମୁଡ଼ା ଢୁଡ଼ାର୍ ପାଁଏନ୍
ଫଟ୍‌କେଇ କରି ହଇଗଲାନ ଫୁଟ୍‌ଲା କଇଁର୍ ଖାଏନ୍ ।୦୧।
ବାଦଲ୍ ଦିହୁଁ କଲା ରଙ୍ଗ୍ କିଏ ନେଇକରି ଆଁଚରି
ଧୋବ୍ ଫର୍ ଫର୍ ରଙ୍ଗ ଆନି ଦେଇଗଲାନ ଚିତ୍‌ରି ।୦୨।
ଶଁଖ୍ ସଫେତ୍ କାଏଁଶ୍ ଫୁଲର୍ ଖେଲି ଯାଉଛେ ଲହରି
ରୂପାର୍ ଦୁଲି ଫାନ୍ଦିକରି କାଏଁ ଶିରୀ ଯାଉଛେ ପହଁରି ।୦୩।
ଧରତୀ ରାନୀର୍ ଅଙ୍ଗେଁ ସୁନ୍ଦର୍ ସାତ୍ ରସିଆ ଶାଢ଼ୀ
ଉର୍‌ହ୍ଲାଥି ତାର୍ ଜନା ପର୍‌ସି ଧୋବ୍ ଫର୍‌ଫର୍ ଧଡ଼ି ।୦୪।
ଏଗାର୍ ଦିନର୍ ଦିନେ ଭୁଦୋ ମାସର୍ ଉଜଲ୍ ପଖେଁ
ଗାଆଁ-କର୍‌ମା ବସ୍‌ଲା ଏଭେଁ ସବୁ ବଛର୍ ଲେଖେଁ ।୦୫।
ଗାଁ' ଖୁଲିଁ ଗାଁ ମର୍‌ଲିଟା ନୁନୀ ଘରର୍ ବେଶୀ ନ
ନାମଯଜ୍ଞ କି କରମ୍‌ଶାନୀ ହେ'ନ ଏକା ହେସି ନ ।୦୬।
କର୍‌ମା ଗଛୁଁ କର୍‌ମା ଡ଼ାଲ୍‌ଟେ ବେଲ୍‌ବୁଡ଼ାକେ ଆନି
ମାନ୍ଦଲ୍ ବଜେଇ ବରି ଆନ୍‌ଲେଁ ଦେବ୍‌ତା କରମ୍‌ଶାନୀ ।୦୭।
ଏସୁର୍ ସାଲେଁ ପହେଲା କରି ଶଣି କର୍‌ଲା ପୂଜା
କର୍‌ମା-କଥେନ କହେଲା ତାର୍ ଲାଗର୍ ଲେଶର୍ ଅଜା ।୦୮।

ଡାଏତ୍‌କଣା ବଲିଁ ଝାଁକର୍ ବୁଢ଼ା ନୈ ବାହାର୍‌ବାର୍ ରାତିଁ
ନୂଆ ମୂଝାରୀ ନୂଆ ମନ୍ ଗାଆଁ ଉଠିଛେ ମାତି ।୦୯।
ଝାଁକର୍ ଘରେଁ ମାନ୍ଦଲ୍ ଥିଲା ପୁରଖା ପାତି ଦିନୁ
ଝାଁକର୍ ବୁଢ଼ା ବେଭେଁ କେତା ବଜାଏ ଛନୁ ସେନୁ ।୧୦।
ଶଶିର୍ ହାତେଁ କପି ହେଉଛେ ଆଏଜ୍ ଦିନେ ସେ ମାନ୍ଦଲ୍
ଗର୍‌ଜି ଉଠେ ଝାରର୍ ବାଘ୍ କି ଆକାଶ୍ ଉପରେଁ ବାଦଲ ।୧୧।
ଅବାକ୍ ହେଲେ ଗାଆଁର୍ ଲୋକ୍ କେଭୁଁ କେଭୁଁ ଶଶି
ସାଏରେଁ ଆନି ମାନ୍ଦଲକେ କାଏଁ ବଏସରା କଲା ବସି ।୧୨।
ହାକ୍‌ଲା ବାଜ୍‌ନା ଅବିକଲ୍ ବାଜେ ହାତେଁ ତାର୍
ତାଲ୍ ମାନ୍ ନୁହେ ଇଆଡ୍ ସେଆଡ୍ ଚଢ଼ା ଉତାର୍ ପାର୍ ।୧୩।
ମୁରିଆ ବାହାନେ ମାଉଁସ୍ ଯେତ୍‌କି ପର୍‌ଥିସି ଉପ୍‌କି
ଭରନି ପାରେଁ ଧର୍‌ନୀ ପେଟେ ଉପ୍‌ଲି ପର୍‌ସି ଉତ୍‌କି ।୧୪।
କୁଟି ବାଜ୍‌ନା ନଥିଁ ନଥିଁ ପାରକେ ପାର୍ ଯୁରି
ଘାଉଁ ଘାଏକେ ନୂଆଁ ବାଜ୍‌ନା ଗୁଟେକେ ନାଇଁ ଦୁରି ।୧୫।
କେତେବେଳେଁ ଝୁମେର୍ ବଜାଏ ଆର୍ ଘାଏକେଁ ଦାଦ୍‌ରା
କହର୍‌ବାର୍ ପରେଁ ସଂଚାର୍ଂ ସୋର୍ ବଜାଏ ନାଇଁନ ହଦ୍‌ରା ।୧୬।
ଗାହାକ୍ ଗାଏଲେଁ ବାହାକର୍ ତାଲ୍ ମାନ୍ ଗିଆନ୍‌କେ କଟି
ତାଲେଁ ବନାଇ ତୁରୁତ୍ କରି ତୁର୍‌ତି ଦିଏ ଖୁଡି ।୧୭।
ଧଏନ୍ ତା'ର ହାତ୍ ଧଏନ୍ ମାନ୍ଦଲ୍ ଆକଭୂତ୍ ତାର୍ ସୋର
ଉଦ୍‌ମାତ୍ ହଇ ନାଚ୍‌ନେବାଲେ ହଇଗଲେନ ଭୋଲ୍ ।୧୮।
ସିଆନ୍ ସୁଜନ୍ ବୁଆପୁତା ପାଶେଁ ପାଶେଁ ବସି
ଝୁମ୍‌ରା ଭୁଲି ଉମ୍‌ଡ଼ା ସୁରେଁ ରହି ଯାଇଛନ୍ ରସି ।୧୯।
ପିଁଡ଼ା ପିଁଡ଼ା ମାଏଝି ଟୁକେଲ୍ ଏକସରଲଗ୍ ଦେଖୁଛନ
ଆନ୍ନ୍‌ଟାମୁରା ଭିତ୍‌ରେଁ ସେ ରସ୍ ଏକସ୍‌କେଁଟି ମାଖୁଛନ୍ ।୨୦।
ନୁନୀ ଘରର୍ ପିଢ଼େଁ ପକେଇ ବଢ଼େ ଖଜୁର୍ ପଟି
କର୍‌ମା ଦେଖନ୍ ଗାଁ ଯାକର୍ ଝି ବହୁ ବେଟୀ ।୨୧।
ଆଗେଁ ବସନ୍ ନୁନୀ ସାଙ୍ଗେ, ସାଙ୍ଗର୍ ଟୁକେଲ୍‌ମାନେ

ନୁନୀର୍ ଆଖିଁ ପିଛଡ଼ା ନାଇଁ, ଦେଖ୍‌ସି ଗୁଟେ ଧିଆନେ ।୨୨।
ଢେବ୍‌ରି ଫାଲେଁ ସେବ୍‌ତୀ ବସେ ଆବ୍‌ରି କରି ନୁନୀକେ
ଭୁଜ୍‌ନି ଅଛେ ରଜ୍‌ନୀ ହାତେଁ ଧରି ବନ୍ଧେନ୍ ଚୁନିକେ ।୨୩।
ବିନ୍‌ଓ, କୁମ୍‌ଓ, ଉଦିଆଁ, ଉତ୍‌ରା, ଉଷା ବସନ୍ ପାଶେଁ
ନୁନୀକେ ଦେଖେଇ ଆଏଁଖ୍ ମରାମତି ହୁଅନ୍ ତାଙ୍କର୍ ଠାସେଁ ।୨୪।
ଉଦିଆଁ ଦେଖ୍‌ଲା ନୁନୀର୍ ଦିହେଁ କେତ୍‌ନି କେତେ ଝାଲ୍
'ଦେହେ ଅଏନ୍ ନାଇଁ' ବଲି କହେ 'ଶୁଇବୁ ଘର୍‌କେ ଚାଲ୍' ।୨୫।
ଇଆଡ଼୍ ସେ ଆଡ଼୍ ଦେଖି ନୁନୀ ଘର୍‌କେ ଗଲା ପଶି
ସାଏଁ ସାଏଁ ହଇ ସାଏଁକଲା ମାନ୍ଦଲ୍ ଥୁଇଲା ଶଶି ।୨୬।
ଇ ଉଠ୍‌ଗନ୍ ନୁରୁଥିଲା କଥେନ୍ କୁହା ଅଜା
"ବୁଢ଼ା ହେଲିନ ନୈ ଦେଖିଥାଇଁ ଏନ୍ତା ମାନ୍ଦଲ୍ ବଜା" ।୨୭।
"ବନିହାଁ ଦିନୁ ନାଇଁ ଧରିଥାଇ ଆଝିର୍ ଜମକ୍ କର୍‌ମା
ପାଶ୍‌ରି ହେବା ଭାଏଲ୍ ଆମେ ଯେ ଯେନ୍ ଦିନେ ମର୍‌ମା" ।୨୮।
କହେଲା ଯାଇ ଠିଆହଇ କର୍‌ମା ଡ଼ାଁଡ଼ର୍ ମଝାନ
"ଅଥାବିଥା ହେଲେ ପିଲେ ଆଝିର୍ ନଚା ବଜାନ ।୨୯।
କରମ୍‌ଶାନୀର ପର୍‌ସାଦ୍ ଅଛେ ଦୁଇଘଡ଼ା ଦୁଇ କେଛୋ
ଟିକେ ଟିକେ ପାଉନ୍" ଶୁନି ଶଶି ହେଲା ବିଛୋ ।୩୦।
ଉଠିକରି ତାର୍ ଅଁଟାଭିରାକେ ବେକେଁ ପକେଇ କହେଲା
"ପିଲାଲୋକ୍ ମୁଇଁ କହେତିଁ ପଦେ ବନ୍ଦ୍ ହେଉଁ ଘାଏ ଜେହେଲା" ।୩୧।
ଏତ୍‌କି ଶୁନି ମଣ୍ଡଲୀଟା ଦୁର୍‌ତି ହେଲା ତବଧ୍
ଶୁଭୁଥିଲା କେ'ନ କେନ୍ତା ଛୁଆକନ୍ଦା ଶବଦ୍ ।୩୨।
ଶଶି କହେଲା ହାତ୍ ଯୁଡ଼ି କରି ଇଟା ଗୁଟେ ଯଜ୍ଞ ଆଏ
ତାର୍ ଲାଗି ଯେ ପାଠ୍ ଶାସ୍ତର୍ କିଛି ନାଇଁ ଜାନି ଅଜ୍ଞଆଏ ।୩୩।
ଆଗେଁ ପୁର୍ବେଁ ଘି' ଆହୁତି ଦେଇ ମୁନି ଋଷି
ଦେବ୍‌ତାକର୍ ଲାଗି ଯାଗ୍ କରି ନିଜେଁ ହଉଥିଲେ ଖୁସି ।୩୪।
ଦେବ୍‌ତାମାନଙ୍କୁଁ ସୋମ୍‌ରସ୍ ଦେଇ ପୂଜା କର୍‌ମା ବଲି
କରମ୍‌ଶାନୀର ପୂଜା କେତେଦିନୁ ଆଏଲା ଚଲି ।୩୫।

ସୋମ୍‌ଲତାର୍ ତ ଦେଖା ନାଇଁ କାହିଁ ଭାଏଲ୍ ସୋମ୍‌ରସ୍
ମହୁଲ୍ ରସେଁ କବାର୍ ଚଲାଲେ ହଇ ଭକ୍ତି ବଶ୍ ।୩୬।
କରମ୍ ଜାନି କରମ୍‌ଙ୍ଗା ଫଲେ ସଭେ ଜାନିଛନ୍ ଇଟା
ବନ୍‌ଏ କରମ୍ ଲାଗି ମୁନୁଷ ! ବୁଧି ବିଚାର ଫିଟା ।୩୭।
ମୁନୁଷର୍ ଦିହେଁ ଦେବ୍‌ତା ଅଛେ, ଅଛେ ସିର୍ଜିନା ଶକ୍ତି
ଶୁଇଛେ ବଏଲେଁ ଚେତେଇ ପକା ସେ ଦେବାନ ମୁକ୍ତି ।୩୮।
ଦେବ୍‌ତାଠାନେ ମଦ୍ ଗଁଜାଇ ବଲି ତାର୍ ପରସାଦ୍
ଖାଏଲେଁ ପିଇଁଲେ ଭଲ୍ ନାଇଁ ହଏ ହେବା ପଛେଁ ପର୍‌ମାଦ୍ ।୩୯।
ପିଲା ଲୁକର୍ କଥା ବଲି ହେଲା ନାଇଁ କର
ଅଛେ ବଏଲେଁ ଦୋଷ୍ ପଛେ ମାର୍‌ବାର୍ ହେଲେଁ ମାର ।୪୦।
ଜଗତ୍ ଜଁଜାଲ୍ କରମ୍-ହତିଆରେଁ ହେବା ହାନି
କରମ୍-ହତିଆର୍ ଶାନ୍ ଧର୍‌ବାର୍ ଲାଗିଁ କରମ୍‌ଶାନୀ ।୪୧।
ଲିଆ ଯୁଗାର୍ ତିଖ୍‌ରି ସାଙ୍ଗେଁ କୁଶେର୍ ବଡ଼ଲ୍ ମାୟା
ପର୍‌ସାଦ୍ ଅଛେ କରମ୍‌ଶାନୀର୍ ଯେ ଚାହଁବା ଯାହା ।୪୨।
ସେଟା ପାଇ କରମ୍‌ଶାନୀକେ ହାଏର ଗୁହେର୍ କରୁଁ
ବନ୍‌ଏ କରମ୍ କରି ଜୀଇଁମା ବନ୍‌ଏ କର୍‌ମେ ମରୁଁ ।୪୩।
ବନିହାଁ ଲୋକ୍ ବଏଲେ ବନ୍‌ଏ କଥା ସତ୍ ସତ୍
ଦେବ୍‌ତା ନ କାଏଁ ଲାଗ୍‌ତା ନିଶା ପାଏନ୍ ଚିଜ୍ ଯାବତ୍ ।୪୪।
ଫୁଫ୍‌ଲା ଟୁଣେଁ ଗଞ୍ଜିହା ବଏଲେ ନୁହେ ଇଟା ନିୟେ
ଫୁର୍‌ଖା ଦିନୁ ଚଲି ଆଇଛେ ନାଇଁ ବାଆନି କିହେ ।୪୫।
ମଦୁଆମାନେ ନିଦୁଆ ମୁହେଁ ଗଲେ ସାକ୍ଷୀ ହଇ
କାଲ୍‌ହିର୍ ପିଲାଟାକେ ଦେଖ ନେଁ ଶୁଖିଥିବା ନାହି ।୪୬।
ନାକର୍ ସିଙ୍ଘେନ୍ ପୁଛି ନାଇଁ ଜାନିଥିବା ତାଏଲ
ଦେବ୍‌ତା ଲାଗି ଇଟା ବନ୍‌ଏ ଅମାନ୍‌ତି ନୁହେ ଭାଏଲ୍ ? ।୪୭।
କରମ୍‌ଶାନୀର ପାଉନା ବନ୍ଦ୍ କଲେଁ ତାର୍ ନିଶା
ଦେବ୍‌ତା ହେଲେଁ ବି ସହେବା କାଏଁ ନାଇଁ ହେବା ରିଷା ? ।୪୮।
ଦେଖିବ ନ ଗା କରମ୍‌ଶାନୀ କରମେ ଘାଁଟି ସାନି
ସାରା ଗାଁ ଗୁନ୍ଦଲେଇ ନେବା ତେଭେଁ ପାର୍‌ବ ଜାନି ।୪୯।

ଇ କଥାକେ ଭି ଭିତରେଁ କିଏ କେନ ଗହ୍ଲୁଛେ
ଢ଼େଲ୍ ଟେ ପରଲେଁ ସମୁଦର୍ ଥିଁ ସିଏ କେନ ପୁହ୍ଲୁଛେ ।୫୦।
ଘର୍ ଭିତରେଁ ଶଶିର୍ କଥା ନୁନୀ ଶୁନ୍‌ଏ ଯେତ୍‌କି
ଅଜାନ୍‌ତକେଁ ତାର୍ ଆତ୍‌କେ ଉଲ୍‌ଦି ହଏ ସେତ୍‌କି ।୫୧।

୬

କୁଆ କହେଲା ରାଏତ୍ ପାହେଲା ଘାଁସୁ ଓସ୍ ଛାଡ଼େ ନୁହେ
ଖରା ଦେଖି ତରା ଗଲେ କେଭେଁ ନାଇଁ ପଟନ୍ ଦୁହେ ।୦୧।
ଗରାମ୍‌ପତିର୍ ବର୍‌ଗଛ୍ ଅଗେଁ କଅଁଳି ଖରା ନାଚୁଛେ
ପତ୍‌ରେଁ ଲାଗ୍‌ଲା ଅନ୍ଧାର୍-କଲା ଛଡ଼ାବାକେ କାଏଁ କାଚୁଛେ ।୦୨।
ଗାଁ ମୁଡ଼୍‌ସାର୍ ଡ଼ଙ୍ଗର୍ ମୁଡ଼େଁ କୁହୁଲା ମୁଡ଼ା ବୁହି
ଜନାଲା ମେତାଲ୍ ଉଜନ୍ ଆଏ କାଏଁ ପଡ଼େ ଟିକେ ଲୁହି ।୦୩।
ସର୍‌ଲା ବାଗିର୍ ଝର୍‌ନା ଧାର୍ ଥେବି ଥେବି ବୁହୁଛେ
କର୍‌ପନ୍ ଦେଖି ସର୍‌ପଟି କରି ଅଲ୍‌ପର ଟିକେ ଜୁହୁଛେ ।୦୪।
ରାଏତ୍ ସର୍‌ତା ଜନର୍ ସଙ୍ଗେଁ ହଇ ଲଟର୍ ପଟର୍
କାକର୍ ମାଖିଁ କଏଁଫୁଲ୍ ଦଲ୍ ହେସନ୍ ଲସର୍ ପସର୍ ।୦୫।
ଘାଏ ଘାଏ ଡ଼ାକେ ଗୁହାଳ୍ କନୁ ଗାଏ ହମ୍‌ମା ହମ୍‌ମା
ଢ଼େଁକି ଶାଲୁଁ ଦାମୁର୍ କହେ ଡ଼ିଲ୍‌କେଁ ଯିମି, ମା ।୦୬।
କର୍‌ମା ଉହ୍ଲୁଲା ସରେ ନୁହେ ଆମ୍ ତରନ୍ ନୁହେ ଉଙ୍କ୍‌ରେ
ଅଲୁଆ ଚାଉଲ୍ ନଡ଼ିଆ ବୁଟ୍ ଲିଆ ଗୁଟେ ଗୁଟେ ବିଗ୍‌ରେ ।୦୭।
ଝାଁକର୍ ବୁଢ଼ା ତାକର୍ ପିଁଢ଼ା ନାଇଁ ଛାଡ଼୍‌ବାର୍ ବସିଛେ
ହଜରି ଥିଁ ତାର୍ ଗୋଡ଼୍ ହଲ୍‌କ ଅଁଟା ସାଁଗେ କଷିଛେ ।୦୮।
ଆଏଲା ଗଲା ଲୁକେ ତାର୍ ସାଙ୍ଗେଁ ଘାଏ ବସି
କହନ କାଏଲ୍ ଯାହା ବଜାଲା ଯାହା କହେଲା ଶଶି ।୦୯।
ହେନ୍‌ତା ଲାଏକ୍ ପୁଓ ଭାଏଗ୍ ଥିଲେଁ ଯାଇ ମିଲ୍‌ସି
ମାଏକି ସତେଁ ଗାଆଁକେ ଗାଆଁ ଘାଏକେଁ ଗଲା ଉଲ୍‌ସି ।୧୦।
"ମାନ୍ଦଲ୍ ବଜା କାଏଁ କହେବୁ, କରମ୍‌ଶାନୀର୍ ତତୁ"
ଯାହା କହେଲା ନାଇଁ ଥାଇଁ ତୁଇଁ ଥିଲେଁ ଶୁନିଥିତୁ ।୧୧।

ନୁନୀର୍ ବା କହେଲା ଆସି "ପଢ଼ାବାର୍ ଥିଲା ପିଲାକେ
ସବୁ ବିଷେଥିଁ ଏକ ନମ୍ବରେ ଜିତ୍‌ବାର୍ ଲାଗିଁ ଥିଲା କିଏ ଥିଲା କିଏ ? ।୧୨।
ପାଠ୍ ପଢ଼ା ସାଙ୍ଗେ ନାଚ୍‌ଗୀତ୍ ଆଉର୍ ବଜାବାର୍ କଲା
ଝନ୍‌କର୍ ନ ଥିଲା ବର୍ଲି କା'ର ମନେ ଥିଲା ।୧୩।
ପଢ଼ିଥିଲେଁ ବଢ଼ିଥିତା ଗାଆଁ ମାଆଁର୍ ମାନ୍
କେତେ ଉଁଚେଁ ଇ ସାନ୍ ଗାଆଁର୍ ରିହଥିତା ଠାନ୍ ।୧୪।
ସର୍କାରୁ ମାସ୍‌କ ପଏସା କିଛି ମିଲୁଥିଲା ଯଦ୍‌ରି
ବାକି ବଛର୍ ଖଞ୍ଜିଥିତା କେନ୍‌ତା ଦେଲୁ ହଦ୍‌ରି ?" ।୧୫।
ତାକର୍ କଥା ଶୁନି ଝାଁକର୍ ଚକାଲୁଠିଆ ବସ୍‌ଲା
ମୁଲ୍ କରବାର୍ ଆଗୁଁ କଥା ମୁଲ୍ କରିଁ ହଁସ୍‌ଲା ।୧୬।
ପୁରଖା ଦିନୁ ଗାଆଁର୍ ଦେବାଦେବୀ ପୂଜା କରୁଛୁଁ
ଗାଆଁ ମାଆଁର୍ ମଙ୍ଗଲ୍ ଲାଗିଁ ତାର୍ ଗୋଡ୍ ଶାଳେଁ ପରୁଛୁ ।୧୭।
ପୂଜାଧଜା ଗାଆଁର୍ ସିନା ପୂଝାରୀର୍ ଖାଲି ନାଆଁ
ନିଜର୍ କଥା ଛାଡ଼ି ବଲ୍‌ସୁଁ ବନଏ ରଖ୍ ମୋର୍ ଗାଁ ।୧୮।
ତଳେଁ ଉପ୍‌ରେଁ କିହେ ନାଇଁ ଏଖେଇ ଗୁଟେ ପିଲା
ମୋର୍ ଠାନୁ କାଏଁ ଉଠିଯିବା ପୂଜାର୍ ସିଲ୍‌ସିଲା ।୧୯।
ନାଇଁ ଥିଲା ଲେଖେଁ ପୁଓ ଝିଇ ପିଲାକେ ମୋର୍ ଛାଡ଼ି
ବଁଝା ବାଁଝେନ୍ ବାଗିର୍ ବୁଢ଼ା ବୁଢ଼ୀ ଥିମୁ ପଡ଼ି ।୨୦।
ତୁମର୍ ତାର୍ ଧରମୁ ଅଛେ ଦୁଇ ଟେପେରି ଜମିନ୍
ଅଛେ ବିତ ବନ୍‌ଏ ଗଛ୍ ଖୁଁଟ୍ ଦୁଇ ଚାଏର୍‌ଟା ଜମିନ୍ ।୨୧।
ଘରକେ ଲାଗିଁ ବାଏର୍ ଖଁଡ଼େ ଚୁଆଁ ଅଛେ ଭିତ୍‌ରେଁ
ତୁନ୍ ଶାଗର୍ ଅଭାବ୍ ନାଇଁ କରି ଜାନ୍‌ଲେ ବତରେଁ ।୨୨।
ଇ ସବୁର୍ ଦେଖାରେଖା ଇ ବଏସେଁ କାଏଁ ପାରତିଁ ?
ପୂଜାଧଜାଥିଁ ହେଲାକରି ଦେ ଦେବ୍‌ତାକୁଁ ମାରତିଁ ।୨୩।
ପଚାଶ୍ ଷାଠେ ସିନା ସରକାର୍ ଦେଇଥିତା ବୁରତି
ପାଁଚ୍ ଦଶ୍ ନୁହେ ଶ' ଶକରନା କେନୁ ଫେର୍ ନୁରତି ।୨୪।
ପାଠ୍ ଦୁଇ ଅଖର୍ ପଢ଼ଲେଁ ପରେ ନଉକିରିଟେ ଦରକାର ?
କେତେ ନଉକିରି କେ'ନୁ ଆନ୍‌ବା କହ କେନ୍ ସରକାର ? ।୨୫।

ପାଠ୍ ପଢ଼୍‌ଲେଁ ଗାଆଁ ମାଆଁର୍ ସେବା ଶାସନ୍ କରୁଁ
ଇ ବିଚାର ତ କାହାରିର୍ ମନ୍‌କେ ନାଇଁ ଆସେ ଯେ ମରୁଁ ।୨୬।
ମୁଇଁ ଭାବ୍‌ଲି ଗାଆଁ ମାଆଁ ଦେବା ଦେବୀର୍ ସେବା
ଗାଆଁନ ରହେଲେଁ ଶଶିର୍ ସେଟା ନୁକୋ କରି ହେବା ।୨୭।
ଶୁନିଥିଲିଁ ନୁନୀ ପରେ ବଡ଼େ ସୁନ୍ଦର୍ ପଢୁଛେ
ବଛର୍ ଟାକେଁ ଶେଣୀ ଗୁଟେ ଡ଼େଗି ଆଗ୍‌କେ ବଢୁଛେ ।୨୮।
ଯାହା ପଢ଼୍‌ବା ପଢୁ ପଛେ ନୁନୀର୍ କଥା ଦୁସ୍‌ରା ଆଏ
ଆମର ମାଏଝି ଶିଖେଡ୍ ନୁହନ୍ ତାକର୍ ଲାଗିଁ ଆଶ୍‌ରା ଆଏ ।୨୯।
ନୁନୀର୍  ପଢ଼୍‌ବାର୍ ବାଆନି ଅବେଶ୍ ଅନେକ୍ କହେବେ ଲୋକ୍
ବିହଜ୍ ଲୋକ୍ ତ ସଜ୍ ଗୁବରେଁ ପକେଇ ନେସନ୍ ପୋକ୍ ।୩୦।
ଯେ ଯାହା କହୁ ସବୁ କରମାନ ନୁନୀର୍ ପଢ଼୍‌ବାର୍ ଲାଗି
ଦର୍‌କାର୍ ପଡ଼୍‌ଲେଁ ତାର୍ ଲାଗି ଭିକ୍ ଭି ଯିମି ମାଗି ।୩୧।
ଶଶିର୍ ଗୁନ୍ ଗୁଆ ନାଇଁ ସରେ କରମା ପଛେ ସରଲା
ନୁନୀର୍ ମନେ ଝୁନି ଝୁନି ଭାବ୍‌ନା ମାନେ କେ ଭରଲା ।୩୨।
ନୁନୀର୍ ଶୁନ୍‌ତେଁ ସାଙ୍ଗର୍ ଟୁକେଲ୍ ଶଶିର୍ କଥା ସହରାଲେ
ଭୁଖାର୍ ଆଗେଁ ଗୁରସ୍ ସର୍‌ସର୍ ଯୁଖା ଆନି କାଏଁ ଚହରାଲେ ।୩୩।
ବତ୍‌ରି ଯାଉଛେ ନୁନୀ ଶୁନି ଶୁନି ଶଶିର୍ କଥାକେ
ସୁଆଁଲିଲା କାଏଁ କଅଁଲି ଆଏଲା ଲାଜ୍‌କୁରୀ କେନ୍ ଲତାକେ ।୩୪।
ହେ ଝନ୍‌ଏକେ ତ ଦେଖିଥିଲିଁ ମାସେ ଅଧକର୍ ତଲେଁ
ଫୁକିତେଁ ଉଠ୍‌ବାର୍ ଦେଖିନାଇଁ ମନ୍-ଝର୍‌ନାର୍ କଲେ ।୩୫।
ଆଏଜ୍ କେନ୍‌ତା ଦୁହି ଖଏଁଣ୍ କେ ଟପା ଖାଏ ସେ ଝର୍‌ନା
ବୁଲେଁ ଆକ୍‌ଟେଁ ନାଇଁନ ମନ୍ ହଇଯାଉଛେ ଅର୍‌ନା ।୩୬।
ମନ୍ ଦଉଲେଁ ସେ ଝନ୍‌କ ଦେବତା ହଇଁ ବସିଛେ
ଗରି କଁଟାଥିଁ ଝୁରି ବାଗିର୍ ଆଏଁଖ୍ ଭିତ୍‌ରେ ପଶିଛେ ।୩୭।
କେଭେଁ ନାଇଁ ଥାଇଁ ଯେନ୍ କଥାଟା ଆଏଜ୍ କେନ୍ତା ହେଲା
କେନ୍ ସମୁଦରେଁ ଝପେଇଁ ହେଲିଁ କେନେ ପାଏମି ଭେଲା ।୩୮।
ଅନ୍ଧାର୍ ରାତିଁ କନ୍‌ହାର୍ ମାଟିଁ ପାଏନ୍ ବର୍‌ଷେଁ ଚାଲୁଛେଁ
କେନ୍ କେ ଯିମି କାହିଁ ରହେମି କାଣା ହେବା ଭାଲୁଛେଁ ।୩୯।

କାଏଁ ତପତି ଯେ ତନ୍ ମନ୍ ମୋର୍ ଘାଏକେଁ ଦିଏ ଆଉଟି
ଗରଢ଼ିର୍ ପତର୍ ମେଡାଲ୍ ମନ୍‌କେ ଅଛେ ନେବା ସାଉଁଟି ।୪୦।
ବାଟ୍ ବନା କେନ୍ ହେର୍‌ନା ଲେଖେଁ ନୂନୀର୍ ମନ୍ ଭିର୍‌କୁଛେ
ଖଁଡ୍ ଖଁଡ୍ ହଇ ଛିଡ଼ି ଯିବା କାଏଁ ଠାନ୍‌କେ ଠାନ୍ ଦର୍‌କୁଛେ ।୪୧।

୭

ଛାଡ଼ିକରି ମାଁର୍ ସେନ୍‌ହୋ ଗାଆଁର୍ ପାଏନ୍ ପବନ୍
ସହରାଇ ନେଁ ପାରେ ରବି ଅସହ ସହର୍-ଜୀବନ୍ ।୦୧।
ଶବ୍‌ଦେଁ ଶବ୍‌ଦେଁ ସହର୍‌ଟାକ ହଇ ଯାଏସି ପାଟି
ଶୁନ୍‌ଲେଁ କାନ୍ ଉସାର୍ ହେସି କହେଲେଁ ବଡ୍ ପାଟି ।୦୨।
ଖାଏବାର୍ ଜିନିଷ୍ ଲୁଭ୍ ଲୁଭାନି କେତେ ଅଖାଏଦ୍ ମିଶିଛେ
ବେମାର୍ ବୁପ୍‌ରା ମାର୍‌ବାର୍ ହତିଆର୍ ନୁକୋ କରି ନିଶିଛେ ।୦୩।
ସାନି ହଉଛେ ପାନି ପରେ ରୋଗ୍ ବୀଜାଣୁ ଯେତେ
ହଦ୍‌ରି କଧ୍‌ରି ଗଁଧ୍‌ରୀ ପାଏନ୍ ପିଇବା କିଏ କେତେ ? ।୦୪।
ଅଧା ଧୁଆଁ ଅଧା ଧୁଏଲ୍ ବାକି ଟିକ୍‌କ ପବନ୍
ନିଶାସେଁ ନେଇଁ କେନ୍ ବିଶ୍ୱାସେଁ ଜୀଇଁ ରହେବା ଜୀବନ୍ ।୦୫।
ଗୀତ୍ ବାଏଦ୍ ନୁ କଥା ବାର୍‌ତା ସବୁ ଇନ ଘିନୁଆଁ
କାହାକେ କର୍‌ବ ନିଜର୍ ? ନିଜେ ନିଜର୍ ଘରେଁ କୁନୁଆଁ ।୦୬।
ପାଠ୍ ପଢ଼ିବାର୍ ଲାଗିଁ ରବି ମାମୁଁ ଘରେଁ ରହିଛେ
କାହୁଁ ଆଏବା ନିଜର୍ ପନ୍ ! କହି ବୁଲି କରି ଯାଉଛେ ।୦୭।
ରହିପାରେ ନିକି ଯାଇ ପାରେନି, ଅଟକି ଯାଇଛେ ଅଠାନ
ଅକର୍‌ତବେଁ ପଡ଼ିଯାଇଛେ ଦର୍‌ହର୍ ମାଛ୍ ଭଠାନ ।୦୮।
ମାଆଁର୍ ସେନ୍‌ହୋ ଦେଇ ପାର୍‌ଲେଁ କେବେହେଁ ମାଇଁ
ମାଁ ଶବଦ୍ ଟା କାଁ ବାଆଁଚିତା ଏତେ ମାଏନ୍ ପାଇ ।୦୯।
ଖାଏବାର୍ ସଧ୍ କାହିଁ ? ମୁହେଁ ମୂଷା ମାଏଟ୍ ପରିଛେ
ରାଏତ୍ ସର୍‌ତା ଆଁଖିର୍ ଝୁମ୍‌ରା ଆଖିଁ ଆଖିଁ ମରିଛେ ।୧୦।
କଲେଁ, କହେଲେଁ, ଗଲେଁ, ଆଏଲେଁ ସବୁଥିଁ ତାର୍ ଦୋଷ୍
ମୁନୁଷ୍ କଥା ଛାଡ଼ ବତା ବଅଁଶାର୍ ବି ରୋଷ୍ ।୧୧।

ବାଁଏ ବାଁଏ ହଏ ମନ୍ ଅଠିପର୍ ଭାଏଁ ଭାଏଁ କରେ କାନ୍
ନୁନୀର୍ ଲାଗି ଅଛେ ନାଇଁତ ଯାଏତା ନ ବି ପ୍ରାନ୍ ।୧୨।
ଶେଣୀନ କା'ଣା ପଢ଼ା ହଉଛେ ସେଟା କେନ ଶୁନୁଛେ
ମୁନୁଷ୍ ଜୀବନ୍ କେତେ କର୍ ଆଏ ଏକ୍ ଦୁଇ କରି ଗନୁଛେ ।୧୩।
ପାଖେଁ ରଖ୍ ପଦ୍‌ପଦ୍‌ବୀ ଯେମ୍‌ତା ଆର୍ ଧନ୍
ମୁନୁଷ୍‌କେ ଥୁଇଁ ମୁନୁଷ୍ ମାନେ ସୁଖ୍ ଦେଖୁଛନ୍ ।୧୪।
ଭାବି ଦେଖୁଛେ କା'ଣା ଆଏ ସତେଁ ବଲି ଜୀବନ୍ କେ
କହିହେବା କାଏଁ ଜୀବନ୍ ବଲି ଦିହେଁ ବୁହିଲା ପବନ୍ କେ ।୧୫।
ଜୀବନ୍ କା'ଣା ଆଏଲା ଗଲା ଧନ୍ ଦରବର୍ ହିସାବ୍ ଆଏ
ଆର୍ ଭାଏଲ୍ ମାରଗାଲି ଦୁଖ୍ ସୁଖ୍ ର କିତାବ୍ ଆଏ ? ।୧୬।
ଦିହର୍ ସାଙ୍ଗେଁ ଜୀବନ୍ ଯୁରା ତାର୍ ବାହାରେଁ କିଏ ?
ଥିବା ତାହାକେ ନୈ ଜାନବାର୍ ଚଲେଚ ନେସି ଯିଏ ।୧୭।
ତାହାକେ ଜାନଲେଁ ଆର୍ କାହାକେ ନୈ ଜାନ୍‌ଲେଁ ଚଲ୍‌ତା
ସବୁ ଦିଶ୍‌ତା ଅଁଧାର୍ ଘରେଁ ଜଲୁଥିତା ସଏଲ୍‌ତା ।୧୮।
ଲାଗ୍‌ସି ତାହାକେ, ଦେହେ-ଗାଡ଼ି ନେ ଜୀବନ୍-ଜିନିଷ୍ ଲଦି
ଫାନ୍ଦି ନେଇଛେ କେନ୍ ମହାତ୍ମା ମନର୍ ସାଙ୍ଗେ ବୁଦ୍ଧି ।୧୯।
ସେ ଗାଡ଼ି ମାନେ ତାର୍ ଆଡ଼୍‌କେ ଗଡ଼୍‌ବେ ତାର୍ ଇସାରାନ
ନୈ ମାନ୍‌ଲେଁ ଛଟା ମାରି ଅଥା ଧର୍‌ସା ସାରା ନ ।୨୦।
ଗାଡ଼ି ମାନେ ଧାଡ଼ି ଭାଙ୍ଗି ଲଗାଲଗି ଚାଲୁଛନ୍
ଆଗେ କିଏ ଗଲେଁ ଭାଗି ପଛ୍ ବାଲେ ଭାଲୁଛନ୍ ।୨୧।
ସୋର୍ କଲା ରବି ଯୋର ନାଏଁନ ନୈ ଗଡ଼େ ତାର୍ ଗାଡ଼ି
ଉଲ୍‌ଟି ପୁଲ୍‌ଟି ପଛ୍‌କେ ଲେହେଁଟି ନୂରେ ଧାଡ଼ି ଧାଡ଼ି ।୨୨।
ଯାହାକେ ନୁରେ ପାଶେଁ ଅଁତ୍‌ରେଁ ନୈ ଦିଶେ ତାର୍ ଚେହେରା
କଲ୍‌ପନା ତାର୍ କଲେଁ କଲେଁ ରହେଲା ମାରି ଅହେରା ।୨୩।
ଭାବ୍‌ନା ରାଏଙ୍କୁଁ ଉତ୍‌ରି ଆଏଲା ସତ୍‌ସତାନି ଥିତିକେ
ମାଁ ବାପ୍ ଗାଁ ସୋର୍ ପର୍ ଲେଁ ଅଛେ ତାହାକୁଁ କିତି କେ ? ।୨୪।
ପାଠ୍-ପସ୍‌ରା ମୁଚି ନେଇ ଦଶ୍‌ରା ଛୁଟି ହେଲାନ
ଆଏବା ରଏବାର୍ ଭାଏ ଜିଉଁ ତିଆ ସାଙ୍ଗର୍ କିଏ କହେଲାନ ।୨୫।

ବହି ପତର୍ ସଁଖ୍‌ଲି ତାର୍ ବାକି କବାର୍ ପଟାଲା
ଛିଛିବିଛି ହଇଥିବା ମନ୍‌ଟାକ ଗୋଛ୍ କରି ଗଁଠାଲା ।୨୬।
ଘର୍ ଆଡ଼୍‌କେ ମୁହାଁଲା କି ମନ୍ ନାଇଁ ମାନେ ମନା
ମାଁ ବା'କୁ ନେଇ କରେ କେତେ କଥା କଲ୍‌ପନା ।୨୭।
ମାଁ କହୁଥିବେ ଶୁନି ଦୁଆରେଁ ଗୁଗାଉଥିବାର୍ କୁଆ
"ମୁହୁଁ ମୁହୁଁ ଲାଗେ ନିଶ୍ଚେଆଏଜ୍ ଆଏବା ମୋର୍ ଛୁଆ" ।୨୮।
ଇସ୍କୁଲ୍ ଭିତ୍‌ରର୍ ଗଁଛା ଗଛ୍‌କୁଁ କହୁଥିବେ ସୁଆଁଲି
"ବାବୁ ଆସୁଥିବା ବଲି କାଏଁ ସବୁ ଗଲ ପାଆଁଲି ।୨୯।
ଫୁଲ୍ ଆଏଁଖିକେ ନଚେଇ ନଚେଇ ଡ଼ି ଡ଼ି ହଇକରି ଦେଖୁଛ
ବାବୁ ଆଏବାର ବେଲା ଘଡ଼ି ଛଏରା-ଘଡ଼ିଥିଁ ଲେଖୁଛ ।୩୦।
ସହରୁଁ କିଏ ଆଏବାର୍ ଜାନି ବା' ଯାଉଥିବେ ପଚ୍‌ରେଇ
"ବାବୁ ଆମର୍ ଆଉଥିଲା କାଏଁ ଦେଖିଥିଲ ଭାଏଲ୍ କାହିଁ? ।୩୧।
ବାଟେଁ କେ'ନ ଅଲଝିଥିବା ଖବର୍ ବାତ୍‌ନି ନାଇଁ
ବେଲ୍ ଉବେଲର୍ ଗିଆନ୍ ନାଇଁ ମହାନ୍ ସାଙ୍ଗ୍-ବାଇ" ।୩୨।
ନୁନୀ କା'ଣା କହୁଥିବା ବଲି ତାର୍ କଥା ଭାବ୍‌ଲା
ଆଏଁଖି ଡ଼େହେରା ଚେହେରା ତାର ମନ୍ - ନଜରକେ ଢ଼ାବ୍‌ଲା ।୩୩।
ନୁନୀ ଆଏତ ତାହାର୍ ଠାନେ କିଛି ନାଏନ ଊନା
ସବୁ ଦିନ୍‌କେ ସବୁ ନୂଆଁ ତାର୍ କିଛି ନୁହେ ଜୁନ୍‌ହାଁ ।୩୪।
ଉଜଲ୍ ପଖର ଦୁତୀଆ ଦିନର୍ ଜନ୍ ମେତାଲ୍ ହସି
ଭିତ୍‌ରେଁ ଯାହା ବାହାରେଁ ତାହା ସହଜେଁ କହି ଦେସି ।୩୫।
ତାର୍ ଲାଗି କିଛି କା'ଣା ନେଇଥିଲେଁ ହଇଥିତା
ନିଜ୍‌କେ ସଁପି ନେଇଛେଁ ମୋର୍‌ନୁ ଜେନ୍ ଜିନିଷ୍ କିତା? ।୩୬।
ଭାବ୍‌ନା ଭିତ୍‌ରେଁ ସହଜେଁ ସୂତ୍‌ରେ ପୁହୁଁଚି ଗଲା ଘରକେ
ମା'ବା'ର ଉଷତ୍ କହି ନୁହେ ନୁନୀ ଟିକେ ସରକେ ।୩୭।
ଆଗର୍ ବାଗିର୍ ହଇପାରେ ନାଇଁ ଲେଠ୍‌ରେଇ ଘେଁସ୍‌ରେଇ
ହାତ୍ ଗୋଡ଼୍ କିଛି ଛିଉ ହେଲେଁ ତୁରତି ନିଏ ଖଁସ୍‌ରେଇ ।୩୮।

ମାଁ ରହେଲେ ବୁଢ଼ି ପୁଓର ଖିଆପିଆ ଖଞ୍ଜା ନ
ନୁନୀ ଚାହୁଛେ ରବିକେ ଛାଡ଼ି ରହେତା କେନ୍ ଉଞ୍ଜା ନ ।୩୯।
ଛାଡମି ବଏଲେଁ ଛାଡ଼ିପାରେ ନାଇଁ ରହି ବି ପାରେ ନାଇଁ
କହେଲା 'ଘରକେ ଯାଉଛେଁ' ହେଲେ ଯିବାର୍ ମନ୍ ନାଇଁ ।୪୦।
ରବି କହେ "କେନ୍ ଘର୍ ଯିବୁ ଇଟା ନୁହେ କାଏଁ ଘର୍ ?
ଯା'ର୍ ଲାଗି ମୁଇଁ ଘର୍‌କେ ଆଏଲିଁ ସେ ଯିବାର୍ କେ ତର୍ ତର୍" ।୪୧।
ହାତ୍‌କେ ଧରି ବେନିକେ ଭିରି ନଉଛେ ଘାଏ ଘାଏ
ନେଇ କାନ୍ଧିକରି କାନ୍ଦ୍‌ଲା ବାଗିର୍ ନୁନୀ କରୁଛେ ହାଏ ! ।୪୨।
ଭାଏ ଜୀଉଁତିଆର୍ ସଙ୍ଗ୍‌ବାଜ୍ କିଛି କରେଁ ନୁହେ
ଯାଉଛେଁ ବଲି ଗଲା ନୁନୀ ଦେଖାଦେଖି ଦୁହେ ।୪୩।

୮

ମହୀ ଦିନ୍‌ଏ ମହିଷାସୁରର୍ କହି ନେଇ ହେବାର୍ କାର୍‌ରଇ
ସହି ନେଇଁ ପାରି ଲହୁର୍ ବୁନ୍ଦା କାନ୍ଦିଗଲା ଥର୍‌ରେଇ ।୦୧।
ଜଗତ୍ କରତା ସାଙ୍ଗେଁ ଦେବ୍‌ତାମାନେ କଲେ ବିଚାର୍
କେନ୍ତା କଲେଁ ତୁର୍‌ତି ସରତା ଇତାର ଅତ୍ୟାଚାର ।୦୨।
ବର୍ ପାଇଛେ ପୁରୁଷ୍ ତାହାକେ ନାଇଁ ପାରନ୍ ମାରି
ସବୁ ଶକ୍ତି ଉଭା ହଉନ୍ ହଇ ଗୁଟେ ନାରୀ ।୦୩।
ସେ ଶକ୍ତି ଉଭା ହେଲେ ଦୁର୍ଗା ହେଲା ନାଆଁ
ସେ ମଙ୍ଗଳା, ସେ ବିମ୍‌ଲା, କାଲୀ, ଜଗତର୍ ମାଆଁ ।୦୪।
ଦଶ୍‌ରା ମାସର୍ ଉଜଲ୍ ପଖେଁ ଅଷ୍ଟମୀ ଦିନ୍ ବାଆରି
ଜାରି ହେଲା ନାରୀ ଶକ୍ତିର୍ ରୂପ ଅଶଲ୍ କୁଆଁରୀ ।୦୫।
ଜନାବାକେ ଭିନ୍‌ଏ ଭିନ୍‌ଏ ପର୍‌କୃତି ଆର୍ ମୁନୁଷ୍
ପତିଛଡ଼ା ପୁରୁଷ ଭାଏ ଲେଖେଁ ହେସନ୍ ଦୁରୁଶ୍ ।୦୬।
ସେଥିର୍ ଲାଗିଁ ଭାଏ ଜୀଉଁତବଆ ବରତ୍ ଇ ଦିନ୍ ମାନି
ଉପାସ୍ କରି ଦୁବ୍ ଚଢ଼ାସନ୍ ଭାଏକୁଁ ବହେନ୍ ନାନୀ ।୦୭।
ନାରୀର୍ ଦିହେଁ ଥିବାର୍ ସର୍ଜନାକାରୀ ଶକ୍‌ତି ଜାଗ୍‌ବା
ବଲିକରି ଗାଏଁଗଡ଼େଁ ବଜା ଗଜା ବାଜ୍‌ବା ।୦୮।

କୁଆଁରୀ ଟୁକେଲ୍ ନାଚି ଉଠ ବେ ବଜାର୍ ତାଲେଁ ତାଲେଁ
କୁଆଁରୀ ଦୁର୍ଗାର୍ ପୂଜା ହଇ ପାଁଚ୍‌ଟା ଗଛର୍ ଡ଼ାଲେଁ ।୦୯।
ବର୍ ପିପଲ୍ ପାଁକେଲ ଡୁମେର୍ ଆର୍ ସାଙ୍ଗେଁ ପଲ୍‌ଶା
ପାଁଚ୍ ପଲ୍ଲବେ କୁଆଁରୀ ବରନ୍ ହେସି ମନ୍ ଉଲ୍‌ସା ।୧୦।
ଈ ଦିନ୍ ଗୀତ୍ ବଜା ନାଚର୍ ନାଆଁ ଡ଼ାଲ୍‌ଖାଇ
ସକାଲୁଁ ସଁଜ୍ ଟୁକଲେ ଦିନ୍‌ଏ ରହେସନ୍ ଇଥିଁ ବାଇ ।୧୧।
ବାଏଲ୍ କାଢ଼୍‌ସନ୍ ସକାଲୁଁ ପାଶର୍ ନଏଦ୍ ନଲିଆ ଦେଖି
କୁଆଁରୀ ଦୁର୍ଗାର ମୁର୍ତି ଥାପିଁ ଗୀତେ ଆନ୍‌ସନ୍ ଡ଼ାକି ।୧୨।
ଭାବିତ୍ ଦେଖି ରବିକେ ମାଁ ମନେ ହୁଅନ୍ ହୁର୍‌ଗୁନି
ହର୍‌ମେଷା ନିଘା ଗାଁ ଆଡ଼୍‌କେ ଆସୁଛେ କିନି ନୁନୀ ।୧୩।
ଆସ୍‌ବା ବଲି ଆଶା ଥିଲେଁ ହେଲେଁ କାଏଁ ଆଏତା ନୁନୀ
ସକାଲୁଁ ତାହାକେ ସାଙ୍ଗର୍ ଟୁକ୍‌ଲେ ନେଲେନ ଘିଚିଟାନି ।୧୪।
"ତୁଇଁ ନାଇଁ ଥିଲେଁ କାଏଁ ଡ଼ାଲ୍‌ଖାଇ ? ନୈହେଲା ତ ନାଇଁ
ପଢ଼୍‌ଲୁ ବଲି ଛାଡ଼୍‌ବୁ ପୁର୍‌ଖାର୍ ରୀତିନୀତି ତୁଇଁ" ।୧୫।
ନୁନୀ ପାଲ୍‌କେଁ କହେଲା "ଭଣ୍ ଭେସର୍ ଅଗ୍‌ବାର୍ ଟୁଣ୍
ଗୀତ୍ ଗୁଆ ହେସି କେନ ଥିସି ଗୀତର୍ ଗଏଣ୍ ମୁଡ଼୍ ।୧୬।
ଡ଼ାଲଖାଇ ନାଏଁ ଯେତେ ତେତେ ଗାଏସନ୍ ଭଣ୍ ଭେସର୍
ଯୁଆନ୍ ପିଲାକର୍ କଥା ଛାଡ଼୍ ସିଆନ୍ ଲସର୍ ପସର୍ ।୧୭।
ବଜାଓ୍ୟାଲେ ତ ବଝା ହେସନ୍ ପିଇ ମଦ୍ ପାଏନ୍
ନିଶା ଖାଏଲେଁ ହିସାବ୍ ଥିସି କାହାରିର୍ ମାଏନ୍ ଦାଏନ୍ ? ।୧୮।
ଆଗୋ ହେଲେଁ ନାଇଁ ଗାଆନ୍ କାଏଁ ଖାଲି ଟୁକେଲ୍ ଥାଆନ୍
ତନ୍ ପୁଲ୍‌କା ମନ୍ ଉଲ୍‌ସା ମାଏନ୍ ମନ୍‌ସା ଗାଆନ୍ ।୧୯।
ଆମର୍ ଆମର୍ ଥିଲେଁ ଅବ୍‌ଗା ଯାହା ଗାଏଲେଁ ହେତା
ଦୁସ୍‌ରା ଲୁକର୍ ଆଗେଁ କାଏଁ ଗାଏସନ୍ ଗୀତ୍ ହେନ୍ତା" ।୨୦।
"ନାଇଁ ଲୋ ନୁନୀ ଏସୁର୍ ସାଲେଁ ଦୁସ୍‌ରା ବଜା ଆଇଛନ୍
ମଦ୍ ପାଏନ୍ ମନା ବଲିଁ ଟୁକେଲ୍ ମାନେ କହିଛନ୍ ।୨୧।
ଈମାନେ ବି ବନଏ ଜାନିଛନ୍ ସବୁ ପାର୍ ବଜାଇ

'ରସରକେଲି' 'ମାଏଲାଜଡ଼୍' 'ଗୁଂଚିଖୁଟା' 'ଡ଼ାଲଖାଇ' ।୨୨।
ଭଁଡ଼୍ ଭେସର୍ କିଏ ଗାଏବା ତୁଇଁ ତ ଥିବୁ ସାଙ୍ଗେଁ
ଯାହା କହେବୁ ତାହା ହେବା, ଆତ ତୁଇଁ ଆଗେଁ" ।୨୩।
ସେତ୍‌କି ବେଲୁଁ ନୂନୀ ଅଛେ ସାଙ୍ଗ୍ ସରସିଆ ଧରି
ରବିର୍ ସାଙ୍ଗେଁ ମାଁ ତାହାକେ ଅଛନ୍ ଅନ୍‌ସରି ।୨୪।
ନଲିଆ ଆଡୁଁ ଶବଦ୍ ଆସେ ଗାଁ ଆଡ଼୍‌କେ ଉହୁଲି
ଦୁଲ୍‌ଦୁଲାବାର୍ ବଜା ସାଙ୍ଗେଁ କଅଁଲି ଟୁଣର୍ ହୁଲ୍‌ହୁଲି ।୨୫।
ଢ଼ୋଲ୍ ନିଶାନ୍ ତାସା ଟାମକି ବାଜନ୍ ଗହରି ଗହରି
ମୁହୁରୀର୍ ସୋର୍ ରହି ରହି ଖେଲେଇ ନଉଛେ ଲହରୀ ।୨୬।
ଘାଏକେଁ ଛନ୍‌କେଁ ଡ଼ାବି ଆନୁଛେ ଟୁକେଲ୍ ଟୁଣର୍ ବୁବି
ସୋର୍ ନାଇଁନ୍ ଡ଼ାଲ୍‌ଖାଇ ରସେଁ ସଭେ ଯାଇଛନ୍ ଡୁବି ।୨୭।
କତ୍ରିଆ ବନ୍ଧ୍ରିଆ ଟାଡ଼୍ ବାହାସୂତା ଟୁଡ଼ଲ୍ ପାଏଜଲ୍ ପଏଁରୀ
କଲିଆରୀ ଖଗ୍‌ଲା ମୁଡ଼ର ଚାଉଁରିମୁଡ଼ି ପାନ୍‌ପତରୀ ।୨୮।
ସବୁଯାକ ରୂପା ସାଜୋ ଗୁପା ହଇଗଲା କେନ୍‌କେ
ଝଲ୍‌କାବେଁଟ୍‌ଲା ଗଁଠିଆ ଶିକ୍‌ଲା ଥିଲେଁ ଟାନ୍‌ଏ ମନ୍‌କେ ।୨୯।
ଡ଼ଁଡ଼ି ଗୁନା ନଥ କରନ୍ ଖାପ୍ ଆଉର୍ ଚାପ୍‌ସରି
ସୁନାର୍ ଆଏ ଅଲଙ୍କାର୍ ସବୁ ଗାଉଁ ଗଲେନ ଅପ୍‌ସରି ।୩୦।
ବେଟି ଆନୁଛେ କଅଁଲି ହାତ୍‌କେ ରଙ୍ଗ ବିରଙ୍ଗର୍ ଚୂରି
ଦିହ୍‌କେ ଭିରେ ଭିନ୍ ଭିନ୍ ବାନ୍ଧର୍ ଶାଢ଼ୀ ସମଲ୍‌ପୁରୀ ।୩୧।
ତାର୍ ଉପ୍‌ରେଁ ଚାଏର୍ ହତିଆ କରିଆ ଖଁଡ଼େ ଦିହେଁ
ନାଚ୍‌ଲେଁ ହାତେଁ ଧରି ହେସି କାନ୍‌କେ ଛିଏଁ ଛିଏଁ ।୩୨।
ନୂଆଁ ବଏସ୍‌କେ ଥୁଆ କପ୍‌ଟା ଟୁକେଲ୍ ଦିହିକେ ଭିରୁଛେ
ଗାଏଲା ବେଲ୍‌କେ କିଏ କାହାକେ ଲଗେଇ ପଦ୍ ଯୁରୁଛେ ।୩୩।
କିଏ ଗାଏଲେଁ ମାଏଲାଜଡ଼୍ କିଏ ରସର୍‌କେଲି
ଡ଼ାଲ୍‌ଖାଇ ନାଚେଁ କିଏ ନିଜ୍‌କେ ପର୍ଚ୍ଛା ପାରେ ଖୁଲି ।୩୪।
କିଏ କହେସି 'ଢୁଲିଆ ଅଜା ! ବଜା ଗୁନ୍‌ଚିଖୁଟା
ସେ ବଲେ 'କାଏଁ ବଜାମି ? କାହିଁ ଗୁନ୍‌ଚି କାହାର୍ ଅଁଟା ? ।୩୫।

ଗୁନ୍‌ଚି ପିନ୍‌ହି ନାଚି ପାର୍‌ଲେଁ ଗୁନ୍‌ଚିଖୁଟା ପାର୍
ଉସାର୍ ହେବା ପିଟା, ସଁପୁର୍ ହେବା ଅଁଟା ତାର୍ ।୩୬।
ଏକା ସାଙ୍ଗେଁ ଗୀତ୍ ବାଏଦ୍ ନାଚି ସବୁ ମିଶ୍‌ବା
ବୟସ୍ ଥାଉଁ ବୟସରା ଯାର୍ ସମ୍‌କର୍ଁ ସୁନ୍ଦର୍ ଦିଶ୍‌ବା ।୩୭।
ଢ଼ୋଲର୍ ତାଲେଁ ଭୋଲ୍ ସଭେ ଢ଼ଲ୍‌କିଲାନ ବେଲ୍
ନୁନୀ ଆସି କହେଲା 'ହଏଲୋ ! କେତେ ହେବ ଗେଲ୍ ? ।୩୮।
ନାଇଁ ଦେଖ୍‌ବାର୍ ବେଲ୍‌କେ କାଏଁ କେ'ନ ଯାଇ ହେଲାନ
ଦୁବ୍ ଚାଉଳ ଗନା ବନ୍ଧା ଜୀଇଁତିଆର୍ ବୁତା ରହେଲାନ ।୩୯।
ମୁଗ୍ ବଟା ସାଙ୍ଗେଁ ଡିଖରି କରା ଲିଆ ଭଜା ପଗା
ମାଁ ମାନେ ଘାଁଟି ହଉଥାନ୍ ଡମର୍ ନଚାଢ଼େଗା ।୪୦।
ବେଲ୍ ବୁଡ଼୍‌ଲା କି କୁଠି ଶାଳର୍ କବାର୍ ଲାଗ୍‌ବା ଭିଡ଼୍
ଧୁନ୍‌କେଲ ହାଁଡ଼ିର୍ ଗୀତ୍ ବାଏଦ୍ ସବୁ କର୍‌ବ ଢ଼ିଇଲ୍ ।୪୧।
ନୁନୀର୍ କଥା ଶୁନି ଯୁରେଁ ସଭେ ଗାଧି ସାରି
ଘରକେ ଫିରନ୍ ମୁଡ଼ର୍ ଉଦା ବାଲ୍‌କେ ଝାରି ଝାରି ।୪୨।
ଏତ୍‌କି ଦିନ୍ ତକ୍ ଯୁଆନ୍ ବୟସ୍ ସାଙ୍ଗେଁ ସେମିଜ୍ ଶାଢ଼ୀ
ଲାଗିଥିଲା କେତେ ଘିଚାଟନା ଭିଡ଼ା ଭିଡ଼ି ।୪୩।
କପଡ଼ାମାନେ ପାନି ପଡ଼ି ସରି ସଁକରି ଗଲେନ
ଜିତ୍‌ଲିଁ ବଲି ବୟସ୍ ଘଡ଼୍‌କେଁ ମୁଡ଼୍‌କେ ଟେକି ନେଲେନ ।୪୪।
କପଡ଼ାହାରି ଆଁଖିର୍ ପାଏନ୍ ନାଇଁ ପାର୍‌ବାର୍ ରଖି
ଥିପି ପରୁଛେ ଟୁକେଲ୍ ହୁଦା ଚାଲଲେଁ ଆଖିପାଖି ।୪୫।
ହାର୍‌ଲା କପଡ଼ା ଉଡ଼୍‌ଲା ବୟସ୍ ଝାର୍‌ଲା ବାଲର୍ ଧଜା
କପଡ଼ା କହେ 'ରହ ରହ୍ ତୋର୍ ପଛେଁ ବାହାର୍‌ବା ମଜା' ।୪୬।
ଗାଁ ଭିତ୍‌ରେ ଝାଁକର୍ ଘରର୍ ବାହାରି ପିଁଢ଼ାର୍ କୋଡ଼୍ ନ
ଡ଼ାଲ୍‌ଖାଇ କୁଠି କଟା ହଇଛେ ଏସୁର୍ ସାଲେଁ ତୋଡ଼୍ ନ ।୪୭।
ଗେରୁ ହଲ୍‌ଦି କଲା ଆଉର୍ ସେମ୍‌ଛ ପତରର୍ ରଙ୍ଗେ
କୁଠି କଟା ହଇ ପୁତ୍‌ଲା ଲେଖା କେତେ ଢ଼ଙ୍ଗେ ।୪୮।

ନୂଆଁ ହାଁଡ଼ି ଉପରେଁ କୁଲା ତାର୍ ଉପରେଁ ଧୁନ୍
ଘୁଲଘୁଲା ବଁଧା ବାଡ଼ି ଖେଳାଲେଁ ବାଜେ ଛୁମ୍ ଛୁମ୍ ।୪୯।
ଧୁନ୍‌କେଲ୍ ହାଁଡ଼ି ବଜେଇ ଡ଼ାକନ୍ ଦୁର୍ଗା ସମ୍ଲେଶିରୀ
ରାଗ୍ ରାଗ୍‌ନି ବଏଲେଁ ଖାଲି ଶୁଭ୍‌ସି ମାଲ୍‌ଶିରୀ ।୫୦।
ସାନ୍ ନୁ ବଡ଼୍ ସବୁ ଟୁକେଲ୍ କୁଠି ଶାଲେଁ ଦେଖୁଛନ୍
ଘାଏକେ ଘାଏ ଧୂପ୍ ଆଲ୍‌ତି ହେଲେଁ ଆନି ମାଖୁଛନ୍ ।୫୧।
ଧୂର୍ ଆକାଶେଁ ଅଷ୍ଟମୀ ଜନ୍ ବୁଡ଼ି ବୁଡ଼ି ଆଉଛେ
ଅଁଧ୍ୟାର୍ ଆସି କଲିଆ ମୁହେଁ ଗାଁକେ ଗିଲି ଖାଉଛେ ।୫୨।
ଗୀତ୍ ବାଏଦ୍ ସଲା ହାଁଡ଼ି କୁଲା ଅଜେଇଁ ହେଲା ପାଖେ
ଘରକେ ଗଲେ ଟୁକ୍‌ଲେ ନେଇ ଝୁମ୍‌ରା ଆଁଖେ ଆଁଖେ ।୫୩।
ଝୁମ୍‌ରା-ପସ୍‌ରା ସର୍‌ଲା କାଏଁସେ ରବି ନାଇଁ ପାଏ ଖେଜେ
ଶେଯେଁ ପଡ଼ି ମନ୍ ରାଏଜେଁ ଉଡ଼ି ଆଏଁଖି ମୁଜେ ।୫୪।
ମନ୍-ରାଏଜ୍ ତାର୍ ଅଗମ୍ ଅଗ୍‌ବା ନାଇଁ ଜାନିଥାଇ ଆଗେଁ
କାହାକେ ଝୁରେ କାହାକେ ନୁରେ ହର୍‌ମେଷ୍ ଲାଗେଁ ଲାଗେଁ ।୫୫।
କା'ର ଚେହେରା ଆଖିର ଆଗେଁ ଅଠିପର୍ ଭାଗୁଛେ
ନାଇଁ ପାଏ ସିନା ଅନୁଖନୁ ପାଏଲି ପାଏଲି ଲାଗୁଛେ ।୫୬।
ପାଏଲେଁ ଭାଏଲ୍ ପାଆଁଲି ଉଠ୍‌ତା ଝୁର୍‌ମୁରାଲା ଜୀବନ୍
ଦୁଇଟା ଦିହେଁ ଶିର୍‌ଶିରାଇ ବୁହିତା ଗୁଟେ ପବନ୍ ।୫୭।
ଚରେଇ ଯୁଡ଼େ ଟହଲୁଥିତେ ଗୁଟେ ଗଛର୍ ଡ଼ାଲେଁ
ଗୀତ୍ ଗାଏତେ ନିତ୍ ନିତ୍ ଏକ୍ ସୁରେଁ ଏକ୍ ତାଲେଁ ।୫୮।
ଏକ୍‌ଲା ହଇ ଜନମ୍ ନେଇଛେ ମର୍‌ବା ଏକ୍‌ଲା ହଇ
ଆଏଜ୍ କାଁ କରି ଯୁଡ଼ିର୍ ଖୋଜ୍ ମନ୍ ଦିଏ ଦହ୍‌ଲେଇ ।୫୯।
କାହାର୍ ଲାଗି ଝୁମରା ନାଇଁ , ନାଇଁ ଖାନା ପିନା
କାହାର୍ ଲାଗି ମନ୍-ମହଲ୍ ତାର୍ ଲାଗେ ଛିନା ଛିନା ।୬୦।
ଆସୁ ନାଇଁ ଆସୁ ସିଏ ଅଛେଁ ଆସନ୍ ପାରି
ଆସ୍‌ଲେଁ ତାହାର୍ ଯାହା ଅଛେ ଦେବା ସଁପି ସାରି ।୬୧।

## ୯

ଖରା ଆଉଛେ ଟାମ୍‌ଡ଼ି ଟାମ୍‌ଡ଼ି ପର୍ଛି ଟରା ଟରା
ଦୁଆର୍ ଦୁଆର୍ ଘର୍‌ଟଟିଆ ବେଟି ନୁରନ୍ ଚରା ।୦୧।
ସେମ୍‌ଭ ଲହ ଲମି ଲମି ଛାଏନ୍ ପିର୍ଢ଼ା ଲହଁକୁଛେ
ପତ୍‌ରେଁ ଥିବାର ଓସ୍ ଭିତ୍‌ରେଁ ଲାଲିଆ ଖରା ଚହ୍ଲକୁଛେ ।୦୨।
ଗାଧି ପାଧି ଆଇଛେ ରବି କୁର୍ତା ଲଗାଏ ନୁହେ
ଦୁଆରେଁ ବସେ, କଅଁଲି ଖରା ସୁଆଁଲି ଆନ୍‌ଏ ଦେହେ ।୦୩।
ଶଁଖ ମରମର୍ ପଥ୍‌ରେଁ କିଏ ସେନ୍ଦୁର୍ ଝିଟ୍‌କେ ଛିଟ୍‌କିଛେ
ହାତୀ ଦାଁତର୍ ଉପ୍‌ରେଁ ଭାଏଲ୍ ଫୁଟ୍‌ଲା ଗୁଲାପ୍ ଛିଟ୍‌କିଛେ ।୦୪।
ଉସ୍‌ନିଦ୍ରାର୍ ଅଥା ଆଏଁଖି କଥା କହେ କିଛି
ମନ୍‌ଟା ତାର୍ ଗୋଛ୍ ନାଇଁନ ହଉଛେ ଛିଛି ବିଛି ।୦୫।
ଆସନ୍ ପାରି ଆସ୍‌ବା ବର୍ଲି କାହାକେ ସେ ଟାକିଛେ
ଉପ୍‌କିତା ନ ଦବ୍‌ଲା ଦରଦ୍ ବନୋଟି ହସି ଢେଁକିଛେ ।୦୬।
ନୁନୀ ଆଉଛେ ଗାଁ ଭିତ୍‌ରୁଁ ହାତେଁ ପରାତ୍ ଥାଲୀଟେ
କେନ୍ ହଁସ୍ କି କେନ୍ ହାତୀ ପାଏବା ହେନ୍ତା ଚାଲିଟେ ।୦୭।
ବଁଧା ନାଇଁ ମୁଡ଼ର୍ ବାଲ୍ ଅଁଟା ନ ଯାଉ ପରୁଛେ
ସୁନା ରଙ୍ଗର୍ ବାର୍ଲି କାଏଁ କାଲୀ ନାଗ୍‌ଟେ ଚରୁଛେ ।୦୮।
ଭୀମ୍ କଲିଆ ପାଏନ୍ ଧାର୍ ଥିଁ ସୁରୁ ସୁରୁ ଲହରୀ
କଲା କୁଚ୍ କୁଚ୍ ବାଲେଁ ନଜର୍ ପଡ଼୍‌ଲେ ଯାଏ ପହଁରି ।୦୯।
ଉପାସ୍ ବାସି ମୁହଁଟା ତାହାର୍ ଅଲ୍‌ପର୍ ଟିକେ ଶୁଖିଛେ
ଦର୍‌ଫୁଟା କେନ୍ ପଦମ୍ ଫୁଲ୍ ବେଲ୍ ଉଦାକେ ଟାକିଛେ ।୧୦।
ଦୁଆରୁଁ ଦେଖେ ରବି ଟିକେ ଦୂରିଆ ଆସେ ନୁନୀ
ମହାନଏଦ୍ ସଏଦ୍ ଫୁଲି ଉଠେ ଇବ୍ ଆଏବାର୍ ଜାନି ।୧୧।
ଜେଠ୍ ମାସର୍ ରଠ୍ ଖରାଥି ବନ୍ଧ୍ ପରୁଥିଲା ଫାଟି
ଅଁଧାର୍ କରି ଭଁଡ଼ାଉ କନୁ ମେଘ୍ ଆସେ କାଏଁ ଘୁଟି ।୧୨।
ଆଏଲା ନୁନୀ ଥୁଇଲା ଥାଲୀ ତାହିଁ ଦରବ୍ କେତେ
ଡିଖରି ଲିଆ ଦୁବ୍ ନଡ଼ିଆ ସାଁଗେଁ କପଡ଼ା ଯଥେ ।୧୩।

ଗୁରୁମା କହେଲେ କାଁ କରବୁ ? ଏତେ ଜିନିଷ୍ ଆନି
ସୋଜ୍ ହେଲେଁ ଖରଚା କେତେ କଲୁ ଜାନି ଜାନି ।୧୪।
ନୁନୀ କହେ "କରିଥିଲି ମା ! ଭାଏ ଜାଉଁତିଆ ଉପାସ୍
କାଏଁ ଜିନିଷର୍ ଜିନିଷ୍ ଆଏ କରୁଛ କାଏଁ ଉପହାସ ।୧୫।
ମେଲା ହାତେଁ ଦୁବ୍ ଚଢ଼ାଇ ଆସି ପାରତିଁ କାହିଁ ?
କେତେ ତପିସା କଲେଁ ଯାଇ ମିଲ୍‌ସନ୍ ଭାଇ ଦାଇ" ।୧୬।
କହି କହି ବସ୍‌ଲା ଯାଇ ରବିର୍ ପାଖେଁ ପାଖେଁ
ଦୁବ୍ ନଡ଼ିଆ ହାତେଁ ଧରେଇ ଜାଁତିଆ ଦେଲା ବେକେଁ ।୧୭।
ଢ଼େବ୍‌ରି ଖନ୍ଦେଁ ଧୁତି ଦେଇ ଭୁଜ୍‌ନି ଖନ୍ଦେଁ ପଛ୍‌ରା
ଭକ୍ ଭକ୍ ଦେଖି ସଡ଼କ୍‌ଦମ୍ ଠିଆଡ଼୍ ରବି ବିଚ୍‌ରା ।୧୮।
ବେକେଁ ପନତ୍ ଦେଇ ନୁନୀ ପଡ଼୍‌ଲା ଗୋଡ଼୍ ଶାଲେଁ
କେ ଶୁନୁଛେ କାଁ କହେଲା ରବି କଲେଁ କଲେଁ ।୧୯।
ଝିଅର୍ ଲେଖେଁ ଝଁପେଇ ହେଲା ଗୁରୁମାଆଁର୍ ଛାତିଁ
କାହିର୍ ଲାଗି ? ମାଁକେ ଦେଖେ ରବି ଏକସ୍‌କଁଟି ।୨୦।
ମାଁ ବୁଝଲେ ରବିର୍ କଥା ନାଇଁ କହି କା'ଣା କହୁଛେ
ନୁନୀକେ କିଛି ଦେବାର୍ କଥା ବଲି ଗୁନ୍ଦ୍‌ଲେଇ ହଉଛେ ।୨୧।
ରବିର୍ ମାମୁଁ ଜାଉଁତିଆକେ ପିନ୍ଧ୍‌ବା ବଲି ନାନୀ
ପଠେଇଥିଲେ ସମଲ୍‌ପୁରୀ ଶକ୍‌ଟାପର ଘିନି ।୨୨।
ସେ ଖଣ୍‌କ ଆନି ଦେଲେ ରବିର୍ ହାତେଁ ଧରେଇ
ରବି ନେଇ ନୁନୀର୍ ଦିହେଁ ତୁରତି ଦେଲା ଘୁରେଇ ।୨୩।
ଦୁହେ ଦୁହିଙ୍କୁଁ ଆବ୍‌ରି ଧଏଲେ ଉଡ଼ିଗଁଲା ଅଏବ୍
ଗୁଟେ ପେଟର୍ ବଲି ଲାଗ୍‌ଲେଁ ସବୁ ଲାଗ୍‌ସି ସଏବ୍ ।୨୪।
ଏତ୍‌କି ଦିନ୍ ତକ୍ ଦୁହେ ଦୁହିଙ୍କୁଁ ଠଟେଇ ବଜେଇ ହେଲେଁ
ଗୋଡ଼୍ ହାତକେ ଖସ୍‌ରେଇ ନଉଥିଲେ କଲେଁ କଲେଁ ।୨୫।
ପୁଟ୍‌ଲା ପୁଟ୍‌ଲି ହେଲେଁ ବି ଆଏଜ୍ ରୁଆଁଟେ ନାଇଁ ଟାଁକ୍‌ରେ
ଦିହ୍-ଭାବ୍‌ନାର ଲଟାଟେ ବି ମନେ ନାଇଁ ଆଁକ୍‌ରେ ।୨୬।
ମନର୍ ଭାବ୍‌ନା ନେଇ ହେସି ଦିହ୍ ସାରାର୍ ବିକାର୍
ଯେନ୍ତା ବିଚାର୍ ସେନ୍ତା ବେଭାର୍ ଦିହେଁ ନେସି ଆକାର୍ ।୨୭।

ଖୁଜି ହୁଏ ଯାହାକେ ସେ ଆଜିର୍ ତାହାକେ ପାଇଛେ
ଯେନ୍ ଭାବେଁ ଥିଲା ଉଟୁସ୍ ପୁଟୁସ୍ ସେଟା ପର୍ଛା ଯାଇଛେ ।୨୮।
ଷ୍ଟିରୀ ନୁହେ ନାରୀର୍ ରୂପ୍ ମାଁ ବି ଆର୍ ବହେନ୍ ଆଏ
ଭାବି ପାର୍‌ଲେଁ ଝନ୍‌ଏ ଯଦ୍‌ରି ସେ କେଡ଼େ ଧଏନ୍ ଆଏ ।୨୯।
ବର୍ କନିଆଁ ନୁହନ୍ ବର୍ଲି ପର୍‌କୁତି ଆର୍ ପୁରୁଷ୍
ଲଖିମୀ ନୁହନ୍, ସୁହଦ୍ରା ନେଇ ମହାପ୍ରୁ ହେସନ୍ ଦୂରୁଣ୍ ।୩୦।
ନୂନୀର୍ ଆଜିର୍ ବେଭାର୍ ଟିକ ହୁର୍‌ଦେଁ ଗଲା ଗବି
ଭାବି ଭାବି କେ'ନ ଥେବି ପାର୍‌ବା ହେଲେଁ ରବି ।୩୧।
ଦେଖିଲା ସେ'ନୁ ପୁହୁଁଚିଲା କି ମନ୍ ପର୍ବତର୍ ଟିପି
ଗୋଟ୍ ଗୋଟ୍ ନାଇଁ ଦିଶନ୍ କିଛି ସବୁ ହଇଛନ୍ ଲିପି ।୩୨।
ଘର୍, ଗାଁ, ଦେଶ୍, ମହାଦେଶ୍ ଭିତ୍‌ରେଁ କେନ୍ ସୀମ୍‌ନା
ଥିବାର୍ କାହିଁ ଦିଶେ ନାଇଁ ଗୁଟେ ହେଲେଁ ନମ୍‌ନା ।୩୩।
ମାଏଝି, ମୁନୁଷ୍, ଜାଏତ୍ ହାଏତ୍ କଲା ଗୁରା କରି
ମୁନୁଷ୍ ଭିତ୍‌ରେ ପରାଭେଦ୍ କାହିଁ ନୈ ହଏ ବା'ରି ।୩୪।
'ତୁଇଁ କିଏ' ' ମୁଇଁ କିଏ' ମୁନୁଷ୍ ସବୁ ଗୁଟେ ଆ'ନ୍
ସାରା ସଂସାରର୍ ଜନ୍ତୁର ଦିହେଁ କେନ୍‌ସିନିର୍ ଫୁଟେ ଆନ୍ . ।୩୫।
ନିଜ୍‌କେ ନୁରି ଥାବ୍ କର୍‌ଲା ଯେ ଆଏ ନିକୁଛ୍ ବାଏଲ୍
ମୁନୁଷ୍ ପରେ ଶିଖେତ୍ ଆଏ ନୁହେ ଜାନ୍‌ଏ ତାଏଲ୍ ।୩୬।
ବୁଡ଼ି ବୁଡ଼ି ଯାଏ ରବି ଭାବ୍‌ନା-ନଏଦ୍ ଧାରେ
ନୁନୀ ଆର୍ ଗୁରୁମା'ର୍ କଥା ବାର୍ତା ଚାଲେ ଘରେଁ ।୩୭।
ଘର୍‌କେ ଯିମି ବର୍ଲି ନୁନୀ ବାହାରେ ଯେତେବେଲେଁ
ଗୁରୁ ମା କହନ୍ 'ରହଲୋ ମା ! ନୈ ଖାଇ ଯିବୁ ହେଲେଁ ? ।୩୮।
ଉପାସ୍ କଲା ମୁହୁଁ ଟା ତୋର୍ କେତେ ଶୁଖି ଯାଇଛେ
ଦର୍‌ପନ୍ ଲେଖେଁ ଦକ୍ କରୁଥିଲା ଆଜିର୍ ସେଟା କାଇଛେ ? ।୩୯।
ମା'ଘର୍‌କେ ଆଏସି କିଏ ଭାଏଜାଉଁତିଆ ବାସି
ଖିଆ ପିଆ ନାଇଁ କରି ଖାଡ଼ାଗୁଡ଼େଁ ପଲାସି ? ।୪୦।
'ଗୁରୁମା ! ମୋର୍ ମାଆର୍ କଥା ନାଇଁ ଜାନ୍‌ଅ କାଏଁ
ଉପାସ୍ ନାଇଁ କରି ଭୁଖେଁ ଅଛେ ଆଜିର୍ ଯାଏଁ ।୪୧।

ଟୁଡ଼େଁ ନାଇଁ କାଠି କି ତାର୍ ମୁଡ଼େଁ ନାଇଁ ପାଏନ୍
ଝି'ର୍ ଲାଗି କେନ୍ତା ହେସ ମା'ମାନେ ଗୋ ଧଏନ୍ ।୪୨।
ଯାଉଛେଁ ମା ! ଏଛନି, ପଛେଁ ସମିଆ ଦେଖି ଆଏମି ନ'
ମତେ କାଏଁ ଦିଆ ଲାଗ୍‌ବା ?ବାଡ଼ି କୁଡ଼ି ଖାଏମି ନ' ।୪୩।
ନୂନୀ ଗଲା ଗାଁ ଆଡ଼୍‌କେ ମାଁ ଦେଖୁଥିବେ ବାଟ୍
ହର୍‌ବର୍ ହଇଁ ଧାଇଁ ଯାଉଥିଲା ସିଧା ଛାଟେଁ ଛାଟ୍ ।୪୪।
ଗରାମ୍‌ପତି ଗୁଡ଼ି ଠାନେ ଦେଖ୍‌ଲା ହୁଦେ ପିଲା
ମୁଖ୍‌ବିର୍ ହଇ ଗାଁ ପିଲାକର୍ ସାଙ୍ଗେଁ ଶଶି ଥିଲା ।୪୫।
ଗରାମ୍‌ପତିର୍ ପୁନି ଯାତ୍‌ରା ଗୁଡ଼େଁ ହେଲାନ ଛନ୍ଦ୍‌ଲେଇ
ବୁଢ଼ା ମାନେ ସବୁ ଦିନେ କେତେ ହେତେ ଗୁନ୍ଦ୍‌ଲେଇ ।୪୬।
ଏସୁର ସାଙ୍ଗେଁ ଯୁଆନ୍ ପାଡ଼ିକେ ଦେଲେ ସଁପି ସାରି
ଯୁଆନ୍ ପିଲାକର୍ ନୂଆ ବିଚାର୍ ନିଷ୍ଟେ ହେବା ଜାରି ।୪୭।
ଶଶି ସାଙ୍ଗେ ମିଶିକରି ସବୁ ପିଲା ଲାଗିଛନ୍
ଯାହାକେ ଯେତେ ପରିଥିଲା ଚାନ୍ଦା ଭେଦା ମାଗିଛନ୍ ।୪୮।
ଗୁଡ଼ି ଇଲାକା ଛାଁଚି ପୁଛି କରନ୍ ସଫା ସୁତ୍‌ରା
କଥା ହେଉଛନ୍ କେନ୍ତା ହେବା ଏସୁର୍ ପୁନି ଯାତ୍‌ରା ।୪୯।
ଏତ୍‌କି ବେଲେଁ ସେ ବାଟେଁ ନୂନୀ ଗଲା ଚାଲି
ନୂନୀର୍ ଆଖେଁ ଶଶିର୍ ଆଏଁଖ୍ ଘାଏକେଁ ଗଲା ମିଲି ।୫୦।
ଆଁଖି ଆଁଖି କେତେ କଥା ହଇଁଗଲେ ଦୁହେ
କିହେ ନାଇଁ ଜାନି ଏଛନିତକ୍ ଜାନନ୍ ନୁହେ ।୫୧।
ଏବେ ବନଏ ବୋଝ୍‌ଟେ ନୂନୀ ଉଲ୍‌ହେଇ ଆଇଛେ ଇସ୍କୁଲେଁ
ଈ ବୋଝ୍ କାଇଁ ଉଲ୍‌ହେଇ ହେବା ପଡ଼ି ଯାଇଛେ ମୁସ୍କିଲେଁ ।୫୨।
ନୂନୀ ଗଲା ଘର୍‌କେ ମୁଡ଼େଁ ଭାବ୍‌ନାର୍ ବୋଝ୍ ବୁହି
ଶଶି ସୁମ୍‌ରି ଭିତ୍‌ରେଁ ଭିତ୍‌ରେଁ ହଏ ରହି ଦହି ।୫୩।
ଚରେ ଚିରଗୁନର୍ ଚିଁ ଚିଁ ଥି ପାରୁଥାଏ ଶୁନି
ସଭେ ଯେନ୍ତା ଗୁଟେ ସୁରେଁ କହନ୍ 'ନୂନୀ' 'ନୂନୀ' ।୫୪।

ଗୁଡ଼ିନିର୍ ସେ ବର୍‌ଗଛର ସବୁ ଡ଼ାଲ୍ ଲାତରେଁ
ନୁନୀର୍ ପୁତ୍‌ଲାକେ ଲେଖି ନଉଛେ କିଏ କେନ୍ ବତ୍‌ରେଁ ।୫୫।
ଭାବ୍‌ମି ବଏଲେଁ ଭାବି ନାଇଁପାରେ କେନ୍‌ସି କଥା
ନୁନୀର୍ ଭାବନା ସାନି ହଇ କରି ନଉଛେ ଅଥା ।୫୬।
କୁନ୍ଦା ବେଡ଼ା ଢଡ଼୍‌ହା ଲେଖେଁ ଶଶି ଅଛେ ଠାଡ଼୍
ପିଲାମାନ୍‌ଏ ସବୁ କଥା ଦେଖି ତାର୍ ଆଡ଼୍ ।୫୭।
ସଭେ ବଏଲେ 'କାଁ ହେଲାବୋ ! ନୈ କହେବାର୍ କିଛି
ଏକ୍‌ଲା ଏକ୍‌ଲା କା'ଣାଭାବ୍‌ସୁ ଆମ୍‌କୁ ଦେଇ ଅଁଛି' ।୫୮।
କେ'ନ ଥିଲା ଯେ ଶଶି ନିଜେଁ ନିଜ୍‌କେ ଆଏଲା ଫିରି
କହି ବସ୍‌ଲା ଶୁଇଥିଲା କାଏଁ ସତେଁ ଉଠିକରି ।୫୯।
'ଭାବୁଥିଲି ଇ ଯାତ୍‌ରା କଥା, କେନ୍ତା କର୍‌ମା କହ
କା'ଣା ହେଲେଁ ସୁନ୍ଦର୍ ହେବା ପୁଁଜି ନାଇଁ ତ ଢହ ।୬୦।
ଏସୁର୍ ସାଲେଁ ଯେନ୍ତା ହେଲେଁ ବି ନାଇଁ କରୁଁତ କୁଆ
ସେ'ଟା କଲେଁ ଯେନ୍ତା ହେଲେଁ ଗୁଲ୍ ମାଲ୍ ଥିସି ଥୁଆ ।୬୧।
କହେଲା ଜନ୍‌ଏ 'ପହେଲା କରି ନେଇଛୁଁ ଆମେ ଜିମା
କଥା ପରିଁଗଲେଁ ଆମେ କେନ୍ ରାଏଢେଁ ଥିମା' ।୬୨।
'ହେ ସବୁ ସଁଭାଲି ହେବା ମାମ୍‌ଲି କଥା ଛାଡ଼
ଗଞ୍ଜା, ଗର୍‌ରା, ବୁକା ଦିଆ ବନ୍ଦ କଥା ବାଢ଼' ।୬୩।
ଶଶି କହେଲା '"ଗାଁ ସାରାକେ ବୁଝେଇ ପାର୍‌ଲେଁ ଯାଇ
ବଏଲ୍ ବନ୍ଦ୍ ହଇ ପାର୍‌ବା ନେହେଲେଁ ବଁଚୁତ୍ ନାଇଁ' ।୬୪।
ଜନ୍‌ଏ କହେଲା 'ଆଏଜ୍ ମଏଧାନ୍ ଗାଁ ଯାକ ଜମୁ
ସମିଆଟେ ଆଇଛେ, ତାହିଁ ବନ୍‌ଏ କରିଁ ସମୁ ।୬୫।
ଆମର୍ କଥାକେ ଗାଆଁର୍ ଲୁକେ ଉଡ଼େଇ ନେବେ ହସି
କହେବେ ଉଠାଲେ ପୁର୍‌ଖାର୍ ଚଲନ୍ ଛୁଆ ଗୁଟାଦୁ ବସି ।୬୬।
ମାଷ୍ଟକର୍ ପୁଓ ରବି ଆଇଛେ ଗିଆନୀ ଆଏ ବଢ଼େ
ସମଲ୍‌ପୁରେଁ ସବୁଠାନୁ ଉଚା ଶେଣୀ ନ ପଢ଼େ ।୬୭।

ତାହାକେ ଡ଼ାକ୍‌ଲେଁ କହେତା ଈ ବଏଲ୍ ବିଷେ ନେଇ
ତାର୍ କଥାକେ ପରତେ ଯିବେ ଗାଆଁର୍ ଲୁକେ ଯାଇ' ।୬୮।
ସଭେ ବଏଲେ 'ବନ୍‌ଏ ହେବା ଈ କଥାଟା କର୍‌ମା
କବାର୍ ଥାଉ ଗାଧି ଖାଇ ଗାଁ ଖୁଲି ଭେଟ୍ ପର୍‌ମା' ।୬୯।

## ୧୦

ଘର୍‌ମାନେ ଲିପାପୁଛା ଖୁଏଲ୍ ବର୍ଣ୍ଣାହା ଚତ୍‌ରା
କୁନୁଆଁ ମଏତର୍ ଜମା ହେଲେନ ହେବା ପୁନି ଯାତ୍‌ରା ।୦୧।
ବକ୍ କରୁଛେ କାଁଥିର୍ ଛୁଇ ତଲେଁ ଗୁବର୍ ଲିପା
ଛୁଇର୍ ଉପ୍‌ରେଁ ଗେରୁ ବନ୍ଦେ ବୁନ୍ଦେ ହଇଛେ ଛପା ।୦୨।
ଦଶ୍‌ରା ମଏଧାନ୍ ଗାଁକେ ଆଇଛେ ପସ୍‌ରାଇ କରି ଖରା
ତପ୍‌ତି ଜାନି ଛାନିର୍ ଛଏରା ଛିଇସି ତରା ତରା ।୦୩।
ମଝି ମର୍‌ଲୀନ ଖରାର୍ ଲାଗି ବସି ନାଇଁ ହଏ
ଜାନି କରି ଚାନ୍ଦୁଆ ଗୁଟେ ଟାନି କଲେନ ଛାଏ ।୦୪।
ବୁକା ଗର୍‌ରା କୁକ୍‌ରା ଏସୁର୍ ଦିଆ ହେବା କି ନି ?
ବିଚାର୍ ହେବା ବଲିଁ ସଭେ ଆସନ୍ ଯିବେ ଶୁନି ।୦୫।
ଚାନ୍ଦୁଆଁ ତଲେଁ ବିଛା ହଇଛେ କେତେ ପଟି ଦରି
ଦେଖୁନ୍ ଦେଖୁନ୍ ଲୋକ୍ ଆସି ହଇଗଲେନ ଭରି ।୦୬।
ନୁନୀ ଘର୍ ତ ବେଶ୍ ଆଏ, ତାକର୍ ପିଁଢ଼ା ପୁର୍‌ନୁ
ନୁନୀ ଅଛେ, ସାଙ୍ଗମାନେ ଆସ୍‌ଲେ ନ ନାଇଁ ନୁର୍‌ନୁ ।୦୭।
ମଝି ନୁନୀର୍ ବାଆ, ପାଶେଁ ଝାଁକର୍ ବୁଢ଼ା ବସିଛନ୍
ସିଆନ୍ ସୁଜନ୍ ପାଶେଁ ପାଶେଁ ଯେତ୍‌କି ଅବ୍‌ତକ୍ ଆସିଛନ୍ ।୦୮।
କିହେ କିଛି ନାଇଁ କହେବୋର୍ କାହାକେ ଅଛନ୍ ଟାକି
ଶଶି ସାଙ୍ଗେଁ ପିଲାମାନେ ରବିକେ ଯାଇଛନ୍ ଡ଼ାକି ।୦୯।
ଦୁଇ ଚାଏର୍ ଜନ୍ କେ'ନ କେନ୍ତା ଛୁଟିଆ ଛୁଟିଆ ଦଲେଁ
କଥା ହଉଛନ୍ 'ବଏଲ୍ ବନ୍ଦ ହେଲାନ କେନ୍ କାଲେଁ' ।୧୦।
ବୁକା ଗର୍‌ରା ଯେ ଯେନ୍ତା କେଭୁଁ କେଭୁ ବନ୍ଦିଛନ୍
କେଭୁଁ କେଭୁ ଫି ବଛର୍ ଦେବାକେ ପହନ୍ଦିଛନ୍ ।୧୧।

କାଁ କରସନ୍ ସେ ବୁପ୍‌ରେ ଆଝିର୍ କଲେଁ ବନ୍ଦ୍
ପୁରଖା ନୁ ତ ଚଲି ଆଇଛେ ଆଏଜ୍ ହେବା କାଏଁ ମନ୍ଦ୍ ? ।୧୨।
କେ ବଲେ "କା'ର ଛୁଆର୍ ବେମାର ଛାଡ଼ିଯିବା ବଲି
ଛେଲିର୍ ଛୁଆ ଦୋଷ୍ କରିଛେ ତାହାକେ ଦିଅ ବଲି" ।୧୩।
ସବୁ ଆଡ଼େଁ ଟୁରୁବୁରୁ କଥା ଫୁସୁର୍ ଫୁସୁର
କାଏଁ ହରବର୍ ଘାଏକେଁ ଜାନ୍‌ମା କା'ଣା ହେବା ଏସୁର୍ ।୧୪।
ପିଲେ ପୁହୁଁଚିଲେ ଜାନି ସଭେ ତୁନ୍ ତାନ୍
ରବି ବସ୍‌ବାର ଲାଗି ଶଶି କରିନେଲା ଠାନ୍ ।୧୫।
ନୁନୀର୍ ବାଆ, ଝାଁକର୍ ବୁଢ଼ା, ଆଉର୍ ସିଆନ୍ ସୁଜନ୍
ସମ୍‌କୁଁ ବୁଝି କହେଲେ କହୁଛେଁ ଶୁନ ଦେଇ ମନ୍ ।୧୬।
ଦିନା ପାଁଚ୍‌କର ପରେ ଆମର୍ ପୂନି ଯାତ୍‌ରା ହଉଛେ
ଏସୁର୍ ସାଲେଁ ସେଥିର୍ ଜିମା ପିଲା ଦଲ୍‌ଟା ବୁହୁଛେ ।୧୭।
ଗରାମ୍‌ପତି ଦେବ୍‌ତାର ନ ଆଉର୍ ରକତ୍ ଧାର୍
ନାଇଁ କରୁନ ବଳିଁ ପିଲେ କହନ୍ ବାର୍ ବାର୍ ।୧୮।
ପୁରୁଖାପାତିର୍ ଚଲନ୍ ଗୁଟେ କର୍‌ବାର୍ ଆଗୁଁ ବନ୍ଦ୍
ଗାଁ ମାଁ ବସି ବିଚାର୍ କରୁଁ ସବୁ ଭଲ୍ ମନ୍ଦ୍ ।୧୯।
ଆମେ ସବୁ ଅପଢ଼ା ଲୋକ୍ ଇ ବିଷେ କାଁ ଜାନ୍‌ମା
ମାଷ୍ଟକର ପୋ ରବି ଆଇଛନ୍ ତାକ୍‌ରଠାନୁ ଶୁନ୍‌ମା ।୨୦।
ସେ ପରେ ସମଲ୍‌ପୁରେଁ ଯେତ୍‌କି ଅଛେ ପଢ଼ିଛନ୍
ଯାହା ହେଲେଁ ଶିଖେତ୍ ଲୁକର୍ ଭିତ୍‌ରେଁ ବି ତ ବଢ଼ିଛନ୍ ।୨୧।
ସେ' ବୁଆ କହୁନ୍ ଏଛନି ଛନ୍‌ଏ ସଭେ ତୁନ୍ ପର
ଶୁନ୍ ଲା ପରେଁ ବିଚାର୍ କରମା ଟିକେ ବାଗିର୍ ଦମ୍ ଧର' ।୨୨।
କହେଲା ରବି ସାରା ସଭାକେ ପହେଲା କରି ଯୁହାର୍
'ଛୁଆଟାକେ ବୁହାଲ ଇଟା ମହାନ୍ ଗୁରୁଭାର୍ ।୨୩।
କାଁ ପାଠର୍ ପାଠ୍ ପଢ଼ିଛେଁ କାଇଛେ ମୋର୍ ଗିଆନ୍
ନାଇଁ ମାନ୍‌ଲେଁ ନାଇଁ ଚଲେ କହୁଛ ଗାଁର୍ ସିଆନ୍ ।୨୪।

ଦୋଷାଦୋଷ୍ ମୋର୍ ଯାହା ହେବା କର୍‌ବ ମତେ ମାଫ୍
ଯା'ର ମନ୍ କେ ନାଇଁ ଆଏବା କହିନେବ ସାଫ୍ ।୨୫।
ଦେ ଦେବ୍‌ତାର୍ ଠାନେ କେନ୍ତା ପଡ଼୍‌ଲା ରକତ୍ ଧାର୍
କେନ୍ତା ଦେଲା ମୁନୁଷ୍ ! ମାରି ଜଁତ୍ ଜାନୁଆର୍ ।୨୬।
ପୂଜା କର୍‌ଲା ଦେବୀ ଦେବ୍‌ତା ଖୁସ୍ ହେବେ ବଲିଁ
ଇ ମାର୍‌ବାକେ ପୂଜେଇ ବଲ୍‌ସନ୍ କହେସନ୍ ବି ବଳି ।୨୭।
ମୁନୁଷ୍‌କେ ଆଏଜ୍ ଯେନ୍ତା ଦେଖ୍‌ସୁଁ ହେନ୍ତା ନାଇଁ ଥାଇ
ମାକର୍ ମେତାଲ୍ ଝାର୍ ଯାକର୍ ବୁଲେ ଇଥି ତାହିଁ ।୨୮।
ନାଇଁ ଜାନିଥାଇ ଜୁଏର୍ ବେଭାର୍ ଛେଲ୍ ଗୋରା ଚରା
ନାଇଁ ଜାନି ଭି ଚାଷ୍ ବାସ୍ ରହି ପାନିର୍ ତରା ।୨୯।
ଝାରର୍ ଫଲ୍ ମୂଲ୍ ଆଉର୍ ଝାର୍ଁ ଜଁତ୍ ଚରେ
ମାରିଖାଇ ବୁଲି ପେଟ୍ ଚାଏର୍ ଆଙ୍ଗୁଲ୍‌କ ଭରେ ।୩୦।
ଆକାଶେଁ ଦେଖ୍‌ଲା କେ ଉଦାସି ଜନ୍, ବେଲ୍, ତରା
କିଏ କରାସି ବର୍‌ଷା ଶୀତ୍ ତାର୍ ଉତ୍‌ରୁଁ ଖରା ।୩୧।
କିଏ ଅଁକ୍‌ରାସି ଗଛ୍ ଲହ ତାହିଁ ଫୁଲ୍ ଫଲ୍
ଦେଖା ନାଇଁ ଦେଇ କରେ ତାହାର୍ ସବୁ ଭଲ୍ ।୩୨।
ଅଦେଖା ସେ ଶକ୍ତି କେ ଥାପି ଗଛେଁ ପଥ୍‌ରେଁ
ଯାହା ଖାଏଲା ତାହା ପହେଲା ଦେଲା ତାର୍ ପତ୍‌ରେଁ ।୩୩।
ପଛେଁ ପୁଷ୍‌ଲା ଯେତେବେଲେଁ କୁକ୍‌ରା ଛେଲ୍ ମେଢ଼ି
ତାହାକୁଁ ପୁଜ୍‌ଲା, ଝାରେଁ ଯେଭେଁ ନାଇଁ ପାଏଲା ଢୁଁଡ଼ି ।୩୪।
ମୁନୁଷ୍ ଜାଏତ୍ ଆର୍ ଅଶିଖେତ୍ ଅଛେ ତାଲି ଭାଏଲ
ପହେଲା ମୁନୁଷର୍ କୁହିଲା ଚଲନ୍ ନୁହେ ଛାଡ଼େ ତାଏଲ୍ ।୩୫।
ଭାତ୍ ଖାଏଲେଁ ଅଲ୍‌ଗାଇ ନେସୁଁ କୁଟା କାଠି ଗୁଡ଼ି
ଗାଏ ଖାଏଲେଁ ଘଁକଲେଇ ନେସି ଘାସୁଁ ଖାଡ଼ି ବାଡ଼ି ।୩୬।
ଚଲ୍‌ନି ଭିତ୍‌ରୁଁ ନାଇଁ ଅଲ୍‌ଗାଉଁ ଯେତ୍‌କି ଅସ୍‌କଟ୍ କଥା
କଣା ବାଗିର୍‌ତ ବନା ହଇ କରୁଁ ରେଁତ୍‌କେ ରେତା ।୩୭।
ମୁନୁଷ୍ ଆର୍ କାଏଁ ଧରି ବୁଲୁଛେ ପଥର୍ ତିଆରି ଅସ୍ତର୍ ?
ନଙ୍ଗଲା ହଇଁ ବୁଲୁଛେଁ କାଏଁ ଦିହେଁ ନାଏନ ବସ୍ତର୍ ? ।୩୮।

ସବୁ ଛାଡ଼ି ନାଇଁ ଛାଡ଼ୁନ୍ତୁ ଅସ୍‌କଟ୍ କେତେ ଚଲନ୍
ରହି ରହି ହଇଗଲାନ ମୁନୁଷ୍ ଗୋଠ୍‌କେ ଅଲ୍‌ହନ୍ ।୩୯।
ସବୁ ଗାଁନୁ ଆମର୍ ଗାଁଟା ବନିହାଁ ରକ୍‌ମେ ଭିନେ ଆଏ
ସୁଧିରା ସୁଧିରି କର୍‌ବାକେ କେତ ନି କେତେ ବନ୍ଏ ଆଏ ।୪୦।
ମଦ୍ ଗଞ୍ଜାଇ ଛାଡ଼ି ଯାହିଁ ହେସି କରମ୍‌ଶାନୀ
ସାନ୍ ହେଲେଁ ଭି ସେ ଗାଆଁକେ ମହାନ୍ ଲେଖେଁ ମାନି ।୪୧।
ଭଣ୍ ଭେସର୍ ନାଇଁ ଯାହିଁ ହେସି ଡ଼ାଲ୍‌ଖାଇ
ନୁରି ଦେଖ୍‌ଲେଁ ଏନ୍ତା ଗାଆଁଟେ ମିଲ୍‌ବା ହେଲେଁ କାହିଁ ? ।୪୨।
ସେ ଗାଆଁଟା ମୋର୍ ଲାଗି ନିଶ୍ଚେ ଗୁଟେ ସରଗ୍ ଆଏ
କିଏ ଯଦି ନାଇଁ ମାନେ ତାର୍ କଥା ଅଲଗ୍ ଆଏ ।୪୩।
ଈ ଗାଆଁର୍ ମାଏଟ୍ ଧୁଏଲ୍ ଆମର୍ ଲାଗିଁ ଚନ୍ଦନ୍
ଜନମ୍ ଜନମ୍ ନାଇଁ ଟୁଟୁ ଈ ଗାଁ ମାଁର୍ ବନ୍ଧନ୍ ।୪୪।
ଆମର୍ ଲାଗିଁ ଗଙ୍ଗା ଆଏ ଈ ଗାଁର୍ ସାନ୍ ନଲିଆ
ଦେବ୍‌ତା ଗରାମ୍‌ପତି ନୁହେ କାଏଁ ଜଗତ୍‌ପତି କାଳିଆ ? ।୪୫।
ସେ ଦେବତାର୍ ଆଗେଁ ଆମେ ବୁକା କୁକ୍‌ରା ମାରି
କାଁ ସରମେ କରମା ଫେର୍ ସେ ଦେବ୍‌ତା ନ ଗୁହାରି ।୪୬।
ଯାହାକେ ରୁଚେ ମାରି ଖାଉନ୍ ବୁକା ଗରରା କୁକୁରା
ଛିଟା ମେଟାବାର୍ ନୁହେ, ଦେଇ ଦେବ୍‌ତାର୍ ନାଏଁ ଡ଼କ୍‌ରା' ।୪୭।
'ଯେନ୍ ବିଷେଟା ଆମ୍‌କୁଁ କରୁଥିଲା ଆଥୋଥାଳି
ସାଫ୍ ହେଲା' ବଲି ପିଲାମାନେ ଦେଲେ ତାଲି ।୪୮।
'ଗରାମ୍‌ପତିର୍ ଠାନେ ନାଇଁ ହୁଏ ରକତ୍ ଧାର
ଈ ବିଷେ କେ ସଭା ଆଜିର୍ ପର୍ଚ୍ଛା କରୁ ସାର୍' ।୪୯।
ଏତ୍‌କି ବେଲ୍‌ତକ୍ ନୁନୀ ସବୁ ଯାଉଥିଲା ଶୁନି
ରବିର୍ କଥା ଗୋଟ୍ ଗୋଟ୍ କରି ପିଉଥିଲା ଛିନି ।୫୦।
କେତେ କଥା ଜାନିଛେ ମାଁ ! ତାହାର୍ ରବି ଦଦା
ଭିତର୍ ଅତଲ୍ ସମୁଦର୍ ତାର୍ ବାହାର୍ ସାଦା ସିଧା ।୫୧।
କେତେ ଅଏନ୍ କେଡ଼େ ନୁକୋ ଦଦା କେଡ଼ ବନ୍ଏ ଆଏ
ତାହାକେ ଚାହେଁଲେଁ ଅପ୍‌ନେ ତାର୍ କେନ୍ କନର୍ କନ୍ଏ ଆଏ ।୫୨।

ସେ ଥାଏ ହେମାଳୟ ଆପନେ ମାଟିର୍ ମୁଡ଼ାଟେ
ଅସୀମ ସମୁଦର୍ ସେ ନିଜେଁ ପାଦେ ପାନିର୍ ଢୁଡ଼ାଟେ ।୫୩।
ସାନ୍ ହଇକରି ସେ ମହାନ୍‌କେ ସେ ବାରି ନାଇଁ ପାରି
ତାଗେ ସୂତାର୍ ଜାଁତିୟାଁଟାକେ ହଇ ବସ୍‌ଲା ଯୁରି ।୫୪।
ନିର୍‌ମୁଲିଆ ନଜର୍‌ଟା ତାର୍ ରବିର୍ ଆଡ଼୍‌କେ ସୁତ୍‌ରାଲା
ଭାବ୍‌ନା ରାଏଜୁଁ ମନ୍‌କେ ଆନି ସତ୍ ଥିତିକେ ଉତ୍‌ରାଲା ।୫୫।
ରବି ବସିଛେ ନିଜର୍ ଠାନେ ଥେବି ଯାଇଛେ କଲ୍‌କଲ୍
କିଏ ବସିଛେ ଗୁଇଁସ୍ ଗାଇଁସ୍ କିଏ ଦେଖୁଛେ କଲ୍‌ବଲ୍ ।୫୬।
ଉଠି କହେଲା ଝାଁକର ବୁଢ଼ାର୍ ବାର୍ ଦିନିଆଁ ଝନ୍‌ଏ
ଯାହା କହୁଛ ମାହା ଅଡୁଆ, ନାଇଁ ଲାଗ୍‌ବାର୍ ବନ୍‌ଏ ।୫୭।
ମୁର୍‌ଖା ମୁର୍‌ଖ୍ କଥା ନୁହେ, ପୁର୍‌ଖା ପାତି ଦିନୁ
ଚଲି ଆଇଛେ ବଏଲ୍, କିଏ ବାହାର୍ କରିଛେ କାଏଁ ମନୁ ? ।୫୮।
ନିଜେଁ ଦେବ୍‌ତା ମାଗିଥିବା ଦେଇଥିବେ ଲୋକ୍
ନାଇଁ ଦେଲେଁ ତାହାକେ ନୈ ସତାବା କାଏଁ ଭୋକ୍ ? ।୫୯।
ଆମର୍ ବଛରେ ପୁର୍‌ଲେଁ, ଦିନ୍‌ଏ ହେସି ଦେବ୍‌ତାକର୍
ସେ ଦିନ୍‌ଟା ଭୁଖେଁ ରଖିଲେଁ ଦୋଷ୍ ଗାଆଁଟା ଯାକର୍ ।୬୦।
ମୁନୁଷ୍ ହଉକି ଦେବତା ହଉ ପେଟ୍ ଜଲ୍‌ଲେଁ ଭୁଖେଁ
ଆଧାର୍ ବିନା ଅନ୍ଧାର୍ କାହାକେ ରହି ନାଇଁ ଦିଏ ସୁଖେଁ ।୬୧।
ସାନ୍ ଠାନୁ ବଡ଼୍ ତକ୍ ମୁନୁଷ୍ ଦେବ୍‌ତା କରି
ପେଟର୍ ଲାଗି ଘିଚାଟନା ପେଟେଁ ମରି ତରି ।୬୨।
ଆଏଜ୍ ଯାହା ବୁକା ଗର୍‌ରା କୁକ୍‌ରା ଥି ନିପ୍‌ଟିବା
ନେହେଲେଁ କାଏଲ୍ ଗୋଟ୍ ଗୋଟ୍ କରି ମନୁଷ୍ ଦେଖିଲେଁ ମୁର୍କୁଟିବା ।୬୩।
ଖେଲିଖିଆ ଛୁଆ କଥାକେ ଦେଇକରି ମାଥ୍‌ବରି
ଗାଁର୍ ଲାଗି ନୂଆଁ ବିପଦ୍ ସୋଜ୍ ଆନ୍‌ମା କାଏଁ ବରି ।୬୪।
ଛୋଟ୍ ମୁହେଁ ବଡ଼୍ କଥା ତଥାପି କହୁଛେଁ ମାନିଥ
କା'ଣା ବଏଲେଁ କାଣା ହେବା ନେହେଲେଁ ଏକା ଜାନିଥ' ।୬୫।

ତାର୍ ପାଶେଁ ବସିଥିଲେ ଯେନ୍ ଝନ୍ଦୁକ ବାଆରି
ପାଲି ଧର୍‌ବାକେ ଆଗୁଁ ତାକର୍ ସରିଥିଲା ତିଆରି ।୬୬।
ବଏଲେ 'ଭାଇ! ବନ୍‌ଏ କଥା ଇ ଝନ୍‌ଏ ଏକା କହେଲା
ଇତାର କଥାକେ ସାର୍ କର ସବୁ ଛାଡ଼ି ପହେଲା' ।୬୭।
ଶଶି ଦେଖିଲା ଯାହାକେ ତାର୍ ବାଆ କର୍‌ସି ଭୁତିଆର୍
ବୁକା ଗର୍‌ରା ପୂଜ୍‌ବାକେ ନାଇଁ ଚଲାଏ ବଲି ହତିଆର ।୬୮।
ଇ ଗୁସିଆଁ ପୁଜି ନେସି ମୁଡ଼୍ ଗୁଟା ଗୁଟା
ଯେନ୍‌ମାନେ ତା'ର ପାଲି ଧରୁଛନ୍ ନେସନ୍ ଛାଲ୍ ପୁଟା ।୬୯।
ଛିନାଛକା ଦେଖି ବୁକା ଗର୍‌ରା ଗୁଟା ଗୁଟି
ନଳିଆର୍ ବାଲିଁ ତୁପିଥିସନ୍ ନେସନ୍ ରାତୁଁ ଉଠି ।୭୦।
ଶଶି ଉଠ୍‌ଲା ଖନ୍ଦେଁ ତାର୍ ଚାଏର୍‌ହାତୀଟେ ପରିଛେ
ସଭାକେ ଦେଖି ମାଥ୍ ଲୁହାଁଇ ହାତ୍ ଦୁହିଟା ଯୁରିଛେ ।୭୧।
ଆଖିର୍ ପାଏନ୍ ଚରା ଚରା କଁଠ୍ ହଉଛେ ରୁନ୍ଧି
ନାଇଁ ପାର୍‌ବାର୍ କହି କି ନାଇଁ ପାର୍‌ବାର କାନ୍ଦି ।୭୨।
ଟଁଟି ସଟ୍‌କି ଅଟ୍‌କି ଅଟ୍‌କି ହେଁ କେଇ ହେଁକେଇ କହୁଛେ .
ତାହାକେ ଦେଖିଲା ଲୁକର୍ ଆଖିଁ ଲହ ହେଲେଁ କାଏଁ ରହୁଛେ ।୭୩।
'ଗାଁ ମାଁକେ ବିନ୍‌ତି କରି କରୁଛେଁ ମୁଇଁ ଅର୍‌ଦଲି
ଗରାମ୍‌ପତିକେ ଏସୁର୍ ସାଲେଁ ଦେତାଁ ମୁନଷର ବଲି ।୭୪।
କେ'ନ ପାଏମା ମୁନୁଷ୍ ବଲି ନାଇଁ ଡ଼ର ଟିକେ
ବଲି ହେବାକେ ଚାଲିଯିମି ଗରାମ୍‌ପତି ନିକେ ।୭୫।
ଥାନା ପୁଲିସ୍ କୋଟ୍ କଚରି ଡ଼ର୍ ଥିବା କାଁ କାଯେଁ
ସମ୍‌କର ଆଗେଁ ଲେଖିପଢ଼ି ନେମି ମୁଇଁ ନିକେଁ ।୭୬।
ଯେନ୍ ଦଦା ମୋର୍ ବୁକା ଗର୍‌ରା ମାରି କର୍‌ସି ପୂଜେଇ
ତାହାକେ କହ ଟାଙ୍ଗି ତାବ୍‌ଲି ଏଭୁଁ ରଖୁ ପଜେଇ ।୭୭।
ଯେନ୍‌ମାନେ ବି ବନାକରା କରି ପୁଟା ଛାଲ୍
ନେସନ୍ ସିଏ କର୍‌ରୀ ପନ୍‌ଖି ନିଶି ନଉନ୍ କାଏଲ ।୭୮।

ମୋର ମାଉଁସ୍‌କେ ପରସାଦ୍ କରି ନେବ ଫୁଟେ ଫୁଟେ
ସମ୍‌କୁଁ ଦେବ ଗାଁ ସାରା ଗନି ଗୁଟେ ଗୁଟେ ।୭୯।
ଏତ୍‌କି ବିନ୍‌ତି କାହାରି ଆଁଖି ନାଇଁ ପର୍‌ବା ପାଏନ୍,
ମୁଇଁ ପାଏମି ସରଗ୍, ଗାଆଁ ପାଏ ବା ମହା ମାଏନ୍' ।୮୦।
ନୁନୀର୍ ଆଖୁଁ ଟପ୍‌ଲା ଲହ ଥପୋ ଥପୋ ଥିପୁଛେ
ପାଶେଁ ଉଦିଆଁ ଆଗର୍ କହେଲା ଲୋକ୍‌କେ ବନ୍‌ଏ ଶଁପୁଛେ ।୮୧।
ସାନ୍ ନୁ ବଡ଼୍ ଯାହା ଅଛନ୍ ସବୁ ମାଆଁ ଜାଏତ୍
କାନ୍ଦନ୍ ନୁହନ୍ ଇମାନେ କେବେଁ ହେଲେଁ ଲୁହର୍ କାଏତ୍ ।୮୨।
ମୁନୁଷ୍ ପିଲାକର୍ ଆଏଁଖ୍ ମାନେ ବି ଭରି ଗଲାନ ପାନି
କେ ପୁଛ୍‌ସି ପାପ୍‌ଲି ଲେହେଟେଇ କେ ଗାମଛାର୍ କାନି ।୮୩।
ନୁନୀର୍ ଉଦା ଆଖୁଁ ନଜର୍ କୁଦା ମାରି ଧାଏଁଲା
ଶଶିର୍ ଆଡ଼୍‌କେ, ଶଶିର୍ ନଜର୍ ମଝି ତାହାକେ ପାଏଲା ।୮୪।
ନଜରେଁ ଯାଇ ନୁନୀ ଶଶିର୍ ଭିତ୍‌ରେ ଯାଉଛେ ସମି
ଶଶିଥାଇ ନିଜର୍ ଠାନେ ନଜ୍‌ରେଁ ଆଉଛେ ଲମି ।୮୫।
ରବି ଦେଖ୍‌ଲା ଶଶିର୍ ନଜର୍ ପଡ଼୍‌ଲେଁ ନୁନୀର୍ ଆଁଖି
ମୁଡ଼୍‌କେ ଗାଡ଼ି ପତା ଭିତ୍‌ରେଁ ନଜର୍ ରଖେ ଜାଁକି ।୮୬।
ଗଙ୍ଗା ଯମ୍‌ନା ମିଶାମିଶି ରବିର୍ ନଜର୍ ସରସ୍ୱତୀ
ଦେଖି କରି ବି ଦେଖା ନାଇଁଦେଇ ରହିଗଲା ସର୍‌ପଟି ।୮୭।
ନୁନୀର୍ ବା କଥା ପଦ୍ ଦୁଏ ଆଁଖିଁର ପାନି ବୁଥିଁ
ହାତ୍ ପେସ୍‌ରେଇଁ କହେଲା ସଭା ଭିତ୍‌ରେ ଠିଆ ଉଠି ।୮୮।
'ସିଆନ୍ ସୁଜନ୍ ଗାଆଁ ମାଆଁ ବିଚାରେଁ ହେଲା ସାର୍
ଗରାମ୍‌ପତିର୍ ନାଏଁ ନାଇଁ ହଏ ରକତ୍ ଧାର ।୮୯।

## ୧୧

ଉସତ୍ ଉସ୍‌ନାକ୍ ଉଲ୍‌ଦି ଦଶରା ପୁନି ପଲାଲା
ଫାଟି ଥିବାର୍ ମନର୍ ମାଟିଁ ନୂଆ ରସ୍‌ଟେ ବଲାଲା ।୦୧।
ସାତ୍‌ବିକ୍ ଭାବେଁ କାରତିକ୍ ଆଏଲା କାକର୍ ପଖ୍‌ଲା ସକାଲେଁ
ଦେଖେ ଘାଁସ୍ କେନ୍ତା ଦିଶେ ଓସ୍ ଟିକେ ଟିକେ ମଖାଲେଁ ।୦୨।

ହଁସ୍ ମେତାଲ୍ ମେଘ୍ ଆକାଶେଁ ପହଁରୁଥିଲେ ଯେତ୍‌କି
ସଥର୍ ହଁସ୍ ହଁସରେଲ୍ ହଇ ପାନି ଗଲେନ ଅଟ୍‌କି ।୦୩।
ହଁସର୍ ହଁସ୍‌ରେଲ କୁଁଡ଼ା ଭୁଷ୍‌କି ଲାଲ ମୁଡ଼ିଆ ବଗଲ୍
ଘି'କୁଁଆରୀ, ଏଣକ୍‌ଗୁଲି, ଚନାଖାଇ ଆର୍ କଁଢ଼ଲ୍ ।୦୪।
ପାନିର୍ ଚରେ ପାଏନ୍‌କେ ଫିରେଲେ ଆକାଶର୍ ଜନ୍ ତରା
ଛାଏ ଦେଖିବେ ପାନି ବଲି ହେସନ୍ ତରା ତରା ।୦୫।
ଫୁଟିଗଲେ ନ ବଗ୍‌ବଗାନୁ ନୀଲିଆ କଏଁଫୁଲ୍
ଈ ସମ୍‌କର ଆଏବାରେଁ କାଏଁ ବନ୍ଧ ହସେ ମୁଲ୍ ମୁଲ୍ ।୦୬।
ବନ୍ଧ୍ କହୁଛେ ଆସନ, ବସ, ଚର, ବୁଲ୍ ମନ ଭର୍
ମୁନୁଷ୍ ମେତାଲ୍ ସୋଜ୍ ରୋଜ୍ ନେଁ ହେବ ନ ମାର୍‌ଧର୍ ।୦୭।
ମୋର୍ ଠାନେ ଯାହା ଅଛେ ଖଅ, ପିଅ, ମନା ନାଇଁ
ହଗ, ମୁତ, ଗୁଁଦାଲ୍ କର ଦୁଖ୍ ମତେ ଜନା ନାଇଁ ।୦୮।
ସୁଖ୍ ଦୁଖ୍ ଗୁଟେ ଆଏ ମନ୍ ପର୍ଛା ଥିଲେ ଯାଇଁ
ସୁଖ୍ ବଲି ଦୁଖର୍ ପଛେଁ ବାଏ ବିଛୋ ନେଁ ମର ଧାଇଁ ।୦୯।
ପହରେ ସୁଖ୍ ଚାଖିଲେଁ ଯା'ର ପାହା ପଡ଼େ ନେଁ ତଳେଁ
ଆର୍ ପହରେଁ ଦୁଖ୍ ଦେଖି ମେରୁ ମୁରସି ଭଳେଁ ।୧୦।
ଈନ୍ତା ମାନ୍‌କୁଁ ନି ଦେଖି ହେଲେଁ ଦେଖି ଈ ପଦମ୍ କେ
ଖରା ମାସେଁ ଛେକି ନୁହେ ଈତାର୍ ନାଚ୍‌ଲା କଦମ୍ କେ ।୧୧।
ଏଛନି ଦେଖ କାକର୍ ଡ଼ର୍‌ହେଁ ଦିହିଟା ଯାକର୍ କଁପୁଛେ
ରସ୍ ଖେଲାରୀ ଲେଖକ୍ ମାନ୍‌କୁ ଭିତ୍‌ରେଁ ଭିତ୍‌ରେଁ ଶଁସୁଛେ ।୧୨।
'ଟେକାଟେକି କରି ମୋର୍ ଜୀବନ୍ ଟାକ ନଶାଲ
ମାନୁଛେଁ ବଲି ପାନିନୁଁ ନେଇ ଯାହିଁ ପାରି ତାହିଁ ବସାଲ ।୧୩।
କାହାର୍ ଆଁଖି କା'ର ହୁର୍‌ଦେଁ କାହାର୍ ମୁହେଁ ନେଇ
ରଖିଲା ପନେଁ ବି ମାନ୍‌ଲ ନାଇଁ ପାହା ନେ ଦେଇ ଥୁଇ ।୧୪।
ଆଏଁଖି କେ ସୁନ୍ଦର୍ ନାକ୍ କେ କହର୍ ବଲିଁ ପବନ୍ ଲୁଭେଁ
ମୁହଁ କେ କେନ୍ତା ଲାଗ୍‌ବା ବଲି ପକାଇ ଦେଖେ ଜିଭେଁ ।୧୫।
କାକର୍ ଧୁକା ଆଖର୍ ପାଖର୍ ଠାନ୍ ଦେଖି କୁହୁଛେ
ସରି ସଁକ୍‌ରି ପଦମ୍ ବୁପ୍‌ରୀ ନାଲେଁ ପତ୍‌ରେଁ କୁହୁଛେ ।୧୬।

ଯାତ୍ରା ସର୍‌ଲା କୁନୁଆଁ ମଏତର୍ ସଭେ ଗଲେନ ଚାଲି
ସାରା ଗାଁଟା ଭରି ଥିଲେଁ ବି ଲାଗ୍‌ସି ଖାଲି ଖାଲି ।୧୭।
ରବି ଗଲାନ ପଢ଼ା ଯାଗାକେ ନୁନୀର୍ ଇସ୍କୁଲ୍ ଖୁଲ୍‌ଲାନ
ସମିୟା ଢୋଲ୍ ଗଡ଼ି ଗଡ଼ି କରି ଆଏଁଖ୍ ଦିଶ୍‌ଟୁ ଢୁଲ୍‌ଲାନ ।୧୮।
କାମ୍ ସରସର୍ ଗାଁ ସଂସାର ଲେହେଁଟି ମାରେ ହାଇ
କବାର୍ କମେ ଗାଁ ସର୍‌ବସ ହଇ ଗଲେନ ବାଇ ।୧୯।
ପଢ଼ା ଛାଡ଼ି ଶଶି ଅଛେ ବଡ଼ା ଆଶା ନେଇ
ଗାଁର୍ ଦେବା ଦେବୀ ସେବା କର୍‌ବା ଗାଏଁ ରହି ।୨୦।
ଦେବ୍‌ତା କେ'ନ ଦେଖା ଦେଶନ୍ ଦେଖେ ତାର୍ ଗାଁ କେ
ଛୁଆ ଯୁଆନ୍ ବୁଢ଼ା ବୁଢ଼ୀ ବନିହାଁ ମୁନୁଷର୍ ମାଁକେ ।୨୧।
ଧନ୍ ନାଇଁ ତ ନାଇଁ ମାଁର୍ ମନ୍ ଯାଇଛେ ନଶି
କାଁ କରି ଗାଁ ମାଁର୍ ମୁହୁଁ ଆଡ଼େଇ ହଇଛେ ହସି ।୨୨।
ଧରସା ଗୁଟର୍ ଜଲ୍‌ଟର୍ ଯିଏ ଯାହିଁ ପାର୍‌ଲେ ଆବ୍‌ଗୁଛନ୍
ଗାଁ ଖୁଏଲକେ କାହିଁ ଛାଡ଼୍ ତେ ନିଜର୍ ସଙ୍ଗେଁ ଚପ୍‌ଗୁଛନ୍ ।୨୩।
ରବିର୍ କହତି କଥାର୍ ଗଙ୍ଗା, ହଁସ୍‌ରି ସୁରୁ ନଲିଆ
ଝାଇଁଟେ କାହିଁ ମଲ୍‌କି ନେଲେଁ ଘାଏକେଁ କଟନ୍ ଗୁଲିଆ ।୨୪।
ମଦ ମୁଦକ୍ ଗଁଜାଇ ଭାଁଗ୍ ବିଡ଼ି ଗୁଡ଼ାଖୁ କରି
ପିଲା ହୁଦାକୁଁ ଢ଼ିଲା ପାଇ କଲ୍‌ଜାନୁ ନିଅନ୍ ଚିରି ।୨୫।
ପଢ଼ା ଅପଢ଼ା ସବୁ ପିଲା ପିଁଢ଼ା ପିଁଢ଼ା ବସୁଛନ୍
ସାଙ୍ଗ୍ ସରସିଆ ଟୁକେଲ୍ ଦେଖି ଖଦ୍‌ଖଦାନୁ ହସୁଛନ୍ ।୨୬।
ଘରର୍ ପାଏନ୍ ଖୁଏଲ୍‌କେ ଛାଡ଼ି ଚାଲଲେଁପରନ୍ ସର୍ଡ଼ି
ପାଏନ୍ ବର୍‌ଷାର୍ ଠିକ୍‌ନା ନାଇଁ ବରଷକେ ବରଷ୍ ମର୍ଡ଼ି ।୨୭।
ଉପର୍ ମୁଡ଼େଁ ନଲିଆ ଖଁଡ଼ି ଗୁଲିଆ ମନେ ବସିଛେ
ନଲିଆର୍ ପାଏନ୍ ଗାଁର୍ ଜମିନ୍‌କେ ଯାଏତାକେଁ କଷୁଛେ ।୨୮।
ମନ୍ ଭିତ୍‌ରେଁ ଭର୍‌ନେ ଭାବ୍‌ନା ମୁହୁଁ ଯାଇଛେ ଶୁଖି
ପଢ଼ି ଯାଉଥିଲା ଉଦିଆଁ ସାଙ୍ଗେଁ ନୁନୀ ଅଟ୍‌କେ ଦେଖି ।୨୯।

ଉଦିଆଁ କହେ 'କାଁକରି ଦଦା କା'ଣା ହଜାଲା ମେତାଲ
ମୁହୁଁ କରି ତୁଇଁ ନୁରୁ କାହାକେ ଆକାଶ୍ ପୁର୍‌ଥୀ ପାତାଲ୍ ।୩୦।
ଚେହେରା କହେ କାହାକେ ଝୁରା ପହରା କରୁ କହ
ସହି ସଁଭାଳି ଚାଲ୍ ନ ଦଦା କୁଗ୍‌ରେଇ ହଉ ଜହ ।୩୧।
ଆମ୍‌କୁଁ(ସିନେ) ଭାଲ୍‌ନି ନାଇଁ ତୋର୍, ତୋର୍ ଲାଗି ଆମର୍ ଡ଼ର୍
ଜାନିଛୁ କିନି ଝୁରା ପହରାଥି ପଛେଁ ଥିସିନ ବଡ଼ ଜର ।୩୨।
କାହାକେ ତୁଇଁ ସୁଖ୍ ପାଏସୁ କାହାକେ ଲାଗ୍‌ସୁ ଅଏଁନ୍?
ଜାନ୍‌ତି ହେଲେଁ ମାନ୍‌ତିଁ ତାହାକେ କରି ବନ୍ଧୁ ମାଏନ୍' ।୩୩।
'ନାଇଁ କହ' ବଲିଁ ଉଦିଆଁର୍ ଶାଢ଼ୀ ନୁନୀ ଘିଚୁ ଥାଏ
ଝାଲ୍ ନାଇଁନ ମୁହେଁ ତବି ପନତ୍ କାନିଥିଁ ପୁଛୁ ଥାଏ ।୩୪।
'ସେ ଜାନିଛେ କି ମୁଇଁ ଜାନିଛେଁ ଯାହାକେ ପାଏସିଁ ଭଲ'
ହଁସି କହେଲା ଶଶି ସୋଜ୍ 'କାଁ କରି କଲ୍ କଲ୍' ।୩୫।
'ସେ ବନେତ ମୁଇଁ ବନେ ତାର୍ ଲାଗିଁ ଦେମି ଜାନ୍'
ଉଦିଆ ପଚାରେ କିଏ ଆଏସେ? ନୁନୀ ଅଧ୍ ପରାନ୍ ।୩୬।
ଘିଚିଟାନି ନୁନୀ ପଲାଏ ନାଇଁ ଶୁନୁ ସେ ନାଆଁ
ନୁନୀ ନିଏ ନିଜର୍ ଦିହିକେ ଶଶି କହେ 'ମୋର୍ ଗାଁଆ' ।୩୭।
ଶଶିର୍ ମନ୍ ରସି ଯାଇଛେ ଯେନ୍ ଭାବ୍-ଗହଲିଁ
ନାଇଁ ବାହାରି ପାରେ ସେନୁ ନାଇଁ ପାରେ ବି ହଲିଁ ।୩୮।
ଶଶି ଭାବେ 'ଗାଆଁ ମୋର୍ କେଡ଼େ ସରଲ୍ ସୁତର୍ ଥାଏ
ଅବିକଲ୍ ମତେ ହେନ୍ତା ଲାଗ୍‌ସି ନୁନୀ କେ ବି ଦେଖିଲେଁ ଘାଏ ।୩୯।
ନୁନୀ କେ ଯେତେ ସୁଖ୍ ପାଇ ହେସି ଗାଁ କେ ସେତେ ପାଏଲେଁ
ନାଇଁ ହେତା କାଏଁ ସରଗ୍ ଏକା ଗାଁଟା ଯାକର୍ ଚାହେଁଲେ ।୪୦।
ସରଗ୍ କେ ଶରଧା କରନ୍ ସେମାନେ କେଡ଼େ ବେଡ଼ା ଆ'ନ୍
ସରଗ୍ ନାଇଁ କରି ହେତା କାଏଁ ନିଜର୍ ସବୁ ରହେଲା ଠାନ୍ ।୪୧।
ଜନ ଅଛେଁ ସରଗ୍ ଜନ ଅଛେ ନରକ୍ ଭୁଇଁ
ସର୍‌ଗେଁ ହେଲେ ନରକ୍ ମନା ରହି ପାର୍‌ବା କାହିଁ? ।୪୨।
ଭାବ୍‌ନା-ମୁଲ୍‌କୁଁ ମୁକ୍‌ଲି ଆଏଲା ଶଶିକେ ଡ଼ାକେ କବାର୍
ବିନ୍ ବୁତାର୍ ସମିୟା ଟିକ୍‌କ ସମ୍‌କୁଁ କରସି ଲବାର୍ ।୪୩।

ଏତ୍‌କି ଭାବି ସିଧ ସିଧା ଘରମୁହାଁ ଗଲା ଧାଇଁ
ତାର୍ କାମ୍ କବାରେ ମନ୍‌ଦେଲା ଭାବ୍‌ନା ରହେଲା କାହିଁ ।୪୪।
ଛୁଟିର୍ ଆଗୁଁ ଚିଠି ଗୁଟେ ଶେଣୀନୁ ପାଏଲା ନୁନୀ
ରବି ଦଦାର୍ ହାତ୍ ଲେଖା ଆଏ ଦେଖନୁ ପାଏଲା ଚିହ୍ନି ।୪୫।
ଚିଠି ପଢ଼୍‌ଲା ପରେଁ ଘରକେ ଫିର୍‌ଲା ତତାପନା
ସାଙ୍ଗ୍ ସାଥୀ କେ'ନ ସୋର୍ କରୁଛେ ପର୍ଛା ଆନ୍ ମନା ।୪୬।
ନଲିଆ ଖଁଡ଼ିଁ ଚିଠି ଫାରି ବନେ କରି ଫେର୍ ପଢ଼୍‌ଲା
ପଢୁନ୍ ପଢୁନ୍ ଗୋଡ୍ କୁଟୁମ୍ ନେଇ ଚିନ୍ତା ଆସି ବେଢ଼୍‌ଲା ।୪୭।
'କେଡ଼େ ଅଏନ୍ ବହେନ୍! କା'ଣା ଦେମି ନାଇଁନ କିଛି
ସେନହୋ ଯାହା ଥିଲା ତୋ'ର ନୁ ଆଗୁଁ ଦେଇଛେ ବିଛି ।୪୮।
ସୁଖ୍ ପାଏବାର୍ କେନ୍ତା ଆଏ ତୁଇଁ ଜାନିଛୁ ସତେଁ
ଦୀନ୍ ହଇଗଲିଁ ହୀନ୍ ହଇଗଲିଁ ତୋର୍ ନ କେତେ ମତେଁ ।୪୯।
ଦିହ୍‌କେ ରଖି ଦୂରିଆ ଯେ ସେନ୍‌ହୋ ପାର୍‌ସି ଉଲ୍‌ଦି
ଭଲ୍ ପାଇକରି ଭଗ୍‌ବାନ୍ କେ ବି ପାଇ ପାର୍‌ବା ଜଲ୍‌ଦି ।୫୦।
'ଆଏଜ୍ ଜାନୁଛେ ତତେ ଚାହେଲେଁ ମୁଇଁ ଆଏଁ କେଡ଼େ ଛୋଟ୍
ତୁଇଁ ସତେଁ କେତେ ମହାନ୍, ପୁର୍ଥୀ ମାଁ'ର ନୁ ବି ରୋଟ୍ ।୫୧।
ହେଁ ଦିନ୍ ତକ୍ ଭାବୁ ଥିଲିଁ ତୁଇଁ ମୋର୍ ନୁ ସୁରୁ ଆଉ
ସତ୍‌ସତାନି ଦେଖିଲା ବେଲ୍‌କେ ସତେଁ ମୋର୍ ଗୁରୁ ଆଉ ।୫୨।
ଯେତ୍‌କି ସେନହୋ ଆଦର୍ ଉଲ୍‌ଦି ଥିଲି ତୋର୍ ଠାନେ
ତୋର୍ ନୁ ଶିଖି ସେ ସବୁ ଆଏଜ୍ ବଢ଼୍‌ଲା ଶହେ ଗୁନେ ।୫୩।
ସେ ଟିକ୍‌କ ପୁଁଜି କରି ସାରା ସଂସାର୍ ବୁଲ୍‌ମି
ସେନହୋ ଆଦର୍ ବାଆଁଟି ବାଆଁଟି ନିଜର୍ ପରର୍ ଭୁଲ୍‌ମି ।୫୪।
ମନ୍ ମାନେ ଆମର୍ ସଁକ୍‌ରି ସଁକରି କେଡ଼େ ସୁରୁ ହେଲାନ
ପୁର୍ଥୀ, ଦେଶ୍, ରାଏଜ୍, ଛାଡ଼ି ନିଜର୍ ନ ରହେଲା ନା ।୫୫।
ଯାଉଛେ ମୁଇଁ ଜାନ୍‌ମି ସଂସାର୍ ମତେ କେ ଜାନ୍‌ବେ ନାଇଁ
ସମ୍‌କର ଦୁଖେଁ କାନ୍ଦ୍‌ମି ମୋର୍ ଲାଗି କେ କାନ୍ଦ୍‌ବେ ନାଇଁ ।୫୬।
ଯାଉଛେଁ ନୁନୀ! କେନ୍ ଠାନ୍‌କେ ଯେ ମତେ ନାଏଁନ ଜନା
ନାଇଁ ନୁର୍‌ବ କିହେ, ନୁର୍‌ଲେଁ କର୍‌ବୁ ବହେନ୍ ! ମନା ।୫୭।

ଇ ଚିଠି ତୁଇଁ ପାଏଲା ବେଲକେ ମତେ ପାଏଲା ବାଗିର୍
ଠାନେ ନାଇଁ ଆଏଁ ନାଇଁ ଭାଲ୍‌ବ ମୋର୍ ଲାଗିର୍ ।୫୮।
ମାଆଁ ବାଆର୍ କଥା ସୁରତା କରି ହଉଛେଁ ଅଥା
କେତେ ଆଶା କରିଥିଲେ ଦଉଛେଁ କେତେ ବଥା ।୫୯।
ଶହେ ଜନ୍‌ମେ ଶୁଝି ନାଇଁ ହଏ ତାକର୍ ଯାହା ଲାଗିଛେଁ
ତାକର୍ ସେବା ଲାଏକ୍ ନୁହେଁ କର୍‌ମେ ଏକା ମାଗିଛେଁ ।୬୦।
କାଏଁ ପାପ୍ କରି ମୋର୍ ଲେଖେଁ ପୁଓ ପାଇଥିଲେ ଯେ ଦୁହେ
ଜାନିଥିଲେଁ କହି ନେବେ, ଆଉ୍ ନାଇଁ କର୍‌ବେ ନ କିହେ ।୬୧।
ମୋର୍ ଭାଏଲ୍ କାଣା ଅଛେ ମାଁ ବା'କୁ ଛାଡ଼ି
ସେ ମୋର୍ ଧନ୍ ସଂପଦ୍, ସେ ହିଁ ଜମିନ୍ ବାଡ଼ି ।୬୨।
ତୁଇଁ ତ ନୁହୁ ନିଜର୍ ଖାଲି, ନିକୁଁ ଆଉ ଖଁଡ଼େ
ତୋର୍ କଥା ମୋର୍ ସୋର୍ କେ ଆଏଲେଁ ହାଡୁ ମାଉଁସ୍ ଝଡ଼େ ।୬୩।
ପୁଓ ଝି ଦୁଇଟା ଦେଇ ଯାଉଛେଁ ରଖିବୁ ପୁଷି ପାଳି
ସୋଜ୍ ବୋଝ୍ ଇଦ୍‌ଲା ବର୍ଲି ଦେଉଥା ପଛେ ଗାଲି ।୬୪।
ପର୍ ଘର୍‌କେ ଗଲେଁ ଭି କେବେଁ ନାଇଁ କର୍‌ବୁ ପର୍
ମାଁ ବାଆଙ୍କୁ ନିଜର୍ କରି ରଖିବୁ ଅଠିପର୍ ।୬୫।
ଯାଉଛେଁ ନୁନୀ! ପାଉଛେଁ ଡ଼କରା ବଢ଼େ ସଂସାରର୍
ସାନ୍ ସୁରୁ ଇ କୁରିଆ ଛାଡ଼ି ଆବିର୍‌ମି ମହାନ୍ ଘର୍ ।୬୬।
କେଭେଁ କିଛି ନାଇଁ ମାଗିଁ ଆଜିର୍ ଏକା ମାଗୁଛେଁ
ପାସ୍‌ରି ନେବୁ ପର୍ଛା ମତେ ତତେ ଛାଡ଼ି ଭାଗୁଛେଁ ।୬୭।

## ୧୨

ଗୁରୁବା' ଯାଇଛନ୍ ସମଲ୍‌ପୁର ମାଁ ପରିଛନ୍ ଖଟେଁ
ଭାଲ୍‌ନି-ଚାଲ୍‌ନି ଚଲେଇ ହଇ ନୁନୀ ପଡ଼ିଛେ ଭଠେଁ ।୦୧।
ଗାଁ ଭିତ୍‌ରୁଁ ଦଲ୍‌କେ ଦଲ୍ ମାଏଝି ମୁନୁଷ୍ ଆଉଛନ୍
ବୋଧ୍ କଥା ପଦେ ଅଧେ କହି ଫିରି ଯାଉଛନ୍ ।୦୨।
କିଏ କହୁଛେ 'କାହିଁ ପାଏବ? ରବିର୍ ମେତାଲ ପିଲା
ନାଇଁ କହେତା ଏତେ କଥା ଯଦ୍‌ରି ମନେ ଥିଲା' ।୦୩।

କିଏ କହୁଛେ 'ଗରିବ୍ ଧନୀ କାହାରି ପିଲାଛୁଆ
ଅମରୁତେଁ ବି ନାଇଁରିତାନ୍ ଛାଡ଼ି ମାଆଁ ବୁଆ ।୦୪।
ଛୁଆପିଲାକୁଁ କର୍‌ବାର୍ ନୁହେ ଆଖଉଁ ଅଡୁଆଲ୍
ମା'ହେଲେଁ ବି ଜୀବନ୍-ବାଟେଁ ମା' ବୁଆ କଡୁଆଲ୍ ।୦୫।
କାଁ କରି ଗୋ ରବିର୍ ମାଁ ! ସୋଜ୍ ହଉଛ ଘା'ରି
ଯାଇଛନ୍ ତ ବନ୍‌ଏ ପିଲା ଆ'ନ ଆଏବେ ଦିନ୍‌ଏ ଫିରି ।୦୬।
ପିଲା ମନକେ ଢ଼ିଲା ଦେଖି କାଏଁ ଭାବ୍‌ନା ପଶିଛେ
ଅସାର୍ ଲାଗି ଥିବାର୍ ସଂସାର୍ ଦୁସ୍‌ରା କାହିଁ ରସିଛେ ।୦୭।
ଚିଠି ଶୁନ୍‌ଲ କି ଟୁଡ଼େଁ ନୁହେ ଦିଅ ପରେ ପାଏନ୍
ନାଇଁ ଖାଇଁ ଖୁଦ୍‌ବ କାଏଁଗୋ ? ଦୁଖର୍ ମହାନ୍ ଖାଏନ୍ ।୦୮।
ତୁମେ ସିନା ବୁଝାତ ଆମ୍‌କୁଁ, ତମ୍‌କୁଁ ବୁଝାବା କିଏ ?
ନୁନୀ କେ ଦେଖ ତମର୍ ସାଙ୍ଗେଁ ପାଏନ୍ ବି ନୁହେ ପିଏ ।୦୯।
ପଢ଼ି ନାଇଁଯାଏ ଛାଡ଼ି ତମ୍‌କୁଁ ତାର୍ କଥାକେ ହେଜ
ଜାନ୍‌ବାର୍ ଲୋକ୍ ହଇଁ କେନ୍ତା ସୋଜ୍ କଥା ନେଁ ବୁଝ' ।୧୦।
ଗୁରୁମା ଉଠି ନୁନୀକେ ଧରି ଆହୁରି ଆହୁରି କାନ୍ଦୁଛନ୍
ତପ୍‌ଲା-ଲୁହର୍ ଅଁଧାନେ ନେଇ ଦରଦ୍ ଚାଉଲ୍ ରାନ୍ଧୁଛନ୍ ।୧୧।
ଗୁରୁ ଯାଇଛନ୍, ନୁରି, ଘରକେ ଲେଉଟି ନେଁ ଦେଖ୍‌ବାର୍
ଗୁରୁମା'ର ଆଖିଁ ଲହର୍ ଝର୍‌ନା ପହରେ ନେଁ ଶୁଖ୍‌ବାର ।୧୨।
ନୁନୀର୍ ଆଖିଁ ପାଏନ୍ କାହିଁ ଯେ ଝର୍‌ବା ଟିକେ ରଁଚେ
କାମ୍‌କେ ଆଏବା ବଲିଁ ଭାଏଲ୍ ଅଜାନ୍‌ତକେଁ କାଏଁ ସଁଚେ ।୧୩।
ଦରଦ୍ ସବୁ ଥାକ୍ ଥାକ୍ କରି ହୁରୁତ୍-ଗୁଦାମେ ସାଉତୁଛେ
ଆଁଖିର ପାଏନ୍‌କେ ଭିତ୍‌ରେଁ ନେଇ କଦେଁ-କଦେଁ ଚଉତୁଛେ ।୧୪।
ପାଏନ୍ ଆଏଲେଁ ନିଥିରି ଆଁଖି ଦରଦ୍ ଗଦା ଧସ୍‌କିତା
ଦୁଖର୍ ଗାଡ଼େଁ ସିହ୍‌ନିଲା ମନ୍ ସଜ୍ ପାଏଲେଁ ଉସ୍‌କିତା ।୧୫।
ଗାଆଁଟା ସାରା ଭାଳୁର୍ କୁଟୁର୍ ରବିର୍ କଥା ପରିଛେ
କାହାରି ମନେ ପାଏନ୍ ନାଇଁ ସମ୍‌କର୍ ମନ୍ ମରିଛେ ।୧୬।
ଗାଁ ମଝିର୍ ଚଉଭୁଜୀ ନ ଯୁଆନ୍ ପିଲେ ଜମିଛନ୍
ଭାବିତ ସଭେ ରବିର୍ ଲାଗି ରବିର୍ କଥା ରମିଛନ୍ ।୧୭।

ଶଶିର୍ ଆଡ଼୍‌କେ ମୁହଁ କ଼ରି କହେ ପିଲା ଝନ୍‌ଏ
'ଆମେ ସଭେ ନୁରି ଦେଖିଲେଁ ନାଇଁ ହେତା କାଏଁ ବନ୍‌ଏ ? ।୧୮।
ଶଶି କହେ 'ନୁହେ ଜାନ୍‌ଥ କାଏଁ କେଡ଼େ ବଡ଼୍ ଇ ପୁରଥୀ
ଶ' ଶ' କୋଟି ଲୁକେଁ ଝନ୍‌ଏକେ କିଏ କହେବା ନୁରତିଁ ? ।୧୯।
ଶିଖେତ୍ ଜନ୍‌ଏ ଜଗତ୍-ଜଙ୍ଗଲ ଭିତ୍‌ରେଁ ଜାନି ବୁଝି
ଗମି ଦେଖିସି କି ଗୁମି ଦେଖିସି କିଏ ପାର୍‌ବା ହେଜି ? ।୨୦
ରବିକେ ଆମେ ନାଇଁ ପାଉଁ ଆମର୍ ନୁରା ଖୁଜା ଥିଁ
ସୁନା ରୂପା ମିଲ୍‌ବା କାଏଁ କୁଲାର୍ ଧାନ ଖେଜା ଥିଁ ।୨୧।
ଗୁଟେ କଥା କଲେଁ ଭାଇ ! ରବିକେ ଆମେ ପାଏତାଁ
ରବିକେ ତ ଚିହ୍ନିଲାଁ, ଆମେ ତାର୍ ଗୁନ୍ ଗ୍ରାମ୍ ଗାଏତାଁ ।୨୨।
ରବି କହିଥିଲା ଇ ଗାଁ ଟା ତାର୍ ଲାଗିଁ ପରେ ସରଗ୍ ଆଏ
ସରଗ୍ କରି ପାର୍‌ତାଁ ଗାଁ କେ ଯଦର୍ପି ବି ମହରଗ୍ ଆଏ ।୨୩।
ରବିର୍ କଥେଁ ଆମର୍ ଗାଁର୍ ନଲିଆ ପରେ ଗଙ୍ଗା ଆଏ
ତାକେ ନିର୍ମଲ୍ ରଖି ଦୁହିଲେଁ ତାହାକେ ପାଏତାଁ ଯୁଗେ ଯାଏ ।୨୪।
ସାନ୍ ବଡ଼୍ ଆମେ ଯାହା ଅଛୁଁ ଗାଁ ଆମର୍ ମାଁ ଆଏ
ସମ୍‌କର ଜୀବନ୍ ଗୁଟେ, ଖାଲି ଭିନ୍ ଭିନ୍ ଆମର୍ ନାଁ ଥାଏ ।୨୫।
ଗୁଟେ ସୁରେଁ ସଭେ ବଏଲେ ବନ୍‌ଏ କଥାଟେ କହେଲୁ
କାଁ ଘଁଟା ସନା ଏତେ ହେତାଁ ଉପେ କରିଥିଲେଁ ପହେଲୁଁ ।୨୬।
ଶଶି କହେଲା 'ଇଟା କାଣା କଥାର୍ ଖାଲି ଲଥା ଆଏ
କହେଲେଁ ନୁହେ କଲେଁ ଯାଇ ନୈ କଲେଁ ମୁଡ଼୍ ବଥା ଆଏ ।୨୭।
କେତେ ଚପ୍‌ରା କେତେ ଅବ୍‌ରା ଦେଖ ଇ ଗାଁ ଖୁଏଲ୍
ଖୁଏଲ୍ ସଁକ୍‌ରି ମନ୍ ମାନେ ବି ସଁକ୍‌ରି ହଉଁ ଗୁଏଲ୍ ।୨୮।
ମଦ୍ ମୁଦକ ବିଡ଼ି ଗୁଡ଼ାଖୁ ଗଁଜେଇ ଭାଙ୍ଗ୍ ପାନ
ବିନ୍ ଜାନ୍‌ତକେଁ ପଏସା ନିଏ ନିଏ ସମ୍‌କିରି ପ୍ରାନ୍ ।୨୯।
କାହାରି ଖେତ୍‌କେ ପାଏନ୍ ନାଇଁ କାହାରି ମାଁ ଟା ନ ଧାନ୍
ଗାଁ ଗୁହୁରି ତ ଦିହି ପ୍ରହୁରା ରୋଗ୍-ଦେବତାର ଧାମ୍ ।୩୦।
କାହାରି ଅଁଟା ବର୍‌କସ୍ ନାଇଁ ସମ୍‌କର୍ ଥିତି ଖରଖସ୍
ଉଦାର୍ ନୁହେ ମନ୍ ମାନେତ ବେଭାର୍ ମାନେ କର୍‌କଶ' ।୩୧।

ଆର୍ ଝନ୍‌ଏ କହେ 'ଯାହା କହୁଛୁ ସବୁ କଥା ସତ୍ ଆଏ
ନୈ କଲେଁ କାଏଁ ସରଗ୍ ହେବା ଗାଁ ଅଗ୍‌ବାର୍ ଖତ୍ ଆଏ' ।୩୨।
ଯେନ୍ତା ବଏଲେଁ ସେନ୍ତା କରମ୍‌ା ଉପେ ଟକର୍ କର
ଏଭୁଁ ନୈ କଲେଁ କେଭେଁ କରମା ପାଏନ୍ ଥାଉଁ ପାଏନ୍ ଭର ।୩୩।
ଶଶି କହେଲା 'ଆଗୋ କରି ଥିତି ଆମର୍ ସୁଧିରାମା
ଧନ୍ ନାଇଁ ବଲିଁ ମନ୍ ମାନ୍‌କୁଁ ସୋଜ୍ କାଁ କରି ସଁକ୍‌ରାମା ।୩୪।
ବଛରକେ ବଛର୍ ମର୍ଡ଼ି ଭାଇ! ଥିତି କା'ଣା ସୁଧିରାବୁ?
ଚାଷ୍‌ବାସ୍ କରି ଲାଗ୍-ବାଘ୍-ମୁହେଁ କୁଟୁମ୍ ବସିଆ ଲୁଗ୍‌ରାବୁ ।୩୫।
ଶଶି କହେ 'ହେଁଥିର୍ ଲାଗି ଉପେ ଗୁଟେ ଦିଶୁଛେ
କେନ୍ତା ହେବା ଯେ ସଭେ ଦେଖ ମୋର୍ ମନ୍‌କେ ଆସୁଛେ ।୩୬।
ନଲିଆ ଉପର୍ ମୁଡ଼େଁ ଯେ'ନ ଅଛେ ହାତୀ ପଖନ୍
ହେନ ଯଦ୍‌ରି ପକାଇ ପାରତାଁ ବନ୍‌ଏ ବର୍‌କସ୍ ବଁଧନ୍. ।୩୭।
ଆଯୋ ବାଯୋ ବଁଧନ୍ ହେତା ମଝ୍ ଟା ରହେତା ମେଲା
ମୁଟା ପଟାଥିଁ ମୁଜ୍‌ଲୁ ଯେଭେଁ ପାଏନ୍ ଆନ୍‌ବାର୍ ହେଲା ।୩୮।
ସେ'ନୁ ଆମେ କୁଡ଼ି ଆନ୍‌ତାଁ ହାତେ ଉସାରର୍ ନାଲି
ନଲିଆର୍ ପାଏନ୍ ମୁଡ଼ା ଭିତ୍‌ରେଁ ପଡ଼୍‌ତା ଖେଲି ବୁଲି ।୩୯।
ମୁଡ଼ାର୍ ପାଏନ୍ ଗାଁ ଟା ଯାକର୍ ସବୁ ଜମିନ୍ କେ ମାଡ଼୍‌ବା
ମୁଡ଼ା ଭର୍‌ଲେଁ ନଲିଆ ଆଡ଼୍‌କେ ଉଲଟି କରି ଟାଡ଼୍‌ବା ।୪୦।
ପଟା ଅଲ୍‌ଗେଇ ନେଲେଁ ବଁଧନ୍ ମଝୁଁ ସେତ୍‌କି ବେଲେଁ
ନଲିଆର୍ ପାଏନ୍ ନଲିଆ ବାଟେଁ ପଲାବା କଲେଁ କଲେଁ ।୪୧।
ନଲିଆର୍ ପାଏନ୍ ଆମର୍ ଲାଗିଁ ହେବା ଅମ୍‌ରତ ଧାର୍
ଗାଁ ହେବା ସରଗ୍, ରବିର୍ କଥା ସୁନାର୍ ଗାର' ।୪୨।
ଏକା ସାରି ସଭେ କହେଲେଁ 'ବନ୍‌ଏ କରି ଲଢୁଁ
ମଦ୍ ମୁଦକ୍ ଗଁଜେଇ ଭାଙ୍ଗ୍ ଏକା ସାରି ଛାଡୁଁ' ।୪୩।
'ମୁଡ଼ା କେ ଗଢେର୍ କରା ଲାଗ୍‌ବା କେନ୍ କଥାର୍ କଥା ଥାଏ
ଗାଁଟେ ଲଢ଼୍‌ଲେଁ କେନ୍ ବୁତା ଯେ କଲେଁ ନାଇଁ ହେତା ଘାଏ?' ।୪୪।
ନଲିଆ ବଁଧା କାମେ ଗାଁ ସାରା ହଇଛନ୍ ବଁଧା
ରବିକେ ନାଇଁ ପାଏବାର୍ ଦୁଖ୍ ପାଶ୍‌ରି ପାରନ୍ ଅଧା ।୪୫।

ରବିର୍ ବା' ଥିବି ନାଇଁ ପାରି ଯାହା ପାରୁଛନ୍ ନୁରୁଛନ୍
ଦିନ୍‌କେ ଦିନ୍ ରାଏତ୍‌କେ ରାଏତ୍ ନେଇ ବଲବାର୍ ଘୁରୁଛନ୍ ।୪୬।
ନୁରାଖୁଜାନ ବାଏ ହଇକରି ମନକେ ଘାଏ ଭୁରତଉଛନ୍
ଛାତି ଭିତ୍‌ରର୍ ମାତ୍‌ଲା ଦୁଖ୍‌କେ ହୁରହୁର୍ କରି ହୁରତଉଛନ୍ ।୪୭।
ଗଲା ଦିନର୍ ସବୁ କଥାକେ ହେତୁ-କୁଲା ନ ପାଛ୍‌ରି
ରଚି କାଏଁନ ରହେସି, ତାହେକେ କେନ୍ତା ହେବା ପାଶରି ।୪୮।
ପୁଓ କେ ପାଶରି ପାରବା କେ ନିଜର୍ ଆତ୍‌ମାର୍ ଅଧେ
ନାଇଁ ଦେଖ୍‌ଲେଁ ଛନ୍‌ଏ ଯାହାକେ କେତେ ଗହେଣ୍ଟୁ ବାଧେ ।୪୯।
ହିସାବ୍ ଉପ୍‌ରେଁ ଭାବ୍‌ଲେଁ ପୁଓ ଜୀବନ୍ ଜମାର ଖାତା ଥାଏ
ତତେ ପାଲୁଛେଁ ମୁଇଁ, ମତେ ତୁଇଁ ପାଲ୍‌ବୁ ନାତା ଆଏ ।୫୦।
ପାଲୁ ନେଇ ପାଲୁ ପୁଓଟେ ଥିଲେଁ ବାଁଧେ କାଁଡର୍ ଭରସା
ପିଁଡ୍ ପରଦାନେ ପର୍ଛା କର୍‌ସି ପିତ୍‌ରୁ ଲୁକର୍ ଧର୍‌ସା ।୫୧।
ତୁରତି ନାଇଁ ଆଏଲେଁ ନାଇଁ, ହେଲେଁ ହେବା ଉଛୁର୍
ନିଷେ ଆଏବା ରବି କେଭେଁ ନାଇଁ ହଇପାରେ ନିଠୁର୍ ।୫୨।
ନିଜେଁ ନିଜେଁ ବୋଧ୍ ହଉଥାନ୍ ସବୁ କଥା ଜାନି
ଉହୁଲି ଯାଏ ଧୀରଜ୍ ରବିର୍ ମାଆଁର୍ ଆଖିର୍ ପାନି ।୫୩।
ଅସ୍‌ରା ତାକର୍ ଆଖିର୍ ଧାରା ଅଛ୍‌ରା ଅଛ୍‌ରା ବୁହୁଛେ
କାହାକେ କହେବା ମନର୍ କଥା ମନେ ମନେ କୁହୁଛେ ।୫୪।
ଗଧା ପଧା ଖିଆ ପିଆ କାହିଁ ନାଏନ ମନ୍
ଦେଖ୍‌ଲେଁ ଚିହ୍ନି ନାଇଁ ହେବାର୍ ଅଗ୍‌ବାର୍ ତନର୍ ତନ୍ ।୫୫।
ଦୁଖର୍ ମହାନ୍ ଭାରୀ ଧାର୍ କେ ଉହୁଲି ଉହୁଲି ଯାଉଛନ୍
ଗୋଡ୍ ହାତ ତ ନେଇ ପାଏବାର୍ ଖଏଣ୍ ବି କେନ୍ ପାଉଛନ୍ ।୫୬।
ରବିର୍, ଦିହେଁ-ରହେବାର୍ ଦିନୁ ଘର୍ ଛାଡ଼୍‌ବାର୍ ଯାଏ
ସୁରୁତା କର୍‌ନୁ ଉଲ୍‌ଦା ଦୁଖ୍ ମାଡ଼ି ଆଏସି ଘାଏ ।୫୭।
ପିଲାତୀ-ଦୁଖ୍ ସାଙ୍ଗେଁ କେତେ ନିଷ୍ଠା ପଥି ଆଚାର୍
ସୋର୍ କଲେଁ ଆଏଜ୍ ଗୁଟେ ଗୁଟେ ସବୁ ଦୁଖର୍ ଧାର୍ ।୫୮।
ଶୁଖାନୁ ଶୁଖାଇ ନିଜେଁ ଶୁଇବାର୍ ଉଦା ସର୍ ସର୍ ଦଶ୍‌ନା ନ
ଦିହ୍ ପା' ହେଲେଁ ଅସୁଖ୍ ନିଜେଁ ପଡ଼ି ରହେବାର୍ ମଶ୍‌ନା ନ ।୫୯।

ଉସ୍‌ନିଦ୍‌ରା ରାଏତ୍ କେତେ ଅଖିଆ କେତେ ଦିନ୍
ଦୁଖର୍ ଧାର୍ ମାନେ ଆଏଜ୍ ଇ ମହାନ୍ ଧାରେଁ ଲୀନ୍ ।୬୦।
ଯେନ୍ ଆଶା କାଏଲ୍ ଆବ୍‌ରି ବସେ ନୁର୍‌ଲେଁ ଆଏଜ୍ କା'ଇଛେ
ମୋର୍ ଛୁଆର୍ ଯିବାର୍ ବାଟେଁ ସେ ବିଚ୍‌ରା ବି ଯାଇଛେ ।୬୧।
କାଏଲ୍ କହୁଥିଲା ପୁଓ ଟା ତୋର୍ ହେବା ବଢ଼େ ଲୋକ୍
ମେଟେଇ ନେବା ଯାହା ଅଛେ କେତେ ଜନ୍‌ମର୍ ଭୋକ୍ ।୬୨।
ସୁନ୍ଦର୍ ଶିଖେତ୍ ଭୁଆଷେନ୍ ଟେ ଆଏବା ହଇ ବହ
ତୋର୍ ଦୁଖ୍ ସୁଖ୍ କାମ୍ ବୁତାକେ ଆବିର୍‌ବା ଅହରହ ।୬୩।
ସେ ସବୁ କାଏଁ ହଇଗଲା ମୋର୍ ମଏଧନିଆଁ ସପନ୍
ଝୁମ୍‌ରା ଭାଙ୍ଗ୍‌ବାର୍ ଆଗୁଁ ହଇଗଲା କାଏଁନ୍ ଗୁପନ ।୬୪।
ଇ ସଂସାର୍ ସମୁଦର୍ ଥିଁ କେଡ଼େ ବଡ୍ ବଡ୍ ଲହରୀ
ଆଶ୍‌ରା ଯାହା ଥିଲା ଗଲା, ନେ ପାରି ହଏ ପହଁରି ।୬୫।
କେ'ନ ପାର୍‌ମି ଆଉର୍ ମୁଇଁ ଏତେ ବୁଡ୍‌ହା ଉପ୍‌କା
ମନେ ନାଇଁ କି ଗିଆନେ ନାଇଁ ଦୁଖ୍ ମାରୁଛେ ହପ୍‌କା' ।୬୬।
ଗୁରୁମା ଗୁରୁବା'ର କଥା ନୁନୀ ବନ୍‌ଏ ବୁଝୁଛେ
କାହାକେ କହେବା ନିଜର୍ କଥା, କରେ ପୁଡ଼ିଁ କରେ ସିଝୁଛେ ।୬୭।
ପାଏଲା ବେଲୁଁ ଚିଠି, ସବୁ ହଜ୍‌ଲା ଲେଖେଁ ଲାଗୁଛେ
ମଲା ମେତାଲ୍ ଅବଲାପନ୍ ଥିଲା ଆଏଜ୍ ଜାଗୁଛେ ।୬୮।
ସବୁ ଥାଇ ତାର୍ କିଛି ନାଇଁ ପୁଁଜି ଖାଲି ତାର୍ ଚିଠି
କାଗଜ୍ ଟିକ୍‌କେଁ ମଗଜ୍ ବୁଡ଼େ ନାଇଁ ପାର୍‌ବାର୍ ଉଠି ।୬୯।
ଛିନା ଛକା ପାଏଲେଁ ପଢ଼େ ଚିଠି ଥର୍‌କେ ଥର୍
ମନ୍ ମଥିଁ ହଏ ଇଥିଁ ତାହିଁ ଦିହ୍ ଥରେ ଥର୍ ଥର୍ ।୭୦।
ଦେଇ ଯାଇଛେ ପୁଓ ଝି' ଦଦା ନେ କରବା ପର୍
କହି ଯାଇଛେ ତାର୍ କଥାକେ ଜୁଗ୍‌ବା ଅଠିପର୍ ।୭୧।
ନୁନୀର୍ ଭାବ୍‌ନା ମାଁ'ର କନ୍ଦ୍‌ନା ବାପର୍ ଖୁଜା ନୁରା ନ
ଗାଁ ଯାକର୍ ନଲିଆ ବଁଧାକେ ସମିୟା କାହିଁ ରହେଲା ନ ।୭୨।
କେ'ନ କିନ୍ଦ୍‌ରି କେ'ନ ଛିଙ୍ଗ୍‌ଲି କାଲ୍ ସମୁଦରେଁ ପଶୁଛେ
ମୁନୁଷର୍ ସବୁ ଦିନେ ଛାଇଁବାର୍ ଆଶ୍ ଦେଖି ହଁସୁଛେ ।୭୩।

# ୧୩

କାଏଲ୍ ବାଗିର୍ ଲାଗେ ଈ ଇସ୍କୁଲ୍ କେଭେଁ କଲେଜ୍ ହେଲା
ନୁନୀ ସରଲଗ୍ ପଢ଼ି ଆଇଛେ ନୈ କରି ନ ହେଲା ।୦୧।
ଏସୁର୍ ସାଲେଁ ଶେଷ୍ ପରୀକ୍ଷା ଦେଇ ଘରେ ବସିଛେ
ପାଁଚ୍ ବଛରର୍ ଆଏବଏ ସବ୍ ଆଏଲା ଗଲା କଷିଛେ ।୦୨।
ଇନୁ ଈଆଡ୍ କେନ୍ତା କରବା କେ'ନୁ ପାରବା ପଢ଼ି
ମାଁ' ବା'ର୍ ତ ବଏସ୍ ଗଲାନ ଚାଲଲେଁ ଯାଉଛନ୍ ପଡ଼ି ।୦୩।
ଗୁରୁବା' ଗୁରୁମା'ର କଥା କହେଲେଁ ନାଇଁ ସରେ
ଗୁରୁମା'ର୍ ଆଁଖୁ ତପଲା ଲହ ନୈ ଥେବ୍‌ବାର୍ ଝରେ ।୦୪।
କାନ୍ଦି କାନ୍ଦି ଆଏଁଖ୍ ଦୁହିଥୁଁ ପାରା ଗଲା ନ ଧୁଇ
ପାଶ୍ ପାଁଜରେଁ ବି ତାମ୍‌ଡ଼ି ହାତ୍‌ଲି, ଦେଖି ପାରନ୍ ନାଇଁ ।୦୫।
ଗୁରୁବା'ର୍ ଈଁ ପାଁଚ୍ ବରଷେଁ ପଚିଶ୍ ବରଷ୍ ପାର୍
ହେଲା ଲେଖେଁ ଚେହେରା ସାଙ୍ଗେଁ ସାରା କାରବାର୍ ।୦୬।
ପାଶରି କରି ସେ'ମାନ୍‌କୁଁ ଖସ୍‌ରି ପାରୁଛେ କାହିଁ ?
ପସ୍‌ରିଛେ ମା' ବା'ର୍ ସେବା ଉସ୍‌ରିବାର୍ ନାଁ ନାହିଁ ।୦୭।
ଦୁଇ ସାର୍ ମା' ବାର୍ ସେବାକେ ନାଇଁ ହଏ ବିତ୍‌ବିତା
ବା' ମା' ସେବା କାହାକେ ମିଲେ, ଅମ୍‌ରତ୍ ଲାଗେ କାଏଁ ଚିଟା ? ।୦୮।
ପାଁଚ୍ ବଛରେଁ କେତେ ପାଏନ୍ ନଲିଆ ନ ଗଲା ବୁହି
ନୁଆଁ କେତେ ଗଜ୍‌ରି ଆଇଛେ ଜୁନ୍‌ହାଁ ଯାଇଛେ କୁହି ।୦୯।
ନଲିଆର୍ ପାଏନ୍ ମୁଡ଼ାକେ ଯାଇ ଗାଁ ସାରା ଜମି ଶାଗୁଆ
ନାଇଁଥିଲା ଲୋକ୍ ନାଇଁ ନ ଝନ୍‌ଏ ନାଇଁନ କିହେ ଲାଗୁଆ ।୧୦।
ସଁମ୍‌କର୍ ଅଁଟେଁ ଦୁଇ ପଏସା ସମ୍‌କର୍ ହାତେଁ କାମ୍
ଧନ୍ ବଢ଼ିଛେ ତ ମନ୍ ବଢ଼ିଛେ, ବଢ଼ିଛେ ଗାଁର୍ ନାମ୍ ।୧୧।
ସବୁ ଦିଗୁଁ ସାବୁତ୍ ଗାଁ ନାଇଁ ନ କିହେ ଖୁନ୍‌ହାଁ
ପୁଷ୍‌ପୁନି ନୁ ଉପାସୀ ଥିଲା ଯେ, ଆଏଜ୍ ଖାଉଛେ ଜୁନ୍‌ହାଁ ।୧୨।
ପଢ଼ା ଅପଢ଼ା ଗାଁର ପିଲେ କିହେ ନାଏଁନ ବସି
ଗାଆଁ ନ ଦୁଖର୍ ନାଆଁ ନାଇଁ ସମ୍‌କିରି ମୁହେଁ ହସି ।୧୩।

ରବି ପଳାବାର୍ ଦୁଖ୍‌ଟା ଖାଲି ତାର୍ ମା' ବାଆକେ
ଏକ୍‌ଲା ଘାରେ ନାଇଁ ସାରା ଗାଁ ସୁଆଁଲେ ସେ ଘାଆକେ ।୧୪।
ବଁଧନ୍ ପର୍‌ଲା ଦିନୁ ନଲିଆ ନ ଖରାଦିନେ ବି ପାଏନ୍
ସିଆନ୍ ସୁଜନ୍ କହି ହେଉଛନ୍ ଯାହିଁ ପାଏନ୍ ତାହିଁ ମାଏନ୍ ।୧୫।
ନଲିଆ ଠାନୁ ମୁଡ଼ା ତକ୍ କୁଡ଼ା ହଉଛେ ଯେନ୍ ନାଲି
ତରେଁ ଗଛ୍ ଖୁଟ୍ ଜଗା ହଉଛେ, ଫୁଲ୍ ଫଲେଁ ଯାଏ ଫୁଲି ।୧୬।
ନାଲିର୍ ପାଏନ୍ ନେଇ ଗଛ୍ ଭେଟି ଦେସନ୍ ଛଏରା
ଦୁହି ପକ୍ଷୁଁ ଦିଆନିଆ ହେଲେଁ ଭାବ୍ ହେସି ଗହେରା ।୧୭।
ମାୟା ବଢ଼ଲ୍ ଲେମ୍ବୁଉ ଫଲେ, ଖରା ହେଲାକି ଆମ୍
ବର୍‌ଷା ଆସୁନ୍ ସାଏର୍ ରସ୍ ଟମ୍ ଟମ୍ ରାଏଜାମ୍ ।୧୮।
କେତେ ରଙ୍ଗ୍ କେତେ ବାସ୍‌ନାର ଫୁଲେଁ ସୁନ୍ଦର୍ ସରସ୍
ଦୁଇଟା ମହାନ୍ ହୁରୁଦ୍ ଭିତ୍‌ରେଁ ଭାବ୍ ହେବା କାଏଁ ନିରସ୍ ।୧୯।
ମୁଡ଼ା ଭିତର୍‌କେ ଉଡ଼ି ଆଉଛେ ନଲିଆର୍ କେନ୍ ଚରେ
ସେ ଭାବ୍ କେତେ ଉଚା ଆଏ ଯେ କଁଟି ନାପି ଫିରେ ।୨୦।
କେନ୍ ଲଗ୍‌ନେ ରବି କହିଥିଲା ଇ ଗାଁ ମୋର୍ ସରଗ୍ ଆଏ
ଲାଗି ଲାଗି କରି ଶଶି ସେ କଥା ଉଘ୍‌ରାଲା ଘାଏ ।୨୧।
ଗାଁ ସାରା ଆଏଜ୍ ସବୁ କବାରେଁ ସମ୍‌କର ମୁହେଁ 'ଶଶି'
ଆକାଶେଁ ଜନ୍‌କ୍ ରାଏତ୍ ଲେଖେଁ ଗାଁଏଁ ଖେଲାଲା ହଁସି ।୨୨।
ଶାଶ ବହୁ ବି ଅପଢ଼୍ ହେଲେଁ ଶଶି ପାର୍‌ସି ପଟେଇ
ଶାବଲ୍‌ଥୁଁ ନେଇ ବନ୍‌ଲା କାମ୍‌କେ ସୁଜି ନ ଦେସି ହିଟେଇ ।୨୩।
ଗାଁଆଁର୍ ଲୁକର୍ ମନ୍‌କେ ଏକା ନେଇ ଆସ୍‌ବାର୍ କଥାଟେ
ଶଶି ବିହା ନେଇ ହେବାର୍ ଯେ ଗାଁଆଁର୍ ମୁଡ଼୍ ବଥାଟେ ।୨୪।
କହେଲେଁ ବଲ୍‌ସି ଦୁଇ ଝନ୍‌କୁଁ ପାଇ ହେବା କାଏଁ ସୁଖ୍ ?
ଗାଁ କେ ଛାଡ଼ି (ନୁହେ), କାହାକେ ବିହା ହଇ ଦେବୁ ଦୁଖ୍ ।୨୫।
ଝାଁକର୍ ଝାଁକ୍‌ରେନ୍ ହଇଗଲେନ ଅଏସୋ ବୁଢ଼ାବୁଢ଼ୀ
ଶଶି ପଛେଁ ପର୍‌ଶୁଥିସି ନିଜେଁ ରାନ୍ଧି ବାଢ଼ି ।୨୬।
ଯା'ହେଲେଁବି ମା ବାପ୍‌କେ ବନ୍‌ଏ ଲାଗ୍‌ବା କାଏଁ ?
ଫୁସୁର୍ ଫାସର୍ ସବୁ ବେଲେଁ ଶଶିର୍ ବିହା କଥା ଗାଁଏଁ ।୨୭।

ସାଙ୍ଗ୍ ସରସିଆ ପିଲା ଭିତରେଁ କଥା ପଡ଼୍ଲା ଦିନ୍ଏ
ଶଶି କାଏଁ ବିହା ନାଇଁ ହେତା, ତାର୍ ମନେ ଅଛେ ଝନ୍ଏ ।୨୮।
ତାହାକେ ପାଏଲେଁ ପରେ ଆଙ୍ଗ୍ଲେ ନାଇଁ ଛାଡ଼୍ତା ସରଗ୍
ଯେ ଯାହାକେ ସୁଖ୍ ପାଏସି ଚାହେଁସି କାଏଁ ହେଉ ଅଲଗ୍ ।୨୯।
ତାକର୍ ତାକର୍ ଠରାନରା ହେସନ୍ ହଁସା ହଁସି
କହେବାକେ କାହାର୍ ଦମ୍ ନାଇଁ କାଁ ବଲ୍ତା ଯେ ଶଶି ।୩୦।
ଏତ୍କି ବେଲେଁ ଦେଖ୍ଲେ ନୁନୀ ଝାଁକର୍ ଘରୁଁ ଆଉଛେ
ତାର୍ ଚାଲିଥିଁ ଗାଁ ଖୁଲ୍ଥି ଫୁଲ୍ ଫୁଟ୍ତେଲ୍ ଯାଉଛେ ।୩୧।
ପିଲାମାନେ ନୁନୀ କେ ଦେଖି ଆଶ୍‌ରିଯ୍ ହେଲେ ଆହୁରି
'ଝାଁକର୍ ଘରେଁ କାଁ କରୁଥିଲା ଯେ ଏଛନି ଆଉଛେ ବାହାରି' ।୩୨।
ତାକର୍ ଭିତ୍ରୁଁ କହେଲା ଝନ୍ଏ 'ନୁହେ ଜାନ୍ଅ ଭାଏଲ ?
ନୁନୀ ସାରା ଟୁକେଲ୍‌କୁଁ ନେଇ ସାର୍ କରିଛେ କାଏଇ୍ ।୩୩।
ଗାଁର୍ ଯେତେ ବୁଢ଼ାବୁଢ଼ୀ ଅଛନ୍ ଅପାରବାର୍
ଟୁକ୍ଲେ ସେବା କରବେ ସାରି ଯେ ଯାହାର୍ କବାର୍ ।୩୪।
ସାନ୍ ବଡ୍ ସବୁ ଟୁକେଲ୍ ଆସି ନୁନୀ ଘରେଁ ବସ୍‌ବେ
ସଁଝେ ଘାଏ ସକାଲେଁ ଘାଏ ଦିନ୍‌କ ଦୁଇ ଥର୍ ମେଶ୍‌ବେ ।୩୫।
ପଢ଼୍ଲା ଟୁକେଲ୍ ପାଠ୍ ପଢ଼୍‌ବେ ବାକି ଶିଖିବେ ସିଲେଇ
ତାସ୍, ଛକା, କି ପରହର୍ କଥେଁ କାଁ କରି ହେବେ ଗୁଲେଇ ।୩୬।
କେ କେନ୍ କେନ୍ ବୁଢ଼ା ବୁଢ଼ୀକୁଁ କରବା ଦେଖାରେଖା
ମୋଟ୍ ଭାବେଁ ଗୋଟ୍ ଗୋଟ୍ କରି ସବୁ ହଇଛେ ଲେଖା ।୩୭।
ଝାଁକ୍‌ରେନ୍ ବୁଢ଼ୀ ଶଶିର୍ ମା ଅପାରୁ ହେବାର୍ ଶୁନି
ନିଜେଁ ଭାଗ୍ ନେଇଥିବା କାଏଁ ଦେଖି ଆଇଥିବା ନୁନୀ ।୩୮।
ନୁନୀ କେ ବହ କରବାକେ ବହୁତ୍ ଘର୍ ଉତ୍‌ରିଛନ୍
ନୁନୀର୍ ମାଁ' ବା' ମାନି ଗୁନି ଆଦର୍ ସହିତ୍ ଗୁଚ୍‌ରିଛନ୍ ।୩୯।
ସବୁ ନ ଖାଲି ଗୁଟେ ଜବାବ୍ ନୁନୀର୍ ପଢ଼ା ସର୍‌ଲେଁ ଯାଇ
ଈ ଉଟ୍‌ଗନେ ନୁନୀ ଦେଲାନ ବରଷ୍ ପାଁଚ୍‌ଟା ସରଲେଇ ।୪୦।
ନୁନୀର୍ ପଢ଼ା ଯାହା ହେବାର୍ କଥା ଏସୁର୍ ହେଲାନ
ଆର୍ ପଢ଼୍‌ବାର୍ କଥା ନାଇଁନ ଯେନ୍ ସେନ ରହେଲାନ ।୪୧।

ନୂନୀର୍ ମା' ବା' ଭାଜୁର୍ କୁଟୁର୍ ଦେଖିଲେଁ ହେବା ପିଲାଟେ
ସହଜ୍ ସରଲ୍ ସୁତର୍ ସୁନ୍ଦର୍  ନାଇଁ ହଉ ପଛେ ଥିଲା ଟେ ।୪୨।
କିଛି ନୈ ହେଲେଁ ବି ନୂନୀର୍ ହେତ୍‌କି ନାଇଁ ପଢ଼ିଥିଲେଁ ପାଠ୍
କାଁ ଢ଼ଙ୍ଗେ ହେଲେଁ ଧରେଇ ହେବା ତାହାକେ ନୂନୀର୍ ହାତ୍ ? ।୪୩।
ଭାଏଗେଁ ଥିଲେଁ ଲାଏକ୍ ପିଲାଟେ ପାଏଲେଁ ଖୁଜି ବୁରି
ନୂନୀକେ ଜମିବାଡ଼ି ସମେତ୍ ଦେଡେ ସଁପି ସାରି ।୪୪।
ଇ ସବୁ କଥା ବାର୍‌ତା ଟୁଣ୍ କେ ଟୁଣ୍ ହଇ ଛାନି
ନୂନୀ ଶଶି ଛାଏ ଛାଏ ପାର୍‌ସନ୍ ଶୁନି ଜାନି ।୪୫।
କିହେ କାହାକେ ନାଇଁ ଜନାନ୍ କଥା ବାର୍‌ତା ନାଇଁ
ଆଖିଁ ଆଖିଁ ମନର୍ ଭାବ୍‌କେ ହେସନ୍ ଦିଆଦେଇ ।୪୬।

XXX XXX XXX XXX

ଫଗୁନର୍ ଆର୍ ଚଂଏନ୍ ନାଇଁନ ଚଏତ୍ ଗଲାନ ପଖେ
ଚଏତ୍ ଧୁରୁମ୍ ସାଙ୍ଗେଁ ଆକାଶ୍ ମେଘ୍ ଠାନ୍ ଠାନ୍ ରଖେ ।୪୭।
ଅଶୋକ୍ ପଲ୍‌ଶା ଶେମେଲ୍ ଗଛେଁ ଲାଲ୍ ଚହ ଚହ ଫୁଲ୍
ଶେଣୁଆଁ ଫୁଲର୍ ମହକ୍ ମାଖି ପବନ୍ ମସ୍‌ଗୁଲ ।୪୮।
ବେଲ୍ ଶୁରୁଙ୍ଗ ସାଙ୍ଗେ ମଲି ଫୁଟେ ଆଉର୍ ଫୁଟେ କୁରେ
ସୁନାରୀ ଗଛର୍ ଝୁପା ଝୁପା ଫୁଲ୍ ଉଲ୍‌ମି ଝୁଲେ ।୪୯।
ନଲିଆ ଖଁଡ଼ିର୍ ଡ଼ଙ୍ଗରି ହୁଆ ମହୁଲ୍ କୁଚି ନେ ହଁସୁଛେ
ଲାଲିଆ ଉଠେଁ କଷିଆ କେନ୍ଦୁ ପାଚ୍‌ଲାନ କାଏଁ କଷୁଛେ ।୫୦।
ଥପା ଲହ ଥିଁ ଢ଼ପା ହୋଇଥିବା ଚାର୍‌ଗଛ୍ ତଲେଁ ବସି
ହୁଆ ହୁଆ ଗୁଲି ତିଆରୁଛେ ଆଏବା ଖରାକେ କଷି ।୫୧।
ରାଏଜ୍‌କେ ସୁନ୍ଦର୍ ହେବାର୍ ଆଗୁଁ ଛାତି ଢ଼ାପ୍‌ଲା ମେତାଲ୍
ଆମ୍ କଷିକେ ଉଢ଼ାଇ ଦେଖୁଛେ ଆମ୍ ଗଛ୍ ତାର୍ ଡ଼ାଲ୍ ।୫୨।
କଅଁଲି ପତର୍ ତଲେଁ ବସି କୁଇଲି-କଁଠେଁ ଗାଉଛେ
କହଲି କହଲି ଚଁପା ଚରେ କେତେ ସାବାସି ଦଉଛେ ।୫୩।
ଅଏନ୍‌କା-ଢ଼େଁଟି ଡ଼େଗି ଡ଼େଗି ଲେଁଜ୍ ଟିପିକେ ହଲାଉଛେ
ଗୁଲିହା ଦେଖି ଗୋଲ୍ କର୍‌ବା ବଲେଁ ଡ଼ର୍‌ହେଁ ପଲଉଛେ ।୫୪।

ଗୁଁର୍‌ଗୁର୍ ଡ଼କା ଡିଡେର୍-ହକା ପଁଣକା-ଘୁଁଟ୍‌ରା ମିଶି
ମିଶାଗୁଲା ଗୀତ୍ ବାଏଦ୍ ଟେ ଶୁନ୍‌ବାର୍ ଲାଏକ୍ ହେସି ।୫୫।
ନଳିଆର୍ ଥିର୍ ପାନି ଉଠେ ଛୁଟିଆ ଛୁଟିଆ ଲହରୀ
ଖରାର୍ ତେଜେଁ ଚିକ୍ ଚିକ୍‌ଟେ ଘାଏଁ ଘାଏଁ ଯାଏ ପହଁରି ।୫୬।
ଜରେଲ୍ ମହରେଲ୍ ଡ଼ଁଡ଼ଉ କୁତ୍‌ରି କେ'ନ କେନ୍ତା ଟପ୍‌କୁଛନ୍
ପାଏନ୍ କୁଆଳି ଦଲ୍‌ଯେ ବୁଡ଼ି ଝୁରିଟେ ଧରି ଉପ୍‌କୁଛନ୍ ।୫୭।
ତରେଁ ତରେଁ ଟଗର୍ ଆର୍ କନ୍ଦାବୁଟାର୍ ଫୁଲ୍
ନଳିଆ ତାହାକେ ଦେଖିକରି ଭାଏଲ୍ ହଁସେ ମୁଲ୍‌ମୁଲ୍ ।୫୮।
ରାନ୍ଧନି ଗୁଧୁଆ ଉହୁରିଲା ନ ନୁହେ ହଏତାଏଲ୍ ବେଲା
ପାଶେଁ ଅଁତ୍‌ରେଁ କିହେ ନାଏଁନ ଗାଧିବାର୍ ଘାଟ୍ ମେଲା ।୫୯।
ବନ୍ଧନ୍ ମଝିର୍ ପଟା ଭିତ୍‌ରେଁ ପାଏନ୍ ପଲାଉଛେ ଗଲି
ଶଶି ଆସି ଚୁଟି ଦେଖୁଛେ ଲଟା ଜଗଡ଼ା ଠେଲି ।୬୦।
ନୁନୀ ଆଇଛେ ବେନୀକେ ଢ଼ିଲି ମୁଡ଼୍ ରେଁଚାବା ବଲି
ଉସ୍ତାର ଦେଖି ଉବେଲିଆ ଆଇଛେ ଛାଡ଼ି ସାଙ୍ଗ ସହେଲି ।୬୧।
ଘାଟେଁ ଆସି ଠିଆ ହେଲାକି ଶଶି ନ ପଡ଼୍‌ଲା ନଜର୍
ଚମ୍‌କି ଭାବେ କା'ଣା ବଲ୍‌ବା କିଏ ଦେଖିଲେଁ ଆଜର୍ ।୬୨।
ଶଶି ଲାଗିଛେ ତାର୍ କବାରେଁ ନୁନୀ ଛଡ଼ଉଛେ ମୁଡ଼୍
ଦୁହେ ଦୁହିଙ୍କୁ ଦେଖିଲେ ବି ନାଇଁ ଫିଟେ କା'ର ଟୁଁଡ଼୍ ।୬୩।
ସେ କହେବା ପହେଲା ବଲି କିହେ ଆଗୋ ନାଇଁ କହନ୍
ମନ୍ ଥିଲେଁ ବି କଥା ହେବାକେ ତୁନ୍ ପଡ଼ି ଦୁହେ ରହନ୍ ।୬୪
ନାଇଁ ପାର୍‌ଲା ଠହରି ନୁନୀ ଆଗୋ କହେଲା ହଁସି
'କାଁ ବଏଲୁ ?' ବଲି ପାଶ୍‌କେ ପଲେଇ ଆଏଲା ଶଶି ।୬୫।
ନୁନୀ କହେଲା 'ନାଇଁ ଦେଖିବାର୍ ଭାଏଲ୍ କେଡେଁ ମାଁ କେ
ମଲା କାଲ୍‌କେ ଫାଲ୍ ଫାଲ୍ ଦଶା ପୁଓ ଜନ୍‌ମାଇଁ ନାଁ କେ ।୬୬।
ଆଶା ଥିସି ଏତ୍‌କି ବେଲେଁ ପାଶେଁ ଥିଲେଁ ବହ
ରାନ୍ଧି ବାଢ଼ି ଗୋଡ଼୍ ହାତ୍ ଟିକେ କର୍‌ତା ଅହରହ ।୬୭।
ପୁଓ ଥାଇ ଯା'ର ବହ ନାଇଁନ କେନ୍ତା ଲାଗୁଥିବା
ସମ୍ପତି ଥାଇ ବିପତି କେ ଅନୁଖନୁ ଭୁଗୁଥିବା ।୬୮।

ଲୋକ୍ କହେସନ୍ ବୁଢ଼ା କାଲକେ ମା'ବାପ୍ ଅସନ୍ତୋଷ
ହେଲେଁ ପରେ ପଡ଼ସି ସବୁ ପୁଓ ଝି' କୁଁ ଦୋଷ୍ ।୬୯।
ଶଶି ବଲେ 'ପୁଓ ନାଇଁ ଜାନ୍ଏ, ଝି ଅଛେତ ଜାନୁଛେ
ଅଲାଏକ୍ ପୁଓର୍ ମା'ବାପ୍‌କେ ନିଜର୍ ବଲିଁ ମାନୁଛେ' ।୭୦।
ନୁନୀ କହେଲା ଇ ସବୁ ଛାଡ଼ି ବିହା ହଇପକା ତୁରତି
ଯାହା ହେଲେଁ ବି ମା' ବାପର୍ ମନ୍ କରି ପକା ପୂରତି ।୭୧।
ଶଶି କହେଲା 'ଯାର୍ ପୁତ୍ ଲା ଥାପିଛେଁ ମନ୍-ମହଲେଁ
ତାହାକେ ଅଲଗାଇ ନାଇଁ ହେବାର୍ ଯେ ଯାହା ବି କହେଲେଁ ।୭୨।
ସେ'ହିଁ ମୋର୍ ଜୀବନ୍ କାଲେଁ ମନ୍ ମୁନ୍‌ଷର ଝନ୍ଏ ଆଏ
ମୋର୍ ନୁ ଏକା ସେ ସବୁ ଥିଁ ସବୁ ରକ୍‌ମେ ବନ୍ଏ ଆଏ ।୭୩।
ମୋର୍ ନୁ ଜହ ପଢ଼ାଗୁନା ମୋହରୁଁ ବଢ଼ିଆ ଥିତି
ତାହାକେ ପାଏଲେ ମୁଇଁ ତ ସରଗ୍ ସୁଖ୍ ପାଇଥିତିଁ ।୭୪।
ମୁଇଁ ଜାନେ ସେ ମତେ ପାଇ ନୈ ହଇପାରେ ଉସତ୍
ଦୁଇ ପରାନୀର୍ ଯୁଡ଼ି ଜୀବନ୍ ଦୁହିକୁଁ ନେଇ ତ ସତ୍ ।୭୫।
ତାର୍ ମନେ ଯଦି ଦୁଖ୍ ହେବା କେନ୍ ସୁଖ୍ ମୁଇଁ ପାଏମି
ତାର୍ ଭଲ୍ ଲାଗି ତାହାକେ ଛାଡ଼ି ଜୀବନ୍-ଗୀତ୍ ଗାଏମି ? ।୭୬।
ତାର୍ ସୁଖେଁ ମତେ ସୁଖ୍ ମିଲେ ଦୁଖ୍ ଦୁଖେଁ ତାର୍
ତାର୍ ବିହୁନେ ବିଷ୍ ପିତା ମତେ ଲାଗ୍‌ସି ଇ ସଂସାର୍ ।୭୭।
ଗାଁର୍ ଦିହେଁ ତାହାକେ ଦେଖେଁ ଗାଁ ଦିଶେ ତାର୍ ଦିହେଁ
ସେନ୍‌ହ ସରାଗ୍ ଯାହା ଅଛେ ମୋର୍ ପର୍ଛା ଉଲ୍‌ଦି ଦିଏଁ' ।୭୮।
ନୁନୀ କହେଲା 'ସେ ଝନ୍‌କୁଁ ପଚ୍‌ରାଇଥିତୁ ଘାଏ
ତାର୍ ଭିତ୍‌ରେଁ ତୋର୍ ମୁର୍‌ତି ଥାଏ କି ନାଇଁ ଥାଏ ? ।୭୯।
ଏତ୍‌କି ବେଲେଁ ଦେଖ୍‌ଲେ ଦୁହେ ଆଉଛେ ଜନ୍ଏ ଦୂରିଆ
ଦେଖ୍‌ଲେଁ ଇ କଥାକେ କର୍‌ବା ଘାଟ୍ ବାଟ୍ ସବୁ ଗୁଲିଆ ।୮୦।
ଦୁହେ ପଲାଲେ ଦୁହିକର୍ ବାଟେଁ ଘାଟ୍ ପର୍‌ଲା ଛିନା
ଦୁହେଁ ବୁଝ୍‌ସନ୍ ଦୁହିକର୍ କଥା ନାଇଁ କହିପାରନ୍ ସିନା ।୮୧।

## ୧୪

ନୂନୀ ଘରେଁ ଇସ୍କୁଲ୍ ଟେ ଆପେଁ ହଇଛେ ଗଢ଼ି
ସେ'ଟା ଛାଡ଼ି କେନ୍ ଇସ୍କୁଲ୍ କେ ନୂନୀ ଯାଏତା ପଢ଼ି ।୦୧।
ଛୁଆ ଯୁଆନ୍ ଅଧେର୍ ବୟସର୍ ସଭେ ସେନ ଜମୁଛନ୍
ଯା'ର୍ ଯେନ୍ତା ସମିୟା ଜାନି ନୂଆଁ ବିଷେ ଥିଁ ସମୁଛନ୍ ।୦୨।
କିଏ ଶିଖୁଛେ ସିଲେଇ କାମ୍ କିଏ ପଢୁଛେ ପାଠ୍
ପୁତ୍ଳା ଲିଖା ଝୁଁଟିଦିଆ ନ କିଏ ସୁଧୁରାଏ ହାତ୍ ।୦୩।
ବିର୍‌ହୁନ୍ ଆର୍ ତାଲ୍‌ପତ୍‌ରେଁ କିଏ ବନାସି ବିଛ୍‌ନା
କିଏ ବୁନ୍‌ସି ପଟି ଆନି ଖଜୁର୍ ପତର୍ ମଶ୍‌ନା ।୦୪।
ଖରା ମାସର୍ ବଢ଼େ ମଏଧାନ୍ ଶୀତ୍ ମାସିଆ ବେଲେ ଆଏ
ଝାଁଜି ପବନେ ଭାଜି ହଇ ଜୀବନ୍ କଲ୍‌ବଲେଇ ଯାଏ ।୦୫।
ପୁରୁଷ ପିଲେ ତାସ୍ ବାଗଡ଼ି, ମାଏଝି ଟୁକ୍‌ଲେ ଛକା
ଦେଖ୍‌ଲେଁ ସେ'ଟା ଲାଗ୍‌ସି ସମିୟା ବେକେଁ ପାହା ପକା ।୦୬।
ଶଶି ଜାନି ସବୁ କଥା କହେଲା ହେଲା ଅଡୁଆ.
ପିଲାକୁଁ ଧରି ମଣ୍ଡଲୀ ନ ମରାଲା ଗୁଟେ ମଡୁଆ ।୦୭।
ଗୁରୁବା'କୁଁ ଡ଼ାକି କରାଲା ଭାଗ୍‌ବତ୍ ଗୀତା ପାଠ୍
ବୁଝାବୁଝି ଥିଁ ରିଝେଇ ଭାଏଲ୍ ଧର୍‌ବେ ବନେ ବାଟ୍ ।୦୮।
ଗୁରୁବା'କର ମନର୍ ଦୁଖ୍ ବି ଉଶାସ୍ ହେଲା ଟିକ୍‌ଏ
ଲାଖେ ଦୁର୍ଭାବନା ଖାଏସି ସତ୍‌ଭାବନା ଲିଖ୍‌ଏ ।୦୯।
ରାହୁ ବାଗିର୍ ଖରା ଆଇଥିଲା ଝାଉ-ବାହ୍‌ନେ ଚଢ଼ି
ସେ ବାହ୍‌ନେ ରେଁତି ହଇ ଲେଡି ପଡ଼୍‌ଲେ ଝଡ଼ି ।୧୦।
ସେଥିର୍ ଡ଼ର୍‌ହେଁ ପୁଁଜା ପୂଜାଁ ଗଛ୍ ଟିପିନ ଟୋଲ୍
ଏକ୍‌ଲା ଥିଲେଁ ଡ଼ର୍‌ମା ବଲିଁ ପାଁଚ୍ ଦଶ୍ ମିଶି ଠୋଲ୍ ।୧୧।
କାଏଁ ଠହରିତେ ସେମାନେ ବି ଘାଏକେଁ ହେଲେ ଲେଥିରା
ଫଲ୍ ଥିବା ତକ୍ ଗୋଛ୍ ଥିଲା ଗଛ୍ ଫଲ୍ ଗଲା କି ଛେତ୍‌ରା ।୧୨।
ମାର୍‌କେ ଡ଼ରି ଚାର୍ ବିଚ୍‌ରୀ ଲହ ଦେଇଥିଲା ଢ଼ାପି
ଖରାର୍ ହାତେଁ ଧରା ପରିଁ ଭିତ୍‌ରେଁ ଗଲା କଁପି ।୧୩।

ଠେଁସା ମାର୍ ହେଲା କାଏଁ ସେ ମଳା-ରକତ୍ ବସ୍‌ଲା
ପାଚ୍‌ଲା ବଏଲେ ଚାରକେ ଯହୁଁ ନୀଲିଆ ବରନ୍ ଦିଶ୍‌ଲା ।୧୪।
କଁଟାବଁଧି ମୁଡ଼ା ଢୁଡ଼ା ପାନିର୍ ଆଧାର୍ ଯାହା
ତାକର୍ ଦଶା ଦେଖ୍‌ଲେଁ କିଏ ନାଇଁ କର୍‌ବା ଆହା ! ।୧୫।
ଖରାର୍ ଅତ୍ୟାଚାରେଁ ସଭେ ଫାଟି କରିଛନ୍ ଥାଁ
ଝାର୍ ଡ଼ଙ୍ଗର୍ ଆତ୍ମାହୁତିର୍ ଲାଗି ଧରିଛନ୍ ଦାଁ ।୧୬।
ପାନିର୍ ଆଧାରକୁଁ ଦେଖି ପାନିର୍ ରଜା ସମୁଦର
ମେଘ୍‌କେ ମେଘ୍ ପାଏନ୍ ପଠେଇ ଲୁକ୍‌ଲା ଦର୍ ଦର୍ ।୧୭।
ନଏଦ୍ ନଲିଆ ବଁଧି କଟା ଉଛୁଲି ଉଠ୍‌ଲେ ହଁସି
ସେ ରତି ଲମ୍‌ଲେ ରଜା ପରଜା ଯିବେ ମିଶି ।୧୮।
ଡ଼ଙ୍ଗରୁଁ ଆସି ସମୁଦର୍ ନ ଲାଗ୍‌ଲା ପାନିର୍ ଧାର୍
ଡ଼ଙ୍ଗର ସମୁଦର୍ କଥାହେବେ ଯେ ଯୁରିନେଲା କେ ତାର୍ ।୧୯।
ବର୍‌ଷା ଆସି ପୁର୍‌ଥୀ ସାରା ଭର୍‌ଲା ସବୁ ରସ୍
କାଁ ଢ଼ଙ୍ଗେଁ ହେଲେଁ ତୁନ୍ ପରି ରଙ୍ଗ୍ ରହେତା ବିରସ୍ ।୨୦।
ପହେଲା ଆଏଲା କଳା ରଙ୍ଗ୍ ମେଘ୍ ହାତୀ ନ ଚଢ଼ି
ଧୋବ୍ ରଙ୍ଗ୍ ତ ସଙ୍ଗେଁ ପାଏଲା ସଫେଦ୍ ବଁକର ଧାଡ଼ି ।୨୧।
ହଲ୍‌ଦିଆ ରଙ୍ଗ୍ କନକ ଚଁପା ମାଲ୍‌ତୀ ଆର୍ ମୁଗ୍‌ଫଲି
ଫୁଲେଁ ଆଏଲା ଚହଲି ଚହଲି ଗେଲେଁ ଲାଢ଼େଁ ଫୁଲି ।୨୨।
ଲାଲ୍ ରଙ୍ଗ୍‌କେ ସାଧବ୍ ବହୁ ବୁଲ୍‌ସି ଦିହେ ବୁହି
ଲାଲ୍ କଇଁ ଆର୍ ମନ୍ଦାର ଫୁଲେଁ ଡ଼େରା ଡ଼ଶ୍‌ନା ଥୁଇ ।୨୩।
ଶାଗୁଆ ରଙ୍ଗ୍ ତ ସାରା ପୁର୍ଥୀ ଆଗୁଆ ହଇ ବୁଲୁଛେ
କେନ୍‌ସି ଠାନେ ରଙ୍ଗର୍ ଅଭାବ୍ ଦେଖ୍‌ଲେଁ ନିଜ୍‌କେ ଗୁଲୁଛେ ।୨୪।
ସାତ୍‌ହି ରଙ୍ଗ୍‌କେ ଧରି ଆଏସି ଇନ୍ଦର୍ ଧୁନ୍ ଘାଏ
ଉର୍ଭି ଯାଏସି ତୁରତି, ରଙ୍ଗ୍ କାଏଁ ସବୁ ଦିନର୍ ଆଏ ।୨୫।
ବରଷାର୍ ଇ ରଙ୍ଗ୍ ରସ୍ ଥିଁ ଗାଁ ଭୁଇଁ ଗଲା ରସି
କାମ୍ ବୁତାର୍ ମୁନୁଷ୍ କାଏଁ ବୁର୍‌ଥା ପାରତା ବସି ।୨୬।
ଖତ୍ ବିହନ୍ ହଲ୍ ଧରି ମୁନୁଷ୍‌ଗଲେ ଲମି
ସେ ଠାନ୍‌କେ ଯେ'ନେ, ଅଛେ ଯାହାର୍ ଯେନ୍ ଜମି ।୨୭।

ବର୍‌ଷା ଫୁକି ଦେଇଗଲା କାଏଁ କେନ୍ ମନ୍ତର୍ ଆନି
ସଁଝ୍ ସକାଲେଁ କାମ୍ କବାରେଁ ଲୋକ୍ ହେଲେ ସାନି ।୨୮।
ବିନୁଆଁ ତରେଁ ବତରକିରି ହେସନ୍ ସିଗିର୍ ବିଗିର୍
ବତର୍ ପାଇ ମୁନୁଷ୍ ଆଜି ହଏ ତାକର୍ ବାଗିର୍ ।୨୯।
ପାଏନ୍ ବର୍‌ଷେଁ ନଲିଆ ପାନି ଭରି ନଉଛନ୍ ମୁଡ଼ାକେ
ସକାଲେଁ ଶୁଖା ଥିଲେଁ ଉଛ୍‌ଲି ଯାଏସି ବେଲ୍ ବୁଡ଼ାକେ ।୩୦।
ପାଶ୍ ପାଁଜ୍‌ରେଁ ପାଏନ୍ ଅଭାବେଁ ପରୁଥିଲେଁ ଛଟ୍‌କି
ଈ ଗାଁର୍ ଲୋକ୍ ରୁଆ ବିହିଡ଼ା କରନ୍ ଉତ୍‌କି ଉତ୍‌କି ।୩୧।
ବର୍‌ଷା ଦିନେ ପାନିର୍ ଅଭାବ୍ ଯେନ୍‌ନ ଯେଭେଁ ହେସି
ଘୁଲି କଁକରା ଝୁରିର୍ ଆଗୋ ଦର୍‌ମରା ହୁଏ ଚାଷୀ ।୩୨।
ନଲିଆ ବଁଧା ଦିନୁ ଈ ଗାଁ ସଥେଁ ଗୁଟେ ସରଗ୍ ଆଏ
ସୁନାର୍ କୁକ୍‌ରା ଉଡ଼େ ଖାଲି ମାର୍ ଗାଲି ମହରୁଗ୍ ଆଏ ।୩୩।
ହଲ୍ ବିହନ୍ ସଭେ ସମ୍‌କୁଁ ହେସନ୍ ଦିଆନିଆ
ଜନ୍‌କର ଜିନିଷ୍, ସତେଁ ଜାଗା ଜାଗା ହଇଛେ ଥୁଆ ।୩୪।
ମାଏଝି ମୁନୁଷ୍ ସମ୍‌କୁଁ ବାୟ୍ କରି ରଖିଛେ କବାର୍
ଖେତେଁ କାର୍ ଖିଆ ପିଆ କାର୍ ଯା'ଆସ୍ କାର୍‌ବାର୍ ।୩୫।
ସମ୍‌କର୍ ଦିହେଁ ସବାର୍ ଅଛେ ସବୁ ବେଲେଁ କାମ୍
କାମ୍ ଏଛ୍‌ନି ମାଁ ବୁଆ ଆଏ କାମ୍ କୃଷ୍ଣ ରାମ୍ ।୩୬।
ଗାଁ ସାରା କାମର୍ ଭିଡ଼େଁ ଜନ୍‌ଏ ହଏ ଦୁଇଜନ୍
କୁନୁଁଆଁ ମଏତର୍ ବନ୍ଧୁ ବାନ୍ଧବ୍ ପାଶ୍‌ରି ନେଇଛନ୍ ।୩୭।
ଦଉଡୁଥିବାର୍ ଗାଁଦିନ ଏ ରହି ଗଲା ଘାଏ ଅଟ୍‌କି
ଅଥା ହଇ କଥାଟାକେଁ ସଭେ ଯାଇଛନ୍ ଲଟ୍‌କି ।୩୮।
ଗାଁ ରହିଛେ ଗଦା ଗଦା, କଥା ବାର୍‌ତା ଖୁଲିଁ
ଛି ନେଲା କେ ରଙ୍ଗି ରଙ୍ଗି ଚାଲୁଥିଲା ଘୁଲି ।୩୯।
କିଏ କହୁଛେ 'ରବିର୍ ବାପା ଗୀତା ପଢ଼୍‌ଲା ବେଲେଁ
ଭାବ୍‌ଲେ ପରେ ମନ୍ ମାନ୍‌ତା ତୀର୍‌ଥ କଲେଁ ହେଲେଁ ।୪୦।
କାଏଲ୍ ପର୍‌ଦିନ କହେଲେ ପରେ ହଉଛେ ତାକର୍ ମନ୍
ଈ ଶରାବନେ ଝୁଲନ୍ ଦେଖି ଯାଏତେ ବୃନ୍ଦାବନ୍ ।୪୧

ରବିର୍ ବାପା ସାଙ୍ଗେଁ ରବିର୍ ମାଁ ପଡ଼ିଛନ୍ ବାହାରି
ଯେନ୍ତା ହେଲେଁ ଯିବେ ମନା ନାଇଁ ମାନ୍‌ବାର୍ କାହାରି ।୪୨।
ସେ ଦୁହିଙ୍କୁଁ ଏକ୍‌ଲା କାଏଁ ଯାଇଦେତା ନୁନୀ
ତାର୍ ମାଁ' ବା' ବାହାରି ପର୍‌ଲେ ନୁନୀର୍ ଯିବା ଶୁନି ।୪୩।
ଝାଁକର୍ ଝାଁକ୍‌ରେନ୍ ବାହାରୁଥିଲେ ମନା କଲା ଶଶି
କହେଲା 'କାମ୍ କବାର୍ ଦିନେ କାଏଁ ତୀରଥ୍ ଯାଇହେସି' ।୪୪।
ମା' ବା' କୁଁ ଧରି ଏସୁର୍ ଯିବା ଦିନ୍ ମୁଡ୍ ପାଏଲେଁ
ଆଉର୍ ଆଉର୍ ବି ଗାଁର୍ ଲୋକ୍ ଯିବେ ଯେ ଚାହେଁଲେ ।୪୫।
ଆଜିର୍ ଏଛ୍‌ନି ଯିବେ ପରେ ସଭେ ବାହାରି ପର୍‌ଲେ ନ
ପଏସା ପତର୍ ଖଁଜି ବୁଚ୍‌କା ପେଁଡା ବାନ୍ଧି ସାର୍‌ଲେନ ।୪୬।
ଗାଆଁ ସାରା କିହେ କାହିଁ ଯିବାର୍ ନାଇଁ କବାର୍‌କେ
ସଭେ ଅଛନ୍ ସାଙ୍ଗେଁ ଥାଇ ଲମେଇ ଘାଏ ନେବାର୍‌କେ ।୪୭।
ପାଁଚ୍ ପଚିଶ୍ ଯେ ଯେନ୍ତା ନିଜର୍ ପୁଁଜି ଛାନି
ଗୁରୁବା' ଗୁରୁମା' କେ ଧରା ଧରି କରୁଛନ୍ ଆନି ।୪୮।
ଦୁହେ କହୁଛନ୍ ପଏସା ପତର୍ ହଜି ନଶି ଯିବା
ତମର୍ ସେନ୍‌ହୋ ଆଦର୍ ଆମର୍ ସାଙ୍ଗେଁ ସାଙ୍ଗେଁ ଥିବା ।୪୯।
ଶଶି ଆଏଲା ହଁସି ହଁସି କହେଲା 'ଦେହ୍ ପାଆ
ଜଗି ରଖି ଚଲୁଥିବ ଗୁରୁମାଆଁ ଗୁରୁବାଆ' ।୫୦।
ପୋଷ୍ଟକାର୍ଡ଼ ଗେଛେ ଆନିଥିଲା ମାଷ୍ଟଁକର୍ ହାତେଁ ଦେଇ
କହେଲା ଠାନକେଁ ଖଁଡ୍ଏ ଲେଖି ଦଉଥିବ ପକେଇ ।୫୧।
ବଏସ୍ ଜାନି ସାନ୍ ବଡ଼୍ ମାନି ଯୁହାର୍ ଦିଆନିଆ
କେ ଦେଖୁଛେ ଶଶି ନୁନୀର୍ ଆଖିର୍ କଥାକୁହା ।୫୨।
ତୀର୍‌ଥ ଯାତ୍‌ରୀ ତୀର୍‌ଥ ଗଲେ ଗାଆଁର ଲୁକେ ଗାଁଏଁ
କହେଲେଁ ହେଲେଁ ସମ୍‌କୁଁ ଲାଗ୍‌ଲା କେତେ ବାଏଁ ବାଏଁ ।୫୩।
ଶଶିର୍ ଆଖିଁ ନୁନୀକେ ଦେଖି ପାଏନ୍ ତରା ତରା
ଛାତି ଭିତର୍ ତାର୍, କେ ଦେଖିବା କା'ଣା ଥିଲା ଭରା ।୫୪।

# ୧୫

କେତେ ମନ୍ଦିର୍ ମଠ୍ ବୃନ୍ଦାବନ୍ ଅଛେ ବୁହି
କାଏଁ କାହାକେ ପାୟି କରି ଯମ୍ନା ଯାଏ ବୁହି ।୦୧।
ଜୀବନ୍ ଧାର୍ ସେ ଯମ୍ନା ନଏଦ୍ ଦେଖ୍ଲେଁ କେଡ଼େ ଅଏନ୍
ପୁରାନ୍ କହେ ସେ ପରେ ଫେର୍ ଆଏ ଯମର୍ ବହେନ୍ ।୦୨।
ବୃନ୍ଦାବନ୍ କେ ଆସି ମାଷ୍ଟେ ଅନ୍ଧି କନ୍ଦି ଘୁରୁଛନ୍
ରାସରଠାନେ ରସ୍ ପାଏବେ ଅନୁଖନୁ ନୁରୁଛନ୍ ।୦୩।
ଆଉର୍ କିଛି ନୁହେ ଖାଲି ମହାପ୍ରୁର୍ ଭାବ୍ ରସ୍ ଆଏ
ସେଥିଁ ବୁଡ଼ି ରହେବାର୍ଟା ମୁନ୍ଷର୍ ବି ବଶ୍ ଆଏ ।୦୪।
ଅଗାଧ୍ ସେ ରସେଁ ଗାଧ୍ଲେଁ ସତ୍ ଆନନ୍ଦ୍ ଚେତା
ଆବ୍ରି ରଖେ ଜୀବନ୍ କେ କାହିଁ ବିଫଲ୍ ହେଇଦେତା ।୦୫।
ଇ କଥା କାଏଁ କହେବାର୍କେ ବୃନ୍ଦାବନ୍ ଆଏ ସାକ୍ଷୀ '
କେତେ ଦିନୁ ଅଛେ ମନେ କେତେ ରସ୍ ମାଖି ।୦୬।
ଜୀବନ୍କେ ଫେର୍ କାଏଁ ଧରି ପାଏଁ ମରନ୍ ଚାଲୁଛେ
ମୁରଜୁଦେବ୍ ତାର୍ ବହେନ୍ ଯମ୍ନା ବୁହି ସତ୍କେ ପାଲୁଛେ ।୦୭।
ଭଲ୍ ପାଏବାର୍ଟା ରସ୍ ଲୋକ୍ ଜାନୁଛନ୍ କି ନାଇଁ
କହେବା କେ ଭାଏଲ୍ ମହାପ୍ରୁ ଆଏଲେ କୃଷ୍ଣ ନାଁ ନେଇ ।୦୮।
ମହାପ୍ରୁ ସମ୍କୁଁ ଭଲ୍ ପାଏସନ୍ ତାହାକୁଁ ପାଅ ଭଲ୍
ସବୁ ଦିହେଁ ମହାପ୍ରୁ, ନାଇଁ ଜାନ୍ଲେଁ କଲ୍ ବଲ୍ ।୦୯।
ମହାପ୍ରୁକେ ତ ଭଲ୍ ପାଏବାର୍ ବାଟ୍ ଆରାଧନା
ଆରାଧନାର୍ ନାଆଁ ରାଧା ଜାନ୍ ଲା ଲୁକ୍କୁଁ ଜନା ।୧୦।
ରାଧାକୃଷ୍ଣ ଅଲ୍ଗା ନୁହନ୍ ଗୋପୀ ନୁହନ୍ ଭିନ୍ଏ
ମନ୍ ଦେଇକରି ଦେଖି ଜାନ୍ଲେଁ ସଭେ ମିଶି ଜନ୍ଏ ।୧୧।
ଇ ଭାବ୍ଟା ମାଷ୍ଟରଙ୍କର୍ ମନେ ଅନୁଖନୁ ଖେଲୁଛେ
ମନ-ଯଶୋଦା ଭାବ୍ନା-ଦହି ହାଁଡ଼ି ହର୍ମେଷ୍ ବିଲୁଛେ ।୧୨।
ଟାକି ବସିଛନ୍ କେତେବେଳେଁ କାଏଁ ପାଇଯିବେ ଚିକ୍ନା
ପଁଡ଼ା ମାନ୍କର୍ ଅଡ଼୍ହା ବେଭାର୍ ଲଗେଇ ନେଲା ଠିକ୍ନା ।୧୩।

ପଁଡ଼ାମାନେ ବଡ଼ା ରକ୍‌ମେ ପଏସା ଅସୁଲ୍ କରୁଛନ୍
ଯାତ୍‌ରୀ ମାନ୍‌କର ମୁନା ହାତର୍ଲିଁ ସୁଆଁଲି ମେତାଲ୍ ତାରୁଛନ୍ ।୧୪।
ନୁନୀ ବୁଲୁଛେ ସବୁ ଆଡ଼୍‌କେ ବୁଢ଼ା ବୁଢ଼୍‌ୀକୁଁ ଧରି
ବୃନ୍ଦାବନ୍ ନେଇ ମଧୁର୍ ସପନ୍ ସୋଜ୍ ଆସୁଛେ ସରି ।୧୫।
କେତେ ମାତା କେତେ ବାବା କେତେ ଚନ୍ଦନ୍ ଚିତା
ବାହାରେଁ ଚିତ୍‌ରି ଭିତ୍‌ରି ମନ କେ ଲୁକେଇ ନେବାର୍ ଚିନ୍ତା ।୧୬।
ଛୁଟା ଅଁଧା କଣା କାଣୀ ସଲଖ୍ ସୁନ୍ଦର ଭିକାରୀ
କେ ଦଉଛେ କିଛି କାଣା କେ ଦଉଛେ ଧିକାରୀ ।୧୭।
ପଁଡ଼ା ପଢ଼ିହାରୀ ମାନେ ଯାହା ପାରୁଛନ୍ ଲୁଟୁଛନ୍
ପୁଜକ୍ ପଣିଆଁର୍ କଣ୍‌ହାଁ ମାନ୍‌କୁଁ ମହାପ୍ରୁର୍ ନାଏଁ ଚୁଁଟୁଛନ୍ ।୧୮।
ମହାପ୍ରୁକେ ପାଏବାକେ ଦର୍‌କାର୍ ନାଇଁ ଭକ୍‌ତି
ଅଛେ ଯଦ୍‌ରି ଜଲ୍‌ଦି ପାଏବ ପ୍‌ଏସା ଦେବାର୍ ଶକ୍‌ତି ।୧୯।
ନିଛେଁ ଯା’ ହଉନ୍ ମହାପ୍ରୁକେ କରି ନଉଛନ୍ ଭିକାରୀ
‘ମୁଁ’ ଯେନେ ‘ଭଁ’ ନାଇଁ କରତା ସେନୁ ଭରିଛନ୍ ମୁଁକାରୀ ।୨୦।
ଇ ସବୁକେ ବିର୍‌କତ୍ ହଇ ଯମ୍‌ନା ଆଡ଼୍‌କେ ମୁଁହାଇଛନ୍
ସେନ ଦେଖିଲେ ଠାନ୍‌କେଁ ବନିହାଁ ଲୋକ୍ ଜମା ହଇଛନ୍ ।୨୧।
ଲୋକ୍ ବସିଛନ୍ ସୁଧାଉ୍ ଭାବେଁ କଲର କାଲର୍ ନାଇଁ
କାନ୍ ଦେଇଛନ୍, କହୁଛନ୍ ଜନ୍‌ଏ ସଭାର ମଝି ଥାଇ ।୨୨।
ମୁହେଁ ଦାଢ଼ି ମୁଡ଼େଁ ବାଲ୍ ଗେରୁଆ କପଡ଼ା ଦିହେଁ
ଧିଆନ୍ ଘିଚେ ସିଆନ୍ କଥା ଯୁଆନ୍ ବଏସିଆ ମୁହେଁ ।୨୩।
ବିନ୍ ବାଧାଥିଁ କହି ଯାଉଛନ୍ ରାଧା ଭାବର୍ କଥା
ରାଧା ଭାବ୍ ଟା ନାଇଁ ପାଲି ପୁରାନ୍ ପଢ଼ି ଅଥା ।୨୪।
ବୃନ୍ଦାବନକେ ନିଜର୍ ମନ୍‌କେ ରଖିଲେଁ ସାଜି ବୁଜି
ରସର୍ କଥା ରାସର୍ କଥା ସହଜେଁ ହେବା ବୁଝି ।୨୫।
ବାବାର୍ କଥା କାବା ହଇ ମାଷ୍ଟେ ସର୍‌ଲଗ୍ ଶୁନୁଛନ୍
ଆଁଖି ପାଏନ୍ ଛଲ୍‌କି ଆସେ ମୁଡ୍ ଗାଡ଼ିକରି ଗୁନୁଛନ୍ ।୨୬।
ନୁନୀର ବା ଶୁନି ବଲୁଛନ୍ “କେଡ଼େ ସୁନ୍ଦର୍ କଥା
ଇଟା ଛାଡ଼ି ବୁଲି ବୁଲି ମିଛେଁ ହେଲୁଁ ଅଥା” ।୨୭।

ନୁନୀର ମାଁ ମନେ ଭାବୁଛନ୍ କେଡ଼େ ନୁକୋ ପିଲା
ଇନ୍ତା ପୁଓ ପାଏବାର୍‌କେ କେନ୍ ମାଁର ଭାଏଗ୍ ଥିଲା ।୨୮।
ପର୍‌କରି ସେ ମାଁ ବିଚ୍‌ରୀକେ ପୁଓ ଛାଡ଼ିଛେ ଘର୍
ମାଁ ଆଉର୍ କାଏଁ ଜୀବ୍‌ନେ ଥିବା ଝୁରିଁ ଅଠିପର୍ ।୨୯।
ଏନ୍ତା ନୁକୋ ପିଲାଗୁଟେ କୁଲେଁ ଯଦି ପାଏତିଁ
ଜୁଏଁ କରି ଜୁଗରେଇ ନେତିଁ ଯାହା ରଖିଛେଁ ସାଏତିଁ ।୩୦।
ନୁନୀକେ ମୋର୍ କାଁ କରସିଁ ବିହା ହେବାର୍ ନାଁ ନାଇଁ
ସଭେ ବଲ୍‌ବେ ଇ ଟୁକେଲିର୍ ବୁଆ ନାଇଁ କି ମାଁ ନାଇଁ ।୩୧।
ଆଜିର୍ ପରେ ରାଜି ଯାଏତେ ଧରେଇ ନେତିଁ ହାତ୍
ମହାପ୍ରୁ ! ତୋର ନୀଳା-ନଦୀଁ ନାଇଁ ପାଏ ମୋର୍ କାତ୍ ।୩୨।
ରବିର୍ ମାଁ ଆଏଁଖିକେ ବନ ଏ ନାଇଁ ହଏତ ଦୁରୁଣ୍
ବଏସର୍ ଦିନୁ ବଏସରା ନାଇଁ ଦେଖିବାକେ ପର୍ ପୁରୁଷ ।୩୩।
କଥା ଶୁନି ଯଥା ତଥା ରାଗ୍ ବାଆରି ପାରୁଛନ୍
ରବି ହଇଥିବା କାଏଁ ସେ, ସୋର୍ ସିନ୍ଦ୍ କେଁ ନୁରୁଛନ୍ ।୩୪।
ଦର୍‌ଛପ୍ ଦର୍‌ଛପ୍ କରି ପର୍ଛା ଚିହ୍ନଲା ନୁନୀ
ଖସ୍‌ରି ଗଲା ସଭା ମଝକେ କାର୍ କଥା ନାଇଁ ଶୁନି ।୩୫।
ଟୁକେଲ୍‌ଟାକର୍ ଖସ୍‌ରିବାର୍ ଥିଁ ବାବା ଖୁସୁର୍ ମୁସୁର୍
ସକ୍ କଲା ମନ୍ ଦକ୍ କଲା ମୁହଁ ହଇଥିଲା ଯାହା ପାଶୁର୍ ।୩୬।
ନୁନୀର୍ ଚେହେରା ଚିହ୍ନି ରବି ସବୁ ଜାନି ପାର୍‌ଲା
ନେି ଲମେଇ କହେଲା କଥା ଟପୋ କଲା ସର୍‌ଲା ।୩୭।
କଥା ସର୍‌ବାର୍ ସାଙ୍ଗେଁ ସାଙ୍ଗେଁ ଉଖ୍‌ଲି ଗଲା ସଭା
ଗୁଟେ ଠାନେ ଜମା ରବି, ନୁନୀ, ଚାରହି ମା' ବା' ।୩୮।
କଥା ବାର୍‌ତା କିଛି ନାଇଁ ସଭେ ଖାଲି କାନ୍ଦୁଛନ୍
ଦୁଖ୍ ଫାଟ୍‌ଲା ହୁରୁଦ୍-ବାଏର୍‌କେ ପାରୁଁ ପର୍‌ଜଁତ୍ ରୁନ୍ଧୁଛନ୍ ।୩୯।
ଛାତି ତଲର୍ ତାତି ମାନେ ଆଖିର୍ ବାଟେଁ ବାହାରୁଛନ୍
ଅସହ୍ ଅକହ୍ ଦରଦ୍ ବାହାରି ଲହ ହଇ ଲହରୁଛନ୍ ।୪୦।
ଭକ୍ ଭକ୍ ଦେଖି ରବିର୍ ବା' ଭକୁଆ ହଇଛନ୍ ପର୍ଛା
ରବିକେ ଆବ୍‌ରି ରବିର୍ ମାଁ ଘାଏକେଁ ଛନ୍‌କେଁ ମୁର୍ଛା ।୪୧।

ସେତ୍‌କି ବେଳର୍ ଥିତି ଯାହା, କିଏ ପାର୍‌ବା ଲେଖି
ସେ ଜାନ୍‌ବା ଯେ ଭୁଗିଛେ, କି ଯେ ପାରିଛେ ଦେଖି ।୪୨।
ପାଁଚ୍‌ଟା ହୁର୍‌ଦେଁ ପାଟେଁ ନାଇଁ ପାଟେଁ ପାଁଚ୍‌ଟା ଫୁକାର୍ ବେଦେନ୍
ମହାପ୍ରୁ ବୁଝ୍‌ବା କେତେ ଦୁଖ୍ ଦେସି ତାର୍ ଇ ଦେନ୍ ।୪୩।
ବୁଝା ସୁଝା ହଇ କଥା ହେଲେ ତାକର୍ ତାକର୍
ପଚ୍‌ରା ଉଚ୍‌ରା ହେଇ ରବି ବୁଝ୍‌ଲା ଗାଁ ଯାକର୍ ।୪୪।
ନଲିଆ ବନ୍ଧାନୁ ମୁଡ଼ା କୁଡ଼ା ତକ୍ ରବି ସବୁ ଶୁନି
କହେଲା "ଶଶିର୍ କଥା କିଏ ଅଛେ ପାର୍‌ବା ଖୁନି ? ।୪୫।
ଦୁଖ୍ ମନା ହେଲା ଶଶି ଅଛେ ଅବ୍‌ତକ୍ ଅବିହାରୀ
ନୁନୀ ହାତ୍‌କୁଁ ଦୁଇ ହାତ୍ ନୁହେ ହଏ ଜାନିପାରି ।୪୬।
ଚେତା ପାଇକରି ମାଁ ଯେତେବେଳେଁ ରବିକେ କୁଡ଼େଁ ପାଏଲେ
ବ୍ୟଥା ପାଶ୍‌ରି ଯଥା ତଥା କଥା କହି କହି ଆଏଲେ ।୪୭।
ବଏଲେ "ପୁଓରେ ! କେନ୍ ଦୋଷ୍‌ନୁ ଏଡ଼୍‌କି ଦଶା ପାଉଛେଁ
କେନ୍ ଗାଏର୍ ନୁ ଦାମୁର୍ ଛଡ଼େଇଥିଲିଁ ହୁର୍‌ଗୁନି ହଉଛେଁ ।୪୮।
ଫୁଟାଲା ଛୁଆକୁଁ ଉଡ଼ାଇବାର୍ ଶିଖଉଥିଲା କେନ୍ ଚରେ
ଛଡ଼େଇ ରଖିଥିଲିଁ କାଏଁ ସେ ଚରେ ଝୁରି ମରେ ।୪୯।
କେନ୍ ପିଲାତିର୍ ପିଲାକେ କାଏଁ ଛଡ଼ାଇ ଥିଲିଁ କୁଲୁଁ
ସେ ଦୋଷର୍ କାଏଁ କନ୍ତର୍ ଭୁଗେଁ ଜିତି ଯାଉଛେ ମୁଲୁଁ ।୫୦।
ରବିର୍ ଆଖିଁ ଲହ୍ ନାଇଁ ନ ମାଆଁର୍ ପାହା ଧରି
କହେଲା ମାଁ ! ଯାହିଁ ଥିଲେଁ ବି ଇ ପାହାକେ ଆଏମି ଫିରି ।୫୧।
ଗଛର୍ ଫଲ୍‌ଲା ଫୁଲ୍ ଫଲ୍ ସବୁ ବଡ଼୍ ହଇକରି ପାଚ୍‌ଲେଁ
କାହିଁ ଯାଏସି ନାଇଁ ପଡ଼ି ମା' ଗଛର୍ ପାହା ତଳେଁ ।୫୨।
ଝାରେଁ ଥିଲେ ବି ରଜାର୍ ହାତୀ ସବୁ ବେଳେଁ ରଜାର୍ ଆଏ
ପାଶ୍ ଧୁରିଆ ଯାହିଁ ଶୁଭୁ ବାଜ୍‌ନା ଯେନ୍ତା ବଜାର୍ ଆଏ ।୫୩।
ବଡ଼େ ସଂସାର୍ ପଡ଼ିଛେ ମାଁ, ରହେମି ଖେଲି ବୁଲି
ତାହା ବଲିଁ କାଏଁ ମାଁ ବାପ୍‌କୁଁ ରହି ପାରମି ଭୁଲି ।୫୪।
ମମତା-ରଶି ଥି ବନ୍ଧା ହଇଁ ମା'ବା ର ପାହା-ଖୁଟିଁ
ସାଁକୁର୍ ଇଲାକୋଟାକେଁ ରହେତି ମନ୍‌କରି କୁର୍‌କୁଟି ।୫୫।

ନାଇଁ ଜମ୍‌ତା ରଣି ସେନ ଭାଉଁର୍ ଭାଉଁର୍ ବୁଲ୍‌ତିଁ
ଗୁଟେ ଠାନେ ସବୁ ଦିନେ ଜୀବନ୍ ଘାଁଟି ଗୁଲ୍‌ତିଁ ।୫୬।
ସେଥିଁ କାଣା ପାଏତିଁ ? ମା ଗୋ ! ରଣି ଇଛନି ଜମ୍
ବଡ଼୍ ଇଲାକାନ ବନ୍‌ହିଆଁ ଲୁକ୍‌କୁଁ ଦେଖ୍‌ମି କରି ସମ୍ ।୫୭।
ଜାନିଥିବ ମାଁ ! ବନ୍‌ହିଆଁ ଦିନେ ଆସିଥିଲା ଦିନ୍ ଟେ
ସାମେନ୍ ନୁହେଁ ରାମେଣ୍ ରଖି ନେଇଛେ ଅଲିଭା ଚିହ୍ନଟେ ।୫୮।
ଦଶରଥ ରଜାର୍ ମନ୍ ରାମ୍‌କେ ବାନ୍ଧି ରଖ୍‌ବେ ଦେଶେଁ
ରାମ୍ ଚାହେଲେଁ ଚଉଦ ବରଷ୍ ବୁଲ୍‌ବେ ବାବା ବେଶେଁ ।୫୯।
କୈକେୟୀ କହେ ପୁଅକେ ନାଇଁ ବାଁଧିଲେଁ ନାଇଁ ଚଳେ
ବଏଲେଁ ମୋର୍ ଭରତ୍ ଅଛେ ବାଁଧିପକ ହେଲେ ।୬୦।
ନାଇଁ ବୁଝି ଦଶ୍ରରଥ୍ କାହିଁ ଛାଡ଼ି ପାରଲେ ରାମ୍ ?
ଛାଡ଼୍‌ଲେ ପଛେଁ ରାମର୍ ସାଙ୍ଗେଁ ନିଜର୍ ଦୁଲଭ୍ ପ୍ରାନ୍ ।୬୧।
ଜଗତ୍ ହିତେଁ ରାମ୍ ଗଲେ ଭରତ୍ ରହେଲେ ବଁଧା
ଆମ୍‌କୁଁ ସେ'ଟା କେ'ନ ବିଶ୍ୱସି ଆମେ କେଡ଼େ ଅଁଧା ।୬୨।
ନୁନୀର୍ ବା' କହେଲା "ବାବୁ ! ଆମେ ସବୁ ମୁରୁଖ୍ ଆଉଁ
ହେଁ ସବୁର୍ କାଏଁ ସୋର୍‌ମୋଲ୍ ଆମେ ସାରା ଜନମ୍ ପାଉଁ ।୬୩।
ସବୁ କଥା ଛାଡ଼୍ ଏତ୍‌କେଁ ଚାଲ୍ ଯିମା ଘର୍‌କେ
ଫିରେଇ ଆନ୍ ଗାଁ ସାରାର୍ ଶୁଖି ଯାଇଥିବା ସର୍‌କେ ।୬୪।
ହେତେଇ କରି ନୁନୀର୍ କଥା ତାହାକେ କାହାକେ ଦିଅ
ମୋର୍ ବୋଝ କେ ନିଜର୍ ଭାବି ଘାଏ ଉତ୍‌ରେଇ ନିଅ ।୬୫।
ରବି ଦେଖ୍‌ଲା ନୁନୀର୍ ମୁହୁଁ କେତେ ସହଜ୍ ସରଳ
ରବିକେ ଦେଖି ଆଖିର ପାଏନ୍ ତାର୍ ହଏ ଛଲ୍ ଛଲ୍ ।୬୬।
ନୁନୀର୍ ମନର୍ ଭିତର୍ ରବି ଫଟିକ୍ ଭାବେଁ ଦେଖୁଛେ
ଶଶି ବସି ସେଠାନେ କାଏଁ ନୁନୀର୍ ପୁତ୍‌ଲା ଲେଖୁଛେ ।୬୭।
ଗାଁ ସଭାର୍ ସେ ଦେଖାଚାହାଁ ସବୁ ପଡ଼୍‌ଲା ସୋର୍
ଭାବ୍‌ଲା ବନ୍‌ଏ କରତବ୍‌ଟେ ଅଛେ ନିଜର ମୋର୍ ।୬୮।
ଗାଁକେ ଯାଇ ନୁନୀକେ ଦେଇ ପାର୍‌ଲେଁ ଶଶିର୍ ହାତେଁ
ରହି ପାର୍‌ତା ଥାବେଁ ଅପ୍‌ନେ ନିଜେଁ ନିଜର୍ ବୁତେଁ ।୬୯।

ତାର୍‌ପରେଁ ଫେର୍ ଆଏତା ଫିରି ଯାହିଁର୍‌ଟା ସେ ତାହିଁ
ମା’ ବା’ କେ ନୂନୀ ଶଶି ରଖ୍‌ତେ ନ ନେଇ ।୭୦।
ରବି କହେଲା ଘର୍‌କେ ଯିମା ଧରି ରାଏତ୍ ଗାଡ଼ି
ସମ୍‌କର୍ ମୁଣ୍ଡେଁ ମାଡ଼ିଥିଲା ଯେନ୍ ଚିନ୍ତା ପଲାଲା ଛାଡ଼ି ।୭୧।

## ୧୬

ପୁର୍ଥୀ ସାରା ଉଦା ସର୍‌ସର୍ ଧାରା ଶରାବନ୍ ଝରୁଛେ
ଝୁପୁର୍ ଝୁପୁର୍ ଫୁସୁର୍ ଫୁସୁର୍ ଯେଭେଁ ଯେନ୍ ସୋର୍ ଧରୁଛେ ।୦୧।
ମନ୍‌କଲେଁ ଘାଏ କୁଲାର୍ ମୁହେଁ ଲୁକି ନଉଛେ ପାଏନ୍
ଖପର୍ ହଉକି ପୁଆଲ୍ ଛପର୍ ରଡ଼ି ଛାଡୁଛେ ଛାଏନ୍ ।୦୨।
ଅଏଁଲା ମେତାଲ୍ ବୁନ୍ଦା କେବେଁ ପଡ଼୍‌ନୁ ଧରେ ଫୁକି
ସେ ସର୍‌ପଟ୍ ହାତୀର୍ ଶୁଁଢ଼େ ପାଏନ୍ ଦଉଛେ ଲୁକି ।୦୩।
ଜନ୍ ତରା ଉଦିଥିଲେଁ ବି ନାଇଁ ଦିଶ୍‌ବାର୍ ରାତି
ଆକାଶ୍ କୁଲେଁ ଶୁଇ ନଉଛନ୍ ନିଶା ଅନ୍ଧାରେଁ ମାତି ।୦୪।
ନଏଦ୍ ନଲିଆ ଛାଡ଼୍ ଖେତର୍ ଘାଇ ନାଇଁ ହଏ ଲହଁକି
ଅଛ୍‌ରେ ଗଲେଁ ଆର୍ ଅଛ୍‌ରା ତାହାଗୁଁ ଯାଏ ବହଁକି ।୦୫।
ସିସ୍‌କାଲେଁ ଘାଏ ଆର୍ ଘାଏକେଁ ମେଘର୍ ଘଡ଼୍‌ଘଡ଼ି
କାନ୍ ଫଟାଇ ବର୍‌ଷା ଆନେ ଡ଼ର୍‌ଡ଼ରାନି ଚଡ଼୍‌ଚଡ଼ି ।୦୬।
ପାଏନ୍ ନିଶାଥିଁ ଭୋଲ୍ ହଇ ନଲିଆ କେତେ ଫେପ୍‌ଲଉଛେ
ସାନ୍ ହେଲେଁ ବି ମହାନ୍ ତୋଡ଼୍ ଯାହା ଯାଉଛେ ଗେଫ୍‌ଲଉଛେ ।୦୭।
ରୁହି, ଭାକୁର୍, ବଲିଆ, ସେହୁଲ୍, ସେର୍‌ନା ଆସନ୍ ଚଢ଼ି
ସିଙ୍ଘି, ମାଗୁର୍, ଟେଙ୍ଗ୍‌ନି, ମୁଟ୍‌ଲା, ଖପ୍‌ସି, ଜିଆ, ଡୁଡ଼ି ।୦୮।
ଜରେଲ୍, ମହରେଲ୍, କୁତ୍‌ରି, ଚିଙ୍ଗରି ବଡ଼’ ଠାନୁ ସୁରୁ
ଡ଼ଢ଼େଁଇ, ଭଦ୍‌ରି, ବଏଁରି କେନ୍ ଛିଟ୍‌କିନିଆଁ ଧାରେଁ ଠୁରୁ ।୦୯।
ପାଏନ୍ ଛାଡ଼୍‌ବାର୍ ନାଁ ନାଇଁ ଘାଉଁ ଘାଏକେ ବଢୁଛେ
ଦୁଲ୍‌କି ଫୁଟା ରଚ୍‌କା ବର୍‌ଷା ଚାଏର୍ ଆଁଗୁଲ୍ ମାଏଟ୍ ଛିଡୁଛେ ।୧୦।
ଦୁର୍‌ବଲିଆ କାଁଥି ମାନେ ଧଁସ୍‌କି ବିଦ୍‌ରି ଯାଉଛନ୍
ବସା ଛାଡ଼ନ୍ ନାଇଁ ଚରେ ଯାହିଁର୍‌ଟା ତାହିଁ ରହୁଛନ୍ ।୧୧।

ଗାଏ ଦାମୁର୍ କେନକେ ଯିବେ ବନ୍ଧା ରହିଛନ୍ ଗୁହାଲେଁ
କିଏ ଉଲିଁ ଦିଏ ବେଁଟ୍ ମୁଡ଼େ ତ କିଏ ଭୁରତାଏ ପୁଆଲେଁ ।୧୨।
କିଏ ବଲୁଛେ କାଲହିର୍ ସଁଜେଁ ଗଛ୍ ଚଢୁଥିଲା ନାଗ୍ ଟେ
ଜନା ପରୁଥିଲା ହେବା ଏନ୍‌ତା ବଏଡ୍ ଝଁକେର୍ ପାଗ୍ ଟେ ।୧୩।
କେ କହୁଛେ ରାତି ଯାକ ଡ଼ାକୁଥିଲା ପି' ଛଲ୍ ଛଲ୍
ସଁଜୁଁ ସକାଲ୍ ହଦ୍‌ରି ନାଇଁ ବିଜୁ ମଲ୍‌କେ ମଲ୍‌ମଲ୍ ।୧୪।
ବର୍‌ଷା ଅଗବାର୍ ସହି ହେତା ବୁହେ ହୁରୁହୁରିଆ ପବନ୍
ହଲେଇ ଝୁଲେଇ ଦିହ୍ ମୁଡ଼୍‌କେ ଦୁହୁଲେଇ ଦିଏ ଜୀବନ୍ ।୧୫।
ବଁଧନ୍ ମଝିକେ ପଟା ପରିଛେ ଅଲ୍‌ଗା ହଇ ନାଇଁ
ଏକ ଧରିଆ ପାଏନ୍ ଆଇଛେ ମୁଡ଼ା ଭିତର୍‌କେ ଧାଇଁ ।୧୬।
ବଏଡ୍ ପକାବା କେ ଜାନିଛେ ପାଏନ୍ ଆଉଛେ ମୁଡ଼ାକେ
ମୁଡ଼ା ଭରି ଆସିଥିଲାନ କାଲ୍‌ହିର୍ ବେଲ୍ ବୁଡ଼ାକେ ।୧୭।
ରାଏତ୍ ସରତା ଆଇଛେ ପାଏନ୍ ହେଲାନ ଆସି ବେଲା
ବର୍‌ଷାର୍ ଲାଗି ପଟା ହେଲେଁ କେ'ନ ଅଲ୍‌ଗାଇ ହେଲା ।୧୮।
ମୁଡ଼ା କଲାନ ଟିପ୍ ଟିପ୍ ଭଙ୍ଗାଏଁ ନେ ଭଙ୍ଗାଏଁ ହଉଛେ
ବାଙ୍ଗର୍ ବାଙ୍ଗର୍ ଠାନ୍ ଦେଖି ଉଛ୍‌ଲି ଉଛ୍‌ଲି ଯାଉଛେ ।୧୯।
ପାଏନ୍ ବୁଲୁଛେ ମୁଡ଼ା ଭଙ୍ଗେଇ ଗାଁ ଉହୁଲେଇ ଭାଗ୍‌ମି
ମୁଇଁ କାଏଁ ମାନେ ବଁଧା ଛନ୍ଦା ଯାହିର୍‌ଟା ତାହିଁ ଲାଗ୍‌ମି ।୨୦।
ଗାଆଁକେ ଯେନ୍ ମୁଡ଼ା ନୂଆ ଜୀବନ୍ ଥିଲା ଦେଇ
ସେ ମୁଡ଼ା ଆଏଜ୍ ସେ ଜୀବନ୍‌କେ ବୁନ୍ଧୁ ଦେବା ଦାଇ ।୨୧।
ଗୁଟେ ଜିନିଷ ସମିୟା ଜାନି ଜନ୍‌କୁଁ ହେଲେଁ ଭଲ୍
ସେ ସମିୟା ସେ ଜନ୍‌କୁଁ ତାହାକେ କରସି ଶଲ୍ ।୨୨।
ଛେଲ୍ ମେଡାଲ୍ ଗାଁ ସାରାକେ ଗାଁଏଁ ରଖି ବସେଇ
ଯମ୍ ଜଗିଛେ ବାଟ୍ ମୁହୁଁ ନ ମୁଡ଼ାକେ କରି କସେଇ ।୨୩।
ଗାଁ ସାରା ଉଟୁସ୍ ପୁଟୁସ୍ ପାଏନ୍ ନୈ ମୁହେଁ କାହାରି
କାଁ ଉପେ ଭାଏଲ୍ କେ କର୍‌ତା ଘରୁ ହେଲେଁ ତ ବାହାରି ।୨୪।
ଶଶିର୍ ଡ଼ାକେଁ ଗାଁର୍ ପିଲେ ଚଉଭୁଜୀ ନ ଜମା
ତାକର୍ ତାକର୍ ଗୁଡା ଉଚାର୍ କା'ଣା କେନ୍ତା କରମା ।୨୫।

ଯେନ୍ ଛନାଦୁକ ନଲିଆ ନିକେ ଯାଇଥିଲେ ଫିରିଛନ୍
କାଣା ବଲବେ ସେମାନେ ଯେ ଶୁନ୍‌ବେ ବାକି ଘେରିଛନ୍ ।୨୬।
ଉଦା ସରସର୍ କପଡ଼ା ଦିହୁଁ ପାଏନ୍ ପରୁଛେ ଥିପି
ନିରାଶ୍ ଭାବଟେ ମୁହୁଁ ଭର୍ ଭର୍ ହଇଯାଇଛେ ଲିପି ।୨୭।
ଶଶି ଆସି କହେଲା ନଲିଆ ଠାନୁ ଆଉଛେଁ ଇ'ଛନ୍
ଆଜିର୍ ପାଏନ୍ ଆକାଭୁତ୍ ଆର୍ ଧୁକା ଅକଥନ୍ ।୨୮।
ବଁଧନ୍ ଉପରେଁ ହାତେ ଅଧେ ପାଏନ୍ ଅନାଧୁନ୍ ଭାଗୁଛେ
ଭଟା ଠାନୁ କଲି ନୁହେ ପଟା ନୁ କେତେ ଡ଼େଗୁଛେ ।୨୯।
ପଟା ହିଟାବାର୍ ଲାଗି ପାଏନ୍ ଭିତ୍‌ରେଁ ବୁଡ଼୍‌ଲେଁ ଯାଇ
ବୁଡ଼୍‌ଲେଁ ନାଇଁ ଠହରି ହଏ ଆନ୍‌ବା ଉହୁଲାଇ ।୩୦।
ଛାଟି ଦୁଇ ଖଣ୍ ବାଁଧିଲେଁ ନଲିଆର୍ ଇ'ତରା ସେ'ତରା
ବୁଡ଼ି ହିଟେଇ ହେତା ହାତେଁ ରଶି ଥିଲେଁ ଧରା ।୩୧।
ଗାଆଁ ଟାକର୍ ଭାଏଗ୍ ଧରି ପଟା ରହିଛେ ଯେଁତି
ପଟା ରହେଲେଁ ଗାଁଟା ଯିବା, ରହେବା ଗଲେଁ ହିଟି ।୩୨।
"ଯାହା କରବାର୍ ଅଛେ ଆମେ କଲେଁ ଯାଇ ତୁରତି
ନେଡ଼୍‌ହେଲେଁ ଚିହ୍ନା ବନା ବି ହରେଇ ବସ୍‌ବା ଗାଁ ଧରତୀ" ।୩୩।
ମୁଡ଼ା ଉଛ୍‌ଲି ଗାଁ ଖୁଲି ଥିଁ ବହେଲା ନ ପାଏନ୍ ପାଦେ
ଶଶିର୍ ମୁଡ଼େଁ ପଶ୍‌ଲା 'ମୁଡ଼ା ଭଙ୍ଗଉ ନାଇଁ ଇହାଦେ' ।୩୪।
ବେଁଧିରା ବସିଗଲା ଘାଏକେଁ ଲାଗ୍‌ଲା ତାଲୁ ତେତେଲ୍
ପଟା କେନ୍ତେଇ ହିଟା ହେବା ମନ୍ ଟା ସତୀ ଉତେଲ୍ ।୩୫।
ଶଶିର୍ ଆଖିଁ ଗାଁ ବାସୀ ସବ୍ ପାନି ଯାଉଛନ୍ ଭାସି
ଗାଏ ଦାମୁର୍ ବିଲେଇ କୁକୁର୍ ଛେଲ୍, ମେଢ଼ି, ଖସି ।୩୬।
ପୁଷ୍‌ଲା ପାରା ମାନେ ପାନିର୍ ଉପ୍‌ରେଁ ଉପ୍‌ରେଁ ଉଡୁଛନ୍
ଛୁଆ ପୁତା ବୁଢ଼ା ବୁଢ଼ୀ ଅପାରୁ ମାନେ ରଡୁଛନ୍ ।୩୭।
କାଁଥି ପରୁଛନ୍ ରଙ୍ଖୋ ରଙ୍ଖୋ ଘର୍ ଯାଉଛନ୍ ଧସ୍‌କି
ଉପର୍ ଛାଦନ୍ ପରେଁ ନେ ପରେଁ ପାଟି ହଉଛନ୍ ମସ୍‌କି ।୩୮।
ଯାହିଁ ଯେନ୍ତା ପାର୍‌ଲା ଲୁକେ ନିଜର୍ ଜିନିଷ୍ ସଁଭାଲୁଛନ୍
ନାଇଁ ପାର୍‌ବାର୍ ଯେନ୍ ମାନେ ଗାଲେଁ ହାତ୍ ଦେଇ ଭାଲୁଛନ ।୩୯।

ନୁନୀ ଘରେଁ ତ କିହେ ନାଇଁନ ଯାହାକୁଁ ଯାଇଛନ୍ ସଁପି
ସେମାନେ ବିଚ୍‌ରେ ନିଜର୍ ଥିତି ନ ନିକେଁ ଯାଉଛନ୍ କଁପି ।୪୦।
ନୁନୀ ଘରର୍ ସାମାନ୍ ମାନେ ଉହୁଲି ବିହିଲି ଯାଉଛନ୍
ଉପଲିବାର୍ ଜିନିଷ୍ ମାନେ ପାନିର୍ ସୁରେଁ ଧାଉଁଛନ୍ ।୪୧।
ସବୁ ଜିନିଷର ପାଶେଁ ପାଶେଁ ନୁନୀର୍ ଚେହେରା ଦିଶୁଛେ
ଶଶିକେ ଦେଖି ଗୁଟେ କେରେଁ ବିରଝାଲା ବାଗିର୍ ହଁସୁଛେ ।୪୨।
ଗାଆଁ ସାରା ଯେନ୍ ଆଡ୍‌କେ ଦେଖି ଆନୁଛେ ଶଶି
ସବୁଠାନେ ନୁନୀ ଠିଆଡ୍ ମୁହେଁ ଅଲପର୍ ହଁସି ।୪୩।
ଉପ୍‌ରେଁ ଦେଖ୍‌ଲା ଉଡ଼ି ବୁଲୁଛେ ସବୁ ଆଡ୍‌କେ ନୁନୀ
ଶଶିକେ ଦେଖି ଖିଆଲ୍ କରେ ଆକୁଲ୍ ବିକୁଲ୍ ଶୁନି ।୪୪।
ଟେଁକର୍ ଗୁଡ଼ାଟେ ମୁଁଡ଼େ ଆନି କେ ଦେଲା କାଏଁ ଉଜ୍‌ରାଇ
ମୁଡ଼ି ଅଷାଡ଼ର୍ କଏରୀ ବେଲୁ ଗୁହୁଡ଼େ ଦେଲା ବିଗ୍‌ରାଇ ।୪୫।
ଚେତା ଚଏତନ୍ ହଜ୍‌ଲା ଶଶିର୍ ଜଖା ଲେଖେଁ ଲାଗ୍‌ଲା
ହର୍‌ବରେଇ ନଲିଆ ଆଡ୍‌କେ ହୁରମୁଖିଆ ଭାଗ୍‌ଲା ।୪୬।
ତା'ର ପଛେଁ ପିଲା ବୁଢ଼ା ପଛେଁ ସିଆନ୍ ସୁଜନ୍
ଗାଁ ଠାନୁ ନଲିଆ ତକ୍ ଧାଡ଼ି ଧରି ନେଇଛନ୍ ।୪୭।
ତାକର୍ ପଛେଁ ଲାଗି ଯାଇଛନ୍ ଗାଆଁର ଟୁକେଲ ମାଏଝି
ପାର୍ନିର୍ ଉରହେଁ ବୁଢ଼ା ବୁଢ଼ୀ ଗାଁଏଁ ରହେଲେ ଅଲଝି ।୪୮।
ଜନ୍ ଚାର୍‌କର୍ ସାଙ୍ଗେଁ ଶଶି ପାନି ହେଲା ଝଁପେଇ
"ଗରାମ୍‌ପତି କେ ଜେ" ଶବଦ୍ ଠାନ୍‌କେ ଦେଲା କଁପେଇ ।୪୯।
ଆଗ୍‌ତିରିଆ ପିଲେ ଆସି ବାନ୍ଧି ନେଇଛନ୍ ରଶି
ତାହାକେ ଧରି ବୁଡ଼ି ଦେଖୁଛନ୍ ପାଏନ୍ ଭିତ୍‌ରେଁ ପଶି ।୫୦।
ଶଶିର୍ ହାତ୍‌କେଁ ରଶି ଆର୍ ହାତେଁ ସଜର୍ ଶାବଲ
ବୁଡ଼ି ପଟା ଟାଡ଼ି ଦେଖୁଛେ ଯେତ୍‌କି ଅଛେ ବଲ୍ ।୫୧।
ଗୁଟେ ହାତର୍ ବଲେଁ କାଏଁ ଠାନ୍ ଛାଡ଼୍‌ତା ପଟା
ସୋଜ୍ ଖଁଜା ପଟା ତଲେଁ କିଏ ଲଗାଇଛେ କାଏଁ ଅଠା ? ।୫୨।
ସାଙ୍ଗର୍ ପିଲେ ବି ବୁଡ଼ି ବୁଡ଼ି ଟାଡ଼ି ଦେଖୁଛନ୍ ପଟାକେ
ଭିତ୍‌ରେଁ କେତେ ବଲ୍ ଲାଗୁଛେ କେ'ନ ଦିଶୁଛେ ଭଟା କେ ।୫୩।

ବୁଡ଼ି ଉପ୍‌କି ପିଲା ମାନେ ହଇ ଗଲେନ ଅଥା
ଠୁଡ଼ି ମାନେ ହର୍କି ଯାଉଛେ ବେବ୍‌ଲଉଛେ କଥା ।୫୪।
ଶଁଖ୍-ସେଥୁଆ ଦେହେ ମାନେ ଆଁଏଖ୍ ବରମ୍ ଲାଲ୍
ଅଛେ କି ନାଁଇ ଜାନି ନୁହେ ସପ୍‌ଟି ଯାଉଛେ ବାଲ୍ ।୫୫।
ଥର୍ ଚାରେ ତକ୍ ବୁଡ଼ି ଉପ୍‌କି ଶଶି ଭାବ୍‌ଲା ମନେ
"ଇଥିଁ ପଟା ଟକ୍ ନାଇଁ ଟଲେ ଥିବା ତାର୍ ଠାନେ" ।୫୬।
"ଗୁଟେ ହାତେଁ ଶାବଲ୍ ଧରି ଆର ହାତେଁ ରଶି
ବଫୁ କେନ ହେବା ପଟା ଟାଡ଼୍‌ଲେଁ ଯେତେ କଷି ।୫୭।
ଘାଉଁ ଘାଏକେ ବେଲ୍ ଯାଉଛେ ମୁଡ଼ା ଯାଉଛେ ଉଛ୍‌ଳି
ଦୁହି ହାତେଁ ଟାଡ଼୍‌ମି ପଟା ଯିମି ପଛେ ପିଛ୍‌ଲି" ।୫୮।
ଭାବିଁ ବୁଡ଼୍‌ଲା ଟାଡ଼୍‌ଲା ପଟା, ଧାରେଁ ଗଲା ପଲେଇ
ଶଶି ଗଲା ପଟା ସାଙ୍ଗେଁ ସମ୍‌କର ଜୀବ୍‌ନ୍ ହଲେଇ ।୫୯।
ତଳେଁ 'ହାତୀ' ପଖନ୍ ପାଏନ୍ ହଉଛେ କଚ୍‌ରେଇ
ଭଉଁରୀ ଖେଲେଁ କେତେ ତଲୁଁ ମାଏଟ୍ ଆନୁଛେ ଇଁଚ୍‌ରେଇ ।୬୦।
ଶଶି କେନ୍‌କେ ଗଲା ? ଲୋକ୍ ଇଆଡ଼୍ ସେ ଆଡ଼୍ ଖୁଜୁଛନ୍
ଅଜନା ଡ଼ର୍‌ହେଁ ସର୍‌ମିଁ ସଁକରି ଆଏଁଖ୍ କାନ୍‌କେ ମୁଜୁଛନ୍ ।୬୧।
ହାତୀ ପଖନ୍ ତକ୍ ସଭେ ଦେଖୁଛନ୍ ତେହେଁଗୁଁ ଗଲା କାହିଁ ?
କେନ୍‌କେ ଗଲା ବଲେ ଧୁକା ଡ଼ାକି ସାଇଁ ସାଇଁ ।୬୨।
ନଲିଆର୍ ପାନି ବର୍‌ଷାର୍ ବୁନ୍ଦା ପଡ଼େ ଟପର୍ ଟାପର୍
ଭିତରେଁ ଭାଏଲ୍ ଥିବା କହେ, ନୁରି ଦେଖୁଛେ ଉପର୍ ।୬୩।
ଭଉଁରୀ ପାଶେଁ କିନ୍ଦ୍‌ରି କିନ୍ଦ୍‌ରି ଫେଫଲ୍ ମୁଡ଼ାମୁଡ଼ା
ନୁରି ଦେଖୁଛନ୍ ନାଇଁ ଡ଼ରି ପାଏନ୍ ଟୁଡ଼ା ବୁଡ଼ା ।୬୪।
ଡ଼ାହି ପଖ୍‌ରା ଗଛ୍ ଖୁଁଟ୍ ଉହ୍ଲି ଉହ୍ଲି ଆସୁଛନ୍
ଭିତ୍‌ରେଁ ଥିବା ବଲିଁ କାଏଁ ପାଏନ୍ ହନ୍ଦ୍‌ଲେଇ ପଶୁଛନ୍ ।୬୫।
ଗାଁ ଟା ଯାକର୍ ଛାତି ଧକ୍ ଧକ୍ ଆଁଖେ ଲେଖା ଲହ
କାହାରିର୍ ମୁହେଁ କଥା ନାଇଁ ଗହ ଗହ ନାଇଁ ଜହ ।୬୬।
ନଲିଆ ଖଁଡ଼ି ତଲୁଁ ତଲ୍‌କେ ଲୋକ୍ ଗଲେନ ଲାଗି
କିଏ ନୁରୁଛେ ପାଖେଁ କିଏ ଦୂର୍‌କେ ଯାଉଛେ ଭାଗି ।୬୭।

ଟିକେ ତଳେଁ ଦେଖିଲେ ପଡ଼ି କରପନ୍ ଟାକେଁ ଶଶି
ବାହାରି ନାଇଁ ପାର୍‌ବାର୍ ଦୁଇ ସଁଧାଲି ଟାକେଁ ପଶି ।୬୮।
ଦୁଇ ଚାଏର୍ ଜନ୍ ପଶିଗଲେ ଶଶି ଆଏ ବଲିଁ ଜାନି
ଯେତ୍‌କି ପାର୍‌ଲେ ସେତ୍‌କି ତୁର୍‌ତି ପାନିନୁଁ ଆନ୍‌ଲେ ଛାନି ।୬୯।
ବଁଧନ୍ ପାଶ୍‌କେ ଆନି ଟିକେ ସମ୍ ମେତାଲ୍ ଠାନେ
ଶୁଆଇ କଲେ ଉପେ ଟକର୍ ଥିବା ବଲିଁ ଜାନେ ।୭୦।
ମେଲା ଦିହେଁ ଗୁରେଇ ନେଇଛନ୍ ପିଲେ ଅଙ୍ଗ୍‌ଛି ଦୁଇଟା
ଦେହ୍ ମୁଡ୍ ଯାକର୍ ଲହୁ ସର୍‌ସର୍ ବରନ୍ ଅଗ୍‌ବା ସିଠା ।୭୧।
ସଏଦ୍ କାହାକେ ଦେଖିଲା ମେତାଲ ଆଏଁଖ୍ ଦୁଇଟା ଦେଖେ
ହଁସ୍‌ଲା ହଁସ୍‌ଲା ଓଠ୍, ମୁହଁ କଥା କହେଲା ଲେଖେଁ ।୭୨।
ଗୁଁଡ୍ଁ ହଇଛନ୍ ଗାଁ ଟା ସାରା କହନ୍ "ଦେଖ ଦେଖରେ
ଜୀବନ୍ ଅଛେ ବାଗିର୍ ଲାଗ୍‌ସି ଦେଖିଲେଁ ରୂପରେଖରେ" ।୭୩।
"ଯେନ୍‌ମାନେ ଜାନ୍‌ସ ଘାଏ ଦେଖ ହେଲେଁ ନାଡ଼ୀ
ଶଶି ନୁହେ ଗାଁ ଟା ଯାକର୍ ଜୀବନ୍ ଯାଉଛେ ଛାଡ଼ି ।୭୪।
ଶଶି ପଡ଼ିଛେ ଛାଟ୍ ହଇ ନାଇଁନ ଟିକେ ହଲ୍‌ଚଲ୍
ଜନା ନାଇଁ ପରେ ମର୍‌ବାର୍ ଆଗୁଁ ହେଲା ଲେଖେଁ କଲ୍‌ବଲ୍ ।୭୫।
ଗରେଲ୍ ପରେଁ ଚରେ ନାଇଁ ଥିବାର୍ ଖୁର୍‌ଡ଼ିଆ ଗୁଡ଼ାଟେ
ହାଏଁଡ୍ ସରାଥିଁ ଅଲ୍‌ଗାଲା କେନ ପାଏନ୍ ନୈ ଥିବାର ଘଡ଼ାଟେ ।୭୬।
ଗାଁ ସାରାକେ ଜୀବନ୍ ଦେଇ ଈ ଜୀବନ୍‌ଟା ପଲେଇଛେ
କାନ୍ଦ ବୁବାଲିର୍ ସମୁଦର କେ ଗାଁ ଟାକୁ ଆଏଜ୍ ପେଲ୍‌ହେଇଛେ ।୭୭।
ତବଧି ସଭେ ଜବଦ୍ ମୁହଁ ଆଁଖୁଁ ନିଥିରେ ପାଏନ୍
ସେ ଲୋକ୍ ବାକ୍ ସେ ଗାଁ ଭୁଇଁ ନାଏନ ଖାଲି ଚଏନ୍ ।୭୮।
ଧୂବେନ୍ ଚରେର୍ ସୁରେଁ ହେଁକେଇ ହେଁକେଇ କାନ୍ଦେ ଗାଁ
ଝୁର୍‌କୁଣ୍ଡୁ ଥିଁ ଝୁରି କୁଁ ଥାଏ ଚରେ କେ ଜାନ୍‌ଏ ନାଆଁ ।୭୯।
ସମ୍‌କର ମୁହେଁ ହାଏ ! ହାଏଁ ! ସମ୍‌କର୍ ମନ୍ କଦ୍‌ରିଯ୍
ଏତ୍‌କି ବେଲେଁ ସମ୍‌କୁଁ ଘାଏ କରିନେଇ କରି ଆଶ୍‌ରିଯ୍ ।୮୦।
ପଛେଁ ପଛେଁ ରବି ଆଗୋ ଆଗୋ ଆସେ ନୂନୀ
ପଛେଁ ଚାର୍ ହିଁ ବୁଢ଼ା ବୁଢ଼ୀ ଦୂରୁଁ ହଉଛେ ଚିହ୍ନି ।୮୧।

ରବି ଜାନି ଶଶି ନୂନୀ ଦୁହିଁକର୍ ମନ୍ ଭିତର୍
ଗାଁକେ ଆସି ଦୁହିଁକର୍ କଲ୍‌ପନା କର୍‌ବା ସତର୍ ।୮୨।
ସଭେ ଉଷତ୍ ନୂନୀ କେ ଦେବା ରବି ଶଶିର ହାତେଁ ।୮୩।
ଶଶିର୍ ସାଙ୍ଗେଁ ଦିହି ଭିନ୍ ଭିନ୍ ଜୀବନ୍ ହେବା ଗୁଟେ
ନୂଆଁ ଆଶାନ ନୂନୀର୍ ମନ୍ ସରଗ୍ ସୁଖ୍ ଲୁଟେ ।୮୪।
ଗାଁକେ ଆସି ଶୁନଲେ ଯାହା ଘଟି ଯାଇଛେ କଥା
କାଏଁ ଅଟ୍‌କିତେ ଗାଁଏଁ ଆଉର୍ କାହିଁର୍ ଅଥାବିଥା ।୮୫।
ସେ ସର୍‌ଲଗ୍ ନଲିଆ ଖଏଣ୍‌କେ ଆସି ହେଲେ ଠିଆ
ଦମ୍ ଧରିକେ ରହେତା କାହାର୍ ଥିଲା ହେନ୍ତା ହିଆ ।୮୬।
ବୁଢ଼ାବୁଢ଼ୀ ଗୁଲ୍‌ଗୁଲା ସୁଲ୍‌ସୁଲା ହଇ କାନ୍ଦ୍‌ଲେ
ପାଆଁଲି ଥିବାର୍ ଆଶା-ନର୍‌ଜା ପର୍ଛା କରି ଚୁନ୍ଦ୍‌ଲେ ।୮୭।
ରବିର୍ ଆଖିଁ ନାଇଁ ବୁହିବାର୍ ପାଏନ୍ ଶଶିର୍ ଲାଗି
ମମତା ଛାଡ଼ି ସେ ହଇ ଯାଇଛେ କେଭ୍ରୁଁ ତ ବଏରାଗୀ ।୮୮।
ମାତର୍‌କ ନୂନୀର୍ ଆଖିଁ କେନ୍ତା ଲହ ନାଏଁନ ଥିପେ
କେନ୍ ଅଠା ନ ଫଟା ହୁରୁଦ୍ କେ କେନ୍ତା ଦମେ ଲିପେ ।୮୯।
ପାଶେଁ ଥିଲା ଧୋବ୍ ଚର୍‌ଚର୍ କୁରେ ଫୁଲର୍ ଗୁଛା
ତୁଲି ଆନ୍‌ଲା ହାତ୍ ପାହାଁତିଆ ଥିଲା ନେି ଥାଇ ଉଚା ।୯୦।
ଫୁଲ୍ ଗୁଛାକେ ଶଶିର୍ ପାଦେଁ ଯତନ୍ କରି ଚଢ଼ାଇ
ମୁଡ଼୍ ଥୁଇଲା ପାଦେଁ, ମୁଡ଼୍‌କେ ପନତ୍ ଟାକ ଉଢ଼ାଇ ।୯୧।
ମନେ ମନେ କହେଲା "ଦୁଇଟା ଜୀବନ୍ ମିଶି ଯୋର୍
ଈ ଖଏଣ୍ ତ ତୋର୍ ଥିଲା, ଆର୍ ଖଏଣ ଟା ମୋର୍" ।୯୨।
ରବି କହେଲା ହାତ୍ ଯୁଡ଼ି କରି "ବିନ୍‌ତି ଗୁଟେ ମୋର୍
ଗାଁ ଲାଗିଁ ଯେ ଜୀବନ୍ ଦେଲା ତାହାକେ ରଖ୍‌ମା ସୋର୍ ।୯୩।
ଈ ଗାଁର୍ ନାଁ ଆଜ୍‌ହୁଁ ହେବା ଶଶିଭୁଷଣ୍ ପୁର
ଇୟେ ରହେବା ଜାଇଁ କାଲର ଦଉଡ଼ ଯେତେ ଦୂର ।୯୪।
ଈ ଗାଁର୍ ଗଛେଁ ପତ୍‌ରେଁ ବାଏଲ୍ ଧୁଏଲ୍ ଠାନୁ
ସବୁ ନ ସେ ଥିବା ଆମେ ମାନୁ ନାଇଁ ମାନୁ ।୯୫।

ରବି କହେଲା ନିଜର୍ ନିଜର୍ ମନ୍ ଭିତର୍ କେ ସାଜ
ଶଶିର୍ ପୁତ୍ଲା ଥିଇଁ ବୁଦ୍ଧି ବିବେକ୍ ରୈତି ମାଜ ।୯୬।
ଶଶି ଥିବା ସବୁ ଠାନେ ନାଇଁ ଦେଖିଲେଁ ହେଲେଁ
ଗାଁର୍ ଲାଗି କିଏ କାଁ କରୁଛେ ଦେଖିବା କଲେଁ କଲେଁ ।୯୭।
ଛୁଆ ନୁ ବୁଢ଼ା ଯାହା ଥିଲେ ଶଶିର୍ ଆଡ଼୍କେ ଦେଖି
ହାତ୍ ମାନ୍କୁଁ ଯୁଡ଼ି ଯୁଡ଼ି ମୁଡ଼୍କେ ଦେଲେ ଟେକି ।୯୮।
ଶଶିର୍ ମାଁ' ବା' କାନ୍ଦି କାନ୍ଦି କୋଡ଼୍ କେ ନେଲେ ନୁନୀ କେ
"ଏନ୍ତା ପୁଓ ରତନ୍ ପାଇ ଆମର୍ ଠାନୁ ଧନୀ କେ ?" ।୯୯।
ନୁନୀ କେ କହେଲେଁ "ବହ ନୁହୁ ମାଁ ! ଇ ଗାଁ ମାଁର୍ ମାଁ ଆଉ
ଗାଁଟା ଯାକର୍ ଦେଖି ରେଖି କର୍ ଗରାମ୍ପତିର୍ ଦୟା ଥାଉ" ।୧୦୦।
ଏଛ୍ନି ପରେ ବି ନଳିଆ ଖଁଡ଼ି ବୁଲୁଥିସି ଶଶି
ନୁନୀ ଗଲେଁ ଛିନା ଦେଖି ହେସନ୍ ହଁସା ହଁସି ।୧୦୧।

୧୯୨୬ ସାଲ୍ ଏପ୍ରିଲ ୨୦ ତାରିଖ ବରଗଡ଼ ଜିଲ୍ଲା, ସୋହେଲା ଥାନାର୍ ଗର୍ଭନା ଗାଁନେ ହେମଚନ୍ଦ୍ର ଆଚାର୍ଯ୍ୟଙ୍କର ଜନମ୍ । ସରକାରୀ ନଉକିରୀ ଛାଡ଼ିକରି ୧୯୬୭ ମସୀହାଥୁଁ ସେ ସମାଜ୍‌ସେବା ଆଉର୍ ସାହିତ୍ୟ ସାଧନାକେ ଜୀବନର୍ ବରତ ବଲି ଧରିନେଇଛନ୍ । ମାନକ୍ ଓଡ଼ିଆ ଭାଷା ଆଉର୍ ଆଂଚଳିକ୍ ସମ୍ବଲପୁରୀ ଭାଷାଥୁଁ ଆଚାର୍ଯ୍ୟ ଆଗ୍ୟାଁ ଗୁଡ଼୍‌ଦୁଟେ ବହି ଲିଖିଛନ୍, ଲିଖୁଛନ୍ ଭି । ସାହିତ୍ୟ ସାଧନାର୍ ଲାଗି ଅନେକ ସାହିତ୍ୟିକ୍-ସାଂସ୍କୃତିକ୍ ଅନୁଷ୍ଠାନ ତରଫନୁ ତାହାକୁଁ ସମ୍ମାନିତ କରାଯାଉଛେ, ପୁରସ୍କାର ଭି ଦିଆଯାଉଛେ । ୧୯୯୯ ମସୀହାର୍ ପ୍ରତିଷ୍ଠା ଦିବସ୍‌ନେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତରଫ୍‌ନୁ ହେମଚନ୍ଦ୍ର ଆଚାର୍ଯ୍ୟ ସମ୍ବର୍ଦ୍ଧିତ ହେଇଛନ୍ ।

ସମ୍ବଲପୁରୀ ଥୁଁ କଥାନୀ, ପ୍ରବନ୍ଧ, କାବ୍ୟ. ଲଳିତ ନିବନ୍ଧ, ନାଟକ୍, ଇତ୍ୟାଦି ଲେଖିଛନ୍ । ଲୁକ୍‌କର୍ ସମସ୍ୟାକେ ଭି ନେଇକରି ସୁନ୍ଦର୍ ଭାବେଁ ଖବର୍ କାଗଜ୍ ମାନ୍‌କେଁ ପ୍ରକାଶ କରିଛନ୍ ।

ତାଁକର୍ ସବୁଥୁଁ ବଡ଼୍ କବାର୍ ରାମ୍-ରାହା । ସମ୍ବଲ୍‌ପୁରୀ ନୁ ରାମାୟଣକେ କାବ୍ୟ ଆକାରେ ଲେଖିଛନ୍, ଯେନ୍‌ଟାକି ସମ୍ବଲପୁର ବିଶ୍ୱବିଦ୍ୟାଳୟ ଛପେଇକରି ପ୍ରକାଶ କରିଛନ୍ ।

ମହାଷ୍ଟମୀ

ତା.୨୧.୧୦.୨୦୦୪

# ଗାଏଲେଁ ବୁଝ୍‌ବ

୧

## ହେ ରାମ୍

ପୁଥି ପୁରାନ୍ ପୁର୍ନା ପଡ଼୍‌ସି, ତୁଇଁ ସବୁଦିନ ନୂଆଁଟେ
କଁଟି ନେ ହେବାର ଦରିଆ ତୁଇଁ ଅଁଟି ଯିବାର୍ ମୁଇଁ ଚୁଆଁଟେ। (୧)
ଭାବ-ରସର ତୁଇଁ ବରକଷ ରସି ଛିଡ଼ି ଯିବାର୍ ମୁଇଁ ଦୁଆଁଟେ,
ମାହାପୁରୁ ତୁଇଁ ମହାନ୍ ମେରୁ ମୁଇଁ ଅଗବାର ଚିଆଁଟେ। (୨)
(ମୁଇଁ) ଟୁକରା କାଗଜର ଅର୍ଜବା ଲେଖା, ତୁଇଁ ଅପଢ଼ ଆର ଅଲେଖ
କେନ ଦମହେଁ ମୁଇଁ କହେମି ଦୁହେ ଅଭିନ ଆଉର ଏକ। (୩)
ଡାଲଟେ ପଡ଼ଲେଁ ଫାଲଟେ ଗରଜେ ତୁଇଁ ମହାଘୋର ଝାର
ଏକଲା ଏକଲା ଛାଡ଼ି ନେସୁ ଜେ ମୁଇଁ ଯିମି କେନ ପାର? (୪)
କାଣା ମାଗମି ସବୁତ ଦେଇଛୁ ଡରହେଁ ଡରହେଁ ମୁଇଁ ଡାଙ୍ଗ
କିଛି ନାଇଁ ଦେଲେଁ ଭିଲ୍ ଚଲବା ଦେବୁହେଲେଁ ଟିକେ ସାଙ୍ଗ। (୫)
ସାଙ୍ଗ୍ ଛଡ଼ା କରି କାଏଁ ମଜା ତୁଇଁ ପାଏସୁ କହ ରାମ !
କିଛି ନାଇଁ ଦେଲେ ଭିଲ ଚଲମି ସୁରେଁ ଥାଉ ତୋର ନାମ। (୬)



୨

## ମହାପୁରୁ ଛନେ ଠହର

ମହାପୁରୁ ଛନେ ଠହର ମୁଇଁ ବନ୍‌ଏ କରି ଦେଖେଁ ନୁହେଁ
କେନ୍ ଚେହେରା କେତେ ବେଲେଁ ଭୁଲିହେବା ଭାଏଲ୍ ଭୁଲେଁ ଭୁଲେଁ
ଯାହା ଭି ଦେଖିଛେଁ ଆତ୍ମା ଭିତ୍‌ରେଁ (ମୁଇଁ) ବନ୍‌ଏ କରି ଲେଖେଁ ନୁହେ। (୦)

ରାମ୍ ବୁଲୁଥିଲେ ଝାର୍‌କେ ଝାର୍
ମୁଣ୍ଡେଁ ଥିଲା ଜଟାର୍ ଭାର୍
ମନେ ଥିଲା ଚିନ୍ତା (ହୋ) କାହାର୍ ଭକ୍ତି କେନ୍‌ତା
ଶବ୍‌ରୀ କେ ଯାଇ ବଏଲେ ମତେ, ଭୋକ୍ କରୁଛେ କେତ୍‌ନି କେତେ
ଶବ୍‌ରୀ ଆନ୍‌ଲା ଫଲ୍, (ହୋ) ବାଛି ଭଲ୍ ଭଲ୍
ଖାଏଲା ବେଲ୍‌କେ ବଏଲା ରହ
ଭଲ୍ ଅସାର୍ ବାଛେଁ ନୁହେଁ କସା-ମଧୁର୍ ଚାଖେଁ ନୁହେ। (୧)
ଗଙ୍ଗାର୍ ଭିତ୍‌ରେଁ ଡଙ୍ଗା ଧରି ନାଉରୀ ବୁଢ଼ା ବଏଲା ହରି
ତୋର୍ ପାଦର୍ ଧୁଏଲ୍ (ହୋ) ଖୁଆବା ମତେ ଗୁଏଲ୍
ମାଏଝୀ ଯଦି କୁଣ୍‌ଲୀ ହେବା ବେ'ଷା ମୋର୍ ଭୁଷ୍‌ଲି ଯିବା
ଦେଖା ଟିକେ ତୋର୍ ପାହା (ହୋ) ଧୁଇଧୁଆ ନେସିଁ ବୁଆ
ଧୁଇସାରି ବସ୍‌ଲା ବେଲ୍‌କେ ବଏଲା ରହ, ପୁଛେଁ ନୁହେ,
(ଆଉର୍) ବନେ କରି ଦେଖେଁ ନୁହେ, (ତୋର୍) ରୂପ୍ ଅମୃତ୍ ଡୁକେଁ ନୁହେ। (୨)



୩

## ଯାହା ହଇ ଗଲେ ହେବା

ଯାହା ହଇ ଗଲେଁ ହେଇଯିବା ପଛେ ନାଇଁ ଛାଡ୍ଢେଁ ମୁଇଁ ରାମ୍‌କେ
କିଏ ପଠାବା ବନ୍‌କେ ମୁଇଁ ଦେଖମି ସେ ହାରାମ୍ କେ। (୦)
ବଡ୍ ହେଇ କରି ଜନମ୍ ହେଇଛେ ନାଇଁ ହେତା କାଏଁ ରଜା
ନାଇଁ ଖାଇକରି ରହେବା କେନ୍ତା ପେଡା ମିଠେଇ ଖଜା
କେନ୍ତା ଢ଼ଙ୍ଗେ ଖାଏବା ବନେ କସା କେନ୍ଦୁ ଆମ୍‌କେ ରେ କାମ୍ କେ। (୧)
ରାମର୍ ବାଗିର୍ ପିଲା ଗୁଟେ ସଭେ ଜାକିର୍ ନୁର
ତାର୍ ସର୍‌ସିଆ ଯେତ୍‌କି ଅଛନ୍ ଗୁଟେ ଗୁଟେ ଜରି ଜୁଲ
ତାର୍ ଲାଗି ତିଆର୍ ଅଛେଁ ଦେବାର୍‌କେ ମୋର୍ କାନ୍‌ଜେ ରେ ପ୍ରାଣ୍ କେ। (୨)



## ୪

## ତତେ କେନ୍ ନାଆଁଥି ଡାକ୍‌ମି

ତତେ କେନ୍ ନାଆଁଥି ଡାକ୍‌ମି
ତୋର୍‌ତ ନାଆଁ ଯେତେ ତେତେ
ତୁଇଁତ ଗୁଟେ ଠାନର୍ ନୁହୁ କେ'ନ ନୁର୍‌ମି ଯାଇ ତତେ । (୦)
ତେଜ୍ ସାଗରୁ ପାଏଲେଁ ତୁଏ ଜଲ୍‌ସନ୍ ଜନ୍ ବେଲ୍ କୁଏ
ତାର୍ ଆଗ୍‌ମୁଣ୍ଡେଁ କେନ୍ ଆଲ୍‌ତି ବାଡ଼ମି କହ କେତେ । (୧)
ଯାର୍ ନିଶାସୁଁ ବେଦର୍ କନମ୍ ତାର୍ ଆଗ ମୁଣ୍ଡେଁ କେନ୍ ଭକନ୍
କେନ୍ ଭାଷାଥିଁ କେନ୍ତା କରି ପଢ଼ମି
ଯାର୍ ପେଟେଁ ହକାର୍ ହକାର୍ ଜଗତ୍ ଯାକର୍ ବସେ ବକାର୍
ତାର୍ ଲାଗି ଫେର୍ କେନ୍ ପର୍‌ସାଦ୍ ବାଢ଼ମି କହ କେତେ । (୨)
ଭକ୍ତି ଟିକେ ଥିଲେ ମିଶି ମାଏନ୍ ବେଭାର୍ ଅଏନ୍ ଲାଗ୍‌ସି
ସେଟା ହେଲେଁ, ତୁଇଁ ନାଇଁ ହେଲେଁ କେନୁ ପାଏଁମି
ତୋର୍ ଭାବ୍‌କେ ହେତେଇ ଦେଲେଁ, ତୋର୍ ଗୀତ୍‌କେ ବତେଇ ଦେଲେଁ
ତୋର୍ ହଇ କରି ମୁଇଁ ସିନେ ଖାଲି ଗାଏମି
ତୋର୍ ମୋର୍ ପରାଭେଦ୍ ନାଇନ ପରେ କହେସି ବେଦ୍
କେତେ ବେଲେଁ ଧାଏ ସେ ଭାବେଁ ହାଏ ଭସେଇ ନେବୁ ମତେ । (୩)

❖❖❖

## ୫

## ରାମ୍‌ଭି ନେଇଁ କହିପାରେ ରାମ୍ ନାମର୍ ମହେମା

ରାମ୍ ଭି ନେଇଁ କହିପାରେ ରାମ୍ ନାମ୍‌ର ମହେମା
ତୁଇଁ ମୁଇଁ କି ଆଉର୍ କିଏ କେତେ କରି କହେମା । (୦)
ଉଲ୍‌ଟେଇ କରି ନାମ୍ କେ ଧରି ଡାକୁ ରତ୍‌ନାକର୍
ସାମେନ୍ ନୁହେ ରାମେଣ୍ ଲେଖି ମନ୍ ମୋହେ ସମ୍‌କର୍
ରାମ୍‌କେ ପାଇ ରାମର୍ ନାରୀ ନାଇଁ ଯାଇ କରି ଜନକ୍‌ପୁରୀ
ରାମ୍‌ନାମ୍ ଧରି ଆଇଛୁ ମା ଆ ଏକା ସାଙ୍ଗେଁ ରହେମା । (୧)
ରାମ୍‌କେ ପାଇ ରାବଣର୍ ଭାଇ ମାହାର୍ସାଦ୍ ବସି ନେଲା

ଲଙ୍କା ରାଇଜର୍ ରାଜଗାଦୀ ଲୁଭେଁ ଠକେଁ ପଡ଼ିଗଲା
ରାବାଣର୍ ମନେ ରାମର୍ ଡର୍ ରାମ୍‌ରାମ୍ ବଲେ ଅଠିପର୍
ଯାହା ପାଏଲା କାହାର୍ ଭାଏଗ୍ ଆମେ କେନୁ କେଭେଁ ପାଏମା
ସେଥିଲାଗି ଭାଇ ଆସ ସଭେ ରାମ୍ ରାମ୍ ଗାଏମା । (୨)



୬

## ମାହାପୁରୁ ହୋ ମୁଇଁ ମହାନ୍ ମୁରୁଖ ଡାକୁଛେଁ

ମାହାପୁରୁ ହୋ ମୁଇଁ ମହାନ୍ ମୁରୁଖ ଡାକୁଛେଁ
ଜପ୍ ତପ୍ ଗିଆନ୍ ଧିଆନ୍ ଦାନ୍ ପୁଇନ୍ ବେଦପୁରାଣ୍
ନାଇଁ ଜାନେ କିଛି ଛି ଛି ଖାଲି ହିନ୍ ଭାବେଁ ଦିନ୍ କାଟୁଛେଁ । (୦)
କେନ୍ ଜାନ୍‌ମି ଯେନ୍ ରକ୍‌ମେ ଡାକ୍‌ଲେ ହରିଣ୍ ହାତୀ
ବୃନ୍ଦାବନେ ଗୋପୀ ଅଶୋକ୍ ବନେ ସୀତା ସତୀ
ଦୂରୁ ଥାଇ କରି ଦୁର୍‌ପଦୀ ବାଗିର୍ ଡାକି ନାଇଁ ଜାନେ ଜାନୁଛେଁ । (୧)
ଖେଲି ଖାଏବାର୍ ବଏସେଁ ଡାକ୍‌ଲେ ଧ୍ରୁବ ଆଉର୍ ପ୍ରହଲ୍ଲାଦ
ପିଲାହେଲେଁ ବି ଥିଲା ତୁମର୍ ତାକର୍ ଲାଗି ଆହାଲ୍ଲାଦ
ସେ ଛାଡ଼ିଥିଲେ ରାଜ୍ ମହଲ୍, ମୋର୍ କୁରିଆ ନାଇଁ ଛାଡୁଛେଁ । (୨)
ମୋର୍ ଲାଗି ମୁଇଁ କିଛି ନାଇଁ ମାଗେଁ ଯାହାଇଛା ତୁଇଁ କର୍
ତୋର୍ ସୃଷ୍ଟି ଉପରେଁ ଦୃଷ୍ଟି ଥାଉ ଗୁଲ୍‌ଗୁଲା ନାଇଁ ଭର୍
ସମ୍‌କର୍ ଦୁଃଖ୍ ମତେ ଦେଇ ସମ୍‌କୁ ଉସଦ୍ ରଖ୍, ଇଟା ମାଗୁଛେଁ । (୩)



୭

## କାମ୍ କର କାମ୍ କର

କାମ୍ କର କାମ୍ କର କାମ୍ କର ଭାଇ କାମ୍ କର
କାମ୍ କର୍‌ବାର୍ ନାମ୍ ଭଗ୍‌ବାନ୍ କାମ୍ କରି ତାର୍ ନାମ୍ କର । (୦)
ହାତ୍ ଦେଇଛେ ଜଗନ୍ନାଥ୍ ସାଙ୍ଗେଁ ଦେଇଛେ ଗୋଡ୍
ଚ଼ଲ୍‌ବାର୍ କେ'ତ ବୁଦ୍ଧି ଦେଇଛେ ନାଇଁ ହୁଅ କାମ୍‌ଚୋର୍
କାମେଁ କିଅଁ କାମେଁ ମର କାମେଁ କାମେଁ ଆରାମ୍ କର । (୧)
ଅକର୍ମା ଯେତେ ଅଧର୍ମା ବଲିଁ ତାର୍ କଲ୍‌ମେ ଲେଖା

ଭଗ୍‌ବାନ୍ ବଡ଼େ ବୁଦ୍ଧିମାନ୍ ବିନା କାମେଁ ନାଇଁ ଦିଏ ଦେଖା
ତିରିଥ୍ କରି କି ବରତ୍ କର ଆଉର୍ ଭାଏଲ୍ ଚାରି ଧାମ୍ କର। (୨)
କାମ୍ କଲେଁ ପାଏବୁ ମତେ ଇଟା ମାହାପୁରୁ କଥା
ପୁରାନ୍ କହ, କି କୁରାନ୍ କହ, କହ ଭାଏଲ୍ ତାହାକେ ଗୀତା
ମାହାପୁରୁ ପାଏବାର୍ କାମ୍‌କେ, ଗନ୍‌ଲେଁ କାମ୍‌କର୍‌ବାର୍‌ନ ରାମ୍ କର। (୩)
କାମର୍ ଠାନ୍ ତାର୍ ପୂଜା ବେଦୀ କାମର୍ ଫଲ୍ ତାର୍ ଭୋଗ୍
କାମ୍ ସିଦ୍ଧିର୍ ଯେତେ ଉପେ ଚକର୍ ତାହାକେ ପାଏବାର୍ ଯୋଗ୍
ସବୁ କାମର୍‌ତ ମାଲିକ୍ ସେ ନିକ୍‌କେ ଟିକେ ସାନ୍ କର୍। (୪)



## ୮

## ମୁଇଁ କାଏଁ ଗୀତ୍ ଗାଏମି

ମୁଇଁ କାଏଁ ଗୀତ୍ ଗାଏମି ଆହା
ତୁମେ ମତେ କହେସ ସିନେ ତୁଇଁ ଗା ତୁଇଁ ଗାଆ। (୦)
ତୁମେ ନୁହେ ଶୁନ ଥରେ ଯାହାର୍ ଗୀତେଁ ଅମୃତ୍ ଝରେ
ଶୁନ୍‌ଲେଁ କେଭେଁ ବଲ୍‌ବ ପରେ ବାକି ଗୀତ୍ ମାହାଲିଆ। (୧)
ଶୁନ୍‌ବାର୍‌କେ ସେ ଗୀତ୍ ଟପେ ଦିନ୍‌ରାଏତ୍ କେତେ ଜପେ
ପାଏବାର୍‌କେ ସେ ଅମ୍‌ରୁତ୍ ଥିପେ ଫୁଲ୍ ଫୁଟେ ଖୁଲିଁ ହିଆ
ସେ ଝରା ଅମରତ୍ ବୁନ୍ଦେ ପାଏବାର୍ ଲାଗି କେତେ କାନ୍ଦେ
ଦେଖ ମହୁମାଛି ବନ୍‌ଏ କରି ହୁଏ ବାଉଲିଆ। (୧)
ସେ ଗୀତର୍ ତାଲେଁ ତାଲେଁ ଆମ୍ ଗଛର୍ ଡାଲେଁ ଡାଲେଁ
ନାଚେ ଦେଖ ଗେଲେଁ ଗେଲେଁ ଟିହା ସାଙ୍ଗେ କୁମ୍ଭାଟିଆ
ସେ ଗୀତର୍ ସୁରେଁ ସୁରେଁ ଆମ୍‌କୁଁ ରଖି ଦୂରେଁ ଦୂରେଁ
ତାର୍ ମନେ କୁରେଁ କୁରେଁ କୁଇଲି ଧରେ ପାଲିଆ। (୨)
ସେ ମହାନ୍ ଗୀତ୍ କେ ଶୁନି କେତେ କେତେ ଋଷି ମୁନୀ
ପାର୍‌ଲେଁ ଟପେ ଅଧେ ଛିନିଁ ଲେଖ୍‌ସନ୍ ସଙ୍ଗୀତ୍ ଶୁଲ୍‌କ ତୁହା
ତୁମେ ଥରେ ଶୁନି ଦେଖ, ମନର୍ କିଭେଁ ପକେଇ ଚାଖ
ପାର୍‌ଲେଁ ଭିତ୍‌ରେଁ ବାହାରେଁ ମାଖ ଜୀବନ୍ ହେବା ସୁଆଦିଆ। (୩)



୯

## ଭାଇ ଶୁନ୍‌ରେ

ଭାଇ ଶୁନ୍‌ରେ.........ଏ ଭାଇ ଶୁନ୍‌ରେ
ତୋର୍ ମନ୍ ଖେତେଁ ଗିଆନ୍ ବିହାନ୍ ବୁନ୍‌ରେ । (୦)
ବୁଦ୍ଧି ଆଉର୍ ବଲ୍ କରିପକା ହଲ୍
ବିବେକ୍ ଅଛେ ଢେରା ନଙ୍ଗଲ୍ ଯୁତ୍ କରି ଧୁମ୍‌ରେ । (୧)
ରାଗ୍ ରିଶ୍ମୀ ପାପ୍ ଲଟା କର୍ ସାଫ୍
ଲୋଭ୍ ଝରା ପଡ୍‌ବା ଧରା ବଦ୍‌ଲା ଭକ୍ତି କଲା ବିନ୍ଧ୍‌ରେ । (୨)
ସତ୍ ପାଏନ୍‌କେ ବୁଲା, ନେଇଁ ମରେନ ଇ ପିଲା
କଞ୍ଜାଲ୍ ଭାରି ହେବା ଖୁଆରି ବିରାଗ୍ କଁଟା ଲାଠ୍‌ଦୁ ଗୁଂଧ୍‌ରେ । (୩)
ତହୁଁ ମୁକ୍ତିର୍ ଫଲ୍ ଫଲ୍‌ବା ପର୍‌ବଲ୍,
ଆନ୍‌ଲେଁ ଦାଇ ଜାନ୍‌ଲେ ଖାଇ, ସାଙ୍ଗେଁ ନାଇଁ ଲାଗେନ ନୁନ୍‌ରେ । (୪)

❖❖❖

୧୦

## ସରଗ୍ ନାଇଁ ଯାଏଁ

ସରଗ୍ ନାଇଁ ଯାଏଁ ଚଉବରଗ୍ ନାଇଁ ଚାହେଁ ମୁଇଁ ମାହାପୁରୁ
ତୋର୍ ପାଦର୍ ଏକା ପାଏଲେଁ ଦେଖା ପାଶୁଁ ହଉ ଭାଏଲ୍ ଦୂରୁଁ । (୦)
ଯେନ୍ ପାଦ୍‌କେ ଛିଇ କରି ପଥର ହଇଗଲା ନାରୀ, (ହୋ) ମୁରାରୀ
ସେ ପାଦେଁ ଫେର୍ କାଲୀ ନାଗର୍ ବିଷ ହେଲା ଗାଲି
ଆଉର୍ ଚାପି ହେଲା ବଳୀ ପରେ, ବନ୍‌ମାଲୀ
ସେ ପାଦ୍‌କେ କିଏ କହେବା ସରଗ୍ ଠାନୁ ସୁରୁ । (୧)
ମତେ ଯଦି କିଏ କହେବା ତୁଇଁ ତିନ୍ ଭୁବନେ ହଇ ଗଲୁନ ରଜା
ତୁଇଁ ଯାହା ଚାହେଁବୁ ତାହା ହେବା ଖାଲି ହୁକୁମ୍ ବଜା, ହୋ ମହାରାଜା
ତୋର୍ ପାଦ୍‌କେ ଛାଡି ସେ ରାଜ୍‌ପଦ୍‌କେ ବିପଦ୍‌କେ ମୁଇଁ
ଜାହିଁ ମୁଡ଼ାମି କହେଲେଁ ଭି ମୋର୍ ଗୁରୁ । (୨)
ମତେ ଯଦି କିଏ ସଁପିନିଏ ସବୁ ତପିସାର୍ ସିଧି
ତାର୍ ସାଙ୍ଗେ ଯଦି ଗଦେଇ ନିଏ ଦୁନିଆଁ ଯାକର୍ ନିଧି, ହୋ ଦୟାନିଧି
ନିଧି ସିଧି ସବୁ ତଉଲେଁ ଯଦି ମୁଇଁ ଦୁର୍‌ବୁଦ୍ଧି
(ତୋର୍) ପାଦର୍ ବାଏଲ୍ ଟାକେ ତ ପୁରୁ । (୩)

❖❖❖

## ୧୧

## କେତେ ଲୁକା ଲୁକୁଛୁ

କେତେ ଲୁକା ଲୁକୁଛୁ ତୁଇଁ ମତେ ବଏଲେଁ ଭଗ୍‌ବାନ୍ ତତେ ନେଇଁ ନୁରେଁ ବିଲ୍‌କୁଲ୍
ଲୁକି ଲୁକି ସବୁଠାରେ ଅଛୁ ବଲିଁ କାଏଁ ନାଇ ଜାନେଁ
କାଏଁ କରି ଘାଏ କରିଯିମିଁ ଫେର ଏଡ୍ଡେ ଭୁଲ । (୦)
କାଏଲ ଯେତେବେଳେଁ ଛୁଆ ଥିଲି ମୁଇଁ ଖେଲୁ ଥିଲି ବସି ବାଏଲ୍
ତୋର୍ ଥିବାର୍ ନେ ଥିବାର୍ ଜାନ୍‌ବାର୍ ଦର୍‌କାର୍ ନାଇଁ ପଡ଼ି ଥାଇଁ ତାଏଲ୍
ବେଲ୍ ବୁଡ୍ଡେଁ ଉଦେ ଜନ୍ ଦେଖୁଥିଲିଁ ତତେ ମନ୍‌କେ ମନ୍
ଆଉର୍ ଦେଖେଁ ଆକାଶ ସାରା ଫୁଟେ ଯେଭେଁ ତାରା ଫୁଲ୍ । (୧)
ଆଏଜ୍ ସୁର୍‌ଷୋନ୍ନୁଁ ସୁରୁ ବୀକା ଗୁଟେ ଥିଁ ଗଛ ଦେଖେଁ ମହାମେରୁ
ଗଛେଁ ଗଛେଁ ପତର୍ ତୁଇଁ ସେ ପତ୍‌ରେଁ ପତ୍‌ରେଁ ପହଁରୁ
ଯେତେ ଯେତେ ଯାଉ ଲୁକି ଦେଖେଁ ନାଇଁ ପାରୁ ଠକି
ଦେଖି ପକାଲାନ କାଏଁ ବଲିଁ ପତରୁଁ ହଁସୁ ମୁଲ୍ ମୁଲ୍ । (୨)



## ୧୨

## ତୁଇଁ ଭଲେଁଥା ଭଗ୍‌ବାନ୍

ତୁଇଁ ଭଲେଁ ଥା ଭଗ୍‌ବାନ୍, ମୁଇଁ ପଛେ ଯାଏସିଁ ଦୁଃଖେଁ ମରି
ମୋର୍ ଭିତ୍‌ରେଁ ପରେ ତୁଇଁ ଅଛୁ ନିଜ୍‌କେ ନିଜେଁ ବଅଁଚା କେନ୍ତା କରି । (୦)
କେତେ ଦୁଃଖର୍ ପଶରା ବାଢ଼ିଛୁ ସଂସାରେ ତୁଇଁ ଭିତ ଦେଖୁଥିବୁ
ମୋର୍ ବାଗିର୍ କାହାକେ ଶସ୍ତା ଗରାଖ୍‌ଟେ ଦୁଃଖର୍ ହାଟେଁ କାଏଁ ଭେଟ୍‌ବୁ
ଦୁଃଖ୍ ଦର୍ଦ୍ ତୁଇଁ ଯାହାଭି ଦଉଛୁ ସବୁ ନଉଛେଁ ଖାଲି ତୋର୍ ନାଁ ଧରି । (୧)
ଯେତେ ଦୁଃଖ ସବୁ ଦେଇପକା ତୁଇଁ ନାଇଁ, କରେଁ କଭେଁ ମନା
ବଲ୍‌ଦେ ସେତ୍‌କି ଦୁଃଖର୍ ବାଟେଁ ଯେନ୍‌ତା ନାଇଁ ହେମିଁ କେଭେଁ ବନା
ବିନା ହାକେଁ ଯଦି ବନା ହେମି କେଭେଁ ତତେ ଭି ଦେମି ପାଶ୍‌ରି । (୨)
ଯେତେ ଦୁଃଖ ଦେଉଛୁ ଦିନ୍ନୁଁ ଦିନ୍‌କେ ସେଟାହୁଏ ଅନୁଅତ୍ୟାଚାର୍
ତୋର୍ ଦିଆ ଦୁଃଖେଁ ଯଦି ଏତେ ଲୋଭ୍, ମତେ କାଁ କରି ଅଛୁ ଆବ୍‌ରି । (୩)



## ୧୩

## ଚଟ୍ଟୁ ଜାନି ଚକେଲ୍

ଚଟ୍ଟୁ ଜାନି ଚକେଲ୍ ଆଉର୍ ଜାଲ୍ ଜାନି ଜୁଏ
ମନ୍ ଜାନି କରି ମାହାପୁରୁ ସିନେ ରକମ୍ ରକମ୍ ହୁଏ । (୦)
ଭିତର୍ କର୍‌ବୁ ଯେତ୍‌କି ଉପାର୍ ଯେତ୍‌କି କର୍‌ବୁ ଲମ୍
ଠିକ୍ ସେତ୍‌କି ମାହାପୁରୁ ତୋର୍ ଜହ ନୁହେ କି କମ୍
ଯିଏ ବଲ୍‌ସି ବାହିର୍ ମାହାପୁରୁ ତାହାର୍ ଲାଗି ନୁହେ । (୧)
ଯେତ୍‌କି ଉପର୍ ଉଡିପାରେ ଇ ମନର୍ ଚରେ
ସେତ୍‌କି ଆକାର୍ ଦେଖି ମାହାପୁରୁ ଆପେଁ ଆପେଁ ଫିରେ
ଦିହିପିଞ୍ଜରେଁ ବାନ୍ଧି ରଖ୍‌ଲେଁ ଦେହର୍ କଁଟେ ଥୁଏ । (୨)
ଫଟିକ୍ ଦିଶ୍‌ବା ମାହାପୁରୁ ତୋର୍ ମନ୍ ଦର୍ପନ୍ ମାଜ୍
ମଏଲା ଥିଲେଁ ତତେ ଯାହା ଲାଗୁ ତାହାକେ ଲାଗ୍‌ସି ଲାଜ୍
ଲୁକି ଛପି କରି ଯାହା କର୍‌ସୁ ତୋର୍ ପଛେଁ ଥାଇ ଜୁହେ । (୩)



## ୧୪

## ଚାଲୁଛେ ରେ

ଚାଲୁଛେ ରେ............
ମୋର୍ ଜୀବନ୍ ଶଗଡ୍ ଗଡ଼ି ଗଡ଼ି ଧୀରେ ଧୀରେ ଚାଲୁଛେ
ଭିତିରି ବଲଦ୍ ବୁଧିମଲିଆ ବାହାରିଆ ମନ୍ ମଲ୍‌ମଲିଆ
ବିନ୍ ବାଡ଼ିଥିଁ ବିବେଦ୍ ହଲିଆ, ଗାଲେଁ ହାତ୍ ଦେଇ ଭାଲୁଛେ
ଖାଲ୍ ଢ଼ିପ୍ ଇ ଦୁନିଆଁ ଧର୍‌ସା ପାଁଣେ ଅନ୍ତରେଁ ସାହା ଭର୍‌ସା
କିହେ କାହିଁ ନାଇଁ ହୋ ମିଛର୍ ଭାଇ ଦାଇ
ବନ୍ଧୁ ବାନ୍ଧବ୍ ମିତ୍ ମଏତର୍ ଶୁଭର୍ ପରୁଆ ଦୁଃଖେଁ ଅନ୍ତର୍
ସୁଖର୍ ସଙ୍ଗୀତ୍ ସହି ହୋ ଦୁଃଖେଁ ମାର୍‌ସନ୍ ହାଇ
କାଦୋପିଛଲ୍ ଥିଁ ଢ଼ଲେଁ ଗାଡି କିଏ କେନ୍ନୁ ଆସି ଠେଲୁଛେ । (୧)
ବାଦ୍ ବିବାଦର୍ କାଦୋ ପାଏନ୍ ନାଇଁ ରଖେ ଇ ଗାଡିର୍ ମାଏନ୍

କାହିଁ ଗାଡି ଯାଏ ବୁଡି, କାହିଁ ବୁଢେ ହଲିଆର୍ ଠୁଁଡି
ଲୋଭ୍ ଲାଲ୍‌ଚର୍ ଡୁବା ନଲିଆ କାଁ କର୍‌ବା ହେଲେଁ ହଲିଆ
ଛେକିଁ ଦେଖ୍‌ଲେଁ ଗାଡି ତାର୍ ଆଗେଁ ଯାଏସି ମାଡି
ଛତା ମାର୍‌ବାର୍ ବଡ୍‌ରେଁ ବଡ୍‌ରେଁ ଚକା ଦୁଇଟା ଢୁଲୁଛେ । (୨)
ଗାଡି ଭିତ୍‌ରୁଁ ଲେହେଁଟି କରି ଦେଖ୍‌ଲିଁ ମୋର୍ ଗାଡିର୍ ଧୁରି
କାର୍ ପାଦର୍ ଚିହ୍ନା ମତେ କଲା ତନା ବନା
ଗୋଡ୍ ନାଇଁ ଦିଶେ ପଡୁଛେ ପାହା ଢ଼ଁଡା ଧରିଛେ ଦିଶେ ନାଇଁ ବାହା
ଏକ୍‌ଲା ଭାବି ସିନା (ସୋଜ୍) ହେଲିଁ ଘଁଟା ସନା
ମୋର୍ ନକର୍ କେ ନାଇଁ ପାଏ ସିନା ତାର୍ ନକର୍‌ଟା ବୁଲୁଛେ । (୩)



## ୧୫
## ଯେ ଯେନ୍ତା ଭାବ ଭାଇ

ଯେ ଯେନ୍ତା ଭାବ ଭାଇ.........ମନା ନାଇଁ
ଭାବ୍‌ସି ମୁଇଁ ଇ ସଂସାର୍‌ଟା ପଏର୍‌ଛା ଗୁଟେ ହାଟ୍ ଥାଏ
ବାଟ୍‌ଟା ଇତାର୍ ବଁକାଟେଁକା ନାଇଁ ଜାନ୍‌ଲା ଲୁକ୍‌କୁଁ ଏକା
ଯେ ଜାନ୍‌ସି ଚାଲି ଖାଲି ତାର୍ ଲାଗିଁ ଛାଟ୍‌ଆଏ (୦)
କେ ଆଇଛୁଁ ବିକି ଆଉର୍ କେ ଆଇଛୁଁ ଘିନି
ଜନେ ଲୋକ୍‌କେ ବନେ ମିଲ୍‌ସି ପାର୍‌ଲେ ଏକା ଚିହ୍ନି
ଯେ ପଡସି ଠକେଁ ଯାହାର୍ ଭିତର୍ ନିଦା କାଠ ଆଏ (୧)
ଅସାର୍ ଜିନିଷ୍ ଲୁଭ୍ ଲୁଭାନି, ଦରଛପ୍ ଆଏ ବନ୍ଏ
ଗୁହୁଡ଼ା ଗୁହୁଡ଼ା ଲୁକେଁ ଚିହ୍ନେ ଭଲୁଁ ଭଲା ଝନଏ, ଚି଼ହ୍ନା ଲୋକ୍‌କେ ସେଟା
ସତ୍ ବାଜି ସବୁ ନାଟ୍ ଆଏ । (୨)
ଛନେ ହଁସ୍‌ଲେ ବନେ ଘାଏ ଦଲ୍‌ବୁ ମଲିଁ ମଲିଁ
ଭିଡ୍ ଭିତ୍‌ରେଁ ନୁରୁଥିବୁ କେନ୍‌ଟା ଯିବାର୍ ବାଟ୍ ଆଏ । (୩)



## ୧୬
## ମତେ ବନ୍ଏ ଲାଗ୍ସି ମୋର୍ ଗାଆଁରେ

ମତେ ବନ୍ଏ ଲାଗ୍ସି ମୋର୍ ଗାଆଁରେ,
ଛପା ଅଖ୍ରେଁ ନାଇଁ ଥାଉ ପଛେ, କାହିଁ ହେଲେଁ ତାର୍ ନାଁ ରେ। (୦)
ଇନର୍ ମୁନୁଷ୍ ପିଲେ ଯାହା ଅଛନ୍ ଅଜା କକା ଭାଏ
ଆପଦ୍ ଆଏଲେଁ ଦଉଡ଼ି ଆଏସନ୍ ଡକା ନାଇଁ ଲାଗେ ଘାଏ
ମାଏଝି ଟୁକେଲ୍ ଯାହା ଅଛନ୍ ସଭେ ବହେନ୍ ମାଆଁରେ। (୧)
ଇନ ଲାଲ୍ ଚହ ଚହ ବେଲ୍ ଉଦ୍ସି ବୁଡ୍ସି ହଁସି କରି
ଡଙ୍ଗର୍ ମେତାଲ୍ ମହଲ୍ ନାଇଁନ ଦେବା ପୁତାକେ ଘେରି
ବିନ୍ ଧୁକ୍ନାର୍ ଧୁକା ଆଏସି ଦିନ୍ ରାଏତ୍ ବଁ ବାଁ ରେ। (୨)
ଇନର୍ ଗାଁ ଭୂଇଁ ଡୁଡ଼ା ନଲିଆ ଝାର୍ପତରା ବନ୍ଏ
ଘୁଲି କଁକ୍ରା ଗୁଏ ଗୁନ୍ଚା ଦେସନ୍ ଚାହେଁଲେ ଝନ୍ଏ
କବାର୍ କଲେଁ ଯାହାକେ ଯେତେ ଧାନ୍ ଗୁନକି ସୁଆଁରେ। (୩)
ଅଛୁଁ ପିନେ ଦଶ୍ କୁରିଆ ଗୁଟେ ଜୀବନ ଏକା
ଆଲ୍ମାଲ୍ ଝନେ ମରିଗଲେଁ ସମ୍କୁଁ ଲାଗେ ଦକା
ସମ୍କର୍ ସକ୍ ହେଲେଁ ଯାଇ ଦିନ୍କେଁ ଖାଏସୁଁ ନୂଆଁରେ। (୪)



## ୧୭
## ସୁରୁ ସୁରୁ କୁରିଆ

ସୁରୁ ସୁରୁ କୁରିଆ ଉପରେଁ ଦୁରା ଦୁରା ପୁଆଲ୍
କେନ୍ଟା କାହାର୍ ରନ୍ଧା ଘର୍ କାହାର୍ ଭାଏଲ୍ ଗୁହାଲ୍। (୦)
କେନ୍ ଛାଏନ୍ଥିଁ ଲମି ଯାଇଛେ ଲାଉ ମାଖନ୍ ଲହ
କେନ୍ ଛାନି ନୂଆଁ ଖପ୍ରା ଦୁରା ଲାଲ୍ ଚହଚହ
କେନ୍ ଛାଏନ୍ କେ ଆବ୍ରି ନେଇଛେ ବୁରୋ ଗଛର୍ ଛାଏ
କେନ୍ ଛାନି ବାଜେ ମୁନ ଗା ଗଛର୍ ଡାଲ୍ ଘାଏ ଘାଏ
କେନ୍ ଛାନି ବସି ପରୁଆ ଦୁଇଟା ହେସନ୍ ଲାଡ୍ ଖିଆଲ୍। (୧)
କେନ୍ ଛାଏନ୍ ଭାଏଲ୍ ଛିନା ହଇଛେ ନାଇନ ପୁଆଲ୍ ମୁଠେ
କେନ୍ ଖାଲି ବେତା ହଇଛେ ବତା ଗୁଟେ ଗୁଟେ

କେନ୍ କାଁଥି ଧସ୍‌କି ଯାଇଛେ ମସ୍‌କି ନେଇଛେ ପାଟି
କେନ୍ ଖାଲି କନା ଦୁଇଟା ତୁପା ହଇଛେ ମାଟି
କେନ୍ ଆଉର୍ ବାଆରି ନୁହେ ଘର୍ ଆଏକି ଦୁଆର୍ । (୨)
ଗାଁ ମୁଁଡେ ଫେର୍ ମୁଡ୍ ଟେକିଛେ ବଡ଼େ ପକା ମହଲା
ଗାଁ ସାରା ସବୁ ସାଁଖ୍‌ଲିହଇ ସେଠାନେ ଯାଇ ରହେଲା
କୁରିଆ ଯେତ୍‌କି ଉକରି ଯାଉଛେ ମହଲା ସେତ୍‌କି ଉଚା
ମହଲା ଯେତ୍‌କି ଭର୍‌ତି ହଉଛେ କୁରିଆ ସେତ୍‌କି ଛୁଛା
କେତେ ଦିନ୍ ଇ କୁରିଆ ମହଲାର୍ ଲାଗ୍‌ବା କବାବ୍ ସୁଆଲ୍ । (୩)



## ୧୮
## ଆମର୍ ସେ ସୁତର୍ ଆଏ

ଆମର୍ ସେ ସୁତର୍ ଆଏ
ଉବ୍‌ରି ଥିଲେଁ ନାଏଁନ ଘାଏ । (୦)
ବୁଝିଥିଲେଁ ମହାନ୍ ସୁତର୍
କଥା କହେସି ବତ୍‌ରେଁ ବତର୍
ମାଏନ୍ ଗୁନ୍ ସବୁ ଧରି
କଥା କହେସି ହଁସି କରି
ବିର୍‌ଝି ଥିଲେଁ ପର୍‌ଝି ନେବା
ଆଡ୍ ଉଡ଼ାଲ୍ ନାଇଁ ଥାଏ । (୧)
ଛୁଆ ପୁତାର୍ ଦିହି ପାହା
ନସ୍‌ଲେ ନାଇଁ ଖିଆ ପିଆ
ବନ୍‌ଏ ଥାଇ କନ୍ଦା ବୁବା
କର୍ଲେଁ କିଏ ଦେଖେ ବୁଆ
ଭୁର୍‌ତା ସୁର୍‌ତା ନାଇଁ ଜାନେ
ବଜେଇ ନେବା ଠାଏ ଠାଏ । (୨)
ମୋର୍ ଗୋତ୍ କୁଟୁମ୍ ଯାହା
ଆଏଲେଁ ଦେସି ଲାଲି ଚାହା
ମୁହୁଁ କର୍‌ବା ଉଷ୍‌ନା ହାଁଡି
ଦେଖ୍‌ଲେଁ ଭାଗ୍‌ବ ଦିରିବ୍ ଛାଡି
ପିଠାପନା ଥିଁ ଅଘେଇ ଯିବ
ଆସିଥିଲେ ତାର୍ ଦଦା ଭାଏ । (୩)
ନାଇଁ କହେଁ ଆର୍ ଏତ୍‌କି ଥାଉ
ଶୁନୁଥିଲେଁ ମୋର୍ ଭାଏର୍ ବହୁ
ଗାଲି ଦେବା ଭାଇ ଦତିଁ କରି
ସହି ନାଇଁ ହୁଏ କହେଲେଁ ମଲିଁ
ମୁଁହ୍ ଦେଲେଁ ଇ ଦିହକ ଯାକର୍
ନାଇଁ ମାଡ୍ରେନ ମୋର୍ ଛାଏ । (୪)



## ୧୯
## ଇ ଆଡ଼େଁ ଗଲା ଦେଖିଛ କିଏ

ଇ ଆଡ଼େଁ ଗଲା ଦେଖିଛ କିଏ
ଭେଁଡ଼ା ବଇସିଆ, ଯୁବା ବଏସିଆ ପିଲାଟେ
ଡେଙ୍ଗ୍ ନୁହେ କି ବାଙ୍ଗର୍ ନୁହେ, ଗେମ୍ଠା ହଇ କଲା ଟେ। (୦)
ବାଉଁଶ ନଲାର୍ ବଏଁଶୀ ଗୁଟେ ଥିବା ଗୁଟେ ହାତେଁ
ହଲଦିଆ ରଙ୍ଗର୍ କରିଆ ଟିକେ ଗୁରେଇ ଥିବା ଅଁଟେଁ
ମୟୁର୍ ଝାଲ୍ ମୁଡର୍ ବାଲ୍ ବାନ୍ଧିଥିବା ଆଁଟେ
ଦହି ଦେଖୁଥିଲେ ଲାଲ୍ ଥିପୁଥିବା ସେଟା ପଟ୍‌ପଟ୍ ଲଲ୍‌ହାଟେ। (୧)
ସେ ରଇଖିଆ ବଡ଼େ ସଉକିଆ ମାଖି ମରିଥିବା ଚନ୍ଦନ
ବାହାର୍ ବେଶ୍ ବଡ଼େ ଅଏନ୍ ଯାହା ଥାଉ ତାର୍ ଚଲନ୍
ହାତେଁ ବାହାଟି ନୁପୁର୍ ପାହାଥିଁ ପିନ୍ଧିଥିବା କରି ଯତନ୍
ହଁସୁଥିବା ପଛେ କଥା ନାଇଁ କହେ ସେଟା ଅଗ୍‌ବାର୍ ଫୁଲ୍‌ହାଟେ। (୨)
ଧାର୍ ମୁହିଁ ଭଲ ଭୁଆଷେନ୍‌ଟେ ଅଛେ କାଏଁ ତାର୍ ସାଙ୍ଗେଁ
ପାଏନ୍ ଗଲାବାଟେ ନାଇଁ ଫିର୍‌ବାର୍ ଦିନ୍ ଦିନ୍ ଲାଗେଁ ଲାଗେଁ
ଢେଡେ ନୁର୍‌ସି କାହିଁ ମରସିଁ କହେମି ଯାଇ କାର ଆଗେଁ
କାଁ କଥା ଇଟା ଅଥା ହେଲିଁ ନୁରି ମୁଇଁତ ବୁଡ଼ୀ ମଲାଟେ (୩)



## ୨୦
## ନୁରିଁ ନୁରିଁ ନାଇଁ ନ ହାଲ୍

ନୁରିଁ ନୁରିଁ ନାଇଁ ନ ହାଲ୍ ଆଉ ନାଇଁ କର୍‌ନ ଖିଆଲ୍
ସୀତା କେନ ଅଛୁ ଲୁକି ଗୋ
ତତେ ନାଇଁ ଦେଖି ମୋର୍ ସର୍ ଯାଏ ଶୁଖି ଗୋ, ତତେ.... (୦)
ଝାର୍ କଙ୍ଗଲର୍ ବାଟ୍‌ଘାଟ୍ ବାଘ୍ ସାଁପ୍ କେତେ
ଛପି ଥିବେ ସଜ୍ ପାଏଲେଁ ଛାପ୍‌କି ନେବେ ତତେ
ତୁଇଁ ମରି ଗଲେଁ ମୁଇଁ ସରିଯିମି, ଜାନ୍ କାହିଁ ହେବା ରଖିଗୋ। (୧)

ଥୁଆ ହେଇଛେ ଅନାହେଲା ଫଲ୍ ମୁଲ୍ ଯେତେ
କିଏ ବାଣ୍ଟା କେତ୍‌ନି କେତେ ଭୋକ୍ କଲାନ ମତେ
ପିଲା ଲୋକ୍ ମୋର୍ ଲଛମନ୍‌ଟା ତାର୍ ମୁହୁଁ ଗଲାନ ଶୁଖି ଗୋ (୨)
ବାଟ୍ ନାଇଁ ଲାଗ୍‌ବା ଛିନା ଦୁଃଖ୍ ହେବା ଉନା
ଭାବି ସିନା ସାଙ୍ଗେ ତତେ ଆନିଥିଲିଁ ସୁନା
ପିଣ୍ଡୁଁ ପରାନ୍ ଯାଏସି ଉଡି (ତୋର୍) ଆଏବାର୍ ଉଛୁର୍ ଦେଖି ଗୋ । (୩)
କାଏଁ ହେଲା ଯେ ଝାଏଁ କରୁଛେ ଝାର୍ ପତ୍‌ରା ଆଜିର୍
ଡେବ୍‌ରି ଆଏଁଖ୍ ଫର୍‌କି ଉଠେ ବିପଦ୍ ପଡଲା ବାଗିର୍
ତତେ ପାଏଁମି କିନି ନାଇଁଜାନି ଆଖୁଁ ପାଏନ୍ ହଉଛେ ଗୁକି ଗୋ । (୪)



## ୨୧

## ବେଉଁତ୍ କରି ଗୁଡା ବାନ୍ଧ୍

ବେଉଁତ୍ କରି ଗୁଡା ବାନ୍ଧ୍ ଡାହୁତ୍ କରି ଗାଡି ଫାନ୍ଦ୍
ଇଁ ଗାଁର୍ ଝି ଆର ଗାଁ କେ ଯିବା ହଇ ବହ ରେ
ବାପର୍ ମୁହେଁ ପାଏନ୍ ନାଇଁ ମାଁର୍ ଆଖିଁ ଲହରେ। (୦)
ଉର୍ଜୁଲି ଆର୍ ଉକିଆ ନୁରା ତାରା ବିନୋ କୁନୋ
ଗାଁ ଖୁଲି ଆର୍ କାହାର୍ ସାଙ୍ଗେ ଖେଲ୍‌ବେ ରାତିଁ ହୁମୋ
ପରାପାଟ୍‌କ ଝାଏଁ କର୍‌ବା କିଏ ହେବା ଗହଗହ ରେ । (୧)
ପକାଲ୍ ପୁଆକେ ଗରିଆ କାଖେଁ କାଠି ଧରି ହାତେଁ
ବେଲ୍‌ବୁଡିଆ ଅଙ୍ଗ୍‌ଛି ପିନ୍ଧି କିଏ ଯିବା ବନ୍ ବାଟେଁ
ବନ୍ଧ୍ ଝୁର୍‌ବା, ଘାଟ୍ ଝୁର୍‌ବା ଝୁର୍‌ବେ ଗଛ୍ ଲହ ରେ। (୨)
ଗୁଟେ ଗାଏଁ ଜନମ୍, କରମ୍ ଦୁସ୍‌ରା ଗାଁ ଏଁ ଘରେଁ
ନିଜର୍ ଲୁକୁଁ ପର୍‌କରି, ଦିନ୍ ପର୍‌ବା ପରେଁ ପରେଁ
କୁଲ୍ ଗୋତ୍ ବି ବଦ୍‌ଲି ଯିବା ହେଟା ଚିଆସି ଜହରେ। (୩)



## ୨୨
## ଜାନି ନାଇଁ ହେଲା କି ଗନି ନାଇଁ ହେଲା

ଜାନି ନାଇଁ ହେଲା କି ଗନି ନାଇଁ ହେଲା
ସରିଗଲା, ସରିଗଲା, ସରିଗଲା, ସବୁଦିନ୍
ପିଲାଦିନ୍ ମୋର୍ ଗଲା ଖେଲେଁ, କାନ୍ଦି ବୁବାଇ ଗେଲେଁ ଗେଲେଁ
ସୋର୍ କଲେଁ ବି ଇ ବୁଢ଼ା କାଲେଁ ଲାଗ୍‌ସି ଭିନ୍ ଭିନ୍ । (୦)
ଜୁଆନ୍ ସମିୟ୍ ବୁହି ଗଲା ମୋର୍ ବଢ଼ି ପାଏନ୍ ବାଗିର୍
ରୋଜ୍ ହୁଇଗଲିଁ କେତେ ଅଥା ସୋଜ୍ କଥାର୍ ଲାଗିର୍
ଜାନି ଜାନି ଜୀବନ୍ କେ ଯାହା କଲି ଛିନ୍ ଭିନ୍ । (୧)
ବିନ୍ ପାନି ମୁଇଁ ଛତା ଧରିଁ ବାଟ୍ ଦେଲିଁ କାଟି
ବିନ୍ ଲାଭେଁ ଖାଲି ବନିଜ୍ କରି ସୋଜ୍ ମଲିଁ (ଖଟି) ଘାଁଟି
ବିନ୍ ବାଏଦେଁ ଉଖୁଲା ହୁଇଁ ନାଚ୍‌ଲି ଧିନ୍ ଧିନ୍ । (୨)
ଆଏଜ୍ କର୍‌ମି କାଏଲ୍ କର୍‌ମି ବଲି ରହେଲା କାମ୍
କାହାରି କିଛି କରି ନାଇଁ ମୁଇଁ କାହିଁ ଅଛେ ମୋର୍ ଠାନ୍
ମଲା ପରେଁ ମତେ ସୋର୍ କର୍‌ବାର୍ କାଇଛେ କିଛି ଚିହ୍ନ । (୩)



## ୨୩
## ଯାହା କହେବାର୍ ଅଛେ

ଯାହା କହେବାର୍ ଅଛେ ଡାକି କରି କହେବ ପଛେ କଲାକାହ୍ନୁ
ଆଗୋ ମୋର୍ ଗେଲ୍‌ହା କାହ୍ନୁ, ମୋର୍ କିରିଆ ନାଇଁ ବଜାବ ବଁଶୀ
ବଁଶୀ ବାଜ୍‌ଲେଁ ରହେସି କାଏଁ ମନ୍ ଘରେଁ କି ଦୁଆରେଁ ଇ ସୁଖା ସଂସାରେଁ
ଖାଲି ତୁମର୍ ଆଡ୍‌କେ ଧାଏଁସି । (୦)
ଲୋକ୍ କହେସନ୍ ପର୍ ପୁରୁଷେଁ ଯେ ଦେସି ଧିଆନ୍
ନରକ୍ ଛାଡି ତାହାକେ କାହିଁ ନାଇଁ ମିଲେନ ଠାନ୍
ତୁମେ ଯଦି ମୋର୍ ପର୍ ହେବ, କାହାକେ ନିଜର୍ ବଲ୍‌ମିଁ
ନର୍‌କେଁ ପଛେ ରହେମିଁ ଖାଲି ଘାଏ ତୁମର୍ ଦେଖା ପାଏସିଁ । (୧)

କାଏଲ୍ ହଇଥିଲା ଅନ୍ଧାର୍ ରାଏତ୍ ବର୍ଷୁ ଥିଲା ପାଏନ୍
ବିଦ୍ରୁଥିଲା କାଁଥି କୋଡ୍ ଉଛୁଲୁଥିଲା ଛାଏନ୍
ବାଜ୍‌ଲା ବଏଁଶୀ ହଜ୍‌ଲା ଜ୍ଞାନ୍ ଜାଁ କରି ଘରେଁ ରହେସିଁ
ଯାହା ହଉ ହେଲେଁ ଯାଏସିଁ, କହେଲେଁ ପଛେ ସହେସିଁ । (୨)



## ୨୪

## ନାରୀ ଜାରି ରଖିଛେ ସେ ତାର୍ ବାହାଦୁରି

ନାରୀ ଜାରି ରଖିଛେ ସେ ତାର୍ ବାହାଦୁରି
ସେ ନୁହେ ସେ କାହାରିର୍ ଭଗାରୀ । (୦)
ମହିସାସୁରର୍ ଦର୍ପେଁ ମହୀ ଯାଉଥିଲା ଥରି
କାହାରିର୍ କଲ୍‌ଜା ନାଇଁ ଥାଇଁ ତାହାକେ ଦେବା ମାରି
ସବୁ ଶକ୍ତି ଠୋଲ୍ ହଇ କରି ହେଲା ଗୁଟେ ନାରୀ
ସେ ମାଏଲା ତାହାକେ, କହେଲେ ସେ ଦୁର୍ଗା ଶଙ୍କରୀ । (୧)
ଆଗୋ ଲକ୍ଷ୍ମୀ ଗୌରୀ, ପଛେଁ ହର ପଛେଁ ହରି
ଯାହା କଲେଁ ବି କିଏ ନାଇଁ ଜାନି ସୀତା ସାବିତିରୀ
କେନ୍ତା ପୋ ଜନମ୍ କଲେ ଅଞ୍ଜନା ସୁନ୍ଦରୀ
ଇ, ମାଆ ଜାତିକେ ପୂଜା କରି କେତେ ଗଲେ ତରି । (୨)
ଭକ୍ତିମତି ମୀରାବାଇ ତାର୍ ସାଙ୍ଗେଁ ଶବରୀ
ଲକ୍ଷ୍ମୀବାଇ କେ ଦୁର୍ଗାବତୀ କେ କିଏ ଦେବା ପାଶ୍‌ରି
ଆଗର୍ କଥାକେ କହି ଜନା ଖନା ସେ ବିଚାରି
ନାରୀ ନିନ୍ଦା କଲା ଲୋକ୍ ସିନା ଆଏ ଅନାଚାରୀ । (୩)



୨୫

## ଭଏଁରା ହେଲୁ କାଏଁ ଭଗବାନ୍

ଭଏଁରା ହେଲୁ କାଏଁ ଭଗବାନ୍
ଡାକି ଡାକି ମୁଇଁ ଥକି ଗଲିନ ଜଡ଼େଇ ଗଲା କାଏଁ କାନ୍
ଘୋର୍ କର୍ଲେଁ ମୋର୍ କଥା, କାହାକେ କହେଲା ମେତାଲ୍ ନାଇଁ ଦେଉ କାନ୍। (୦)
ଆହା ତୁଇ କେତେ ଢ଼ଙ୍ଗେ କରିଛୁ ଭିଆନ୍
ଏତେ ଅଏନ୍ ଭିଆନ୍ ଭିତ୍ରେଁ ମତେ କେନ୍ତା କଲୁ ହୀନ୍‌ମାନ୍ ହୋ ଦୟାବାନ୍। (୧)
କହ ହେଲେଁ କେନ୍ କାଲେଁ କଲିଁ କାଏଁ ତୋର୍ ନୁକ୍‌ସାନ୍
ମୋର୍ ଭିତ୍ରେଁ ତୁଇଁ ପରେ ଢ଼ାଁଡ଼୍‌ବୁ ହେଲେଁ ତୁଇଁ ତତେ ହୋ, ଢ଼ାଁଡ୍ ସରବ୍‌ଜାନ୍। (୨)
ଯାହା ଦିନ୍ ଗଲା ପରେଁ ଏତ୍‌କେଁ ମୋର୍ ଆଡ୍‌କେ ଆଏଁଖ୍ ଟିକେ ଆନ୍
ବଡ୍ କଥା ତ ନାଇଁ ମାଗ୍‌ବାର୍ ଦେ ତୋର୍‌ଠାନେ ମତେ ଟିକେ ଠାନ୍
ହୋ ଦୟାବାନ୍, ସରବ୍‌ଜାନ୍। (୩)

❖❖❖

୨୬

## ଇ ମନ୍ ଭିତରେଁ ଧନ୍ ଅଛେ

ଇ ମନ୍ ଭିତ୍ରେଁ ଧନ୍ ଅଛେ ପାଏବୁ ବାବୁ ନୁରିନେ
ପହେଲା ଏକା ମଏଲା ଯାକ ପର୍‌ଛା କରି କୁରିନେ। (୦) (ଘୋଷା)
ଯେତ୍‌କି ଅଛେ ରାଗ୍ ଅହଙ୍କାର୍ ଦେଖ୍ ଆଘୋ କଁଟି
ସେତ୍‌କି ଗହେରେଁ ତୋର୍ ଧନ୍ ଟିକ୍‌କ ଘୋଜ୍ ହେଇଛେ ପାଟି
ମୁରୁଖ୍ ମନର୍ ମହାନ୍ ପଥର୍ ଭିତ୍ରେଁ ହେଇଛେ ଚୁଁଟି
ଅଲ୍‌ଗେଇ ନେଲେଁ ଖାଲି ନାଇଁ ହୁଏ ନୁନ୍ ଚୁନ୍ କରି ଚୁରିନେ। (୧)
ସେ ଧନ୍‌କେ ନେବାର୍ ଲାଗି ହଜାର୍ ହଜାର୍ ଚୋର୍
ରୋଜ୍ ଆସିଁ କସି ଘୋଜ୍ କର୍‌ସନ୍ ଗୋଲ୍
ସେ ଧନ୍‌କେ କେଭେଁ ନାଇଁ ବଲ୍‌ବୁ ମୋର୍
ବଡ୍ ଥିଲେ ଖାଲି ତୋର୍ କଁଟେ ବତ୍ରେଁ ବତ୍ରେଁ ଗୁରିନେ। (୨)
ସେ ଧନ୍ କେଭେଁ ନାଇଁ ପୁଡ଼େ ନାଇଁ ବୁଡ଼େ ଭିଲ ପାନି
ସେ ଧନ୍ ଥି ବନିଜ୍ କଲେଁ କେଭେଁ ନାଇଁ ହୁଏ ହାନି
ଗୁଟେ ଜନମେ ଥିଲେଁ ଚିହ୍ନି ଜାନି ଆଉଥରେ ଘାଏ ଦୁରିନେ। (୩)

❖❖❖

## ୨୭
## ତୁଇଁ ନାଇଁ ମାନୁ ସିନା ଗୁରି

ତୁଇଁ ନାଇଁ ମାନୁ ସିନା ଗୁରି, ଇଟା ବନେ କଥା ନୁହେ, ନୁହେଲୋ, ଇଟା...
ଯେ ତ ଯାହିର୍ ତାହିର୍ ଦରବ୍ ନୁହେ, କେଭେଁ ପରେ ଇଟା ନାଇଁ କୁହେଲୋ,
କୁହେଲୋ । (୦)
ପରର୍ ମୁନୁଷ୍ (ଆଉର୍) ପରର୍ ଜିନିଷ୍, ଦେଖ୍‌ଲେଁ ସୁନ୍ଦର୍ ଚାଖ୍‌ଲେଁ ବିଷ୍
ଜାନ୍‌ବୁ ଯେଭେ ହେଲେଁ ଛିଇବାର୍‌କେ ଗଲେଁ
ଅଗ୍‌ବାର୍ ଅଗ୍‌ବାର୍ ଅଙ୍ଗ୍ରା ଜୁଏ-ଜୁଏଲୋ-ଇଟା ବନେ କଥା । (୧)
ମନ୍ ଉଡି ଯାଏସି ଯେତ୍‌କି ଉଡାଲେଁ
କଥା ଲୁକେ କାଏଁ ଯେତ୍‌କି ଘୁଡାଲେଁ ?
ମନ୍ ଉଡେଇ କରି ମହତ୍ ବୁଡେଇ କରି
ରହେବୁ କାଏଁ ନାଇଁନ ଭୟେ, ଭୟେଲୋ, ଇଟା ବନେ କଥା । (୨)



## ୨୮
## ପର୍‌କାରେ ତୁଇଁ, ରଜା ହେଲୁନ ପରେ

ପର୍‌କାରେ ତୁଇଁ, ରଜା ହେଲୁନ ପରେ ନୁହେ ଜାନୁ ତାଏଲ୍
ତୋର୍ ନଙ୍ଗଲର୍ ଗାରେଁ କପାଲର୍ ଧାର୍ ସଲ୍‌ଖିବା କାଏଁ ଭାଏଲ୍ । (୦)
ଟୁଣେଁ ନାଇଁ କାଠି ଆର୍ ପାଏନ୍ ନାଇଁ ମୁଡେଁ ରେ ଭାଇ ପାଏନ୍ ନାଇଁ ମୁଡେଁ
ସଖାଲୁଁ ଯାଇ ଖେତ୍‌କେ ତୁଇ ଫିର୍‌ସୁ ବେଲ୍ ବୁଡେଁ
କେଭେଁ ହେଲେଁ ଜାନ୍‌ଲୁନ କାଏଁ ତତ୍‌ଲା ଭାତେଁ ଦାଏଲ୍ । (୧)
ପେଟ୍‌ଁ ଉଲ୍‌ଟି ଯେନ୍ ପଏସେଁ ମାଲ୍ ଗୁଜାରି ଗନୁରେ ଭାଇ ମାଲ୍ ଗୁଜାରି ଗନୁ
ସେ ପଏସେଁ ମଟର୍ ଘିନା ହେଟା କେନ ତୁଇ ଜାନୁ ତୁଇ ହାତ୍ ଟେକ୍‌ଲେଁ ମୁଡ୍
ହଲାସନ୍
ପାଏସୁ ଖାଲି ମଟର୍ ଉଡା ବାଏଲ୍ । (୨)



## ୨୯

## ରାମ୍ ଗଲେ ଲଛ୍‌ମନ୍ ଗଲେ

ରାମ୍ ଗଲେ ଲଛ୍‌ମନ୍ ଗଲେ ଗଲେ ସାଙ୍ଗେ ସୀତା ହୋ
ରାମ୍ ଥିବାର୍ ତକ୍ ଅଯୋଧ୍ୟା ଅଏନ୍ ରାମର୍ ବିନେ ପିତା । (୦) (ଘୋଷା)
ସରଜୂ ନଦୀ ଖୁଁଜି ଖୁଁଜି କେତେ ସହର୍ ଗାଆଁ
କେଭେଁ ହେଲେଁ କେନ୍ ପୁରାନ୍ ଥିଁ ପଢିଛେ କାଏଁ କାର୍ ନାଁ
ଜଗତପତି ଯେନ ଜନମ ନେଲେ ସେଟା ଜଗତ୍ କିତା ହୋ । (୧)
ସୁଖ୍ ସରାଗ୍ ଯାହା ଥିଲା ସବୁ ଗଲା ନିଥ୍‌ରି
ସେ କଥାକେ ପୁରାନ୍ ବାଲେ ସରଜୂ ବଲିଁ ଦେଲେ ଚିତ୍‌ରି
ସୁଖ ସରାଗ ସାଙ୍ଗେଁ ଗଲା ମଲେ ଦଶରଥ ପିତା ହୋ । (୨)

❖❖❖

## ୩୦

## ଦୁଃଖ ଦରଦ୍ ଯାହା ଦେବାର୍ ଅଛେ

ଦୁଃଖ୍ ଦରଦ୍ ଯାହା ଦେବାର୍ ଅଛେ, ହରି
ସବୁ ଦେଇ ନେତୁ ପଛେ,
ସହେବାର୍ ଶକ୍ତି ଆଗ୍‌ତୁରା ଏକା
ଦେଇ ନେଇ ଥିତୁ ଗଁଚେ । (୦)
ମନ୍‌ଟେ ଦେଇଛୁ ସେନେ ସିନେ ପର୍ଭୁ
ରହି ଥିତୁ ଅନୁଖନୁ
ଯାହା ହେଲେ ମାହାପୁରୁ ଅହୋରାତର୍
ନାଇଁ ଯାଏଥିତୁ ସେନୁ
ଦୁଃଖ୍ ଖର୍‌ହା ଛୁଆ ଘୁଁଚି ଯାଉଥିତେ
ଦେଖି ବଡ଼େ ବାଘ ଅଛେ । (୦)
ତୋର ଚିହ୍ନା ବନା ନାଇଁ ଥିଲେ ମନା
ହଇ ଯାଏ ମରୁଭୂଇଁ
ତୁଇଁ ନାଇଁଥିଲେ ଲଟାଟେ ଭିଲ୍ ହେଲେ
ଭୁଲେଁ ଭି କଁଅଁଲେ ନାଇଁ
ମିଛର୍ ଗଛ୍ ଥାଇ ଫଲିଥିସି ତହିଁ
ଲଦିହେଇଁ ଅଗ୍‌ବାର୍ 'ମୁଇଁ' ଗଛେ । (୨)

❖❖❖

୩୧

## ମୁଇଁ ଭାରତ୍ ଦେଶର୍ ପିଲା

ମୁଇଁ ଭାରତ୍ ଦେଶର୍ ପିଲା ଭାଇ ଭାରତ୍ ଦେଶର୍ ପିଲା
ହିନ୍ଦୁ ହୁଏଁକି ମୁସଲ୍‌ମାନ୍ ବୌଦ୍ଧ ହୁଏଁ କି ଖ୍ରିଷ୍ଟିଆନ୍
କାହାର୍ କାଣା ଗଲା,
ସେଥିଁ କାହାର୍ କାଣା ଗଲା ଭାଇ, ଭାରତ୍ ଦେଶର୍ ପିଲା । (୦)
ଦେଶ୍ କାତିର୍ ଗୁଟେ ବାପ୍ କରମ୍ ଚାନ୍ଦ୍ ଗାନ୍ଧୀ
ଦେଶ୍ ଯାକର୍ ସଭେ ଗୁଟେ ଡୁରେଁ ହେଇଛୁଁ ବାନ୍ଧି,
କାର୍ ଜିଭେଁ ଫେର୍ ହାଡ୍ ଅଛେ ସେ ବନ୍ଧନ୍ କର୍‌ବା ଢ଼ିଲା । (୧)
ଆମର୍ ଦେଶେଁ ଆମେ ରଜା, ଆମେ ପର୍‌ଜା ପୁଓ
ଆମର୍ ଡାକ୍‌କେ ଆମେ ଶୁନି ଆମେ କର୍‌ସୁଁ ଓ
ଆମର୍ ଦେଶ୍‌କେ ଆମେ ଗଢ଼ିଛୁଁ କାହାର୍ ସାହାଜ୍ ଥିଲା,
ସେଥିଁ କାହାର୍ ସାହାଜ୍ ଥିଲା । (୨)
ଦିନ୍ ଆଏବା ଫେର୍ ଫଲ୍‌ବା ଆମର୍ ଦେଶେଁ ସୁନା
ଦୁଖେଁ ମର୍‌ବାର୍ ଭୁଖେଁ ମର୍‌ବାର୍ କଥା ହେବା ଜୁନ୍‌ହାଁ
ଆମର୍ ନୀତିଥିଁ ଚାଲ୍‌ଲେଁ ସଂସାର୍ ନାଇଁ ହୁଏ ଗୁଲ୍‌ଗୁଲା
ଆଉ ନାଇଁ ହୁଏ ଗୁଲ୍‌ଗୁଲା । (୩)

❖❖❖

୩୨

## ଛୁଛା ସନାସଁଟା ଇ ସଂସାରରେ

ଛୁଛା ସନାସଁଟା ଇ ସଂସାରରେ ମନୁଆଁ
କେନ୍ତା ଢ଼ଙ୍ଗେ ହେବୁ ପାର୍ । (୦)
ଦିହିଟାକେ ତୋର୍ କରୁ କେତେ ଯତନ୍
କଁଟା ଗୁଟେ ମାଡ୍‌ଲେଁ କୁଁଥଉ କେତେ ରକମ୍
ନାଇଁ ଜାନ୍‌ଲୁ ଦିନ୍‌ଏ ଯଲେ ତୋର୍ ଜୀବନ୍
ଦିହିଟା ପୁଡି଼ ହେବା ଖାର୍ । (୧)
ଏଛ୍‌ନିକା ଲୋକ୍ ଅଛନ୍ ଜନା ଶୁନା
ପାର୍ ଯାଉଛେଁ ଯାହା କଲେଁ ଦୋଷ୍ ଗୁନ୍‌ହାଁ

ମଲା ବେଲେଁ ନାଇଁ ଲାଗେ ମନା ଗୁନା
ନାଇଁ ପାଉଁ ସେଥିଁ ନିସ୍ତାର୍‌ରେ ମନୁଆଁ । (୨)



୩୩

## ଝଟ୍ ଝଟ୍ କର୍ ଖୁରି ଗିନା

ଝଟ୍ ଝଟ୍ କର୍ ଖୁରି ଗିନା ଇଟା ବାଛି ଯିମାଁରେ
ସାଙ୍ଗ୍ ସାଙ୍ଗ୍ ହେଇଁ ବଢ଼େ ପୁରୁ ଯିମାଁ । (୦)
କାଏଲ୍ ଆଇଥିଲେ ପଧାନ୍ ଘରେଁ
ମୁଇଁ ବଏଲିଁ ନାଇଁ ପାରେଁ
ସାହୁ ଘରର୍ ଭୁଡି ତାମ୍‌ବୁ ଶୁଝିନେସିଁ ମାଁ ରେ । (୧)
ସାହୁ ଘରର୍ ଖେତ୍ ବଡ଼ା ଧୁର୍ ନାଇଁ ଛାଡ଼ି ନିଏ ବଢ଼େ ପୁର୍
ବେଲ୍ ଟଲା ତକ୍ ଟାଙ୍ଗି ନେସି କହେଲେଁ ହେସି ଗୁନ୍‌ହାରେ । (୨)
ଉପର୍ ପରାର୍ ବାମ୍‌ହନ୍ ଘର୍ କାଏଲ୍ ହଉଥିଲା କର୍‌ବର୍
କାଏଁ ମାହାଲିଆ ନାପି ନଉଛନ୍ ମନ୍ ମିଲାମିଲି ସିନାରେ । (୩)



୩୪

## ସେ କେନ୍ତା କେଭେଁ ନାଇଁ ଫିରେ

ଦଶ୍‌ରା ଆଏଲା ଧୀରେ ଧୀରେ
ସେ କେନ୍ତା କେଭେଁ ନାଇଁ ଫିରେ । (୦)
ଭୁଗ୍‌ଭୁଗାନୁ ଫୁଟ୍‌ଲାନ କଏଁ ଫୁଲ୍
ରାତିଁ ଜନ୍ କେ ଦେଖଇ ହଁସେ ମୁଲ୍ ମୁଲ୍
ପାଏନ୍‌କେ ଫିର୍‌ଲେନ ପାନିର୍ ଚରେ । (୧)
ଦେଖି ଆସିଥିଲା ସେ ଦୁତିଆ
କହେଲା ଆଏମି ଆଏଲେଁ ଭାଏ ଜାଁତିଆ
ସେ ଆଶା ଦିନ୍‌କେ ରାଏତ୍‌କେ ଘାରେ । (୨)
ମନ୍‌ଟା ତା'ର୍ ଆଡ଼କେ ଯେବେଁ ଭାଗସି
ଆଏଲାନ ଆଏଲାନ ବାଗିର୍ ଲାଗ୍‌ସି
ସେ ଆଏଲେଁ ଗାଁ ଖୁଏଲ୍‌କେ ଭିରେ । (୩)



## ୩୫
## ଆମର୍ ପିଲା ଦିନର୍ କଥା

ନେ ନାଇଁ ରଖିକରି କୋର୍ ଥରେ କର୍ ଯୋର୍ ରେ
ଆମର୍ ପିଲା ଦିନର୍ କଥା
ସେ ଦିନର୍ କଥା ସେନ୍ତା ଥାଇଁ
ଆଏଜ୍ କରୁଛେ ଅଥା
ଯୋର୍ କର୍ ଆମର୍ ପିଲା ଦିନର କଥା । (୦)
ଆଝିର୍ ବାଗିର୍ ସେ ଦିନ୍ ଭି ବେଲ୍ ଯାଉଥିଲା ବୁଡ଼ି
ବୋଲ୍ ନେ ମାନି ଲାଲ୍ ପନତ୍ ତୋର୍
ଛାଡୁଁ ଯାଉଥିଲା ଉଡ଼ି
ସେ ଦିନର୍ ସେ ପାଏନ୍ ବର୍ଷା
ଦୁହିକର୍ ଗୁଟେ ଛତା
ଯୋର୍ କର୍ ଆମର୍ ପିଲା ଦିନର୍ କଥା (୧)
କେନ୍ତା ଲାଗ୍‌ସି ସୁର୍‌ତା କଲେଁ
ତୁଇଁ ଆଝିର୍ ପରର୍ ଘରେଁ
ପର୍‌ହର୍ ହାତେଁ ବାଲ୍ ସାଉଁଲା
ସୁର୍‌ତା କରି କରି ମରେଁ
ତୁଇଁ ନାଇଁ ତ କେ କର୍‌ତା
ମନ୍‌କେ ଭୁର୍‌ତା ସୁରୁତା । (୨)



## ୩୬
## ମାଏଟ ମା'ର ପିଲା

ମୁଇଁ ଭାଇ ! ସେ ମାଏଟ୍-ମାଁର ପିଲା
ସୁନା ସନା ସେ ମାଏଟ୍ ମୋର ହୀରା ଉପଜଉ ଥିଲା ।।୦।।
ହରିଶଙ୍କର, ନରସିଂନାଥ, ଖଁଡ଼ାଧାର ଆର ପରଧାନ ପାଟ
ଢେ଼ଗି ଉତକି ଇ ମାଟି ମୋର କର୍‌ସନ୍ ଖେଲା ନୀଲା ।।୧।।

ଇ ମାଏଟକେ ଆବରି କରି ଆସନ ପକାଏ ସମଲେଇଶିରୀ
ବଲ ବପୁ ଶିରୀ ଭଲଦି ଭରେ ପୁଓ ଝି'ର ଭଁଝ୍ଲା ।।୨।।
ଇନ ଜନମି ସୁନ୍ଦର ସାଏ
ଧରି ସାଙ୍ଗେ କକା ଭାଏ
ପରଦେଶୀ ରଜାର ଟାନ କରି ନେଲା ଢ଼ିଲା ।।୩।।

ଭୀମ ଭୋଇ ଆର ଗଙ୍ଗାଧର
କାଏବ କବିତା କେଡ଼େ ସୁନ୍ଦର
ଗାଇ ଖାଇ ଇ ମାଟିର ନାଆଁ କରିନେଲେ ଉଜାଲା ।।୪।।

(୧୯୯୪)

❖❖❖

## ୩୭
## ପଲସା ଝାରେଁ

ପଲସା ଝାରେଁ ମଶାଲ ଜଲେ ମହୁଲ ମୁଲକି ହଁସେ
ବଉଲ ଭରା ଆମ ବୁରେଇ କୁଇଲି ସୁରେଁ ରସେ
ଜାମ ଭନା ଗୁନ ଗୁନାଏ ଫଗୁଆ ପତର ଉଠେଁ (ଓଠେଁ)
କେନ ଅଛେ ଯେ ମନର ମିତ ନାଇଁ ଶୁନେ କାଏଁ ମୁଟେଁ
ନାଁ ଜନା ନାଇଁ କାଁ ଚ଼ରେ ଯେ ଡ଼ାହି ବାଆରି ବସେ ।।୧।।

ମନର କନେ ମନ୍-ମକରର ଚ଼େହେରା ଉଠେ ଝଲସି
ଝଁପେଇ ହଏ ଘାଏକେ ଘାଏ, ଛଲକେ ଆଶାର କଲସୀ
ଏଦେ ଆଏବା ସେଦେ ଆଏବା ସମିୟା ସରଲିଁ ଖସେ ।।୨।।

ରୂପା ଚ଼ାଉଁରୀର ଫୁଲ ପସରା ଝୁଲେଇ କହେ କୁରେ
କହେ କାଁ କରି ଅଥାବିଥା ସେ ବି ତତେ ନୁରେ
ନୁରା ଖୁଜାଥିଁ ପୂରା ଆନନ୍ଦ ମିଶଲେଁ ଘାଏକେଁ ନଶେ ।।୩।।

(୧୯୯୮)



୩୮

## ଆସ ନ ବୋ ଆସ ଘାଏ

ଖଂଡ଼ାଧାର୍ ଆର ପରଧାନ ପାଟ୍
ହରିଶଁକର ସାଂଗେ ନରସିଂନାଥ୍
ଡ଼ଂଗରୁ ଡ଼େଗି ଡ଼ିଂଗରା ପିଟି ନେଁ ଶୁଭେ କାଏଁ କହୁଛନ୍ ।
ରାଏଜର ଗୁନ ଗାଏର୍ ମା
କମ ନୁହେ କେଭେଁ କାଏଁ ଡ଼ରମା
ଇ ଇଲାକାକେ କାହିଁର ଲୁକେଁ ହରୁମେଷା ଦୁହୁଛନ ।।୧।।

ଫୁଟକାଗୁଛେ ଉତ୍କାମାରି
କୁଇଲି ଘୁଗର୍ ଝୁନି ଝାରି
କହେ କାହାକେ କାଏଁ କରି ଡ଼ର୍‌ସ ଯଦରି ହାଏ ।
କାଁ ହେଲା ନେ ଡ଼େରି ଛାତି
କହେସ ଇନ ଇ ମାଟିଁ
ଏଭେଁ ଏଭେଁ ଜନମ ବୀର ସୁରେନ୍ଦର ସାଏ ।।୨।।

ଦେଖ୍ ନ ମାରାଗୁଡ଼ାର ଗଡ୍
ବିକ୍ରମ ଖୁଲର ଅଖର ପଡ଼
ତେଭେଁ ଜାନବୁ ତୋର ସଁସକୃତି କେତେ ଜୁନହା ଆଏ ।
କେତେ ପୁରନା ତୋର ମାଏଟ୍
କେଭୁଁ ବସିଛେ ମୁନୁଷ ଜାଏତ୍
ପୁରଖା ତୋର କେତେ ଶିଖେତ ସୋର କର୍ ନ ଘାଏ ।।୩।।

ପରିମଲ୍ ପରବତ୍ ତଲେଁ
ଶୁନବୁ ଯାଆ କଲେଁ କଲେଁ
ପଥରମାନେ ଘୁଷି ହଉଛନ୍ ନାଗାର୍ଜୁନର ପାଠ୍‌କେ ।
ମୁଷା ଅସୁରକେ ବିଲେଇ ହଇ
ମହାପୁରୁ ମାର୍ବେ କୁହି କୁହି
ପଁଚୁ ପାଣ୍ଡବ ଆଏବାର ଯିବାର ଜାନବୁ ଦେଖଲେଁ ବାଟ୍‌କେ ।।୪।।

ଯାଆ ଝରିଆଲ୍ ରାନୀପୁର୍
ସାତ ବହନି ତୁର୍ ତୁର୍
ଚଉଷଠି ଯୁଗନିର ମୂର୍ତ୍ତି ଥୁଇଁ ସାଧି ବସୁଛନ ତନ୍ତର।
ଆଶ୍ରିଯ ଲାଗସି ଆଜିର ଏକା
ଇନିର ଲୁକେ ଅକା ବକା
ବକତ୍ ବାନ୍ଧି ନେଇଛେ କାଏଁ ଗା ଦରିଆ ଖଁଡ଼ିର ମନ୍ତର୍ ।।୫।।

ରାମ ଦରହକେ ଘାଏ ଯାଆ
ଦେଖି ଆଏବୁ ରାମର୍ ପାହ୍ା
ଇନ ପରେ ସୁନା ମିଲସି ଛନକି ନେଲେଁ ବାଏଲ୍।
ମାଏଟ କୁଡ଼ଲେଁ ମିଲସି ହୀରା
କାହିଁ ମୁତି କାହିଁ ନୀଲା।
ରୋମ୍‌ର ହାଟେଁ ଇନର କପ୍‌ଟା ବିକୁଥିଲେ କାଏଲ ।।୬।।

ଜଗତ ଯାକର ନୁରି ଆନ
କାହିଁ ପାଏବୁ ଏନ୍ତା ଠାନ
ପାଏନ୍ ମେତାଲ ସୁନା ବରଷା ହଉଥିବା ଯାହିଁ।
ସୁବର୍ନ ମେରୁ ଶିବ ସାଖୀ
ପଡ଼ରା ତାକର ପାଏଦ୍‌କା ମାଖି
ହେଥିର ଲାଗି ସୋନପୁର ନାଆଁ ହଇଥିଲା କି ନାଇଁ ।।୭।।

ଆସ ନ ବୋ ଆସ ଘାଏ
ସବୁ ଦିନେ କାଏଁ ହାଏ ହାଏ
ହୋ କରି ଉଠ୍‌ମା ଆମର ଭାଷା ଭୂଇଁ କେ ନେଇ।
ଆମର ଠାନେ ଆମର ଚୁଂଦି
ଧରି ମାରୁଛନ ଆମକୁ ଫନ୍ଦି
ତୁଟେଇ ନେମା ସବୁ ଫନ୍ଦି ଫିକର୍ ଏକା ଯାଇ ।।୮।।

(୧୯୯୨)



## ୩୯

## ମୋର ମାଆଁ ସମ୍ବଲପୁର

ଭାରତ୍ ବଂଛେଁ ବଗ ବଗାନୁ ଫୁଟଲା ଲେଖେଁ ପଦମ୍ ଫୁଲ।
କେଡ଼େ ସୁନ୍ଦର କେଡ଼େ ଡ଼ଗର ମୋର ମାଆଁ ଇ ସମ୍ବଲପୁର ।।
ମହାନଏଦ୍ ଇନ ମହାନ ବତ୍‌ରେଁ ମା'ର ମହେମା ଗୀତକେ।
ଗାଇ ଗାଇ ମୁହିନେସି ଦିନ ରାଏତ୍ ମା'ର ଚ଼ିତ୍ତକେ।।
ନିଘେଇ କରି କେତେ ଯତ୍‌ନେ ପାଏନ୍ ଆନସି ବୁହି।
ମାଏନ ଗୁନ୍‌ଥିଁ ମା'ର ଗୋଡ଼କେ ଦେସି ଅଏନ ଧୁଇ।।
ଧୁଇଲା ପାହାର୍ ଝରଲା ବାଏଲ୍ ଛନକି ନେଲେଁ ମିଲସି ସୁନା।
ପନତ୍ କାନି ଅଢ଼େଇ ନେଲେଁ ହୀରା ତାହିଁ ଶହେ ଗୁନା।।
ମା'ର ଛାତି ବାରପାହାଡ଼ ଛନଏ କେଭେଁ ନୁହେ ଥରେ।
କଲାପାହାଡ଼ ଗୁରାପର୍ଭାର ଯେ ହେଉ ସେ ଡ଼ରେ।।
ତା'ର କୁଲେଁ ଛନ୍‌କି ଉଠସି ମେହେର ବାଗିର୍ କବିଟେ।
ବୀର ସୁରେନ୍ଦର ଉତ୍‌କିସି ଆର୍ ନର୍ସିଂନାଥର ଛବିଟେ।।
ମୋର ମା'ର ପାହାତଲ୍‌କେ ସରିହେବା କାଏଁ ସରଗ୍ ଛାର।
ତା'ର ପାହା ତଲେଁ ମୁକ୍ତି ମିଲବା ଜନମିମି ଯେ'ନ ବାରମ୍ବାର।।

(୧୯୯୨)



## ୪୦

## ରାମ ମୋର ନାଏକ

ହେ ରାମ ତୋର ହଉ ଜୟ ତୋର ନ ଥାଉ ଲୟ।
ଭିଲ ବାଁଧି କରି ଭାଗୁ ଭୟ ମନ ରହୁ ମୋର ଥୟ।।
ସୁକୃତ-ସୂର୍ ହଉ ଉଦୟ ଦୁସ୍‌କୃତ ଯାଉ କ୍ଷୟ।
ନାଇଁ ହ ନିରଦୟ ଦେଖା ଜଗତ ରାମ ମୟ।।
ମୋର ମନ କେତେ ଭକ୍ତିମୟ ତୁଇଁ କରିଥିବୁ ତୟ।
ହଇ ଚ଼ିତା ଚ଼ଏତନମୟ ଦେଖାମି ଅଛୁ ବଲି ଅତିଶୟ
ଭକ୍ତିହୀନ ମୁଇଁ ଅତିଶୟ ତୁଇଁ ଶକ୍ତିମୟ।।

ଦେଲା ଟିକକ ହେଲାନ ବୟ୍ ଦେ ବୁନ୍ଧେ ବିନୟ୍।।
କାଏବ୍ ଲେଖମି ବଲି ମୁଇଁ ନୁରୁଥିଲିଁ ନାଏକ୍
ନାରଦ୍ ବଏଲେ ସେଥିରଲାଗିଁ ତୁଇଁ ଏକାନ ଲାଏକ୍।
ରମିହେସି ସମିହେସି ରସ ଅଛେ ତୋର ନାମେ।
ଶୁନଲେଁ ଗୁନଲେଁ କେତେ ବନେ ଅମୃତ ଥିପେ ତୋର କାମେ।।

(ସଂଭବତଃ 'ରାମରାହା' ଆରମ୍ଭ କଲା ଅବସରରେ
୧୯୯୨-୯୩ରେ ଏହା ଲିଖିତ)



(ସମାପ୍ତ)

# କୃଷ୍ଣ-କେଳି

## ଦଣ୍ଡଯାତ୍ରା

### ଦୁଇପଦ କହିବି

'ଦଣ୍ଡ' ପଶ୍ଚିମ ଓଡ଼ିଶାର (ବଉଦ, ଆଠମଲ୍ଲିକ, ସୋନପୁର, ରେଢ଼ାଖୋଲ, ପାଟଣା, କଳାହାଣ୍ଡି, ତାଳଚେ଼ର, ପାଲଲହଡ଼ା, ବଣାଇ, ଗାଙ୍ଗପୁର ଆଦି ପ୍ରାଚ଼ୀନ ଗଡ଼ଜାତ ମାନ ଓ ସମ୍ବଲପୁର ଜିଲ୍ଲା ତଥା କଳାହାଣ୍ଡି ଜିଲ୍ଲାର ଖଡ଼ିଆଳ) ଏବଂ ମଧ୍ୟ ପ୍ରାନ୍ତର ସମସ୍ତ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳରେ ସୁପରିଚ଼ିତ। ଏହାର 'ଅନ୍ତ' ତ ବିଂଶ ଶତାବ୍ଦୀର ମଧ୍ୟଭାଗ ବୋଲି ଜଣାପଡୁଛି, କିନ୍ତୁ କେବେ 'ଆଦି' ହୋଇଥିଲା କହିବା ଗବେଷକ ମାନଙ୍କ ପାଇଁ କାଠିକର।  ଯେଉଁମାନେ ମୁକ୍ତାକାଶରେ ହେଉଥିବା ଅଭିନୟ ସବୁକୁ ଯାତ୍ରାର ପର୍ଯ୍ୟାୟଭୁକ୍ତ କରି "ଯାତ୍ରା" ବଙ୍ଗଳା ଦେଶ ସମ୍ଭୁତ ବୋଲି ମତ ପୋଷଣ କରନ୍ତି 'ଦଣ୍ଡ' ନାଚ଼ର ପ୍ରଥମ ବ୍ୟାଖ୍ୟାନ "ଶିବ କହନ୍ତି ଶିବା ଆସ ଦଣ୍ଡ ଯାତ୍ରା ଭିଆଇବା" ଶୁଣି ଅନୁଧ୍ୟାନ କଲେ ସେମାନେ ମତ ପରିବର୍ତ୍ତନ ପାଇଁ ଆଗ୍ରହୀ ହେବେ।

ହେଉ, ଏ ପ୍ରସଙ୍ଗ ଏଠି ରଖି ମୁଁ ବହୁତ ଦିନ ପଛକୁ ଯାଉଛି ଏବଂ ଅନୁରୋଧ କରୁଛି ଆପଣମାନେ ମଧ୍ୟ ଆସନ୍ତୁ। ନଈର ମୁହାଣ ଦେଖି ନଈର ଉଦ୍‌ଗମ ଠାଆଟାଦେଖିବାର କୌତୂହଳ ପୋଷଣ କରିବା ସ୍ୱାଭାବିକ ନୁହେଁ କି ? ମୋ ସଙ୍ଗରେ ଆସିଲେ ତ। ଏଇଠି ଦେଖନ୍ତୁ। ଏ ଗୋଟାଏ ସମୟ। ରେଡ଼ିଓ ନାହିଁ, ସିନେମା ନାହିଁ। କିନ୍ତୁ ଗାଁଆ ସହର ସବୁଠି ମନକୁ ଟିକିଏ ଖୁସି କରିବା ପାଇଁ ଦିନ ସାରା ଖଟଣିକୁ ଟିକିଏ ପାସୋରି ଦେବା ପାଇଁ ଗୀତା, ଭାଗବତ, ପୁରାଣ, ଅଠଚ଼ାଳିଶ ଲୀଳା, ଶବରୀର ଲୀଳା, ଦଣ୍ଡ ନାଚ଼ର ପସରା। ସଙ୍ଗୀତ, ସାହିତ୍ୟ ନୀତି ଧର୍ମର ତ୍ରିବେଣୀ ବହି ଯାଉଛି। ଗାଧୋଇବା ପାଇଁ କାହାକୁ ମନା ନାହିଁ। ଯେ ଗାଧୋଇ ପାରିବେ ନାହିଁ ଆଞ୍ଜୁଳାଏ ନେଇ ମୁହଁରେ ଦିଅନ୍ତୁ। ନୋହିଲେ ଅପବାଦ ମିଳିବ। ସଙ୍ଗୀତ-ସାହିତ୍ୟ ରସରୁ କିଛି ବି ଟିକିଏ ଯା ଦିହ ମନରେ ନ ପଡ଼ିଛି ସେ ମଣିଷ ନୁହେଁ। ଲାଞ୍ଜ ଆଉ ସିଂଘ ନ ଥିବା ସାକ୍ଷାତ୍ ପଶୁପରି।

ହଁ- 'ଦଣ୍ଡ ନାଚ଼' କଥା କହିବି। ନଟରାଜ ଶିବ ପାର୍ବତୀଙ୍କୁ କହୁଛନ୍ତି ଆସ 'ଦଣ୍ଡ ଯାତ୍ରା' ଭିଆଇବା। କିଛି ପୁରାଣ କଥାରୁ ନାୟକ ନାୟିକା ଆଣ। କିଛି ଭଗବତ୍

କଥା ପରଶ। ତା'ପରେ ଚ଼ାଲିଲା- ରାଧା, କୃଷ୍ଣ, ଦୂତୀ ଆଦିଙ୍କ ନାଚ଼-ଗୀତ ଆଉ ଅଭିନୟ। ବାଜିଲା ଆଦିମ ମଣିଷର ସର୍ବପ୍ରଥମ ବାଦ୍ୟ 'ଢ଼ୋଲ'। ଢ଼ୋଲ, ମର୍ଦ୍ଦଳ, ମଞ୍ଜିରାର ସମାହାର ଆଉ 'ବୀଣାକାର' ଆସିବ ପ୍ରଥମ ନର୍ତ୍ତକ ଭାବରେ। ଏହାକୁ 'ବୀଣା କାଳିଆ' ବା 'ବୀଣା କାରିଆ' ବୋଲି ବି କହନ୍ତି। ବୀଣା ନ ଥାଏ, ଥାଏ ଗୋଟିଏ ଯଷ୍ଟି, ତହିଁରେ ଗୁଚ୍ଛା ହୋଇଥାଏ କେତୋଟି ବଡ଼ ଘୁଙ୍ଗୁର। ଏହାକୁ କାହିଁକି ବୀଣା କୁହାଯାଏ ଗବେଷକ ମାନେ କହିବେ। ଏ ଅଭିନେତା କଣକ ଯାତ୍ରାର ଆମୂଳଚୂଳ ସମନ୍ୱୟ ରକ୍ଷା କରିବା ସଙ୍ଗେ ଅନେକ ଅଳଙ୍କାର ମଧ୍ୟରେ ବହୁ ପ୍ରଶ୍ନ ଓ ଉତ୍ତରର ଅବତାରଣା କରନ୍ତି। ସମାଜର କ୍ରମ ବିକାଶରେ ଏ ଅଭିନୟ ଓ ଏ ଯନ୍ତ୍ର ବାଦକ 'ଦଣ୍ଡ ନାଚ଼'ରୁ ବିଦାୟ ନେଲାଣି।

ପ୍ରତ୍ୟେକ ଅଭିନେତା ମଞ୍ଚକୁ ଆସିଲା ପରେ ବନ୍ଦନା, ସ୍ୱପରିଚ଼ୟ ଓ କେଉଁ ଭୂମିକାର ସେ ଦାୟିତ୍ୱ ନେଇଛନ୍ତି ଗୀତ ମାଧ୍ୟମରେ ଦର୍ଶକଙ୍କୁ ଜଣାଇ ଦିଅନ୍ତି। ବର୍ତ୍ତମାନର ଦର୍ଶକ-ମାନସକୁ ଏହା ଆପ୍ରାସଙ୍ଗିକ ବୋଧହୁଏ। ତେଣୁ ନାକ ଟେକନ୍ତି। କିନ୍ତୁ ଚ଼ଳଚ୍ଚିତ୍ର ତଥା ଥିଏଟର ପେଣ୍ଡାଲରେ ଖେଳ ଆରମ୍ଭ ପୂର୍ବରୁ ଅଭିନେତ୍ରୀ, ଅଭିନେତା, ସଂଗୀତ ନିର୍ଦ୍ଦେଶକ, ପଟ୍ଟଭୂମି ଗାୟକ, ଗାୟିକା ଆଦିଙ୍କ ନାଆଁ ପରଶିବା ବେଳେ ଅନୁପସ୍ଥିତ ଥିଲେ ପଶ୍ଚାତ୍ତାପ କରନ୍ତି। ତଫାତ୍ କେବଳ 'ଦଣ୍ଡ'ରେ ନିଜ ପରିଚ଼ୟ ଓ ଗୁରୁ-ପରିଚ଼ୟ ଅଭିନେତା ନିଜେ ଦିଅନ୍ତି ଓ ସିନେମା ବା ଥିଏଟର ମଞ୍ଚରେ ଅନୁଷ୍ଠାନ ତରଫରୁ ଯାଇଥାଏ।

**ହେମଚ଼ନ୍ଦ୍ର ଆଚାର୍ଯ୍ୟ**



# ଦୃଶ୍ୟାରମ୍ଭ

ଶିବ - **ଜୟ ଜୟ ତଙ୍କରିସ୍ଥିତ ଜଙ୍କ ଚ଼କ୍ର ସମରଘାତିନୀ ବିଶ୍ୱନତେ**

**ଝଣ ଝଣ ଝିଙ୍ଗିମଝିକୃତ ନୂପୂର ସଙ୍ଗୀତ ମୋହିତ ଭୂତପତେ**

**ନଟୀ ତ ନଟୀ ଧିକଟୀ ନଟ ନାୟକ ନାଟିତ କୋଟିତ ନାଟ୍ୟରତେ**

**ଜୟ ଜୟ ହେ ମହିଷାସୁର ମର୍ଦ୍ଦିନି ରମ୍ୟକପର୍ଦ୍ଦିନି ହାସରତେ।**

ପାର୍ବତୀ - ମୋତେ ସ୍ମରଣ କଲେ ପ୍ରଭୁ ?

ଶିବ - ହଁ ନାଟ୍ୟରତେ !

ପାର୍ବତୀ - ଅଭିପ୍ରାୟ ?

ଶିବ - ମୋର ଅଭିପ୍ରାୟ ସୁସ୍ପଷ୍ଟ ଗୌରୀ। ତୁମେ ତ ସର୍ବାନ୍ତଗାମିନୀ। ତୁମକୁ କେଉଁକଥା ଅଜଣା ?

ପାର୍ବତୀ - ତଥାପି ଲୋକଙ୍କ ଜାଣିବା ପାଇଁ ଅଭିପ୍ରାୟ ପ୍ରକାଶ କରନ୍ତୁ ଦେବ !

ଶିବ - ତେବେ ଶୁଣ କହୁଛି -

**ତୁମରି ଜଗତ ସାରା ବୁଲି ପାରିଲିଣି ଜାଣି**
**ଜଗଦମ୍ବା ଜଗଜ୍ଜନନୀ ॥୦॥**

ପାର୍ବତୀ - କ'ଣ ଜାଣିଲେ ପ୍ରଭୁ ?

ଶିବ - **ଧନ ଦଉଲତେ ମତ୍ତ ହେଲେଣି ନର ସମସ୍ତ**
**ଈଶ୍ୱର କଥାରେ ବ୍ୟଥା ଦେଖି ହେଲାଣି (ମୋ) ଭାଲେଣି ॥୧॥**

ଲୋକେ ଧନ ଦଉଲତରେ ଭୁଲି ଈଶ୍ୱରଙ୍କୁ ପାଶୋରି ଦେଉଛନ୍ତି।

ପାର୍ବତୀ - ତାହା ତ ମାନବ-ପ୍ରକୃତି ଦେବେଶ !

ଶିବ - **ବଇକୁଣ୍ଠରୁ ଉତୁରି ଲୀଳା କରନ୍ତି ଶ୍ରୀହରି**
**ସେ ଲୀଳାକୁ ଅନୁସରି ହୁଏ ମାନବ ଚଳଣି ॥୨॥**

ପାର୍ବତୀ - ହଁ ପ୍ରଭୁ ସେ କଥା ଲୋକେ ଭୁଲି ନ ଯିବେ ବୋଲି ପଣ୍ଡିତ ଲୋକେ ତାକୁ ଶାସ୍ତ୍ର ପୁରାଣରେ ଲେଖି ରଖିଛନ୍ତି। ହେଲେ କ'ଣ ହେବ ଲୋକେ ଈଶ୍ୱର କଥାକୁ ଅବିଶ୍ୱାସ କରିବା ଆରମ୍ଭ କରିଛନ୍ତି।

ଶିବ - ତେବେ ତୁମେ ସେମାନଙ୍କର ବିଶ୍ୱାସ ଆଣିବା ପାଇଁ କିଛି ବ୍ୟବସ୍ଥା କରିବା ଉଚିତ୍ ନୁହେଁ କି ? ପାର୍ବତୀ !

ପାର୍ବତୀ - ହଁ ପ୍ରଭୁ ! କିଛି କରିବାକୁ ପଡ଼ିବ।

ଶିବ - ଶୀଘ୍ର ତୁମେ ଯୋଗମାୟା ବଳରେ କିଛି ଭଗବତ୍ ଲୀଳା ପରିବେଷଣ କର।

ପାର୍ବତୀ - ତା'ତ ଭାବୁଛି ଦେବନାଥ।

ଶିବ - ଶୀଘ୍ର କର ଗିରିଜା -

**ଗିରିଜା ଗୋ ଯାଅ ଯାଅ ଯୋଗମାୟା ରଚ୍ ବାରେ।**

ପାର୍ବତୀ - **ଗିରୀଶ ହେ, ତୁମ ଆଗେ ମାୟା କି ଗୋ ରହିପାରେ ॥୦॥**

ଶିବ - **ଯୋଗେଶ୍ୱରୀ ତୁମ ଯୋଗେ ପରମେଶ ଲୀଳା**
**ମାୟା ବଳେ କାୟା ଧରି କରୁ ଥାନ୍ତୁ ଖେଳା ।**

ପାର୍ବତୀ - **ତୁମରି ଆଦେଶ ପ୍ରଭୁ ଅଧୀନା କି ଟାଳିପାରେ ॥୧॥**
ତେବେ ଭଗବାନଙ୍କର ଅସଂଖ୍ୟ ଲୀଳା ମଧ୍ୟରୁ କେଉଁ ଲୀଳାର ଅବତାରଣା କରାଯିବ ପ୍ରଭୁ ?

ଶିବ - ତୁମରି ଇଛା ଇଛାମୟି !

ପାର୍ବତୀ - ମୁଁ ଭାବୁଛି ଲୀଳାବତୀର କୃଷ୍ଣଙ୍କର ଲୀଳା କିଛି ନିବେଦିନ ହେଉ ?

ଶିବ - ଗଙ୍ଗାନଦୀର ଯେ କୌଣସି ସ୍ଥାନର ଜଳ ହେଲେ ବି ତାହା ପବିତ୍ର ପାର୍ବତୀ-

ପାର୍ବତୀ - ହଁ ପ୍ରଭୁ - ଆସନ୍ତୁ ଆମେ ଅପସରି ଯିବା । ମାୟା ଆପଣଙ୍କ ଉପସ୍ଥାନରେ ପ୍ରବେଶ କରି ପାରିବ ନାହିଁ । ଏଇ ଦେଖନ୍ତୁ- କୃଷ୍ଣପ୍ରିୟା ରାଧା ଲଳିତା ସଖୀ ସହ ଯମୁନାରୁ ମାଠିଆରେ ଜଳ ଭରି ଫେରୁଛନ୍ତି । ନଟବର କୃଷ୍ଣ ରାଧାଙ୍କ କାଖର ମାଠିଆ ଭାଙ୍ଗି ଦେଲେଣି- ଦେଖନ୍ତୁ ରହସ୍ୟ ପ୍ରିୟଙ୍କ ନୂତନ କୌତୁକ -

(ଶିବ ଓ ପାର୍ବତୀଙ୍କର ନିଷ୍କ୍ରମଣ-ରାଧା ଓ ଲଳିତାଙ୍କ ମାଠିଆ ହାତରେ ପ୍ରବେଶ ଓ କୃଷ୍ଣଙ୍କର ଆଗମନ -କୃଷ୍ଣ ଜାଣି ଶୁଣି ଲାଗି ଚାଲିବାରୁ ମାଠିଆ ପଡ଼ି ଭାଙ୍ଗିଗଲା ରାଧିକାଙ୍କ କାଖରୁ ।)

**-ଦୃଶ୍ୟାନ୍ତର-**

ରାଧା - (ଚକିତ ଭାବରେ)

**କହ କହ ସଖୀ କିଏ ସେ ଗଲା**
**କିଶୋର ବୟସ ବରନ କଳା**
**ଗୋପରେ ଘର କି କା' ଘର ପିଲା ଯେ ଏଡ଼େ ଅଲାଜୁକ ଥିଲା**
**ପାଖରେ ଗଲାରୁ କାଖର ମାଠିଆ ସଜନୀ ଲୋ ସଜନୀ ଠିଆ ଠିଆ ଭାଙ୍ଗିଦେଲା ଲୋ ସଜନୀ ॥୧॥**

ସେ କିଏ ସଜନୀ - ପାଣି ମାଠିଆଟା ଜାଣି ଜାଣି ଭାଙ୍ଗିଦେଇ ଗଲା

ଆହା -ଚ୍-ଚ୍-ମାଠିଆ ଗଲା - ପାଣି ଗଲା - ଆଉ ମୁଁ ବି ଗଲି ।

ଲଳିତା - **ଲୁଚ୍ଛାଉ କି ଗୋରୀ ନିଜର ଦୋଷ**
**ତାକୁ ଦେଖି ଦେହ କଲୁ ଅବଶ**
**କାଖରୁ ଖସିଲା ଜଳ କଳସ ଯେ ତୋହରି ରୂପ ବୟସ**
**ବଇରି ହେଲାଣି ନାଗରୀମଣି ଗୋ ସଜନୀ ଲୋ ସଜନୀ ଯିବ ମହତ**
**ଅବଶ୍ୟ ଲୋ ସଜନୀ ।।୨।।**

ଏ ଭଲ କଥା ନୁହେଁ ଲୋ ରାଧା, ତା'ର ସୁନ୍ଦର ରୂପ ଦେଖି ତୁ ନିଜେ ଲାଜ ମହତ ଖାଇ ବସିଲୁ । ଜ୍ଞାନ ରଖି ପାରିଲୁ ନାହିଁ ।

ରାଧା - **କେତେ ଛଳେ କଥା କହୁ ଚତୁରୀ**
**ତୋ କଥା ହୁଏ ଛାତିକି କତୁରୀ**
**ଦେହ ସାରା ମୋର ଯାଉଛି ଥରି ଯେ ମନ ମରୁଛି ଉତୁରି**
**ଘରେ ପଚ୍ଛାରିଲେ କି ଉତ୍ତର ଦେବି ସଜନୀ ଭାବି ଯାଉଛି ବତୁରି ।।୩।।**

ଶାଶୂ ନଣନ୍ଦର ଘର। ମାଠିଆ କଥା ପଚ୍ଛାରିଲେ ମୁଁ କହିବି କ'ଣ ? ତୋତେ ଥଟ୍ଟା ଲାଗିଛି ।

ଲଳିତା - **କିଶୋରୀ ମଣି ଲୋ, ପାଶୋରି ଦେଲୁ ମାନ ମହତ**
**ଶିଖୀ-ଚୂଳିଆକୁ ଦେଖି ଜ୍ଞାନ କି ପାରିଲୁ ରଖି**
**ସଖୀ ଛୁଇଁ ଦୁଇ ଆଖି ସତ କରି କହତ ।।୦।।**
**କେ ଗଲେ ଚାଲି କିଶୋର ବୋଲି ତୋହର କିସ ଗଲା**
**ଗୋପରେ ଘର କାହା କୁମର ପଚ୍ଛାରିବାରେ କି ଥିଲା**
**ତୋ ମନ କଥା ଲୁଚ୍ଛାଇ ବୃଥା ଶୁଖାଇ ଦେ'ନା ରକତ ।।୧।।**

ଆଉ ବାଆଁରେଇ କଥା କହନା ଗୋରୀ । ମନ କଥା ଲୁଚ୍ଛେନା । ଦିନେ ନା ଦିନେ ନିଶ୍ଚେ ଫୁଟି ଉଠେ । ଘର ଦୁଆର କରି ବି ତୋର ମନ ତ ମାନିନାହିଁ

**ପରପୁରୁଷ ଦେଖି ବିବଶ ହେଉ ପାଗଳୀ ରାଇ ।**

ରାଧା - **କହ ନା ଆଉ ସେ ସବୁ ଥାଉ ଧରୁଛି ହାତ ରହତ ।।୨।।**

ତୋ ହାତ ଧରୁଛି ସଖୀ ଆଉ ବେଶୀ କହନା; ମୋତେ କ'ଣ ଏ ଗୋପ ରାଇଜରେ ରହିବାକୁ ଦେବୁ ନି ?

ରାଧା - **ଜଳ କଳସୀ ଲୋ ମଦାଳସୀ ଗଲା ତ ଗଲା ଯାଉ**

**ଲାଜ ମହତ ତୋହରି ହାତେ ସେ ଟିକ ହେଲେ ଥାଉ**

ଲଳିତା - **ସେଥି କି ଡ଼ର ଆଉ ନ କର**

**ଲଳିତା ଥାଉଁ ସଙ୍ଗତ ॥୩॥**

ଲଳିତା ତୋ ସଙ୍ଗରେ ଥାଉଁ ଥାଉଁ କିଛି ହେବ ନି ଲୋ ଆଉ ଡ଼ରନା । କିନ୍ତୁ ସତ କଥାଟା କହିଦେ ।

ରାଧା - ତୁ ତ ସଙ୍ଗରେ ଥିଲୁ ଲୋ । ମିଛ ଆଉ କ'ଣ କହିବି ?

**ସତ କହୁଛି ସତର ବୟସୀ**

**ଦୁହେଁ ଆସୁଥିଲେ ଭରି କଳସୀ**

**କେଉଁ ଆଡୁ କଳା କିଶୋର ଆସି**

**ପାଖେ ଚ଼ାଲିଗଲେ ଅଳପ ହସି ଲୋ**

**କଳସୀ ପଡ଼ିଲା ଖସି ।**

**ସେତେବେଳୁ ମୋତେ ଯାହା ଲାଗୁଅଛି ସୁନ୍ଦରୀ**

**କହି ନ ପାରେଁ ଭରସି ସୁନାଗୋରୀ ଲୋ ? ॥୧॥**

ହଁ ଲୋ ସଖୀ । ମୋତେ ଯାହା ଲାଗୁଛି କାହାକୁ କହିବି ?

ଲଳିତା - **ରାଜକୁମର ସେ ଅଟେ ବ୍ରଜର**

**ତା'ର ସାଥେ ମିଳାଇଲୁ ନଜର**

**ତୋତେ ଘାରିଲାଣି ପୀରତି-ଜର**

**ତୋ'ଠି ଦେଖା ମିଳିବ କି ଲାଜର ଲୋ**

**କାମେ ହେଲୁ ଜର ଜର**

**କାହାର ହେତୁରେ ଲୁହାର ଛାତି କି ରଖିଛୁ**

**ରହିବୁ ତୁ ବରଜର ବରାଙ୍ଗନା ଲୋ ॥୨॥**

ତୁ ତ ଗୋପରାଜ ସୁତ ଆଖିରେ ଆଖି ମିଳାଇଲୁ ଲୋ । ତୁ ଗଲୁ-ଗଲୁ । ତୋଠି ଆଉ ଲାଜ ମହତ ରହିବ ? ତୋତେ ପ୍ରୀତି ଜର ଅଥୟ କଲାଣି । ଫଳରେ କ'ଣ ହେବ - ନା ...

ରାଧା - କହ କହ କ'ଣ ହେବ କି ଲୋ ?

ଲଳିତା - କ'ଣ ଆଉ ହେବ ? ଯା ହେବ ଏ ବରଜ ରାଇଜରେ ତୁ ରହିପାରିବୁ ? ଲୁହାର ଛାତି ତ ନାହିଁ । ରକ୍ତ ମାଉଁଶର ଦେହ ଧରି ସହି ପାରିବୁ ନି ଲୋ ରାଧା ।

ରାଧା - **ତୋ କଥା ଶୁଣି ମୋ ଶୁଖିଲା ସର**
**ସହଜେ ପାଣିରେ ପକାଉ ସର**
**ଯା କହିଲି ତାହା ମନୁ ପାଶୋର**
**ନ କହିବୁ ଧନ କାହା ପାଶର ଲୋ**

ଲଳିତା - **ରଖିବ କି ପଞ୍ଚଶର**

ରାଧା - **ବିରହ ତା'ପରେ ତା' ରୂପ ଜପରେ ସୁନ୍ଦରୀ ଯାପିବି ନିଶି ବାସର ସୁନାଗୋରୀ।** ।।୩।।

ଲଳିତା - ହେଲା କେତେ ଦୂରକୁ ଚାଲିଗଲୁ ଲୋ ରାଧା। ଏଆଡ଼େ କହୁଛୁ ମୋତେ କ'ଣ ନା କା' ଆଗରେ କହିବୁ ନାହିଁ। ସେଆଡ଼େ କହୁଛୁ ତା' ରୂପ ଜପି ଜପି ଦିନରାତି କଟାଇଦେବୁ। ନ ଜାଣିଲା ପରି ଦିଶୁଛୁ, କିନ୍ତୁ ପାଣିରେ ବୁଡ଼ି ପାଣି ପିଉଛୁ। ମୁଁ ପରା ଲଳିତା। ମୋ କାନରେ କଥା ପଡ଼ିଲେ ସମସ୍ତଙ୍କ କାନକୁ ପହଞ୍ଚିଯାଏ।

**ସୁମନା ମନକଲୁ ଅମାନିଆଁ - କି କଲା ତୋତେ କଳା ବରନିଆଁ**

**ତାକୁ ଦେଖି ଭୁଲିଗଲୁ ଦୁନିଆଁ - ପତଙ୍ଗ ଆଖିରେ ଦେଖିଲୁ ନିଆଁ ଲୋ ସହଜେ ହେଲୁ ଛାନିଆଁ।**

**ଗୋପରେ ଗୋପନେ ହେବେ କୁହା କୁହି ସଜନୀ କା ବୋହୂ କା'ର କନିଆଁ** ।।୧।।

ଏ କ'ଣ ଛୋଟ କଥା ହୋଇଛି କି। ଗୋପ ସାରା ଚହଳ ପଡ଼ିଯିବ।

ରାଧା - ମୋ ରାଣ ଲୋ - ତୁ ଏତେକଥା କର୍‌ନା। ମୋତେ ରଖ।
**ଅତି ଆପଣାର ବୋଲି ଦେଲି କହି ଆଲୋ ପ୍ରାଣ ସହି** ।।୦।।
**ମୁଁ ତ ଆସୁଥିଲି ବାଟେ ବାଟେ**
**ତୁ ହିଁ ବି ତ ଥିଲୁ ସାଥେ ସାଥେ**
**ମୋହର କି ଦୋଷ ସେ କରି ପ୍ରବେଶ ଅଳପେ ସଳଖି ଦେଲେ ଚାହିଁ**
**ଦେଖି ନ ଥିଲି ମୁଁ ମନଭରି**
**ଅଜାଣତେ ହୃଦ ନେଲେ ହରି**
**ହରା ହୁରୁଦରେ ଭରା ଦରଦରେ**
**କାନ୍ଦେ ମନ-ପକ୍ଷୀ ରହି ରହି ।।୨।।**
**ଭଲ ମନ୍ଦ ନ ପାରୁଛି ବାରି**

**ଦେଖି ସେ ଶକତି ଦେଲି ହାରି**
**କରେ ଥୋଇ କର ଶପଥ ତୁ କର**
**ଲୋକହସା କରି ଦେ'ନା ଦହି ॥୩॥**

ତୁ ଶପଥ କରି କହ ସଖି ମୋତେ ଲୋକହସାରେ ପକାଇବୁ ନାହିଁ। ତୋତେ ଅତି ଆପଣାର ଲୋକ ବୋଲି ସବୁ ଖୋଲି କହି ଦେଲି। ରଖିଲେ ରହିବି, ନୋହିଲେ ମୋ ଲାଗି ନୀଳ-ଯମୁନାର ଅଗାଧ ପାଣି ଅଛି। ଯମର ଭଉଣୀ ପରା ଯମୁନା। ଯମ ନା କରିବନି। ପର କଲେ ସେ ଆପଣାର କରି ନେବ।

ଲଳିତା - ଛି.. ଛି.. କି କଥା କହୁଛୁ ଲୋ ଅଲାକୁକିଟା। ଯମୁନାରେ ବୁଡ଼ି ପ୍ରାଣ ହରାଇବୁ। ଛାଡ୍, ସେ ସବୁ। ମୁଁ ବାଟ କରିଛି ତୁ ଏତେ ଅଧୀର ହୁଅନା। ବେଳ କାଳ ଆସୁ। ଉପାୟ୍ ଆପେ ଆସିବ। ହଇଲୋ ଏତେ ବେଳ ଏଠି ଆମେ ଟୁପୁର ଟାପୁରୁ କରି ବେଳ କାଟିଲେ। ଘର ଲୋକେ କହୁଥିବେ କ'ଣ ? ଘରକୁ ଯିବା ଚାଲ୍।

ରାଧା - ହେଉ ଚାଲ୍ - ଆରେ ମୋର ମନେ ନାହିଁ। ମୋର ତ ମାଠିଆଟା ଗଲା। ଘରେ ପଚାରିଲେ କହିବି କ'ଣ ?

ଲଳିତା - କ'ଣ ଆଉ କହିବୁ ? ଆସୁ ଆସୁ ଝୁଣ୍ଟି ପଡ଼ିଲି। ମାଠିଆଟା ସମ୍ଭାଳି ପାରିଲି ନାହିଁ। ପଡ଼ି ଭାଙ୍ଗିଗଲା।

ରାଧା - ତା' ଆଉ ସତ କରିବେ ? ମୋ ଶାଶୁ ବୁଢ଼ୀଟାକୁ ତ ଜାଣୁ। ତା'ଠୁ ହାତେ ବଡ଼ ସେ ନଣନ୍ଦ।

ଲଳିତା - ସେ କୁଟିଳା କଥା କହୁଛୁଟି - ମୋ ମାଆଲୋ ତା'ର ଯୋଉ ତୁଣ୍ଡ ନା ତୋର ସାତ ପୁରୁଷ ଉଦ୍ଧାର କରିଦେବ।

ରାଧା - ତେବେ ?

ଲଳିତା - ତେବେ ଆଉ କ'ଣ ? ଏ ମୋରି ମାଠିଆଟି ନେ ମୁଁ ପଛେ ସେମିତି ସେମିତି ଚାଲିଯିବି।

ରାଧା - ଦେଖ୍ କାହାକୁ କଛି କହିବୁନି ଟି।

**-ଦୃଶ୍ୟାନ୍ତର-**

(କୃଷ୍ଣ ଆସି ଯମୁନା ବାଟରେ ବଂଶୀ ଧରି ବସିଛନ୍ତି । କ୍ଷଣକ୍ଷଣକେ ଦେଖୁଛନ୍ତି କାହାକୁ ଖୋଜିଲା ଭଙ୍ଗୀରେ । ପରେ ବଂଶୀ ବଜାଇଲେ । ଟିକିଏ ପରେ ପ୍ରବେଶ କଲା ଲଳିତା ।)

ଲଳିତା - କିଏ ? କଳାକାହ୍ନ ପରା । ଏଠି ଏକୁଟିଆରେ କାହା ପଥ ଅନାଇ ବସିଛ ?

କୃଷ୍ଣ - ଆଉ କାହାପଥ ଅନାନ୍ତି ? ତୁମରି ।

ଲଳିତା - ମୋ'ରି ? ମୋ'ଠି ତମର କି କାମ ?

**ଏକୁଟିଆ ଆଜି କଳା କହ୍ନାଇ**
**କହ କାହାପଥ ଅଛ ଅନାଇ**
**କିଏ କଥା ଦେଇ ଆସିଲା ନାହିଁ ଯେ**
**ମୁଁ ଅଛି ଦେବି ମନାଇ**

**ହଜିଲେ ଖୋଜିବି ରୁଷିଲେ ତୋଷିବି କହ୍ନାଇ**

**ଭାଙ୍ଗିଲେ ଦେବି ବନାଇ ହେ କହ୍ନାଇ । ।।**

କିଛି କହୁ ନାହଁ ଯେ । ମୁଁ ତ ପୂତନା ନୁହେଁ କି କଂସରାଜାର ଦୂତୀ ନୁହେଁ । ମୋ'ଠି ରାଗ କରୁଛ କି ?

କୃଷ୍ଣ - ନାହିଁ ନାହିଁ ଲଳିତା । ତୁମେ କଂସ ରାଜାର ଦୂତୀ କାହିଁକି ହେବ । ମୁଁ ତୁମକୁ ଦୂତୀ ପଦରେ ବରଣ କରିବି ବୋଲି ପରା ଏଠି ବସିଛି । ମୋତେ ଏକୁଟିଆଟା ଦେଖି ଟାପରା କରୁଛ ସିନା । ମୁଁ ତୁମକୁ ଏକାକିନୀ ଆସିବାର ଦେଖି ମୋ ମନ କାହିଁରେ କ'ଣ ହେଲାଣି ।

ଲଳିତା - କାହିଁକି ?

କୃଷ୍ଣ - ତୁମେ କାଲି ତ ଏକାକିନୀ ନ ଥିଲ । ଆଉ ଯେ ଜଣେ ସାଥୀରେ ଥିଲେ-

**କାଲି ଥିଲ ତୁମେ ସଙ୍ଗେ ଯାହାର**
**ରୂପେ ଅପସରୀ ମାନିବେ ହାର**
**ଆଜି କିଆଁ କଲ ସଙ୍ଗୁ ବାହାର ଯେ**
**କେଉଁଠି ଘର ତାହାର**

**କେଉଁ ଯୋଗ ସାଧି କି ଦେବ ଆରାଧି କିଏ ସେ କରିଅଛି ଗଳାହାର ଲଳିତା । ।।**

ସେ କିଏ ? କହିବ ନାହିଁ ?

ଲଳିତା - କାହିଁକି ମ ? ସେ ଯେ ହେଲେ ତୁମର ସେଥିରେ ଯାଏ ଆସେ କ'ଣ ?

**ସେ ଯେ ରାଧା ଗୋରୀ ସୁନା ବରଣୀ**
**ବିଧାତାର ସେ ବିଚିତ୍ର କରଣି**
**ରୂପେ ମୋହୁ ଅଛି ସାରା ଧରଣୀ ଯେ**
**ସେ ଚନ୍ଦ୍ରସେଣା ଘରଣୀ**
**ଆଜି ଏ ଏକାନ୍ତେ ଏଇ ପଥପ୍ରାନ୍ତେ ତୁମେ କି ଚାହିଁଛ ତାର ସରଣୀ ଗୋ ॥**

ତୁମେ କି ? ଓଃ ଜଣା ପଡ଼ିଲା । ତୁମେ ତା'ରି ପଥ ଚାହିଁ ଏଠି ଏକାନ୍ତରେ ବସିଛ । କି କଥା ହେଲା ଲୋ ମା' । ସେ ପରା ମାନ୍ୟରେ ତୁମର ମାଇଁ ହେବେ କଳାକାହ୍ନୁ ।

କୃଷ୍ଣ - ଓଃ ମୁଁ କୋଉଥିପାଇଁ ତାଙ୍କ କଥା ପଚାରିଲି ତୁମେ ଜାଣିଲ କିମିତି ? ହଠାତ୍ ଗୋଟିଏ ମାନ୍ୟ ଯୋଡ଼ି ଥୋଇଦେଲ ।

ଲଳିତା - ଏଇ ଲଳିତା ଉଡ଼ିଗଲା ଚଢ଼େଇର ପେଟବଥା କାଣେ । ତୁମର ଉଦ୍ଦେଶ୍ୟ ଯଦି ନ ଜାଣିବି ତ କଥା ସଇଲା ।

କୃଷ୍ଣ - ହେଲା ଏବେ । ମୋତେ ଫିଟାଇ କିଛି କହିବାକୁ ଅସୁବିଧା ମନେ ହେଉଥିଲା । ତୁମେ ଜାଣିଲ ତ, ଉପାୟ କର । ସେଇଥିପାଇଁ ମୁଁ କହୁଥିଲି ପରା ତୁମକୁ ଦୂତୀ ପଣେ ବରଣ କରିବି । ତୁମେ ହେଲ ଆଜିଠୁ ଦୂତୀ-ଦୂତୀ-ଏବେ ଦୂତୀର ଯାହା କାମ ତାହା କର ।

ଲଳିତା - **କାଳିଆ ଶୁନ ତ ବନ ମାଳିଆ ଶୁନ ତ**
**ଯାହା କହେଲ ଭଲ୍ ଅନଭଲ୍ ମନେ ମନେ ଗୁନ ତ,**
**ବନେ କରି ଗୁନ ତ, ଛନେ ବାଗିର୍ ଗୁନତ ॥୦॥**
**ଗାଆଁ ମାଆଁ ଥିଁ ଅଛୁଁ ଆମେ ମାଏନ୍ ଗୁନ୍ ଧରି**
**ରଜା ହେଲେଁ ଭି ନାଇଁ ଯାଏ କେ ସେଥୁଁ ବାହାରି**
**ବାହାରି ଗଲେଁ ସେ କାହାରି ନୁହେ ନାଇଁ ଜାନି ବେଲେ ଜାନତ ॥୧॥**
**ଏ ବୁଆ ତୁମେ କେଡ଼େ ଛୁଆ ମୁହେଁ କେତେ କଥା**
**କହେଲେଁ ହେଲେଁ କେ ସତ୍ କର୍‌ବା ବଲ୍‌ବେ ଲଗାଲେତା**
**ମୋର ଧନ ସେଥିଁ ନାଇଁ କର ମନ୍ କହେଲା କଥା ମାନତ ॥୨॥**

କଳାକାହ୍ନୁ ! ମୋ କହିଲା କଥା ଥରେ ମାନ । ମାନ ମହତ ଜଗି କାମ

କରିବା ଭଲ ହେବ। ତୁମେ ଦେଖିବାକୁ କେଡ଼େ ଯାନ। କିନ୍ତୁ ଯେଉଁ କଥା କହୁଛ ନା ସେଟା କେଡ଼େ ବଡ଼ ବିଚ୍ଚାର କର।

**ତମର୍ ମନର୍ କଥା ଯଦି ନାଇଁ ତୁକେ ତାର୍ ମନ୍‌କେ**
**ଶୁନିକରି ଯଦି ଘାଟ୍ ବାଟ୍ ଗୁଲି ଗାଆଁସାରା ଯାଇ ଭମ୍‌କେ**
**କେନ୍ ଘାଟର୍ ପାଏନ୍ ଖାଏମା ଆମେ ମନେ ଟିକେ ଆନ ତ ।।୩।।**

ମୋ ହାତରେ ଏ କାମ ହେବ ନାହିଁ। ତୁମେ ଆଉ କିଛି କରିବାର ଥିଲେ କହ।

କୃଷ୍ଣ - ମୁଁ ଆଉ କ'ଣ କରିବି ଦୂତୀ। ମୋର ଆଶା ଭରସା ସବୁ ତୁମେ। ହେଉ ମନ କଥା ସେଇ ମନରେ ହିଁ ମରୁ।

**ସଜନୀ ମୋର ମନ କଥା ମରୁ ମନରେ**
**ଆଶା ଥିଲା ତୁମେ ଭେଟାଇବ ମୋ ପ୍ରାଣଧନରେ ।।୦।।**
**କାହାକୁ କହିବି କହ ଦହି ହୁଏଁ ଅହରହ**
**ବେଦନା ହୁଏ ଅସହ୍ୟ ଜୀବନ ହୁଏ ଦୁର୍ବହ**
**ଘାରି ହୁଏ ରାତି ଦିନରେ ।।୧।।**
**ମୋର ପକ୍ଷେ ସବୁ ଯାଉ ତୁମ ଯଶ ରହିଥାଉ**
**ଜଗତ ପକ୍ଷେ ଯା କହୁ ରହି ନ ପାରିବି ଆଉ**
**ତୁମରି ଏ ବ୍ରଜ ବନରେ ।।୨।।**

ହଁ ଗୋ ଦୂତୀ- ହେଲା। ତୁମ ଏ ବ୍ରଜ ମଣ୍ଡଳକୁ ଯୁହାର। ଏଠି ଆଉ ରହିବି କାହିଁକି ? ମୋ ମନଟା ପଛେ ପୋଡ଼ି ଜଳି ଯାଉ ତୁମର ଯଶ ଟିକକ ଅକ୍ଷୁର୍ଣ୍ଣ ରହୁ।

ଦୂତୀ - କଳାକାହ୍ନୁ ମନଟାକୁ ଏତେ ଶୀଘ୍ର ମାରିଦେଲ। ହେଉ ହେଉ ଏ ବ୍ରଜମଣ୍ଡଳଟାକୁ କାହିଁକି ଶୂନ୍ୟ କରି ଦେବ। ମୁଁ ଯାଏଁ ଦେଖେଁ କ'ଣ ହେଉଛି।

**ଯାଉଛି ରାଧା କତିକି ମୋର କାଳିଆ ସୁନା**
**ନିରାଶ ନ କର ମନ ଏତିକି**
**ଯାଇ କହିବି କହ ଯେତିକି ଗୋ ମୋର କାଳିଆ ସୁନା**
**କାଳିଆ ସୁନା ହେଲେ ଦୁଃଖମନା**

**ଯାରା ବରଜ ହୋଇବ ବଣା ଗୋ ମୋର କାଳିଆ ସୁନା ॥୧॥**

ମୋ ମାନ ମହତ ପଛେ ପଦାରେ ପଡୁ। ତୁମେ ଯାହା ଭାବୁଛ ସେ ସବୁ ଯାଇ ରାଧା ଆଗରେ କହି ହେବ କି ? ଦେଖେଁ ତା' ମନଟାକୁ ବାଗେଇବାର ଚେ଼ଷ୍ଟା କରେଁ। ହେଲେ ତୁମେ ବେଶୀ ଅଧୀର ହୋଇ ପଡୁଛ କାଳିଆ। ତୁମର ତ ସେ ଅଧୀର ହେବା ବୟସ ହୋଇ ନାହିଁ। ତୁମ କଥାରେ ଯିବି ସିନା। ଫଳ ଭଲ ହେବ ବୋଲି ମୁଁ ମନେ କରୁନି।

**ତୁମରି କଥାରେ ଯିବି ଗୋ ମୋର କଳାକହ୍ନାଇ**
**ସେ ନ ବୁଝିଲେ ନିନ୍ଦା ଅରଜିବି**
**ନିଶ୍ଚେ ଏ ଗୋପ ଗାଆଁ ତେଜିବି ଗୋ ମୋର କଳାକହ୍ନାଇ ॥**
**କଳାକହ୍ନାଇର ଦୁଃଖ ଶୁଣାଇ**
**ଭଲ ତାକୁ ପାରିଲେ ମନାଇ ରେ ମୋର କଳାକହ୍ନାଇ**

ତୁମ ମନକଥା ଶୁଣାଇ ବୁଝାଇବି ସିନା। ସେ ନ ବୁଝିଲେ ମୋର ଏ ଗୋପ ଗାଆଁରେ ଆଉ ଠାବ ଅଛି ?

କୃଷ୍ଣ - ତୁମେ ବଡ଼ ଛଳରେ କଥା କହୁଛ ଦୂତୀ।
**କହୁଛ କଥା ଛଳାଇ ଗୋ ମୋର ବର ବରନା**
**ନାରୀ ଜାତି ତୁମେ ବଡ଼ ଗେଲ୍ଲାଇ**
**ପୁରୁଷଙ୍କୁ ପାର ଆକୁଳାଇ ଗୋ ମୋର ବର ବରନା**
**ବର ବରନାକୁ ସରବ ଜଣା ସେ ଯେ ବୁଝଇ ମନ ଭାବନା ॥**

ଦୂତୀ - **ଯାଉଛି କାଳିଆ ରାଧା ପାଶର**
**ରସ ଶେଖରଙ୍କ କଥା ରସର**
**ପଶାଇ ଦେଖିବି ତା' ମାନସର**
**ତେବେ ଯଦି ପଞ୍ଚଶର**
**ଶର ଆଘାତରୁ ବଞ୍ଚିବ ତରୁଣୀ କହ୍ନାଇ କଥା ହେବ ନିରାଶର ହେ କହ୍ନାଇ ॥**

ରାଧା ପାଖକୁ ଯାଇ, ତା' ମନରେ ତୁମ କଥା କହି ତେବେ ବି ସେ ଯଦି ନିର୍ବିକାର ରହେ ତା'ପରେ ମୋର ଆଉ ଚା଼ରା କ'ଣ ?

କୃଷ୍ଣ - **ଯାହା ଭାବ ଦୂତୀ ତାହାହିଁ କର**
**ଅତି ବିନୟରେ ଧରୁଛି କର**

**ଦେଖାଅ ଗୋ ତା' ମୁଖ-ସୁଧାକର ଯେ**

**ସେ ତ ରୂପ-ରତ୍ନାକର**

**ତହିଁ ଅବଗାହି ହୋଇ ମୁଁ ବିନୟୀ ସଜନୀ ହୋଇବି ସଦା କିଂକର ଗୋ ॥**

ଏବେ ତୁମେ ଯା ଭାବିଛ ତାହା ହିଁ କର। ତା'ର ମୁଖ-ଚ଼ନ୍ଦ୍ରମାକୁ ନ ଦେଖିବାଯାଏଁ ମୋର ଆଉ ରକ୍ଷା ନାହିଁ। ସେଇ ରୂପ ସାଗରରେ ଗାଧୋଇ ମୁଁ ସବୁଦିନ ତା'ର କିଂକର ହୋଇ ରହିବି।

ଦୂତୀ - ଆହା ମୁଁ ଯାଇ ତା' ପାଖରେ ପହଞ୍ଚି ନାହିଁ। ତୁମେ ତା' ରୂପ-ସାଗରରେ ବୁଡ଼ ପକାଇ ସାରିଲଣି। ଟିକିଏ ଥୟ ଧର, ମୁଁ ଆଗ ଯାଏଁ-

କୃଷ୍ଣ - ହଁ ଯାଅ- ଦୂତୀ -

(ଉଭୟଙ୍କର ପ୍ରସ୍ଥାନ)

**-ଦୃଶ୍ୟାନ୍ତର-**

(ଦୂତୀ ଓ ରାଧାଙ୍କର ପ୍ରବେଶ)

ଦୂତୀ - **ଆସ ଅବଗାହୀ ଯିବା ଲୋ ପ୍ରାଣସହି ଆସ ଯେ ଯିବ ଯମୁନା।**

ରାଧା - **କେତେବେଳୁ ମୁହିଁ ରହିଛି ଅନାଇ ତୋହରି ପଥ ନବୀନା ॥୦॥**

ଦୂତୀ - **କିଏ ? ତୁମେ ? ରାଧିକା ସଜନୀ ପ୍ରାଣାଧିକା**

**ମଦନ ଆରାଧିକା ପ୍ରେମ ଯୋଗ ସାଧିକା**

ରାଧା - **ନ କହ ଲୋ ଅଧିକା ତୁ ବଡ଼ କଥୟିକା**

ଦୂତୀ - **ତୋ ପାଇଁ ଯାଇ ଏକା ପାଇଛି ମୁଁ ଯେ ଦକା**

ରାଧା - **ପକା ନା ଲୋ ସହି କା ଆଗେ ମୋ ରାଣ ଏକା ॥୧॥**

ରାଧା - **ଦେଖିଥିଲୁ କି ସଖୀ ଶିଖିଚୂଳିଆକୁ କହଲୋ ମୋତେ ସୁମନା**

ଦୂତୀ - **ଏ କି କଥା କହୁ ଏକାକୀ ହେଲେ ମୁଁ କହିବି, ନୁହଁ ଉଛନ୍ନା**

ରାଧା - **କହ ସୁମୁଖୀ କହ ବିଳମ୍ବ ଯେ ଅସହ୍ୟ**

**ତା' କଥା ଅହରହ ଶୁଣନ୍ତି ମୁଁ ନିଶ୍ଚୟ**

ଦୂତୀ - **ରହ ଲୋ ଧର ଥୟ ତୋର କି ନାହିଁ ଭୟ**

ରାଧା - **ସେ ଯଶୋଦା ତନୟ ହେଲେ କି ଗୋ ନିର୍ଦ୍ଦୟ**

ଦୂତୀ - **ନୁହ ସଖୀ ଅଥୟ କହିବି ସବୁ ରହ ॥**

ତୁମେ ବଡ଼ ଅଥୟ ହୋଇଯାଉଛ ରାଧେ। ଏମିତି କଥା ଗୁଡ଼ା କ'ଣ ସବୁଠି କୁହାଯାଏ। ରହ ଟିକିଏ ନିଛାଟିଆ ହେଲେ ମୁଁ ସବୁ କହିବି ଯେ। ଆଉ ଯଦି କିଏ କିଏ ଯିବେ ତ ଆଜି ଦିନକ ଗଲା। କହି ହେବ ନି।

ରାଧା - ତେବେ ଆଉ କାହାକୁ ଅପେକ୍ଷା କରିବା ନାହିଁ। ଚାଲ୍

ଦୂତୀ - ନାହିଁ ଲୋ। ସଙ୍ଗେ ସଙ୍ଗେ ଚିହ୍ନା ପଡ଼ିବା କଥା କହୁଛୁ। ଦେଖୁ ଆଉ କେ ଆସୁଛି। ଡ଼ାକିବା। ନ ଆସିଲେ ଭଲ; ଆସିଲେ, ପୁଣି ଆମ ବାଟ କରିବାନି।

**ଆସ ଆସ ସଜନୀ ଆସ ଯିବା ଯମୁନା**
**ପୂରୁବ ଦିଗରୁ ସୁରୁଯ ଚାହିଁଲା ଭାବିଛ କି ବେଳ ହୋଇଛି ଊଣା ॥**
**ଆସ ଆସ ଆମ୍ବ ବଉଳ ଆସ ମୋହର ଚମ୍ପାଫୁଲ**
**ଆସଲୋ ବିଶାଖା ଆସ ଚନ୍ଦ୍ର ଲେଖା**
**ଆସ ଚନ୍ଦ୍ରାବଳୀ ସୁନା ବରନା ॥**

**ଆସ ବେଳ ହୁଏ ଉଚ୍ଛୁର ନ ଛାଡ଼େ କି ଘର ଦୁଆର**
**ଆସିଲେ ତ ପୁଣି ଘରର କରଣି**
**କଲେ କିଏ ଆସି କରିବ ମନା ॥**
**ଯାଇ ନ ଫେରିଲେ ସହଳ ଗାଆଁ ସାରା ପଡ଼େ ଚହଳ**
**କିଏ କହେ କାହିଁ ଥିଲ ଯାଇ ରହି**
**କାହିଁ ପାଇଁ ହେବା ଲୋ କଥାଶୁଣା ॥**

ରାଧା - ଆଉ କେ ଆସିବେ ନାହିଁ ଲୋ। ବୃଥାରେ ଡ଼ାକୁଛୁ ସିନା।

ଦୂତୀ - ନ ଡ଼ାକିଲେ ପୁଣି କହିବେ ଯେ କ'ଣ ଆମେ
କିଛି ଭାଗ ମାଗିଥାନ୍ତୁ ଯେ ଆମକୁ ଡ଼ାକିଲ ନାହିଁ

ଡ଼ାକିବାରେ ତ ପାଞ୍ଚ ପଚିଶ ସରି ଯାଉ ନାହିଁ। ଡ଼ାକିବା। ନ ଆସିଲେ ନ ଆସନ୍ତୁ। ଚାଲ ଆମେ ଦୁହେଁ ଯିବା।

ରାଧା - ଚାଲ ଚାଲ ବେଗି ଚାଲ

ହଇଲୋ ଲଳିତା ? ଏବେ ପାଖରେ କେହି ନାହାନ୍ତି। କ'ଣ ହେଲା କହ। ତାଙ୍କ ସଙ୍ଗେ ସାକ୍ଷାତ ହୋଇଥିଲାଟି।

ରସବତୀ ଲୋ ସତ କରି କହ ସହି ଧରୁଛି ତୋ କର
ଭେଟିଥିଲୁ କି ଗୋ ଗୋପାଙ୍ଗଣ-କଳାଙ୍କର
ମନ ହୁଏ ଶୁଣୁଥାନ୍ତି ବାରତା ତାଙ୍କର
ଯାହା କହିଲେ ଲୋ କହ କପଟ ନ କର

ଦୂତୀ - ଯାହାହେଲା ସହି
କହିଲେ ପହିଲେ କହ ପାରିବୁ କି ସହି

ରାଧା - ଯାହା ହେଲା କହ ସହ ଧଇର୍ଯ୍ୟ ନ ରହେ
ମନ କରେ ଛନ୍ନ ତାଙ୍କ କଥା ଅହରହେ

ଦୂତୀ - ତାଙ୍କୁ ଭେଟିଥିଲି
ଆଡ଼ ମୁହେଁ ଚ଼ାହିଁଲେ ନି ମୋ ମନ ଗଲା ତ ଶିଥିଳି କି ରସବତୀ ଲୋ
ରସବତୀର ରସେ ମତି ଯେମିତି ଗଣୁଛି ବିପତ୍ତି କି ରସବତୀ ଲୋ ॥୧॥

ରସବତୀ ଲୋ କାଲି ସଞ୍ଜବେଳେ ସେଠି ହୋଇଥିଲେ ଠିଆ
ଯେଉଁଠାରେ ଭାଙ୍ଗିଥିଲା ତୋହରି ମାଠିଆ
କହିଲି କାହାକୁ ଟାକି ରହିଛ କାଳିଆ
ଆଡ଼ ମୁହଁ କରି ଦେଲେ ସେ ବନମାଳିଆ

ରାଧା - କି ହେଲା ତା'ପରେ
କହଲୋ ମରୁଛି ପରା ବିରହ ତାପରେ

ଦୂତୀ - କହିଲା ଯାହାକୁ ମୁହିଁ ରହିଛି ଅନାଇ
ଆସିଲେ ଜାଣିବ ପରା କହିଲା କହ୍ନାଇ

ରାଧା - କିଏ ସେ ସୁଶୀଳା
କାହାକୁ ଅନାଇ ଥାନ୍ତି କହ୍ନାଇ କହ ପ୍ରେମଶୀଳା କି ରସବତୀ ଲୋ

ଦୂତୀ - ରସବତୀର୍ ରସେ ମତି ଯେମିତି ଗଣୁଛି ବିପତ୍ତି କି ରସବତୀ ଲୋ ॥୨॥

ରାଧା - ସେ କିଏ ଲୋ ଲଳିତା। କିଏ ସେ ଭାଗ୍ୟବତୀ ଯାହାକୁ କଳାକାହ୍ନୁ ଟାକି ରହିଥାନ୍ତି।

ଦୂତୀ - ଆଲୋ ମୁଁ କିମିତି ଜାଣିବି ଲୋ ମା'। କହିଲେ ବୋଲିଲେ ସିନା ମୁଁ ଜାଣନ୍ତି। ମୋତେ ଦେଖିଲା କ୍ଷଣି ତ ସେ ଯାହା ହେଲେ ନା, ସତ କହୁଛି ସଖି ମୋ ମନଟା ଉତୁରି ଗଲା। ତୋ କଥା ବୋଲି ମୁଁ ଗଲି ନା। ନୋହିଲେ ଆଉ

କାହା କଥା ହୋଇଥିଲେ ସେ କିଏ ଆଉ ମୁଁ କିଏ ?

ରାଧା - କ'ଣ ହେଲା ସେ କଥା ନ କହି ବାରକଥା କହି ଲାଭ କ'ଣ ? ସେ କ'ଣ ତୋତେ ଗାଳି ଦେଲେ ?

ଦୂତୀ - ଗାଳି କାହିଁକି ଦେବେ। ମୁଁ କ'ଣ କାହାର ଚୋରି କରିଛି ନା କାହାର ଧାରିଛି। କିନ୍ତୁ ଯା କହ ରାଧା, ମୋତେ ଏ ସବୁ ଭଲ ଲାଗୁ ନି। ପରପୁରୁଷ ସିଏ। ତୋର ତ ପୁଣି ଘର ଦୁଆର ଅଛି - ଏ ସବୁ ଯା ହେଉଛି ମୋତେ ସୁନ୍ଦର ଦିଶୁ ନି।

**ତୁଇଁ ନାଇଁ ମାନୁ ସିନା ଗୁରି ଇଟା ବନେ କଥା ଏକା ନୁହେଁ।**
**କଥା ନୁହେଁ ସେ ତ ଯାହିର୍ ତାହିର୍ ଦରବ୍**
**କେଭେଁ ପରେ ନାଇଁ କୁହେ ।।୦।।**
**ପରର୍ ମୁନୁଷ୍ ଆଉର୍ ପରର୍ ଜିନିଷ**
**ଦେଖିଲେଁ ସୁନ୍ଦର ଚାଖିଲେଁ ବିଷ**
**ଜାନ୍‌ବୁ ଯେବେଁହେଲେଁ ଛିଇବାର୍‌କେ ଗଲେଁ**
**ଅଗ୍‌ବାର୍ ଅଗ୍‌ବାର୍ ଅଙ୍ଗ୍‌ରା କୁଏ ।।୧।।**
**ମନ୍ ଉଡ଼ିଯାଏସି ଯେତ୍‌କି ଉଡ଼ାଲେଁ**
**କଥା ଲୁକେ କାଏଁ ସେତ୍‌କି ଘୁଡ଼ାଲେଁ**
**ମନ୍ ଉଡ଼େଇକରି ମହତ୍ ବୁଡ଼େଇ କରି**
**ରହେବୁ କାଏଁ ନାଇଁନ ଭୟେ ।।୨।।**
**ଯାହାହେବାର ହେଲା ତୁନ ପର ଲୋ ତୁଇଁ**
**ନୁହେ ଫୁଟେ ବେଲ୍ କେ କଥା ଯାହିଁ ତାହିଁ**
**ନୁହେଯାଏ ବିଗିଡ଼ି ପକାମା ସଜାଡ଼ି**
**ଖାଲି ଜାନିଛୁଁ ତ ଆମେ ଦୁହେ ।।୨।।**

ବୁଝିଲୁ ଗୋରୀ ! କଥା ବଢ଼ିଲେ ଆଉ ସମ୍ଭାଳି ହେବ ନି। ମନଟାକୁ ଟିକିଏ ଥିର୍ କର। ବାଟରେ ପଡ଼ି ଘାଟରେ ଗଡ଼ିବା ଆଗରୁ ସେ ଦିଗରୁ ମନଟାକୁ ଫେରାଇ ଆଣ୍। ଅମାନିଆଁ ମନଟା ତ ସବୁବେଳେ ସବୁକଥାକୁ ହାତ ବଢ଼ାଏ। ତାକୁ ଛାଡ଼ି ଆମେ ଦୁହେଁ ତ କେବଳ ଜାଣିଛୁ। ଅନ୍ୟ କେହି ଜାଣିବା ଆଗରୁ କଥାଟାକୁ ଆଉ ବଢ଼ି ଦେ'ନା।

ରାଧା - ତୁ ଏ ସବୁ କ'ଣ କହୁଛୁ ଲଳିତା। ମୋ କାନକୁ କିଛି ପଶୁ ନାହିଁ।

ପରପୁରୁଷ ବୋଲି କାହାକୁ କହୁଛୁ ଲୋ । ପର କିଏ ଆଉ ଆପଣା କିଏ ? ଯେ ମନ ରାଇକରୁ ତିଳେ ଅନ୍ତର ହେଉ ନାହାନ୍ତି, ତାହାଙ୍କୁ ପର କରି କାହାକୁ ଆପଣାର କରିହେବ ।

**ମୋତେ ସବୁ କଥା ଲାଗେ ପିତା ଲଳିତା ଗୋ**
**ଅପାସୋରା ରୂପ ଦେଖି ନିରୁପାୟ ହେଲି ସଖୀ**
**ହୃଦ-କୋଣେ ସେ ମୂରତି ବସି ବଢ଼ାଏ ମୋ ଚିନ୍ତା ॥୦॥**
**କେ ପର କିଏ ଆପଣା ମୋତେ ତ ନ ପଡ଼େ ଜଣା**
**ପରପୁରୁଷେ ଯେ ଗଣା ହେଲେ ହେବ କେ ଭରତା ॥୧॥**
**କେତେ ଜନମର ଚିହ୍ନା ପରି ପଡୁଥାନ୍ତି ଜଣା**
**ତୋତେତ ତ ଆପଣା କଲି ମନ କଥା ଖୋଲି ଦେଲି**
**ଦେଲୁ ମତେ ପର କରି ଏବେ ବଢ଼ାଉ ମୋ କଥା ॥୨॥**
**ସେ ନ କରିଲେ ଆପଣା ମୁଁ ହେବି କାର ବନିତା ॥୩॥**

ଆଲୋ ଲଳିତା, ତୋତେ ଆପଣାର ଲୋକ ବୋଲି ନ କହିବା କଥା କହିଲି । ତୁ ମୋତେ ପର କରି ଦେଇ ମୋ ମନର ବେଦନା ବଢ଼ାଉଛୁ । ଆଉ କହୁଛୁ ପରପୁରୁଷରେ ମନ ଦେ'ନା । ସେ ମୋର କେତେ ଜନମର ଚିହ୍ନା ପରି ଜଣା ପଡୁଛନ୍ତି । ସେ ପର ନୁହନ୍ତି ଲୋ । ସେ ମୋ'ରି ଅତି ଆପଣାର ।

ଦୂତୀ - ଯଇଲା ଲୋ ମା' - ଦେଖା ଦେଖିରେ କେବଳ କିଏ କାହାର ଆପଣାର ହୋଇଯାଏ ବୋଲି ମୋତେ ଜଣାନାହିଁ । ଆମେ ସ୍ତିରୀ ପୁରୁଷ ପତି ପତ୍ନୀ ଭାବେ ବରଷ ପୁହାଇ ଜନମ ପୁହାଉଛୁଁ, କଥା ପଡ଼ି ଯାଉଛି । ଆପଣାର ବୋଲି କହି ହେଉନି । ଆଉ ଏ ରାଇ କି ଦେଖ । କେବଳ ଦେଖା ଚାହାଁରେ ଏକ ହୋଇଗଲେ । ସିଆଡ଼େ ସିଏ କଳାକାହ୍ନୁ ପାଖକୁ ନ ଯାଉଁ ଆଢ଼ ମୁହଁରେ ବି ଅନାଉ ନାହାନ୍ତି । କଥାରେ କହନ୍ତି ନାହିଁ, ମୁଁ ମରୁଥାଏଁ ନାନୀପାଇଁ, ଆଉ ନାନୀ ଆଖିରେ ଲୁହ ଟୋପାଏ ନାହିଁ । ଏ ସୁଆଗ ଆଉ ବେଶୀ ବଢ଼ାନା ଲୋ ରାଇ ! କଥା ଯାଇ କୋଉଠି ଲାଗିଯିବ । ତୁ ଏକୂଳରେ ହେବୁନି କି ସେ କୂଳରେ ହେବୁନି ।

**ସତେ ସଖୀ ଶତଦଳ ବଦନା**
**ବୃଥାରେ ଆଣନା ମନେ ବେଦନା**

**ମାନିଯାଅ ସଖୀ କୁନ୍ଦ ରଦନା ଲୋ**
**ମୋତେ ତୁ ଆଉ ନିନ୍ଦନା**
**ଦେଉଳରେ ଦିଅ ନୀରବ ତୁ କହ କାହାକୁ କରିବୁ ତୁ ଆରାଧନା ସେ ସଜନୀଲୋ ॥**

ଆଲୋ ଦେଉଳରେ ଦେବତା କିଛି କହୁ ନାହାନ୍ତି ଆଉ ପୂଜା କରିବୁ କାହାକୁ। ସେ ପରା କଥା ନ କହୁଣୁ ମୁହଁ ବଙ୍କାଇ ଦେଲେ।

ରାଧା - **ସବୁ ଦେଉଳରେ ଥାନ୍ତି ଦେବତା**
**କେଉଁଠାରେ କଥା କହନ୍ତି ବତା**
**ପୂଜାରେ ଭାଙ୍ଗଇସେ ନୀରବତା ଯେ**
**ଦେବ-ପ୍ରୀତି ସୁଲଭତା**
**ପ୍ରୀତିରେ ସ୍ତୁତିରେ ପୂଜା ପ୍ରଣତିରେ ସଜନୀ ହୁଏ ସିନା ସମ୍ଭବ ତା ॥**

ଦୂତୀ - କ'ଣ କହିଲୁ ? ଭାରୀ ଭଲ ଶୁଭୁଛି ଟିକିଏ ବୁଝାଇ କହ।

ରାଧା - ଆଲୋ ସବୁ ଦେଉଳରେ ଦେବତା ଥାଆନ୍ତି। ତୋ ହୃଦୟ ଦେଉଳକୁ ଟିକିଏ ଭଲ କରି ଚାହାଁ। ସେ'ଠି ତୋ ଦେବତା ଥିର୍ କରି ବସିଛି। କିନ୍ତୁ ଏ ଦେବତା ସବୁବେଳେ ନୀରବ। ସେ ନୀରବତା ଭାଙ୍ଗିବାକୁ ହେଲେ ନିଷ୍ଠାସହ ପୂଜା କର। ଦେଖିବୁ ଦେବତା କଥା କହିବେ। ଦେବତାର ପ୍ରୀତି ତ ଦୁର୍ଲ୍ଲଭ। ସୁଲଭ ହୁଏ କେଇଟା କର୍ମରେ। ତା' ହେଉଛି ସ୍ତୁତି, ପ୍ରୀତି, ପୂଜା ଓ ପ୍ରଣତି। ସେଥିପାଇଁ ବହୁତ କଷ୍ଟ କରିବାକୁ ପଡ଼େ।

ଦୂତୀ - ହେଉ ଲୋ ମା'। ତୁ ଏ ଆଡ଼େ ପୂଜା ପ୍ରଣତି କରୁଥା। ସେ ଆଡ଼େ ସିଏ ଦେବତା ମୁହଁ ମୋଡ଼ି ବସିଥାନ୍ତୁ। ଆଉ ଏଇ ଦୂତୀ ବିଚାରୀଟା ଯାଇ ଆସି ନାକେଦମ୍।

ରାଧା - ନା ଲୋ ଦୂତୀ ସେ କ'ଣ ମନକଥା ବୁଝିବେ ନି।

ଦୂତୀ - ଆଲୋ ସେ ତ ତୋ ମନକଥା ବୁଝିବେ। ମୋତେ ପଠାଇ ଏତେ ହରକତ କରିବାର କାରଣ ତ ମୁଁ ଦେଖୁନି।

ରାଧା - ଆଲୋ ସେ ସିନା ଅନ୍ତର୍ଯ୍ୟାମୀ। ମୁଁ ତ ନୁହେଁ। ତାଙ୍କ ମନକଥା ଜାଣିବା ପାଇଁ ମୋର ଶକ୍ତି କାହିଁ ?

ଦୂତୀ - ତଃ ତାଙ୍କ ମନକଥା ଜାଣିବା ପାଇଁ ମୋର ଯିବା ଦରକାର। ଆଲୋ ଓଲି, ସେ ପରା କଥା କହୁ ନାହାନ୍ତି ? ତାଙ୍କ ମନକଥା ବୁଝିବି କିମିତି ?

ରାଧା - ମୋର ନିଷ୍ଠାରେ ଭୁଲ୍ ରହିଛି ଦୂତୀ । ତା' ମୋହରି ଦୋଷ । ତୁ ଯା' । ଆଉ ଥରେ ଦେଖ୍ ।

ଦୂତୀ - ହେଉ ଲୋ ମାଆ । ଯାଉଛି । ମାଣ୍ଡିଆ କାଉ ତ ଖୋଇଛି ।

ରାଧା - ହେଉ ଯାଆ- ତୋ ବିନା ଆଉ ମୋର ସାହା ଭରସା କିଏ ?

ଦୂତୀ - ହେଉ ଯାଉଛି,

(ଉଭୟଙ୍କର ପ୍ରସ୍ଥାନ)

**-ଦୃଶ୍ୟାନ୍ତର-**

(କୃଷ୍ଣ ଆସି ଯମୁନା ବାଟରେ ବସିଲେ । ଏ ପାଖ ସେ ପାଖ ଦେଖି ପରେ ନିରାଶ ମନୋଭାବରେ ବଂଶୀ ବଜାଇଲେ । ଦୂତୀ ପ୍ରବେଶ କଲା)

ଦୂତୀ - ଏଠି କାହିଁକି କଳାକାହ୍ନୁ । ସାଙ୍ଗପିଲେ ସବୁ ଗୋରୁ ନେଇ ବନକୁ ଗଲେ । ତୁମେ ଗଲ ନାହିଁ କି ? ଆଉ ଏଠି ବଂଶୀ କେ ଶୁଣିବ । ତୁମ ଧବଳୀ, ଶ୍ୟାମଳୀ, ବଉଳା ପରା ଗୋଠ ମଝିରେ ଥାଇ ସିଆଡ଼େ ବୃନ୍ଦାବନରେ ପାକୁଳି କରୁଥିବେ ।

କୃଷ୍ଣ - କ'ଣ କରିବି ଲଳିତା । ଗାଈମାନଙ୍କୁ ଏ ଯାଏ ବଂଶୀ ଶୁଣାଇଲି । ଭାବିଲି ଏଥର ମଣିଷ ଶୁଣନ୍ତୁ । କେହି ନ ଥିଲେ, ଯା' ହେଉ ତୁମେ ଆସି ଶୁଣିଲ । କିନ୍ତୁ ଏକୁଟିଆ ଶୁଣିଲ-

ଦୂତୀ - ଆଉ କେ ଶୁଣିଥାନ୍ତା କି ? ଆ-ହା-ବଂଶୀଧରଙ୍କ ବଂଶୀ ଧ୍ୱନି ମାହାଳିଆ ଗଲା ପରା । ଏ କ'ଣ ତୁମ ମୁହଁଟି ଶୁଖି କଳା ପଡ଼ିଯାଇଛି କାହିଁକି ? କ'ଣ ହେଲା କହ ।

କୃଷ୍ଣ - କ'ଣ କହିବି ? କିଏ ଶୁଣିବ । ଶୁଣିଲେ ବା କ'ଣ ହେବ ?

ଦୂତୀ - କ'ଣ ହେଲା କହ-

**କହ କହ କଳାକାହ୍ନୁ କିପାଁ ମନେ ଆଣ ଦୁଃଖ**
**ଗୃହେ କେ କହିଲା କିଛି ଦେହ କି ହେଲା ଅସୁଖ ॥୦॥**
**ସାଙ୍ଗ ପିଲେ କଲେ କଳି ଅବା ମାଆ କଲେ ଗାଳି**
**କହ କେଉଁ କଥା ଭାଳି ଶୁଖାଇଛ ଚନ୍ଦ୍ରମୁଖ ॥୧॥**
**କାହିଁବା ଲବଣୀ ସର ଚୋରାଇ ଲବଣୀ ଚୋର**

**ସେଥିପାଇଁ ମନେ ଡ଼ର ହେଉଁ ହୋଇଛ ବିମୁଖ ॥୨॥**

କହ କଳାକାହ୍ନୁ! ସତ କରି କହ ! ଘରେ କେ କିଛି କହିଲା, ନା-ମାଆ ଗାଳି ଦେଲେ କି ସାଙ୍ଗ ପିଲେ କଳି କଲେ। ମୋର କାହିଁ ମନେ ହେଉଛି ତୁମେ କେଉଁଠି ସର ଲବଣୀ ଚ଼ୋରି କରି ଖାଇଛ ଆଉ ସେ ଡ଼ରରେ ମନଟାକୁ ଶୁଖାଇ ଏଠି ବସିଛ।

କୃଷ୍ଣ - ନା' ଗୋ ସେ ସବୁ ନୁହେଁ। ମୁଁ ଚ଼ୋରି କରି ନାହିଁ। ମୋର ଚୋରି ଯାଇଛି।

ଦୂତୀ - ତୁମର ଚ଼ୋରି ହୋଇଯାଇଛି। ଆ-ହା-ଚ-ଚ଼ କି ଜିନିଷ ଚ଼ୋରିଗଲା କାହ୍ନୁ।

କୃଷ୍ଣ - ଏ ମନଟା ମୋର

ଦୂତୀ - ଓଃ ବୁଝିଲି- ତେବେ ଚ଼ୋରି କଲା କିଏ ?

କୃଷ୍ଣ - ତୁମେ ତ ସଙ୍ଗରେ ଥିଲ। ଜାଣିନ ଯେ ପୁଣି ପଚ଼ାରୁଛ।

ଦୂତୀ - ମଲା ଲୋ ମା'। କି ଜଥା ହେଲା- ତୁମେ କଳାକାହ୍ନୁ ବଡ଼ ଘର ପିଲା। ବଡ଼ କଥା, ଭଲ କଥାରେ ମନ ଦିଅ।
ଏ ଲୋକହସା କଥାରେ ପଡ଼ୁଛ କାହିଁକି ?

**ବଡ଼ଘରର ପିଲା ହଇକରି ଗେଲ୍ଲା ସାନ୍ କଥାକେ ମନ୍ କଲ**
**ନିଠେଇ୍ କରି ମନ୍ କଲ**
**ପଏର୍ଞ୍ଚା ଇଟା ଚୂଛା କଥା ପାସରି ନେଲେ ଅଏନ୍ ହେତା**
**ଗଁଠେଇ କରି ଧନ୍ କଲ ॥୦॥**
**ତୁମେ ସିନା ପିଲା ଅବିହାରୀ ଅଛ ସେ ଘରକରା ନାରୀ**
**ଚିଲ୍ ପଡ଼ିଥିଲେଁ ତାଲ୍ ହଇଁଯାଏ କଥା ହଇଁ ଗଲେଁ ଜାରି**
**ଝନେ ହେଲେଁ କିହେ ବନେ ନାଇଁ ବଲନ୍**
**ସଭେ ବଲ୍‌ବେ ମନ୍ଦ୍ କଲ ॥୧॥**
**କହେବ ବଏଲେଁ ପଛେ କହିନେମି ଯାଇକରି ରଜାରାନି କେ**
**ଇହାଦେ ବଏଲେଁ ବିହା କରିନେବେ ଚ଼ାହୁଁଥିବ ଯେନ୍ ପ୍ରାନିକେ**
**ଗୁରସ୍ ତୁରାଲେଁ ବିରସ୍ ହେସ ଏଡ଼େ କଥାକେ ଦମ୍ କଲ ॥୨॥**
**ଦୁନିଆଁ କେ ଦିଶେ ବନିହାଁ କରି ପରର୍ ଦୋଷ୍ ଗୁନ୍‌ହାଁ**
**ଅଥା ନାଇଁ ହୁଅ ଇ କଥାଥିଁ ହୋ ମାନିଯାଅ ମୋର ସୁନା**
**ମୋର୍ ମୁଡ଼େଁ ହାତ୍ ଦେଇକରି କହ ଇ କବାର୍‌ଟା ବନ୍ଦ୍ କଲ ॥୩॥**

ହଁ କାହ୍ନୁ ତୁମେ ଶପଥ କରି କହ ଏମିତି କଥାରେ ଆଉ ମନ ଦେବ ନାହିଁ। ଲୋକେ ଶୁଣିଲେ ତିଳକୁ ତାଳ କରି କଥାର ରୂପ ଦେବେ। ତୁମେ ସିନା ରଜାଘର ପିଲା। ଅଭିଆଡ଼ା ଅଛ। ତୁମେ ପାର କରି ଦେବ। କିନ୍ତୁ ସେ ଆଡ଼େ ଚ଼ାହଁ। ତା'ରି ଜନମ କରମ ସବୁ ବିଫଳ ହୋଇଯିବ। ସେ ତ ଆଉ ଅଭିଆଡ଼ି ନୁହେଁ।

କୃଷ୍ଣ - ତୁମକୁ ଆଉ କ'ଣ କହିବି ଲଳିତା। ତୁମେ ଯଦି ନ ବୁଝୁଛ ଆଉ ବୁଝାଇବି କାହାକୁ। ଯେ ଯାହାକୁ ଭଲ ପାଇ ବସେ, ସେ ଏ ସବୁର ବିଚ଼ାର ରଖେ ନାହିଁ। ମୋତେ ଯେ ଅନ୍ତର ଅଜାଡ଼ି ଦେଇଯାଏ ମୁଁ ଗୋଟାପଣେ ତା'ରି ହୋଇଯାଏଁ। ସାରା ଜଗତଟା ଉପରେ ଆଖି ପକାଅ ସବୁଠି ଏଇ ନିୟମ କାମ କରୁଛି।

**ରଜନୀଶମୁଖୀ ସଜନୀ**

**ସାରା ଜଗତର ଗତି ଏମିତି ଗୋ ॥୦॥**

**ଯାହାଠାରେ ଯାର ଥାଏ ଆସକତି, ମନ ପରା ତା'ର ଦଉଡ଼େ ତା' କତି**

**ରତି ସଙ୍ଗତିରେ ନ ଥାଏ ବିରତି**

**ନିତି ପ୍ରୀତିର ଏ ରୀତି ଗୋ ॥୧॥**

**ନୀଳକଇଁ ନିରେଖଇ ନିତି ନିତି ନୀଳ ନଭେ ନାଚୁଥିଲେ ନିଶାପତି**

**ପଙ୍କଜ ଅଙ୍କ ମୁକୁଳାଇ କେବେ କି ଫୁଟିଥାଏ କହ ରାତି ଗୋ ॥୨॥**

**ଆଗରେ ସାଗର ଥାଉ ଯେତେ ଦୂରେ ନଦୀ ନ ଦିଏ ଧରା ଏହି ଧରାରେ**

**ନଦୀ ଜଳଧିର ସଙ୍ଗତିର ସ୍ଥିତି ସରଜି ଥାଏ ନିୟତି ଗୋ ॥୩॥**

ଦୂତୀ - ମୁଁ ଦେଖୁଛି ତୁମେ ମାନିବ ନାହିଁ।

କୃଷ୍ଣ - ନଦୀ କ'ଣ ମାନିଯାଏ ସହି। ତାକୁ ଯେମିତି ଭାବେ ବାନ୍ଧିଲେ ବି ସେ ଯେଉଁବାଟେ ହେଲେ ବି ସମୁଦ୍ରକୁ ଯାଏ। ହଁ ତୁମେ ସିନା ମୋତେ ବାର ଉପଦେଶ ଦେଉଛ। କିନ୍ତୁ ମୋ ପ୍ରଣୟିନୀଙ୍କ ମନକଥା କ'ଣ କିଛି କହୁନାହଁ। ମୁଁ ଯା'ଭାବୁଛି, ତୁମେ ଲଳିତା ଆମର ମିଳନ ଚ଼ାହିଁଲେ କରିପାରନ୍ତ। କିନ୍ତୁ କରୁଛ ଓଲଟା।

ଦୂତୀ - ଆଗୋ ମୁଁ କାହିଁ ଓଲଟା କାମ କରିବି ମ। ଆଲୋ ଦେଖ ଗୋ ମୁଁ ଚ଼ାହୁଁଛି ଏ ଦୁଇଟା ପ୍ରାଣୀ ଲୋକହସାରେ ନ ପଡ଼ନ୍ତୁ। କିନ୍ତୁ ମୁଁ ଶୁଣୁଛି ନିନ୍ଦା। ହେଉ ଯା କରୁଛ କର। ମୋତେ କିନ୍ତୁ ମଝିରେ ରଖି ଏତେ ହଲାପଟା କରନା।

କୃଷ୍ଣ - ନା ଗୋ ଦୂତୀ - ରୁଷି ଯାଅନା। ତୁମେ ନ ଥିଲେ ଏ ସବୁ କିଛି ହୋଇପାରିବ ନାହିଁ। ଦୁଇଟା ଜିନିଷ ଯୋଡ଼ିବାକୁ ହେଲେ ଟିକିଏ ଅଠାର ଦରକାର।

ଦୂତୀ - ମୋତେ ଅଠା କରି ପୁଣି ଅଠାକାଠିରେ ପକାଇବ ନାହିଁ ତ ?

**କଲାକାହ୍ନୁ ହେ କାଁ ବଲୁଛ କହ ଯାଇ କହିମି ରାଧାକେ**
**ଅବୁଝ୍ ଆଏ ବୁଝବା କି ନାଇଁ ତମର ଶରଧାକେ**
**ସେ ବଡ଼େ ଗେହ୍ଲାଇ**
**ଟିକ୍ କେ ସେ ଲାଖେ କରି ମୁହଁ ଦେସି ଫୁଲାଇ**
**କହି ପାର୍ମି ସିନା**
**ନାଇଁ ବୁଝଲେଁ କାଁ କର୍ମି କହ୍ନାଇ ନାଇଁ ଧର୍‌ବ ଗୁନ୍ହା କି କଲାକାହ୍ନୁରେ। ॥୦॥**

ତାକୁ କହି ପାରିବି ସିନା। କିନ୍ତୁ ସେ ଫୁଲାଇଟା ନ ବୁଝିଲେ ଆଉ ମୋ ଦୋଷ ଦେବ ନାହିଁ। ଆଉ ତା'ର ଓଲଟା ଦିଗଟାକୁ ଦେଖ। ସେ ଯଦି ନ ବୁଝି କଥାଟା ପଦାରେ ପକାଇ ଦିଏ।

**କଲାକାହ୍ନୁ ହେ ନାଇଁ ବୁଝଲେଁ ଯାହା ହେବା ନୁକୋ କରି ଭାବ**
**କେନ୍ ଘାଟର୍ ପାଏନ୍ ଖାଏମା ଆମେ କେବେ ହେବା ଠାବ**
**ତୁମେ ରଜା ପିଲା**
**କଲେଁ କଲେଁ ଖସ୍‌ରି ନେବ ମୁଁ ହେମି ଗୁଲ୍‌ଗୁଲା**
**କେନ୍ତା କର୍ମା କହ**
**ଦମ୍ କର୍‌ଲେଁ ଯିମି କାହ୍ନୁ ନେହେଲେଁ କଲେଁ କଲେଁ ରହ। ॥**

ମୁଁ ଯା' କହୁଛି ବୁଝୁଛ ତ। ଯଦି ସେ ସବୁ କଥାକୁ ସମ୍ଭାଳି ନେବାର ସାହସ ଅଛି ତ କହ, ମୁଁ ଯାଇ କହିବି। ନୋହିଲେ ବାବୁ ପୂରାପୂରି ଚୁପ୍‌ଚାପ୍ ରହ।

କୃଷ୍ଣ - ସେ ସବୁ ବୃଥା ଚିନ୍ତା। ତୁମେ ଏତେ ଡ଼ରୁଛ କାହିଁକି ସଖୀ। ମୁଁ କହୁଛି ତୁମେ ଯାଅ। ଯାଇ ମୋ ପ୍ରେମିକାର ସନ୍ଦେଶ ଆଣ.

**ଯାଅ ଗୋ ଲଳିତା ଯାଅ ବହନେ**
**ବୁଲୁଛି ପ୍ରୀତି କାନନ-ଗହନେ**
**ମୋହନ ହୋଇ ମୁଁ ହେଲି ମୋହିତ**
**ଜାଣି ନ ପାରୁଛି ହିତ ଅହିତ ଯେ**

**ଚିତ୍ତ ଦେଇ ରାଧା ଠାରେ**
**ଛଟପଟ ହେଲି ହୁଅନ୍ତି ଯେପରି ବିହଗେ ପଡ଼ି ଶବର**
**ଅଠାରେ କି ବିହଗେ ॥୧॥**

ମୁଁ ସମସ୍ତଙ୍କୁ କୁଆଡ଼େ ମୋହି ଦିଏଁ ବୋଲି ମୋତେ ତୁମେ ସବୁ ମୋହନ ବୋଲି କୁହ। କିନ୍ତୁ ମୁଁ ଯେ ଅନ୍ୟ ଠାରେ ମୋହିତ ଏ କଥା କେହି ଚିନ୍ତା କର ନାହିଁ। ମୁଁ ରାଧାଠାରେ ଚିତ୍ତ ଦେଇ ପକ୍ଷୀ ସବୁ ଶବରର ଅଠାକାଠିରେ ପଡ଼ି ଛଟପଟ ହେଲା ପରି ହେଉଛି ! ଲଳିତା ତୁମେ କିଛି ବାଟ କର।

ଦୂତୀ - ଆହା - କଳାକାହ୍ନୁ ଆମର ସତେ କେତେ କଷ୍ଟ ପାଉଛନ୍ତି।

**ମୋହନ ମୋହର ନୁହ ବିରସ**
**ଶୁଣାଅ ନା ଆଉ ମୁଖ-ସାରସ**
**ଚାଖିବ ରାଧା ପ୍ରେମ ସୁଧା-ରସ**
**ଚିତ୍ତ ଚିନ୍ତାମଣି କର ସରସ ଯେ**
**ହୁରୁଦେ ଆଣ ହରଷ**
**ମନେ ଟିକେ ହେଜ ନୁହଇ ସହଜ ମୋହନ ପରକୀୟା ପ୍ରୀତି-ରସ ॥୨॥**

କଳାକାହ୍ନୁ ! ପରକୀୟା ପ୍ରୀତି ସହଜ ନୁହେଁ। ଭାବି ଚିନ୍ତି ଚାଖିବ। ହେଇ ହେଲା। ଆଉ ମୁହଁ ଶୁଖାଅନି ଏଥର ଯା ହେବା କଥା ହୋଇଯିବ।

କୃଷ୍ଣ - **ବାରକଥା କହିବାରେ କି ପାଅ**
**ବିରହ ତାପେ ଆଉ ନ ତପାଅ**
**ରାଧାକୁ ପୀରତି ମନ୍ତ୍ର ଜପାଅ**
**ହୁରୁଦ ଦରଦ ଶୀଘ୍ର ପାଅ ଯେ**
**ମୋତେ ଯଦି ଭଲ ପାଅ**
**ମୋର ଶରଧାକୁ ଜାଣି ଶ୍ରୀ ରାଧାକୁ ସଜନୀ ବେଗେ ଆଣି ସମର୍ପାଅ ॥୩॥**

ଦୂତୀ ଗୋ ଆଉ ଅନ୍ୟାନ୍ୟ କଥା କହି ବେଶୀ ସନ୍ତାପ ଦିଅନା। ତୁମେ ଶୀଘ୍ର ଯାଅ।

ଦୂତୀ - ହେଉ ଯାଉଛି କାହ୍ନୁ ! ଆଉ ବେଶୀ ଅଧୀର ହୁଅନା।

(ଉଭୟଙ୍କର ପ୍ରସ୍ଥାନ)

## -ଦୃଶ୍ୟାନ୍ତର-

(ଦୂତୀ ପ୍ରବେଶ କଲେ ରାଧାଙ୍କ ଘର ଆଗକୁ । ଡ଼ାକିଲେ)

ଦୂତୀ - ଆଲୋ କୁଟିଳା । ଘରେ ଅଛୁ କି ଲୋ

(କିଛି ଉତ୍ତର ଆସିଲା ନାହିଁ ପୁଣି ଡ଼ାକିଲେ)

ଆଗୋ କୁଟିଳା ମାଆ -

(ପୁଣି ଉତ୍ତର ଆସିଲା ନାହିଁ)

କୁଟିଳା ନାହିଁ - ମାଆ ବୁଢ଼ୀ ବି ନାହିଁ । ଚ଼ନ୍ଦ୍ରସେଣା ତ ଗୋଠରେ ଥିବେ । ଭଲ ଯୋଗରେ ବାହାରିଛି ରାଧାକୁ ଏକୁଟିଆ ଭେଟି ହେବ ।

**ଆଲୋ ରାଧା ରାଧା ଲୋ**
**ରାଧା ଲୋ ରାଧା ରାଧା ଅଛୁ କି ନାଇଁ ନ ଘରେ**
**ତୋର ଲାଗି ଆର୍ଖି ମୋର୍ କଷା ନାଇଁ ପଡ଼େ,**
**ତୁଇଁ ମରୁ କାଏଁ ଝୁମୁରେଁ ॥୦॥**
**ସାରା ଗୋପର୍ ନାରୀ କବାର୍ ବୁଡା ସାରି**
**ଯାଇ ସାର୍‌ଲେନ ଯମୁନା**
**ଆମେ ଅଛୁଁ ବାକି ତୋତେ ଟାକି ଟାକି**
**ହେଲି ନ କୁନ୍‌ହା ପୁରୁନା**
**ମୋର୍ କଥା ପଛେ ସୋର୍ ନାଇଁ ତୋର୍**
**ତୋର୍ ଲାଗି ମୁଇଁ ମରେଁ ॥୧॥**
**ଆ ଯିମା ଜଲଦି ଧରି ତେଲ୍ ହଲ୍‌ଦି ହଇ ଥିମି କେତେ ଠିଆ**
**କେନ୍ତା ରୋଜ୍ ରୋଜ୍ ବିଲମ୍ କରସୁ ସୋଜ୍**
**ନାଇଁ ନ ତ ପିଲାଛୁଆ**
**ଯିବାର୍ ବେଲା ତ ଲୋ ବହୁକି ଗଲାନି**
**ଫିର୍‌ବୁ କାଏଁ ଦୁଇ ପହରେଁ ॥୨॥**

(ରାଧା ଆସିଲେ ସନ୍ତର୍ପଣରେ)

ରାଧା - କାହିଁକି ଲୋ ଆଜି ବଡ଼ ଆନନ୍ଦରେ ଡ଼ାକୁଛୁ । କଥା କ'ଣ ?

ଦୂତୀ - କଥା ଆଉ କ'ଣ ହୁଅନ୍ତା କି ଲୋ ? କ'ଣ ଗାଧୋଇ ଯିବୁ ନାହିଁ । ଆଜି ଆଉ କେହି ନାହାନ୍ତି ସାଙ୍ଗରେ । ଶୀଘ୍ର ଶୀଘ୍ର ଫେରି ଆସିବା ଚାଲ୍ । ବହୁତ ଦେରି କରୁଛୁ ।

ରାଧା - କ'ଣ କରିବି ଲୋ । ଘରେ କେହି ନାହାନ୍ତି । ଦୁଧ ଭାର ଗୋଠରୁ ଆସିଛି । ତାକୁ ଟିକେ ଭଲ କରି ଥୋଇ ରଖି ନ ଗଲେ ବିଲେଇ ଖାଇ ଯିବେ । ସେଥିପାଇଁ ଟିକେ ଦେରି ହେଲା ।

ଦୂତୀ - ଆଜି ଏ କ'ଣ ହେଲା ଲୋ ସୁନ୍ଦରୀ (ହସିଲା)

ରାଧା - ଆଲୋ ହସୁଛୁ କାହିଁକି ? କ'ଣ ହେଲା କି ?

ଦୂତୀ - ଆଲୋ ସବୁଦିନ ଲାଲ୍ ରଙ୍ଗର ଶାଢ଼ି ପିନ୍ଧୁଥିଲୁ । ଆଜି ତ ଦେଖୁଛି ଗୋଟିଏ କଳା ଶାଢ଼ି ପିନ୍ଧିଛୁ ।

ରାଧା - ପିନ୍ଧିଛି ତ କ'ଣ ହେଲା ସେ'ଠୁ ?

ଦୂତୀ - ଆ-ଲୋ, ମୁଁ ଦେଖି ପାରୁ ନ ଥିଲି ଚୂଡ଼ି ବି କଳା-କଳା ରଙ୍ଗ ପ୍ରତି ବି ଆଦର ବଢ଼ିଗଲା । ଦୁଇଟା ଦିନରେ । ଆଲୋ କିଛି ହୋଇନାହିଁ- ତୋର କେତେ ବଦଳି ଗଲାଣି । କଥାରେ କହନ୍ତି ନାହିଁ, ଛି ଲୋ ଛତୁ- ପାଣି ବରଷିଲେ କେତେ ଫୁଟନ୍ତୁ ।

ରାଧା - ହଁ ଲୋ - କଳାଚୂଡ଼ି କଳା ଶାଢ଼ି ପିନ୍ଧିଲି ତ ତୋ ଦେହ ସହୁନାହିଁ ପରା । କ'ଣ ଦୋଷ ହୋଇଗଲା ?

ଦୂତୀ - ଦୋଷ ନୁହେଁ ଯେ- ଯା' ମନ ଯହିଁକି ରସେ ତା' ବିନା ତାକୁ ଅନ୍ୟ ନ ଦିଶେ ।

ରାଧା - ହେଉ ଲୋ ହେଲା । ଆଉ ବେଶୀ କହି ଅପଦସ୍ତ କର୍ ନା । ଯାଇଥିଲୁ ପରା ସେ କ'ଣ କହିଲେ କହ । ମୋ ମନ ଭିତରେ ଆଉ ଅନ୍ୟ କିଛି ରହୁନାହିଁ । ସେହି ଚିକ୍କଣ କଳାରୂପ ମୋ ହୃଦୟ ଭିତରଟାକୁ ମଛି ଦେଉଛି । ତୁ ଆଉ ଭଗାରି ପରି କି ସାଧି ବସ୍ ନା ।

**ଦୂତୀ ନ ହୁଅ ଅଦୂତୀ**
**ତୁ ତ ଜାଣୁଲୋ ପୀରତି ରୀତି ॥୦॥**
**ଯା' ଲାଗି ସଜନୀ ଦିବସ ରଜନୀ ଭାଳି ଭାଳି ଯାଏ ବିତି**
**ସେ କିଛି ପଚାରୁ ଥିଲେ କି ଗୋ ତାରୁ ଦାସୀ କହ ତେଜି ଭୀତି ॥୧॥**

**ଯା' ବିରହେ ଦିନ କରେ ମୋତେ ଦୀନ ରାତି ମୋ ହୁଏ ଅରାତି**
**ସେ ମୂରତି ଛାତି ଭିତରେ ଭରତି କରି ଯାପେଁ ଦିବା ରାତି ॥୨॥**
**କଳାରୂପ କଲ୍ପ ଯାହା ମୁଁ ଅବଳା ସହିବି କାହିଁ ମୋ ଧୃତି**
**ଚାହାଣୀରେ ହାଣି ଦେବାର କାହାଣୀ କହି ହେବ କି କା କତି ॥୩॥**

କଳା ରୂପଟା ମୋ ଆଖି ଆଗରେ ସବୁବେଳେ ରହିଛି। ମୋର ଆଉ ଧଇର୍ଯ୍ୟ ରହୁ ନାହିଁ ଲୋ। କ'ଣ ହେଇଛି କହି ଦେ।

ଦୂତୀ - କ'ଣ ଆଉ ହେବ ଲୋ। ମୁଁ ସିନା ମିଛରେ ତୋତେ ଅନ୍ୟ କଥା କହୁଥିଲି। ନୋହିଲେ ତୋ'ଠୁ ସେ ପରା ବେଶୀ ଅଧୀର।

ରାଧା - ତୁ ତା' ହେଲେ ଏତେ ଏଆଡ଼ୁ ସେଆଡ଼ୁ କହୁଥିଲୁ କାହିଁକି ?

ଦୂତୀ - ଆଲୋ। ତମ ଦୁହିଁଙ୍କ ପ୍ରତି ସ୍ନେହ କେତେ, ଶ୍ରଦ୍ଧା କେତେ, ନିଷ୍ଠା କେତେ ନ ଜାଣି କେମିତି ଯ୍ୟା' କଥା ତା' ଆଗରେ ତା' କଥା ତୋ ଆଗରେ କହନ୍ତି। ଜଣେ ପହଁରି ଜାଣେ କି ନା ନ ଜାଣି କିଏ ତାକୁ ନଦୀ ଭିତରେ ଝାସ ଦେବାକୁ କହେ କି ଲୋ ?

ରାଧା - ଇଁ ତୋର ଏତେ ବୁଦ୍ଧି - ମଲୁ ନାହିଁ ଲୋ ଫୁଲେଇ।

ଦୂତୀ - ମରନ୍ତି ଲୋ... ହେଲେ ମୁଁ ମଲେ ତୁମ ଦିହିଁଙ୍କ ମିଳନ ହେଇ ପାରିବ ନାହିଁ। ସମୁଦ୍ରର ପାଣି ଶୁଖି ଶୁଖି ମେଘ ହୁଏ। ମେଘ ଆକାଶରେ ଭାସି ଭାସି ବର୍ଷା କରେ। ବର୍ଷାଜଳ ନଈ ନାଳ ଦେଇ ପୁଣି ଯାଏ ସମୁଦ୍ରକୁ। ଠିକ୍ ସେମିତି ଏଇ ଛୋଟିଆ ଦିହଟାକୁ ନେଇ ଆତ୍ମା ଏଇ ଜଗତରେ ଭାସି ଭାସି ଚାଲିଥାଏ। ତା'ରି ଭିତରେ ଥାଏ ମନ। ଏଇ ମନ ନିଏ ସେଇ ଆତ୍ମାକୁ; ପରମାତ୍ମା ପାଖରେ ମିଳାଇ ଦିଏ।

ରାଧା - ସେଥିରେ ଆମର କ'ଣ ଗଲା ?

ଦୂତୀ - ଆଲୋ ଠିକ୍ ସେମିତି ତୋତେ ନେଇ କଳାକାହ୍ନୁ ପାଖରେ ପହଞ୍ଚାଇ ଦେବା ପାଇଁ ମୋରି ଦରକାର। ପାଣି ଆଉ ସମୁଦ୍ର ମଝିରେ ନଈ ପରି, ଆତ୍ମା ଓ ପରମାତ୍ମା ଭିତରେ ମନ ପରି, ତୁମ ଦୁହିଁଙ୍କ ମଝିରେ ମୁଁ ଅଛି। ନଈ ନାଳ ପୋତି ଦେଲେ, ମନଟାକୁ ମାରିଦେଲେ ଯା' ହେବ, ମୁଁ ମରିଗଲେ ଠିକ୍ ସିମିତି ହେବ।

ରାଧା - ମୋର ଏତେ ଗହୀରିଆ କଥା ବୁଝିବାକୁ ବେଳ କାହିଁ ଲୋ ମା'-

ଦୂତୀ - ବେଳ କାହିଁ ? ମଲା ଭୋକରେ ହେଉଛୁ ବୋଲି ହାତ ଗୋଡ଼ ନ ଧୋଇ, ନ ବସି ଯା' ପାଇବୁ ଠିଆ ଠିଆ ଖାଇ ଯିବୁ କି ଲୋ ? ଖାଇବୁ ତ ଟିକିଏ ସବୁର କର। ତୋ ଖାଇବା ଜିନିଷ କିଏ ଛଡ଼ାଇ ନେଇ ଯାଉଛି ?

ରାଧା - ମଲୁ ନାହିଁ ଲୋ ଅଲାଜୁକୀ। ମୁହଁଟାକୁ ଏତେ ହୁଗୁଳା କରି ଦଉଛୁ କାହିଁକି ? ଟିକିଏ ବାନ୍ଧି ଛାନ୍ଦି ରଖ୍।

ଦୂତୀ - ଆଲୋ ଜୀବ ଭିତରେ ଥିବା ମନ ପରା ମୁଁ। ମନଟାକୁ କ'ଣ ସହଜେ ବାନ୍ଧି ହୁଏ।

ରାଧା - ହଁ ଲୋ ହଁ ମନଟା ତ ଆତ୍ମା ପରମାତ୍ମାର ମିଳନ ପଥରେ ସବୁବେଳେ କାନ୍ଥ ହେଇ ଛିଡ଼ା ହୋଇଥାଏ।

ଦୂତୀ - ସେଇଥିପାଇଁ ମୁଁ ତୋ କଥା ତାଙ୍କ ପାଖରେ ଓଲଟା ଓ ତାଙ୍କ କଥା ତୋ ପାଖରେ ଓଲଟା କରି କହୁଥିଲି। ନଈଟା ଉତ୍‌ଶୃଙ୍ଖଳ ଥିବା ତକ ବହୁତ କ୍ଷତି କରେ। କିନ୍ତୁ ବନ୍ଧା ହେଲେ ଯେତେ ପରିମାଣରେ କ୍ଷତି କରୁଥାଏ ତା'ଠୁ ସହସ୍ର ଗୁଣରେ ଲାଭ କରେ। ଠିକ୍ ସିମିତି ମନ। ମନଟାକୁ ଲଗାମ୍ ଛଡ଼ା କରି ଦେଲେ ଜୀବାତ୍ମାକୁ କେଉଁ ଗହୀରରେ ନେଇ ପକାଇ ଦିଏ। କିନ୍ତୁ ତାକୁ ଆୟତ୍ତ କରିଦେଲେ ସେ ପୁଣି ପରମାତ୍ମା ପାଖକୁ ଅତି ଶୀଘ୍ର ନେଇ ପହଞ୍ଚାଇ ଦିଏ। ମୁଁ ଠିକ୍ ସେଇପରି ତୋତେ କାହ୍ନୁଙ୍କ ପାଖରୁ ଯେତିକି ଦୂରେଇ ଦେଉଥିଲି ସେତିକି ପାଖେଇ ଆଣିଲି। ଆଉ ବେଶୀ ଚିନ୍ତା କର ନା। ଆଲୋ ଏ ରାଧା, ବେଳ ଆସି କେତେ ହେଲାଣି ଲୋ। ଚାଲ୍ ଚାଲ୍। ଶୀଘ୍ର ଗାଧୋଇ ଫେରି ଆସିବା ଚାଲ୍। ଲୋକ ଗହଳି କ୍ରମେ ଭାଙ୍ଗି ଭାଙ୍ଗି ଆସୁଛି।

**ଚାଲ୍ ଲୋ ସଜନୀ ଯିବା ସହଳ**
**କ୍ରମେ କମୁଅଛି ଲୋକ ଗହଳ**
**ଛୋଟ କଥାରେ ବି ପଡ଼େ ବହଳ ଲୋ**

**ଅପବାଦ - ହଳାହଳ**

**ଛୋଟ କଥା ବି ତ ମୋଟ ହୋଇ ବୁଲେ ସଜନୀ କୁଡ଼ିଆଠାରୁ ମହଲ।**

ଅତି ଛୋଟିଆ କଥା ବି ଯ୍ୟା' ତୁଣ୍ଡରୁ ତା' ତୁଣ୍ଡ ହୋଇ ଗରିବର କୁଡ଼ିଆରୁ ଧନୀର ମହଲ ପର୍ଯ୍ୟନ୍ତ ବ୍ୟାପିଯାଏ।

ରାଧା - ଆଲୋ ଆମେ ଏମିତି କି ଦୋଷ କଲେ ଯେ ଲୋକେ କହିବେ। ତୋର ଏ ସବୁ ବାହାନା। ମୁଁ କାହିଁକି ତୋ କଥା ସତକରି ପାରୁ ନାହିଁ। ମୋତେ କ'ଣ ସେ ସତରେ ଭଲ ପାଆନ୍ତି ?

**କହ ସଖୀ ସତେ କଳା କହ୍ନାଇ**
**ସଦୟ ନୟନେ ଦେବେ ଅନାଇ**
**ତୋର କଥା ମୋର ପରତେ ନାହିଁ ସେ**
**ତୁ ପରା କଥା ବନାଇ**
**କଦୁତ ବଦୁତ ନିମ୍ବକୁ ମହୁ ତ ବୋଲି ତୁ କହି ପାରୁ**
**ତୁ ଘେନାଇ ଲୋ ସଜନୀ ॥୨॥**

ମୁଁ କ'ଣ କାଣେ ନାହିଁ ତୁ କଥାରେ କଥାରେ ନିମ୍ବକୁ ମହୁ କହି ଖୁଆଇ ଦେବୁ।

ଦୂତୀ - ନାହିଁ ଲୋ ମୁଁ ମିଛ କହୁନାହିଁ। କାହ୍ନୁ ପରା ତୋ କଥା ଭାଳି ଭାଳି କଳାରୂପଟା ଆହୁରି କଳା ପଡ଼ିଗଲାଣି। ବିଶ୍ୱାସ କର।

**ତୋର ରୂପ କେଉଁ ମନ୍ତର କଲା**
**କଳା ରୂପ ପଡ଼ିଗଲାଣି କଳା**
**କେତେ ହେଲେଣି ପୀରତି ବିକଳା ଲୋ**
**କଳାକର ମୁଖୀ କଳା-**
**ବତୀ ତୁ ଯୁବତୀ ହୁଅ ପ୍ରୀତିବ୍ରତୀ ସଜନୀ ଭାଜିବ**
**ଦୁଃଖ-ମେଖଳା। ॥୩॥**

ତୋ ଦୁଃଖ ଆଉ ରହିବ ନାହିଁ ଲୋ ରାଧା।

ରାଧା - ତୁ ଯାହା କହ ସଖୀ ମୋ ମନଟା ଯା ହେଉଛି ମୁଁ କାଣେ। ତାଙ୍କ ରୂପ ଦେଖିଲା ପରେ ମନରେ ଗୋଟାଏ ଆବେଗ ଆସିଲା। ଉପାୟ କିଛି ପାଇଲି ନାହିଁ ? ତୋତେ ଆଶ୍ରା କଲି। ତୋ'ଠୁ ସବୁ ବିପରୀତ କଥା ଶୁଣି ମନଟା ଆପେ ଆପେ ମରିଯାଉଛି। ଆଉ ତୋ କଥା ଉପରେ ଆସ୍ଥା ରହୁନାହିଁ।

ଦୂତୀ - ଏଁ, କ'ଣ କହୁଛୁ ସଜନୀ। ମନଟାକୁ ମାରିଦଉଛୁ ଆହା ତାକୁ ମାର୍ ନା ଲୋ। ମାର୍ ନା। ମନକୁ ମାଇଲେ ତୁ ବି ମଲୁ।

**ମନ୍‌କେ ପୁରାପୁରି ନାଇଁ ଦେ ମାରି ଲୋ ରାଧା ଗୁରି**
**ଆଉର୍ ନାଇଁ ପାଉ ଖୁଜି ନୁରି ॥୦॥**

**ଜାନୁଛୁ କି ନାଇଁ ସତେଁ କହନ ମନ୍ ଭିତ୍‌ରେ ଅଛେ ମନ ମୋହନ**
**ମନ୍ ଗଲେ ମରି ପାର୍‌ବା କାଏଁ ଠହରି**
**ନାଇଁ ପଡ଼୍‌ବା କାଏଁ ଝୁମୁରି ॥୧॥**
**ଯେନ୍ ଠାନ୍‌କେ ପାହା ଅଛୁ ବଢ଼ାଇ ମନ ଥିଲେଁ ସିନା ନେବା କଢ଼ାଇ**
**ମନ୍ ଥିଲେଁ ହାତେଁ ନେବା ବାଟେଁ ବାଟେଁ**
**ନାଇଁ ହେଲେଁ ରହେବୁ ହଦରି ॥୨॥**
**ମନ୍‌କେ ଖାଲି ରଖିଥିବୁ ଆକଟେଁ ନାଇଁ ନେବା ଯେନ୍ତା କେଭେଁ ଅବାଟେ**
**କରି ନେଲେଁ ଢ଼ିଲା ହେବୁ ଗୁଲୁଗୁଲା ମରୁଥିବୁ ଝୁରି ଝୁରି ॥୩॥**

ଥରେ ଯଦି ମନଟାକୁ ମାରି ଦଉଛୁ ତେବେ ତାକୁ ଯେତେ ଖୋଜାଖୋଜି କଲେ ଆଉ ପାଇବୁ ନାହିଁ। ଯଦି ପାରୁଛୁ ତାକୁ ଟିକେ ନିଜ ଆକଟରେ ରଖ। ସେ ଆପଣା ଛାଏଁ ତୋର ଲକ୍ଷ୍ୟ ସ୍ଥଳକୁ ପହଞ୍ଚାଇ ଦେବ। ହେଉ ହେଲା। ଏଥରକ ଚ଼ାଲ୍। ବେଳ ଆସି କେତେ ହେଲାଣି।

ରାଧା - ଚ଼ାଲ୍ ଲୋ ଲଳିତା। ଯା ଥିବ ଭାଗ୍ୟରେ

(ପ୍ରସ୍ଥାନ)

**-ଦୃଶ୍ୟାନ୍ତର-**

(ଦୂତୀ ଆଗେ ଆଗେ ଚ଼ାଲିଯାଉଛନ୍ତି। ପଛରେ କୃଷ୍ଣ ଡ଼ାକୁଛନ୍ତି ଲଳିତା-ଲଳିତା)

ଦୂତୀ - କିଏ ମୋ ପଛରୁ ଡ଼ାକ ଛାଡ଼ିଛି ଲଳିତା ଲଳିତା... ଛି- ଏ ଗୋପ ନଗରଟାରେ କିଛି ବୋଇଲେ କିଛି କରି ପାରିବ ନାହିଁ। ବାହାରିଥିଲି ଶ୍ରୀ କୃଷ୍ଣଙ୍କୁ ଟିକିଏ ସାକ୍ଷାତ କରିବି। ଅନୁକୂଳଟା ଭାଙ୍ଗି କିଏ ଡ଼ାକ ଛାଡ଼ିଛି ଲଳିତା-ଲଳିତା।

କୃଷ୍ଣ - ଏତେ ବିରକ୍ତ କାହିଁକି ସଖୀ। ମୁଁ ପରା ଡ଼ାକୁଛି-

ଦୂତୀ - ଓ ତୁମେ। ଅନୁକୂଳଟା ଠିକ୍ ହୋଇଛି ତେବେ। ହଁ କହ କଳାକାହ୍ନୁ କାହିଁକି ଏ ଡ଼ାକ- ଏତେ ମିଠାଳିଆ ଡ଼ାକ ତ କେବେ ନ ଥିଲା। ଆଜି କାହିଁକି।

**ଆଜି କିଆଁ ଡ଼ାକ ଏତେ ମଧୁରେ**
**ବଚ଼ନ ବୋଲା କି ଶୁଦ୍ଧ ମଧୁରେ**

କୃଷ୍ଣ - **ଭେଟିଲ କି ଗୋପାକାଶ-ବିଧୁରେ ଗୋ**

**ଶୀଧୁ ବାରତା ସ୍ୱାଦୁରେ**

**ନିମଜ୍ଜିତ ମନ, କହ କେତେଦିନ କିଶୋରୀ ସେ କିଶୋରୀ ରହିଥିବ ଏତେ ଦୂରେ । ।।୦।।**

ଦୂତୀ - ଆଗୋ ସେଇ ଗୋଟିଏ କଥା ସବୁବେଳେ । ଆଉ ସୁଖ ଅସୁଖ ଭଲ ମନ୍ଦ କିଛି ନାହିଁ । କେବଳ ରାଧା-ରାଧା । ମଲା ମୋର ଆଉ କିଛି କାମ ନାହିଁକି ? ଖାଲି ଏଇଥିରେ ଲାଗି ରହିଥିବି ।

କୃଷ୍ଣ - ମୋର ଆଉ କି ସୁଖ ଦୁଃଖ ସଖୀ ! କି ଭଲ ମନ୍ଦ । ସବୁ ସିଏ ।

**ରାଧା ଦୁଃଖ ସୁଖ ରାଧା ମୋ ଧନ**

**ରାଧା ବିରହରେ ମୋର ନିଧନ**

ଦୂତୀ - **ପାଇବାକୁ କର ତପ ସାଧନ ଯେ**

**ହେ ଯଶୋଦା ଜୀବଧନ**

କୃଷ୍ଣ - **ତପ କରିଥିଲି ଜପରେ ଏଥର ତା' ନାମେ**

**ମନ କରିଛି ବନ୍ଧନ ଗୋ ତା' ନାମେ ।**

ହଁ ସଖୀ । ତପ ତ ବହୁତ ହୋଇଯାଇଛି । ଏଥର ତା' ନାମ ଜପରେ ମନଟାକୁ ବାନ୍ଧି ରଖିଛି ।

ଦୂତୀ - ଆଲୋ ମା' କି କଥା ୟେ । ସେ ସିଆଡ଼େ କହୁଛି ମନଟା ମରି ଯାଉଛି । ୟେ ଆଡ଼େ ୟେ କହୁଛନ୍ତି ମନଟାକୁ ବାନ୍ଧି ପକାଇଦେ । ଆହା ମନ ବିଚ଼ାରା କେତେ କଲ ବଲ ହେଉ ନ ଥିବ ।

କୃଷ୍ଣ - କ'ଣ କହିଲ ସଖୀ - କିଶୋରୀ କ'ଣ ସତରେ ମନ ମାରି ବସିଛି ?

ଦୂତୀ - ଆହେ ମନଟାକୁ ମାରି କ'ଣ ସେ ବସିଛି ନା କେବଳ ଉଠ୍-ବସ୍ ହେଉଛି । ତୁମ ଦୁହିଁଙ୍କ ରାଗ ଏକାସଙ୍ଗରେ ଏ ମନଟା ଉପରେ କାହିଁକି ମ । ହେଉ ଥୟ୍ୟ ଧର । ସବୁ ଧୀରେ ଧୀରେ ହେବନା । ପ୍ରୀତି ରସଟା ତ ଠେକି କି ମାଠିଆରେ ନାହିଁ ଯେ ମୁଁ ଆଣି ଥୋଇ ଦେବି ଆଉ ତୁମେ ଢ଼କ୍ ଢ଼କ୍ କରି ପିଇଯିବ ।

କୃଷ୍ଣ - ତେବେ ? ଆଉ ବେଶୀ ଦିନ ପ୍ରତୀକ୍ଷା କରି ରହି ହେଉ ନାହିଁ ସଖୀ । ରାଧା ଯେ ମୋର ଜୀବନ-ତାର ଗୁନ୍ଥା ହୋଇଥିବା ବୀଣା । ବୀଣା ନ

ଥିଲେ କେବଳ ତାର ଖଣ୍ଡିକ କି ସ୍ୱର ଦେବ ସଖୀ ।

**ରାଧା ସିନା ମୋ ଜୀବନ ବୀଣା ଗୋ ସୁପ୍ରବୀଣା ॥୦॥**

**ତା' ଲାଗି ଧରିଛି ଦେହ ସ୍ୱଭାବେ ମୁଁ ତ ଅଦେହ**

**ସେ ହେଲେ ପ୍ରାଣ ମୁଁ ଦେହ ଏଥିରେ ନାହିଁ ସନ୍ଦେହ**

**ନ ରଖିବି ଦେହ ରାଧା ବିନା ॥୧॥**

ହଁ ସତରେ ଲଳିତା । ରାଧା ବିନା ମୋର ଦେହ ଧାରଣ ଅସମ୍ଭବ ।

ଦୂତୀ - ସତ ହେଉ ମିଛ ହେଉ । ମୁଁ କ'ଣ କରିବି ? ମୁଁ ତାକୁ ଟେକି ଉଠାଇ ଆଣି ତୁମ ପାଖରେ ହାକର କରାଇ ପାରିବି ? କିନ୍ତୁ ତୁମେ ଯା ହେଲଣି ନା ମୋତେ ମଧ୍ୟ ଭାରୀ କଷ୍ଟ ଲାଗୁଛି ।

କୃଷ୍ଣ - ସଖୀ ତାକୁ ଦେଖିଲା ପରେ ଆଉ ପାଶୋରି ହେଉ ନାହିଁ ।

**ଦେଖିଲା ଦିନୁ କିଶୋରୀ**

**ପାରୁ ନାହିଁ ତ ପାଶୋରି**

**ଅପସରି ଅପସରି**

**ଯିବେ ରୂପ ଅନୁସରି**

**ନ ବଞ୍ଚିବି ନ ହେଲେ ନବୀନା ॥୨॥**

ହାୟ ! ସେ ଅପସରା-ଜିଣା ରୂପ  କି ଭୁଲି ହୁଏ ସଖୀ ।

ଦୂତୀ - କଳାକାହ୍ନୁ ଏତେ ଅଧୀର ହେବାଟା ତୁମକୁ ସୁନ୍ଦର ଦିଶୁନାହିଁ । ସେ କ'ଣ ତୁମର ବିବାହିତା ସ୍ତିରୀ ଯେ ଯେତେବେଳେ ଚାହିଁବ ତୁମ ପାଶରେ ରହିବ । ବଣ କୋଇଲିର ଗୀତ ଶୁଣିବାକୁ ଭଲ ଲାଗେ ବୋଲି ତାକୁ ଧରିବାକୁ ଧାଇଁଲେ ସେ କ'ଣ ତୁମ ହାତକୁ ଉଡ଼ି ଆସିବ । ଟିକିଏ ଧୀରକ ରଖ ।

**ଡ଼ାଲ୍‌ଖାଇରେ ଡ଼ାଳେଁ ଡ଼ାଳେଁ ଗାଇ ବୁଲେ ଝାରର୍ କୁଇଲି**

**ଶୁନ୍‌ମି ବଲିଁ ତୁର୍‌ତି କଲା ତାର୍ ପାଶେଁ ଧାଇଁଲି**

**ଉଡ଼ିଁଗଲା ଝାରର୍ ଚ଼ରେ ବୁଡ଼ିଗଲା ଆଶା**

**ସେଥିର୍ ଲାଗି ଜୀବନ୍ ଦେଲେଁ ଜଗତେଁ ହେବା ଲୋକ ହସା ॥୧॥**

ତୁମେ କହ କାହ୍ନୁ ସେ କ'ଣ ସୁନ୍ଦର ହେବ ?

**ଡ଼ାଲ୍‌ଖାଇରେ-ଦୂର୍‌କେ ଡ଼ଙ୍ଗର୍ ସୁନ୍ଦର୍ ଦିଶେ ପାଶ୍‌କେ ଗଲେଁ ଡ଼ର୍**

**ଦୂର୍ ବନ୍ଧୁଥି ଭାବ୍ ରହେସି ଘରର୍ ବନ୍ଧୁ ପର୍**

**ପର୍ ପୀର୍ତି ବଡ଼େ ମଧୁର୍ ଥିଲେଁ ସିନା ଡ଼ର୍**
**ଖୁଲା ହେଲେଁ ରହେସିକାର୍ଏଁ ମୁଲାକା କେଡ଼େ ଅସୁନ୍ଦର ।।୨।।**

ଏ ସବୁ କଥା ଖୋଲା ଖୋଲି ଭାବେ କ'ଣ କେବେ ସମ୍ଭବ ହୁଏ ।
ତୁମେ କିନ୍ତୁ ଆଦୌ ମାନୁ ନାହଁ ମୁଁ କ'ଣ କରିବି କହ ?

**ଡ଼ାଲ୍‌ଖାଇରେ କଥାଟେ କହୁଛେଁ ଶୁନ କହ୍ନାଇ**
**ରାଧାକେ କହିଲିଁ ଯେତେ ମନାଇ**
**ମୋର୍ କଥାକେ ତାହାର୍ ପରତେ ନାହିଁ**
**ବନେ କରି ଛନେ ଦେଲା ଶୁନାଇ**
**କହେଲିଁ କଲା ହେଲେ ନ କଲାକାହ୍ନୁ**
**ତୋତେ ପରେ କେଭେଁ ଦେଖିଲା ଦିନୁ**
**କହେଲା କହେସୁ ନିଜର ମନୁ**
**ଚିହ୍ନା ବନା କିଛି ତୁମର ଠାନୁ**
**ନେଇକରି ଯିମି ଇଥର ମାନୁ ନାଇଁ ମାନୁ ତ ଡ଼ାଲ୍‌ଖାଇରେ ।।୩।।**

କୃଷ୍ଣ - ଆରେ ମୋ ଠାରୁ କି ଚିହ୍ନ ନେବ ଲଳିତା । ମୋ ପାଖରେ କ'ଣ ବା ଅଛି ?

ଦୂତୀ - କିଛି ନ ଦେଲେ ସେ କ'ଣ ବିଶ୍ୱାସ କରୁଛି ?

କୃଷ୍ଣ - ତେବେ ଗୋଟିଏ କଥା କର । ମୁଁ ତାଙ୍କୁ ଦେଖିଲା ଦିନୁ ରାତିରେ ଯେତେବେଳେ ନିଦ ହେଉନାହିଁ ମୁଁ ସେତେବେଳେ ବସି ବସି ଚିଠି ଲେଖୁଛି । ତାକୁ ନେଇଯାଅ ।

ଦୂତୀ - ଚିଠି ? ମଲା ଭିତରେ ଭିତରେ କେତେ ଦୂର ଆଗେଇ ଗଲଣି କାହ୍ନୁ ?

କୃଷ୍ଣ - ହଁ ଲଳିତା ଏଇ ମନର ଭିତରପଟଟା ଯେତେବେଳେ ଝଡ଼ରେ ସମୁଦ୍ର ଭଳିଆ ଆନ୍ଦୋଳିତ ହୁଏ; ସେତେବେଳେ ସେଥିରୁ ଯା ବାହାରେ ତାକୁ ହିଁ ଯ୍ୟ ଭିତରେ ଥୋଇଛି ।

ଦୂତୀ - ଆଗୋ ସମୁଦ୍ରରୁ ରତ୍ନ ବାହାରେ ଆଉ ହଳାହଳ ବି- ତେବେ ଯେ୍ କ'ଣ ବାହାରିଛି ଦେଖିବା । ଫଳ କ'ଣ ହେଉଛି ? ହେଉ ମୁଁ ଯାଉଛି...

(ପ୍ରସ୍ଥାନ)

**-ଦୃଶ୍ୟାନ୍ତର-**

(ରାଧା ପ୍ରବେଶ କଲେ)

**ମନ ମୋହନ ମନେ ବସିଲାରେ**
**ମନ ମନୋଜ ରସେ ରସିଲା ରେ ॥୦॥**
**ଅଧୀନ ମୋ ଧୀଆନ ହେଲା, ହାରି ଗିଆନ**
**ତାହା ବିନା କି ଆନ ଦିଶିଲାରେ ॥୧॥**
**ଲିପି ପୋଛି ଅନ୍ତର ଚାହିଁଛି ନିରନ୍ତର**
**ବଦନ ତା' ମନ୍ତର ଚାହିଁଛି ନିରନ୍ତର**
**ବଦନ ତା' ମନ୍ତର ଘୋଷିଲାରେ ॥୨॥**
**ଗରବ ଅଭିମାନ ସାଥେ ମହତ ମାନ**
**ବଳେ କରି ସମାନ ନାଶିଲାରେ ॥୩॥**

ଦୂତୀ - (ପଛଆଡୁ ପ୍ରବେଶ କରି) ଆ-ହା- କିଏ କିଲୋ ?

ରାଧା - କ'ଣ କିଏ ?

ଦୂତୀ - ମୁଁ କହୁଥିଲି, କିଏ ନାଶିଲା ? କ'ଣ ନାଶିଲା ? କାହିଁକି ନାଶିଲା ? କେତେବେଳେ ନାଶିଲା ?

ରାଧା - ହେଲା ହେଲା ଆଉ ବେଶୀ ଲମ୍ବାନା । କ'ଣ ଖବର କିଛି ଅଛି ତ କହ-

ଦୂତୀ - ଖବର ଆଉ କ'ଣ ? ଆଗେ ଯା' ଥିଲା ଏବେ ବି ସେୟା । କିନ୍ତୁ ତୋର ଏ କ'ଣ ହେଇଛି ରାଧା । ଦେହଟା ଶୁଖି କଳାକାଠ- ମୁହଁରେ ସେ ହସ ନାହିଁ- ଛଣଫୁଲର ରଙ୍ଗ ନାହିଁ ଦେହରେ । ଆଖି ଦୁଇଟା ବର୍ଷୁକ ମେଘ ପରି ଜଳ ଢ଼ଳ ଢ଼ଳ ।

**କି ହୋଇଛି ସତେ କହ ସଜନୀ**
**ମୁଖ ଚନ୍ଦ୍ରେ କେଉଁ ଅମା ରଜନୀ**
**ଢ଼ାଙ୍କି ଦେଲା; ଆଉ ଲୁହେ ମାଜନି ଲୋ**
**ତୋର ଏ ନେତ୍ର ଖଞ୍ଜନୀ;**

**ତୋତେ ଯଦି ଦୁଃଖ କରିବ ବିମୁଖ ସଜନୀ ହେବୁ କି ଦୁଃଖ ଭଞ୍ଜନୀ ଲୋ ସଜନୀ ॥୧॥**

ଜହ୍ନ ମାମୁଁ ଭଳିଆ ମୁହଁଟାକୁ କଳା ଭଉଁପର ଅନ୍ଧାରରେ ଲୁଚାଇ ଖଞ୍ଜନ ପକ୍ଷୀର ଆଖି ପରି ଆଖି ଦୁଇଟାକୁ ମୁଣ୍ଡି ଆଷାଢ଼ର ମେଘ ପରି କରିବାର

ଦେଖିଲେ କିଏ ବିଶ୍ୱାସ କରିବ ଯେ ତୁ ପୁଣି କାହାର ଦୁଃଖ ଦୂର କରି ପାରିବୁ ?

**ଡ଼ରି ମରୁଛୁ ତୁ କି ଭୀରୁ ପରାୟେ**
**ଦୁଃଖରେ ଡ଼ରିଲେ ବେଶୀ ଡ଼ରାଏ**
**ମନକୁ ସେ ହୀନବଳ କରାଏ ଲୋ**
**ଜୀଇଁ ଥାଉଁ ସେ ମରାଏ**

**ଏ ବୟସେ ସଖି ଅୟସ ହେବ କି ସଜନୀ ଭୟେ ଯେ ଛାତି ଥରାଏ ଲୋ** ॥୨॥ ସଜନୀ ଦୁଃଖକୁ ଡ଼ରିଲେ ଡ଼ରାଏ। ଡରୁଆ ଯିଏ ନିତି ପ୍ରତି ସେ ଜୀଇଁ ଥାଉଁ ଥାଉଁ ମରୁଥାଏ। ଏ ବୟସରେ ସଖି ଭୟ କଲେ ଅୟସ କରି ହୁଏ ନା। ମୁଁ ଦେଖୁଛି ତୋର ଯା ହେଉଛି ନା କେତେବେଳେ ଏ ଦେହ ପଞ୍ଜୁରିଟି ଛାଡ଼ି ପ୍ରାଣ-ପକ୍ଷୀଟା ଫୁର୍ କରି ଉଡ଼ିଯିବ।

ରାଧା - କ'ଣ କରିବି ସଖୀ। ମୁଁ ଆଉ ମୋ ଆୟତ୍ତରେ ନାହିଁ। ମୋର ବଞ୍ଚି ରହିବାଟା ମୋତେ ନିଜକୁ ଗୋଟିଏ ଛଳନା ପରି ପରତେ ହେଉଛି-

**ଶ୍ୟାମ ସୁଶ୍ୟାମଳ-ତନୁ ଦେଖିଲା ଦିନୁ ଲୋ**
**ବଞ୍ଚିବା ହେଲା ବଞ୍ଚନା ବଳିଲା ମରଣୁ ଲୋ ॥୦॥**
**କହ କି କରିବି କହ ଅସହ୍ୟ ହୁଏ ବିରହ**
**ସେ ମୂରତି ଅହରହ ନ ଯାଏ ମନୁ ଲୋ ॥୧॥**
**ନିରତେ ନିଶି ଦିବସ ସେ ଧିଆନେ ହେଲି ବଶ**
**ବିଷ ପରି ଗ୍ରାସ ବାସ ଲାଗେ କି ମନୁ ଲୋ ॥୨॥**
**ଯା ନିରେଖେ ଏ ନୟନେ ଜାଗରଣେ ବା ଶୟନେ**
**ବସେ ନେତ୍ର ବାତାୟନେ କିଶୋର କାହ୍ନୁ ॥୩॥**

ହଁ ଲୋ ସଖୀ। ଘରେ ବାହାରେ ସବୁଠାରେ ସେଇ ରୂପ; ଚେଇଁଥିଲେ ବି ଯାହା ଶୋଇଥିଲେ ବି ସେୟା।

ଦୂତୀ - ସେୟା ମାନେ ?

ରାଧା - ସେଇ କିଶୋର କାହ୍ନୁ ରୂପ ଆଖି ଆଗରେ ନାଚ଼ି ଯାଉଛି।

ଦୂତୀ - ତେବେ ତାଙ୍କୁ ପାଇବାକୁ ବିଳମ୍ବ ହେବ ନାହିଁ ଜଣା ପଡୁଛି।

ରାଧା - କେମିତି ଜାଣିଲୁ ?

ଦୂତୀ - ହଁ ଲୋ ତାଙ୍କୁ ପାଇବାକୁ ହେଲେ ସବୁବେଳେ ସବୁଠାରେ ସେ ହିଁ ଦିଶନ୍ତି । ଯାକୁ କହନ୍ତି ସାଧନା ।

ରାଧା - ଏ କି ସାଧନା ଲୋ ? କିନ୍ତୁ ତାଙ୍କୁ ନ ପାଇଲେ ଜୀବନ ରଖି ହେବ ନାହିଁ ଲଳିତା ।

ଦୂତୀ - ନା ଲୋ ସେମିତି ହୁଅନା । ସେ ବି ତୋପାଇଁ ଉଚ୍ଛନ୍ନ ହେଇ ଗଲେଣି ।

ରାଧା - ଏ କଥା ତ କାଲି ବି କହି ଭୁଲେଇ ଦେଇଥିଲୁ । ମୋର କାହିଁ ପରତେ ହେଉନାହିଁ ।

ଦୂତୀ - ଆଜି ପରତେ ହେବ ଲୋ । ସେ ପରା ନିଜ ହାତରେ ଚିଠି ଲେଖି ଦେଇଛନ୍ତି ।

ରାଧା - କାହିଁ ? ଠକୁଛୁ ନା ସତେ ମ ।

ଦୂତୀ - ସତେ ଲୋ । ଆଉ ଠକିବାର ଦିନ ନାହିଁ । ମୁଁ ଦେଖୁଛି ଏଥର ଠକାଠକି କଲେ ଜୀବନ ଉପରେ ଆଞ୍ଚ ଆସିବ । ଏଇ ଦେଖ୍ ଚିଠି ।

ରାଧା - କ'ଣ ଲେଖିଛନ୍ତି କି ଲୋ ? (ଉଭୟେ ପଢ଼ିଲେ) ।

ଦୂତୀ - ଆଲୋ ଏ ତ ଗୋଟାଏ ଗୀତ ଆକାରରେ ଲେଖା ହେଇଛି ଲୋ । (ଉଭୟେ ଗାଇଲେ)

**ତୁମେ ରୂପ ରାଇଜର ରାଣୀ ମୁଁ ସେଇ ରାଇଜରେ ଭିଖାରୀ**
**ପୀରତି-ଦେଉଳେ ଦେବୀ ମୂରତି ଗୋ**
**(ମୁଁ) ସେଇ ଦେଉଳରେ ପୂଜାରୀ ॥୦॥**
**ଉଭାହୋଇ ତୁମ ଦେଉଳ ଦୁଆରେ**
**ଅନାଇ ରହିଛି ତୁମରି ଦୟାରେ**
**ଦେବ କି ନ ଦେବ କହ ଦୟାକରି, ମାଗୁଛି ମୁଁ ହାତ ପସାରି ॥୧॥**
**ତୁମ ରାଇଜରେ କାମ-ଡ଼କାୟତ**
**ପରବଳ ହେଲା, ହେଲି ଅନାୟତ୍ତ**
**ଦେହ ଦେଇ ଅଦେହକୁ ସୁନାଦେହି । ଦିଅ ଦିଅବାରେ ନିବାରି ॥୨॥**

(ରାଧା ଗାଇବା ବନ୍ଦ କଲେ-)

ଦୂତୀ - ଆରେ ଆର ପଟରେ ବି ଲେଖାଥିବ ମ । ଓଲଟାଇ ଦେଖ୍ନା -

ରାଧା - ସତେ ଲୋ । ଏ ପଟେ ବି ଅଛି ।

**ରୂପସୀ ଗୋ ତୁମ ରୂପ-ପାରାବାରେ**
**ପୋଷିଛି ବାସନା ଅବଗାହିବାରେ**
**ସୁମତି ଗୋ ଅନୁମତି ମିଳୁ ବାରେ ବୁଡ଼ି ଉଠି ଯାଏଁ ପହଁରି ।।୩।।**

ଦୂତୀ - ହେଲା ଏଥରକ ବିଶ୍ୱାସ ଆସିଲା । ମନଟା ଉଲୁସି ଉଠିଲା ପରା । ହଁ ତ ମୁହଁରେ ଆଉ ଉଆଁସ ଅନ୍ଧାରର କାଳିମା ନାହିଁ । ଗୋରା ତକ୍ ତକ୍ ହୋଇ ସଜ ପଦ୍ମଫୁଲଟି ପରି ଝଟକି ଉଠିଲାଣି । ଭଅଁର ଆସିଲେ ଚୁମ୍ବିଯିବ ।

ରାଧା - କେଡ଼େ ଅଲାଜୁକୀଟା ଲୋ ତୁ -

ଦୂତୀ - ଆଲୋ ମୁଁ ହେଲି ଅଲାଜୁକୀ- ଆଉ ତୁ ? ଲାକର ବୋଝରେ ନଇଁ ପଡୁଛୁ ପରା । ଦେଖିବି କେତେ ଲାଜ ଅଛି ଲାଜକୁଳୀ ଲତାର । ଏଥରକ ସବୁ ହେବ ଯେ- ସିଆଡ଼େ କାହ୍ନୁ ଗାଈ ନେଇ ଯାଇଥିବେ ଯମୁନାକୂଳ-ଗୋପୀ ଯାଇଥିବ ପାଣିକି - ସେଇଠି ମୁହଁ ଚାହାଁଚାହିଁ ହସା ହସି । ଆଖି ଆଖିରେ ଠାର ସଙ୍କେତ, ତା'ପରେ-

ରାଧା - ତା'ପରେ ତୋ ମୁଣ୍ଡ ଗଣ୍ଡି ।

ଦୂତୀ - ନାଇଁଲୋ ସେ ଠି ମୋ ମୁଣ୍ଡ ଗଣ୍ଡି ଥିବ ନାହିଁ- ଥିବ ତମ ଦିହିଙ୍କର । ମୁଣ୍ଡ ହୋଇଥିବ ଏକ ଆଉ ଗଣ୍ଡି ବି ମିଶି ହୋଇ ଯାଇଥିବ ଏକାକାର .... ଆଉ...

ରାଧା - (ଦୂତୀର ମୁହଁରେ ହାତ ଦେଇ) ଆଉ ବେଶୀ ଦୂରକୁ ଯା'ନା ଲୋ । ମୋ ରାଣ....

ଦୂତୀ - **ଜହ୍ନିଫୁଲ କହରରେ ମଲ୍ଲିଫୁଲ କହରରେ, ଗୁରି ହେଲାନ ଗୁରାଇ**
**କାହ୍ନୁ ଯାଇଥିବେ ଗାଈ ଚରାଇ, ଗାଈ ଚରାଇ**
**ଜହ୍ନିଫୁଲ କହରରେ ମଲ୍ଲିଫୁଲ କହରରେ ଗୁରି କଦମ୍ବ ବୁରାଇ**
**କହେଲୋ କଥା, ମାନ୍ତୁ ବଏଲେ ବନେ ହେତା**
**ଅମାନତା ସବୁବେଲେଁ ହେସି ଅଥା**
**ଜହ୍ନିଫୁଲ କହରରେ ମଲ୍ଲିଫୁଲ କହରରେ**
**ନାଇଁ ମାର୍‌ବୁ ନ ନୁରାଇ ।।**
**ହରବର ହେଲେଁ ଦେବୁ ହରାଇ ଦେବୁ ହରାଇ ।।୧।।**

ସେଇଠି କଦମ୍ବ କାନନରେ ଗୋପୀ ଯାଇ ଫେରି ପାରୁ ନ ଥିବ ଆଉ ଆମେ ହେଉଥିବୁ ଖୋଜି ଖୋଜି ହଇରାଣ ।

ରାଧା - କେତେ କହି ଯାଉଛୁ ଲୋ । ତୋ ମୁହଁରେ କିଛି ଧରାଣ ରହୁନାହିଁ ।

ଦୂତୀ - ସତକଥା କହୁଛି ଲୋ , ଖାଣ୍ଟି ସତକଥା । ହେଇଟି କାନିରେ ଗଣ୍ଠି ପଡ଼ିଲା । ଯଦି ଏମିତି ନ ହୁଏ ତ ଏ ଲଳିତା ନାଆଁରେ ଛେପ ପକାଇବୁ ।

**ଜହ୍ନିଫୁଲ କନ୍ଦରରେ ମଲ୍ଲିଫୁଲ କନ୍ଦରରେ ଘୁରି ତ ହେଲା ନ ପାରି**
**ଆଉର୍ ଦିନାକେତେ ଯାଉ ବାହାରି, ଯାଉ ବାହାରି**
**ଜହ୍ନିଫୁଲ କନ୍ଦରରେ ମଲ୍ଲିଫୁଲ କନ୍ଦରରେ ଢେହେରା ଯିବା ଉତୁରି**
**କାଳିଆ କାହ୍ନୁ ଗେଲିହା କାହ୍ନୁ**
**ବଜାଇ ବେନୁ ଡ଼ାକୁଥିବା ଅନୁଖନୁ**
**ଜହ୍ନିଫୁଲ କନ୍ଦରରେ ମଲ୍ଲିଫୁଲ କନ୍ଦରରେ**
**ନାଇଁ ପାରିବୁ ଠହରି**
**ପାର୍‌ଲେଁ ଦିନ ରାତି ପିଇବୁ ଘୁରି ପିଇବୁ ଘୁରି ।।୨।।**

ରାଧା - ଆଲୋ ନିଜ ମନ ଦର୍ପଣରେ ଯା' ଛାଇ ଦେଖୁଛୁ ତୋ ନିଜ ଭଳିଆ ଦିଶୁଛି । ଟିକିଏ ଲାଜ ମହତ ଜଗି କହିଲେ ଚଳନ୍ତା ନାହିଁ ?

ଦୂତୀ - ହେଲା ଲୋ ହେଲା ଚୁପ୍ କଲି.....

ରାଧା - ଆଲୋ ଆମେ ଘର ଭିତରଟାରେ ବସି କେତେ କ'ଣ କରିଯାଉଛୁଁ । କେହି ନାହାନ୍ତି ବୋଲି- କିଏ ଶୁଣିଲେ କ'ଣ କହିବ ?

ଦୂତୀ - ମୁଁ ଆସିଥିଲି ଯମୁନା ଯିବାକୁ । ଘରେ ପାଣି ନାହିଁ । ପାଣି ଦି'ଟା ଆଣିଥିଲି ଯେ ସେ ତ ହାତ ଧୁଆ ମୁହଁ ଧୁଆକୁ ନିଅଣ୍ଟ। ଏକୁଟିଆ ଯିବି କ'ଣ ? ତୋତେ ଡ଼ାକିବାକୁ ଆସିଲି । ଆସି ତ ଏତେ କଥା । ଚ଼ାଲ୍ ଯିବା ବିଳମ୍ବ ହେଉଛି ।

ରାଧା - ହେଉ ଯିବା ଯେ କୁଟିଳା ଆସିଲେ ଯାଆନ୍ତେ । ସେ ବି ଯମୁନା ଯାଇଛନ୍ତି ।

ଦୂତୀ - ହେଉ ବାଟରେ କହିଦେବା ନି । ଚ଼ାଲ୍-

(ପ୍ରସ୍ଥାନ)

**-ଦୃଶ୍ୟାନ୍ତର-**

(ଯମୁନା ବାଟ ଗୋଟିଏ ଦିଗରୁ କୃଷ୍ଣ ଅନ୍ୟ ଦିଗରୁ କୁଟିଳା ପ୍ରବେଶ କଲେ)

କୃଷ୍ଣ - ଆରେ କିଏ ମ ? କୁଟିଳା ମାଉସୀ ପରା-ଭାରି ବେଗି ବେଗି ପାହୁଣ୍ଡ ପକାଉଛ। ଏତେ ତରତର କାହିଁକି ?

କୁଟିଳା - (କୃଷ୍ଣଙ୍କୁ ନିରେଖି ଚ଼ାହିଁ ଛିଡ଼ା ହେଲା)

କୃଷ୍ଣ - ଏତେ ତରତରରେ ଯାଉଥିଲ, କ'ଣ ହେଲା, ପୁଣି ତରାଟି ଚ଼ାହିଁ ରହିଲ ଯେ-

କୁଟିଳା - ଆଗୋ ଯୋଉଥିପାଇଁ ତରତର ହେଉଥିଲି। ସେ କାମ ହୋଇଗଲା-

କୃଷ୍ଣ - ବୁଝି ହେଲା ନାହିଁ...

କୁଟିଳା - ବୁଝି ହଉନାହିଁ.... ହଉ-ବୁଝାଇ ଦେଉଛି। ଘରେ କେହି ନାହାନ୍ତି। ଭାଉଜ ଲଳିତା ସାଙ୍ଗରେ ଯମୁନାକୁ ଏଇଲାଗେ ଗଲେ। ଘରେ ଦୁଧ ଦହି ସବୁ ଅଛି-

କୃଷ୍ଣ - କ'ଣ ହେଲା ସେଠୁ ?

କୁଟିଳା - କ'ଣ ଆଉ ହୁଅନ୍ତା, ଡ଼ର ତମକୁ - ତମେ ଯାଇ ଯଦି ପହଞ୍ଚିଥାଅ- ନା ଦୁଧ ଥିବ ନା ଦହି ନା ଛେନା....

କୃଷ୍ଣ - ସେଥିପାଇଁ ଦେଖିଲା ପରେ ଶାନ୍ତିରେ ନିଶ୍ୱାସ ମାଇଲ। ହେଲେ ମାଉସୀ ଏଥର ଦୁଧ ଦହି ଆଡ଼େ ଆଉ ନଜର ନାହିଁ।

କୁଟିଳା - ତେବେ ନଜରଟା କୁଆଡ଼େ...

କୃଷ୍ଣ - ଏଆଡ଼େ..

କୁଟିଳା - ମାନେ ଯମୁନା ଆଡ଼େ ଗାଈ ଚ଼ରାଇବ ସେଠି ... ଭଲକଥା। ସେୟା କର...

କୃଷ୍ଣ - ଯା' ଭାବୁଛ ଠିକ୍ ସିମିତି ନୁହେଁ ଯେ.... ହେଉ ଯାଅ ଯାଅ।

କୁଟିଳା - ଯାଉଛି ଲୋ ମାଆ... ଭାଉଜ ଆସୁ ଆସୁ କେତେବେଳ ହେଉଛି କେ ଜାଣି ? ସିଆଡ଼େ ଘରଟା ମେଲା ପଡ଼ିଥିବ...

କୃଷ୍ଣ - ଯାଅ-ଯାଅ- (କୁଟିଳା ଗଲେ)

ରାଧା ଆଉ ଲଳିତା ତେବେ ଯମୁନା ଯିବା କଥା ସତ। କେତେ ଦେରି

ହେଉଛି ଦେଖେଁ । ଲୋକ ବାକ ତ ଦିଶୁ ନାହାନ୍ତି (ଟିକିଏ ଦୂରକୁ ଚାହିଁବା ଭଙ୍ଗୀରେ.... ଏଇ ତ ଆସୁଛନ୍ତି ।

(ଆସିଲେ ରାଧା ଆଉ ଲଳିତା.... କାଖରେ ମାଠିଆ)

ରାଧା - (ଟିକିଏ ଦୂରରୁ ଦେଖି ପାରି) ଏ ମାଆ ଲୋ... ଦେଖ୍ ଲୋ ଲଳିତା ସେଠି କିଏ ଜଣେ ଅଛି । ମୋତେ ଭାରୀ ଭୟ୍ ଲାଗୁଛି ଲୋ...

ଲଳିତା - କାହିଁ କୋଉଠି ମ... ଦେଖେଁ କିଏ ସେ ? (ଦେଖିଲା- ଟିକିଏ ହସି)

ରାଧା - କ'ଣ କିଲୋ ? ଭୂତ କି ପ୍ରେତ ମ...

ଲଳିତା - ନା ଲୋ ଭୂତ ପ୍ରେତ ନୁହେଁ ଯେ...ଚୋର

ରାଧା - ଚୋର ? ଏ ମା ଲୋ କ'ଣ କରିବା କହିଲୁ ? ପାଖରେ କେ ଅଛି ତ ଡାକ ପକା । ମୋତେ ଭାରୀ ଡର ମାଡୁଛି । କି ରକମର ଚୋର କି ଲୋ ?

ଲଳିତା - ମନ ଚୋର - ତୋରି ମନ ଯେ ଚୋରି କରିଛି....

ରାଧା - କିଏ କଳାକାହ୍ନୁ ? ଏ ବାଟ ମଝିରେ ... ଚାଲ୍ ଚାଲ୍ ଶୀଘ୍ର ପଳାଇବା ଚାଲ୍ । କେ ଦେଖିଲେ କ'ଣ କହିବ ?

(କୃଷ୍ଣ ଆସିଲେ ବାଟ ଓଗାଳି ବସିଲେ)

କୃଷ୍ଣ - କୁଆଡ଼େ ଯିବ କିଶୋରୀ ? ତୁମ ସେବକ ଅଛି । ଆଦେଶ କଲେ ନେଇ ପହଞ୍ଚାଇ ଦେବ ।

ରାଧା - ଲଳିତା - ଚାଲ୍ ମ । ମୋତେ ଏସବୁ ଭଲ ଲାଗେ ନାହିଁ ।

କୃଷ୍ଣ - ନା ରାଧେ! ଯିବ ତ ଏ ପ୍ରାଣ ଟିକକ ମଧ୍ୟ ନେଇ କରି ଯାଅ ।

ରାଧା - କେତେବେଳୁ ଆମେ ଘରୁ ଆସିଲୁଣି । କିଏ ଜାଣିଲେ ଗୋପ ନଗରରେ ହାଟ ବସିଯିବ । ଦୟାକରି କାହ୍ନୁ ଆମକୁ ଯିବାକୁ ଦିଅ ।

**ହାଟ ବସାଅନା ଗୋପ ନଗରେ ବାଟ ଛାଡ଼ିଦିଅ ବାଟ ଛାଡ଼ି ଦିଅ**
**ଯାହା ଏବେ କର ଗୋପ କଳାକର କହି ନୁହେଁ କାହା ଆଗରେ ॥୦॥**
**ମୋତେ ଲାଗେ ଡ଼ର କେତେବେଳୁ ଘର ଛାଡ଼ି ଆସିଲୁଣି ଯମୁନା**
**ଶାଶୁ ନଣନ୍ଦର ଘର ଦାମୋଦର ଟିକକେ ହୁଏ କଥାଶୁଣା**
**ଯାଇଛି ନଣନ୍ଦ ଭିଆଇବ ଦ୍ୱନ୍ଦ୍ୱ ଜଳି ଯିବେ ଶାଶୁ ରାଗରେ ॥୧॥**

କେତେବେଳୁ ଘର ଛାଡ଼ି ଆସିଛୁଁ । ନଣନ୍ଦଟି ଏଇକ୍ଷଣି ଯାଉଛି । ସେ ତମକୁ

ବି ଦେଖିଥିବ। ସତମିଛ ଯୋଡ଼ି କହି ଦେବ। ଶାଶୁ ରାଗରେ... ବହୁତ ଝିଙ୍କାସିବେ। କାହ୍ନୁ ମୋ ସାନ କୁହା ମାନ। ଆମକୁ ବାଟ ଛାଡ଼।

କୃଷ୍ଣ - (ଓଗାଳି ବସି) ତୁମେ କ'ଣ ମୋ ମନର ଦରଦ ବୁଝି ପାରୁନାହଁ କିଶୋରୀ।

ରାଧା - ଦେଖ୍ ଲୋ ଲଳିତା। କ'ଣ କରିବା ?

ଲଳିତା - ମୁଁ କ'ଣ କରିବି ଲୋ ମାଆ ... ମାନିଯାଅ ପିଲା-ଛାଡ଼। ଆମେଯାଉଁ।

ରାଧା - **ସାନ ହୋଇଛ କି ହେ ମନମୋହନ ମାନ ମହତ ନ ହରାଅ**

**ଲାଜ ଗଲେ ଥରେ ସହଜେ ନ ମିଳେ ନିଲଜ ବୋଲି ନ କୁହାଅ**

**ନାରୀ ପଣ କାଣ ସାରି ଦେଲେ, ପ୍ରାଣ ହାରିବି ତୁମରି ଆଗରେ ॥୨॥**

ଲଳିତା - କି କଥା ମୁହଁକୁ ଆଣୁଛୁ ଲୋ ପୋଡ଼ାମୁହିଁ। ପ୍ରାଣ ହାରିବୁ କାହିଁକି ଲୋ ଅଲାଜୁକୀ।

କୃଷ୍ଣ - ତୁମେ କ'ଣ ଚାହଁ ଯେ ମୋର ପ୍ରାଣଟା ହେଲେ ପଳାଇ ଯାଉ। ତୁମେ ବୁଝି ପାରିବ ନାହିଁ ରାଧା- ତୁମ ବିନା ମୋ ପ୍ରାଣଟା କିପରି ଅଥୟ ହେଉଛି। ଦିନ ରାତି କେବଳ ତୁମରି ଚିନ୍ତା ମୋ ମନରେ। ସକାଳ ହୁଏ। ଉଇଁ ଆସେ ପୂରୁବ ଆକାଶରେ ସୂରୁଯ। ସେଇ ସକାଳ ସୂର୍ଯ୍ୟରେ ଦେଖେଁ ତୁମରି ମୁହଁ। ଅରୁଣର ନାଲି କିରଣରେ ତୁମରି ଦେହର ରଙ୍ଗ। ସଞ୍ଜ ହୁଏ। ଚନ୍ଦ୍ର ଆସେ ହସି ହସି ନୀଳ ଆକାଶକୁ। ସତେ ଯେମିତି ତୁମରି ମୁହଁର ସୌମ୍ୟତା ଚୋରାଇ ନେଇ ଖିଲି ଖିଲି ହସୁଛି ଚନ୍ଦ୍ର ମୋତେ ଖତେଇ ହେଲା ପରି। ତା'ରି ଜୋଛନାରେ ବିଛୁଡ଼ି ହେଇ ପଡ଼ିଛି ତୁମରି ହସ। ସତେ ସଖୀ ଯେଉଁ ଆଡ଼େ ଦେଖୁଛି, ଯା ଦେଖୁଛି ସବୁଠି ତୁମରି ମୁହଁ, ତୁମରି ରୂପ।

**ତୁମରି ମୂରତି ସୁମରି ମୁଁ ଯିବି ମରି ଗୋ ସୁନାଗୋରୀ ॥**

**ରୂପ ତୁମରି ସରି ପାଏ କେ ଅପସରୀ**

**ସେ ରୂପ ଦିଏ ମୋତେ ସାରି ॥୦॥**

**ଏ ସୁନାଦେହେ ଦେହ ମିଶାଇ ନିସନ୍ଦେହ**

**ପାଇବି ବଇକୁଣ୍ଠ ପୁରି**

**ଏ ଚନ୍ଦ୍ରମୁଖେ ମୁଖ ଲାଗି ହେବ ଯେ ସୁଖ**

**ସରି ନୁହେଁ ସରଗ ଶିରୀ ॥୧॥**

**ତୁମକୁ ଖୋଜି ଖୋଜି ପାଇଛି ଯେବେ ଆଜି**
**ସହଜେ ତେଜି କି ମୁଁ ପାରି**
**ଦେଖିବାକୁ ସଖୀର ଦେଖା ପଦ୍ମ ଆଖିର**
**ବଞ୍ଚିଛି ଏତେଦିନ ସରି ।।୨।।**

ରାଧା - ମୁଁ କହୁଛି ବାଟ ଛାଡ଼ । ସହଜରେ ଯଦି ନ ଛାଡୁଛ ତେବେ କଥା ବଢ଼ିଯିବ ।

କୃଷ୍ଣ - ରାଗିଗଲ ପ୍ରିୟତମା । କିନ୍ତୁ ତମେ ରାଗିଲେ ଆହୁରି ସୁନ୍ଦର ଦିଶୁଛ । ତୁମରି ଗୋରା ତକ ତକ ମୁହଁଟି ରାଗିଗଲେ ଯେଉଁ ଅପୂର୍ବ ଅରୁଣିମା ଧାରଣ କରୁଛି ତାହା କେବଳ କପାଳବନ୍ତ ଲୋକଙ୍କୁ ଦେଖିବାକୁ ମିଳେ ।

ରାଧା - ଏ ସବୁ ବାଜେ କଥା ଛାଡ଼ । ଆମକୁ ଯିବାକୁ ଦିଅ । ଚାଲ୍ ଲୋ ଲଳିତା - (ଯିବାବେଳେ ପଣତ କାନି ପଡ଼ିଲା କୃଷ୍ଣଙ୍କ ହାତରେ) ଏ କ'ଣ ? ପଣତ ଛାଡ଼-

**ପଣତ ଛାଡ଼ ନନ୍ଦ ଦୁଲାଳ ଛାର ପଣତ କାନିରେ କି ଅଛି ।**

କୃଷ୍ଣ - **ପଣତ କାନିରେ ବାନ୍ଧିଛୁ ଧନୀରେ**
**ମୋର ହୃଦେ ଯା ଅଛି ବାଛି ବାଛି ।।୦।।**

ରାଧା - **ନ କର ଅଝଟ ଯିବି ଝଟ ଝଟ ଶାଶୁ ଚାହିଁଥିବେ ବାଟ ।**

କୃଷ୍ଣ - **ମୁଁ ଯେ ଚାହିଁ ଚାହିଁ ତୁମକୁ ଗୋ ରାଇ ହୁଏଁ କେତେ ଛଟପଟ ।**

ରାଧା - **କଳାମୁହେଁ ଲାଜ ନାହିଁ ବ୍ରଜରାଜ**

କୃଷ୍ଣ - **ଆଜି ଆଣିବି ତୁମଠୁ କିଛି କିଛି ।।୧।।**

ଦୂତୀ - ଏ ମା' - ଏମାନେ କେତେ ଗହୀରରେ କଥା ହେଉଛନ୍ତି ମ । ଆଲୋ ରାଧା- ବୁଝୁଛୁ ନା ନାହିଁ ମ । ତୁ କହୁଛୁ କଳା ମୁହଁରେ ଲାଜ ନାହିଁ । ସେ କହୁଛନ୍ତି, ନାହିଁ ତ ଆଜି ତୋହରି ମୁହଁରୁ କିଛି ଲାଜ ନେବେ । ଆଲୋ ଟିକେ ବୁଝ ମ । ହେଉ ଲୋ ମାଆ ମୁଁ ଯାଏଁ । ଏ ସବୁ ସୁଆଗ ଦେଖିବାକୁ ମୋର ବେଳ କାହିଁ ? (ଗଲା)

ରାଧା - ତୁମେ ଏମିତି କଥା ହେଉଛ କଳା କାହ୍ନୁ । ଏ ଦେହଟାରେ କ'ଣ ଅଛି । ଦେହ ପରା ମାଟି ପାଣିର ଜିନିଷ ? ପ୍ରାଣଟା ଗଲେ, କାଲି ଗନ୍ଧେଇ ଯାଏ । ଏ ଦେହଟାକୁ ଭଲ ପାଇ ଲାଭ କ'ଣ ?

କୃଷ୍ଣ - ତୁମେ କ'ଣ ଜାଣ ନି କିଶୋରୀ- ଦେହ ଓ ମନର ସଂପର୍କ। ଦୁଇଟା ମନ ଏକ ହୁଏ। କିନ୍ତୁ ତାକୁ ହୃଦୟଙ୍ଗମ କରି ହୁଏ କେତେବେଳେ ? ଦେହ ଦି'ଟାକୁ ଅଲଗା ରଖି ନା ମିଶାଇ। ମନ ଏକ ହେଲେ ଦେହର ଭିନ୍ନତା ଅନୁଭବ କରି ହୁଏ ନା। ଆଉ ଲାଜ କାହିଁକି ? କେହି ନାହିଁ। ଲଳିତା ତ ଗଲା। ଏପରି ସୁଯୋଗ ଆଉ ମିଳିବ ? ଆସ ବାନ୍ଧବୀ (ଆଲିଙ୍ଗନ କରି ବସିଲେ)

ରାଧା - ଏ ବାଟ ମଝିଟାରେ ? ନା କାହ୍ନୁ ମୋର ବିନତି ଯେନ ଏସବୁ ଭାରୀ ଅସୁନ୍ଦର ଦିଶୁଛି।

**ସାନ କୁହା ମୋର ମାନ ହେ ସୁନ୍ଦର ଅସୁନ୍ଦର କଥା ଛାଡ଼।**

କୃଷ୍ଣ - **ମଣିଷର ଦେହି ଧରି ସୁନାଦେହୀ ପାଲଟି ଗଲକି ଜଡ଼ ।**

ରାଧା - **ଶରୀର ପିପାସୁ ହୁଏ ସିନା ପଶୁ।**

କୃଷ୍ଣ - **ମୁଁ ଯେ ତା'ଠୁ ବଳିଯିବି କିଛି କିଛି ॥୨॥**

ରାଧା - ଶରୀରର ପିପାସା ମେଣ୍ଟାଇବାରେ ପଶୁର ପ୍ରବୃତ୍ତି ଥାଏ। ଆମେ ମଣିଷ ମନୁଷ୍ୟୋଚିତ ବ୍ୟବହାର କରିବା ଉଚିତ। ତୁମେ ଏ ସବୁ କଥା ଛାଡ଼। ମୋତେ ଯିବାକୁ ଦିଅ। କଥା ପଦାରେ ପଡ଼ିଲେ ମୁଁ କ'ଣ ଆଉ ରହି ପାରିବି ?

କୃଷ୍ଣ - ଶରୀର ଆଉ ମନ ନେଇ ଜନ୍ମ ନିଏ ପ୍ରାଣୀ। ଦୁଇଟି ମନ ଏକ ହେଲେ ଶରୀର ମାନେ ବି ଚାହାନ୍ତି ଏକ ହୋଇଯିବେ। ଶରୀରର ମିଳନକୁ ପଶୁତା କହିବା ସେମାନଙ୍କୁ ସୁନ୍ଦର ଲାଗେ ଯୋଉମାନେ ଶରୀର ଧର୍ମୀ। ସୁଯୋଗ ତ ବାରବାର ଆସେ ନାହିଁ। ଯେତେବେଳେ ଆସେ ତାକୁ ଛାଡ଼ିବା ଲୋକଙ୍କୁ କାପୁରୁଷ କୁହାଯାଏ। ଆସ ଆମେ ମିଶିଯିବା। ଆମ ଦୁହିଁଙ୍କର ମନ ଅଲଗା କି ଶରୀର ଅଲଗା ନୁହେଁ। ପ୍ରକୃତି ଆଉ ପୁରୁଷ। କେହି କାହାଠାରୁ ଅଲଗା ରହି ପାରନ୍ତି ନାହିଁ। ହୁଏତ ତୁମେ ଶରୀର ହେଲେ ମୁଁ ଆତ୍ମା। ବା ମୁଁ ଶରୀର ହେଲେ ତୁମେ ଆତ୍ମା। ତୁମେ ଭୁଲ୍ ବୁଝି ସାଂସାରିକ ଚଳଣିକୁ ଆଦର୍ଶ ମାନି ଅଲଗା ରହିବାର ଚେଷ୍ଟା କଲେ ମୁଁ ସବୁଦିନ ପାଇଁ ଅଲଗା ହୋଇଯିବି, ଆସ-ଆସ-ପ୍ରିୟତମା। ଆସେ ଆମେ ନିବିଡ଼ ଆଶ୍ଳେଷରେ ବାନ୍ଧିହୋଇ ଯୁଗ ଯୁଗ ପାଇଁ ଏକ ହୋଇଯିବା-ଆସ-

ଅମାନିଆ ହୁଅନି । (ଦୁହେଁ ଆଲିଙ୍ଗନ ପାଶରେ ବନ୍ଧା ହେଲେ) (ଦୂତୀ- କହି କହି ଆସିଲା)

ଦୂତୀ - ରାଧା-ରାଧା-ଏ ମା' ଆଲୋ ସେଆଡ଼େ ଘର ଲୋକେ ସବୁ ଖୋଜିବାକୁ ଆସିଲେଣି- (ବିପରୀତ ଆଡ଼େ ଦେଖାଇ) ଯାଉଛୁଁ-ଯାଉଛୁଁ-ଚାଲ୍- ଆଲୋ-ବଡ଼ ହଇରାଣରେ ପକାଇଲ....

ରାଧା - **ଜଗତ ଜଞ୍ଜାଳ ହେଲା ମୋତେ କାଳ ଯାଉଛି ପ୍ରଭୁ ଏଥର ।**

କୃଷ୍ଣ - **କହ କେତେ ଦିନ ହେବି ହୀନ ଦୀନ ଛାଡି କି କରି ପଥର ।**

ଦୂତୀ - **ଏ ସୁଆଗ ଯାକ ଦୟାକରି ରଖ**
**ଶୁଣିବ କେ କେତେ କରିବେ ଛି.. ଛି.. ।।୩।।**
(ଦୂତୀ ରାଧାର ହାତ ଧରି ଟାଣି ଟାଣି ନେଇଗଲା-)

ଶିବ - (ହଠାତ୍ ପ୍ରବେଶ କରି)
ପାର୍ବତୀ-ପାର୍ବତୀ

ପାର୍ବତୀ - କ'ଣ ପ୍ରଭୁ ! ଆଜିର ଡ଼ାକରେ ପ୍ରଭୁଙ୍କର ବ୍ୟସ୍ତତା ପ୍ରକାଶ ପାଉଛି ।

ଶିବ - ତୁମେ କ'ଣ ଶେଷରେ ମୋତେ ମଧ୍ୟ ମାୟାଗ୍ରସ୍ତ କରିବାରେ ପଛାଇଲେ ନାହିଁ ।

ପାର୍ବତୀ - ଏପରି ସନ୍ଦେହର ଅବକାଶ କାହିଁ ପ୍ରଭୁ ।

ଶିବ - ଯୋଗମାୟା ବଳରେ ତୁମେ ମୋର ଇଷ୍ଟଦେବ ଶ୍ରୀକୃଷ୍ଣ ଓ ମାତୃ ସ୍ଥାନୀୟ ଶ୍ରୀରାଧାଙ୍କର ଲୀଳା ଦେଖାଇବାକୁ କହି ସେମାନଙ୍କୁ ଗୀତ ଗୁଆଇ, ନାଟ ନଚେଇ ଛାଡ଼ିଲ ।

ପାର୍ବତୀ - ଏହା ତ ଅନାଦି କାଳରୁ ଚାଲିଛି ପ୍ରଭୁ ! ପବନ ଗାଏ- ସେ ତାଳପତ୍ର ବୃକ୍ଷଲତା ଦୋହଲି ଦୋହଲି ନାଚନ୍ତି । ସମୁଦ୍ରର ଲହରୀ ସେ ଛନ୍ଦରେ ନାଚି ଉଠେ । କୋଇଲି ବି ସେଇ ସୁରେ ଗାଏ ଆଉ ସେ ଗୀତରେ ଆତ୍ମହରା ହୋଇ ସାରା ପ୍ରକୃତି ନାଚି ଉଠେ । ଗୀତ ଆଉ ନାଚ ବିନା ତ ପ୍ରକୃତି ବା ପୁରୁଷ କେହି ରହି ପାରନ୍ତି ନାହିଁ । ମୁଁ ନୂତନ ଭାବେ କ'ଣ କଲି ପ୍ରଭୁ ? ଆପଣ ତ କୈଳାସରେ ଗିରି ଝରଣାର କୁଳୁକୁଳୁ ସଙ୍ଗୀତ ଆଉ ପଥରରୁ ପଥର ଡ଼େଇଁ ଡ଼େଇଁ ନାଚିବାର ଦୃଶ୍ୟ ନିତି ଦେଖୁଛନ୍ତି । ସେଥିରୁ ଇଷ୍ଟଦେବ ଆଉ ଇଷ୍ଟଦେବୀଙ୍କର ନୃତ୍ୟ ଗୀତର ଆଭାସ ମିଳେ ନା କି ପ୍ରଭୁ ?

ଶିବ - ତା ତ ଦିବାଲୋକ ପରି ସୁସ୍ପଷ୍ଟ ପାର୍ବତୀ । କିନ୍ତୁ ଏଇ ଯେ ବାଟ ମଝିଟାରେ ବାଟ ଓଗାଳି ଟଣା ଓଟରା କରାଇବା ଜାଗତିକ ଦୃଷ୍ଟିରୁ ଅସୁନ୍ଦର ପରି ଦିଶୁଛି....

ପାର୍ବତୀ - ଆପଣ ତ ନିଜେ ଏଇ କଥାଟାକୁ ବୁଝାଇବାକୁ ଯାଇ ମୋତେ କହିଥିଲେ ଯେ ଆତ୍ମାକୁ ପରମାତ୍ମା ସବୁବେଳେ ଟାଣି ଓଟାରି ନିଜ ମଧ୍ୟରେ ମିଶାଇ ଦେବାକୁ ଚାହେଁ । ମାତ୍ର ଆତ୍ମା ସେ କଥା ବହୁତ ଡେରିରେ ବୁଝେ । ନ ବୁଝିବା ପର୍ଯ୍ୟନ୍ତ ଜାଗତିକ ଜଞ୍ଜାଳରେ ଭିଡ଼ିହୋଇ ଫେରୁଥାଏ ।

ଶିବ - ତା ସତ, କିନ୍ତୁ ତାକୁ ଏପରି ଭାବରେ....

ପାର୍ବତୀ - ଏପରି ଭାବେ ନ ପରଷିଲେ ଜଞ୍ଜାଳିଆ ଲୋକଙ୍କୁ ରୁଚିବ ନାହିଁ । ସମସ୍ତେ ଆପଣଙ୍କ ପରି ତାତ୍ତ୍ୱିକ ବିଚାର ସଂପନ୍ନ ଲୋକ ନୁହନ୍ତି ।

ଶିବ - ଆରେ ତେବେ ଲୋକେ ୟାକୁ କିମିତି ବୁଝିବେ ?

ପାର୍ବତୀ - ପ୍ରଥମେ ଆଗ୍ରହ ବା ଶ୍ରଦ୍ଧା ସୃଷ୍ଟି ହୁଏ । ତା'ପରେ ହେବ ଭକ୍ତି; ତା'ପରେ ସାଧନା । ସାଂସାରିକ ଲୋକଙ୍କ ରୁଚି ନେଇ ଏ ପ୍ରସଙ୍ଗର ଅବତାରଣା ପ୍ରଭୁ ।

ଶିବ - କିନ୍ତୁ- ତୁମେ ଯେ ଶ୍ରୀରାଧାଙ୍କୁ କଲ ପର ସ୍ତ୍ରୀ । ପୁଣି ଇଷ୍ଟଦେବ ଶ୍ରୀକୃଷ୍ଣଙ୍କର ପ୍ରେୟସୀ... କଥାଟା ତ ଅଡୁଆ ଲାଗୁଛି...

ପାର୍ବତୀ - ଆପଣଙ୍କୁ ବିଶେଷ ଭାବେ ବୁଝାଇବାର ଶକ୍ତି କାହିଁ ? ଦେଖନ୍ତୁ ରଙ୍ଗମଞ୍ଚରେ ପତିପତ୍ନୀ ରୂପେ ଅଭିନୟ କରୁଥିବା ଦୁଇଟି ସ୍ତ୍ରୀ ପୁରୁଷ, ଯଦି ନିଜ ନିଜ ପତି ଓ ପତ୍ନୀ ପାଖକୁ ଫେରି ନ ଯାନ୍ତି ଅବସ୍ଥା କ'ଣ ହେବ ? ଠିକ୍ ସେପରି ସଂସାର ରଙ୍ଗ ମଞ୍ଚରେ ଅଭିନୟ କରୁଥିବା ପତି ଅଛନ୍ତି । ବିଶ୍ୱପତି ଶ୍ରୀକୃଷ୍ଣ ପ୍ରତ୍ୟେକ ପ୍ରାଣୀର ପତି ଅଟନ୍ତି । ବାସ୍ତବ ପତିଙ୍କୁ ଚିହ୍ନି ପାରି ତାଙ୍କ ଠାରେ ମନ ପ୍ରାଣ ସମର୍ପଣ କଲେ ତା' ଦୋଷ ବୋଲି ଧରିବା ଏକ ଗର୍ହିତ ଭାବନା ହେବ ନାହିଁ କି ? ରାଧା ସହ ସମସ୍ତ ଗୋପୀ ବିଶ୍ୱପତିଙ୍କୁ ଚିହ୍ନିପାରି ବାସ୍ତବ ପତି ରୂପରେ ମନ ପ୍ରାଣ ଢ଼ାଳି ଦେଲେ ।

ଶିବ - ଅତି ଉତ୍ତମ ବିଚାର ତୁମର ପାର୍ବତୀ । ହେଉ, ୟାପରେ?

ପାର୍ବତୀ - ୟାପରେ ଦେଖିବେ ଲୀଳାପ୍ରିୟ ଶ୍ରୀକୃଷ୍ଣଙ୍କର ଅନ୍ୟ କୌତୁକ । ଯମୁନା ବାଟର ଏଇ ରାଧା କୃଷ୍ଣଙ୍କର ଟଣା ଓଟରା ସଂବାଦରେ ଗୋପ ସାରା

ଆଲୋଚ଼ନା ସମାଲୋଚ଼ନା ଚ଼ାଲିଛି। ରାଧାଙ୍କ ଉପରେ ଶାଶୁ ନଣନ୍ଦର ଅତ୍ୟାଚ଼ାର। ରାଧା ବାହାରି ପାରୁ ନାହାନ୍ତି ଯମୁନା। ଶ୍ରୀକୃଷ୍ଣ ଦର୍ଶନ ପାଇ ପାରୁ ନାହାନ୍ତି। ଟିକିଏ ଦର୍ଶନ ପାଇଁ ଟିକିଏ ସ୍ପର୍ଶ ପାଇଁ ଏକ ନୂତନ ଯୋଜନା ଦେଖିବେ ପ୍ରଭୁଙ୍କର।

ଶିବ - ଆମେ ତେବେ ଏଠାରୁ ଅନ୍ତର୍ହିତ ହେବା ଉଚ଼ିତ।

ପାର୍ବତୀ - ହଁ ପ୍ରଭୁ....

(ପ୍ରସ୍ଥାନ)

**-ଦୃଶ୍ୟାନ୍ତର-**

(ଲଳିତା କାଖରେ ମାଠିଆ ଧରି ପ୍ରବେଶ କଲେ)

ଦୂତୀ - **ଆସ ରାଧା ଗୋରୀ ଯମୁନା ଯିବା**
**ଗାଧୋଇ ହର ଗଉରୀ ପୂଜିବା**
**କୂଳେ ବାଲୁକା ଲିଙ୍ଗ ସରଜିବା ଯେ**
**ଶିବ-କୃପା ଅରଜିବା**
**ଶୁଚ଼ି ସ୍ନାନ ସାରି ରୁଚ଼ି ଅନୁଯାୟୀ ସଜନୀ ମନ-ମୁକୁର ମାଜିବା ଲୋ ସଜନୀ ॥୧॥**

ଆଲୋ କିଶୋରୀ ଶୀଘ୍ର ଯିବା ଆ। ସ୍ନାନ ସମୟ ଗଡ଼ିଯାଉଛି ଯେ।

**ଗାଧୋଇବା ବେଳ ଯାଉଛି ଗଡ଼ି**
**ବେଳ ଆସି ହେଲାଣି ଦୁଇଘଡ଼ି**
**ସେ କଳା କାହ୍ନୁ ଝଗଡ଼ି**
**ନୀର ଆଣି ଯାଇ ନୀରଜ ନୟନା ରାଧିକା ସବୁ ଦେବା କି ବିଗାଡ଼ି ॥୨॥**

ରାଧା ଲୋ - ରାଧା ! କ'ଣ ଘରେ ନାହୁଁ କି ଲୋ। ଯିବୁ ବୋଇଲେ ଶୀଘ୍ର ଯିବା ଆ। ନ ହେଲେ ....

କୁଟିଳା - (ହଠାତ୍ ପ୍ରବେଶ କରି) ନ ହେଲେ ଏକାକିନୀ ଯିବୁ। ଯାଇ ମରୁନୁ।

ଲଳିତା - କାହିଁକି ଏତେ ରାଗ କି ଲୋ ? କ'ଣ ଲୋକେ ସାଙ୍ଗ ସୁଖ ହୋଇ ଡ଼କାଡ଼କି ହୋଇ ଯାଆନ୍ତି ନାହିଁ ? ମୁଁ ଡ଼ାକିଲି ବୋଲି କ'ଣ ଦୋଷ ହୋଇଗଲା। କୋଉ କଥା ପାଇଁ ଏତେ ଗରବ ଲୋ। ରୂପ ନା ବୟସର ?

କୁଟିଳା - ଗରବ ମୋର୍ ନା ତୋର୍ ଲୋ । ଯମୁନା ଯିବା ନାଆଁରେ ଯା ହେଉଛି ତା' ସମସ୍ତେ ଜାଣିଲେଣି । ବିଲେଇ ଆଖି ବୁଜି ଦୁଧ ପିଏ । ଭାବେ ଯେ କେହି ଦେଖୁନାହାନ୍ତି ।

ଲଳିତା - କ'ଣ ହେଉଛି କି ଲୋ ? ସାଙ୍ଗ ସାଙ୍ଗ ହୋଇ ଟିକିଏ କୁଆଡ଼େ ଗଲେ ତୋର୍ ଦିହ ସହୁ ନାହିଁ ।

କୁଟିଳା - ଯା କରୁଛ ନା ମୋ ଦିହ କାହିଁକି କାହାରି ବି ଦିହ ସହିବ ନାହିଁ । ନାଆଁ ହେଉଛି ଯମୁନା ଯିବା ଆଉ ସେଠି ବାଟେ ଘାଟେ ଟଣା ଓଟରା- ସୁଆଗ -ପେରେମ... କ'ଣ କହନ୍ତି.....

ଯା - ଯା - ମୋ ବହୁ ଯିବ ନି ପାଣିକି... ହେଲା ସେ ଯମୁନା ଯିବା ପରବ ଆଜିଠୁ ଶେଷ ହେଲା ।

**ମୋର୍ ବହୁ କାଏଁ ଯମୁନା ଯାଏତା କାଏଁ ଆଏସ ଡ଼ାକି ଡ଼ାକି ଡ଼ାକି**
**ଯମୁନା ଗଲେଁତ ମାନ୍ କି ମହତ କିଛି ନାଇଁ ରହେ ବାକି ।।୦।।**
**ଯମୁନାର ସିନା ନାଆଁ ହେସି ଗାଆଁ ହେସି ତୁମର୍**
**ବାଟେଁ ଘାଟେଁ ଫେର୍ ଯାହା ହେସି ଫିଟିଁଗଲା ନ ଗୁମର୍**
**ସାକ୍ଷୀ ଅଛନ୍ ଡ଼ାକି ନେଲେଁ ଦେବେ ପରେ ସବୁ ବକି ।।୧।।**
**ଯେନ୍ ଗୁଟାକୁ ପାଏନ୍ ଲାଗ୍‌ସି ମୁଇଁ ଆନ୍‌ମି ବୁହି**
**ଗାଧିବା ବେଲେଁ ବି ପାଏନ୍ ଦୁଇ ଜୁରା ଦେଇଥିମି ଥୁଇ**
**ଯମୁନାର୍ ନାଆଁ ଧଏଲେଁ ତେତ୍‌କେଁ ଜାନ୍‌ବା ପରେ ଗୁପନାକୀ**

ଲଳିତା - ଆ-ହା-ହା-ନିଜ କଥାକୁ ଘୋଡ଼େଇବା ପାଇଁ ପରକଥା ପକାଇବା ବିଶେଷ ଦରକାର୍ ପଡ଼େ ।

କୁଟିଳା - ମୋ କଥା କ'ଣ ବାଟରେ ପଡ଼ି ଘାଟରେ ଗଡ଼ୁଛି ? ମୋ ନାଆଁରେ କ'ଣ ସାରା ବରଜ ରାଇଜରେ ଟୁପ୍-ଟାପ୍-ଫୁସ୍-ଫୁସ ଚାଲିଛି ? ତୁମେ ଯା କରୁଛ ନା- ସେ ଯମୁନାର ବାଟ ଜାଣେ ଆଉ ଜାଣେ ସେ କାଳିଆ ଭୂତ ।

ଲଳିତା - କେ ଜାଣିଲେ କ'ଣ ହେବ ? କ'ଣ ହୋଇଛି ଆମର୍ ଆମକୁ ଜଣା ନାହିଁ । ତୁ ଗୋଟାଏ ନିଆଁ ଗିଳୀ ଟୋକି ସଜ ମାଉଁସରେ ପୋକ ପକାଇଛୁ - ଚାଲିଗଲା ଶଗଡ଼ରେ ହାତ ଦେବୁ । ବଡ଼ ଜଳିହୁଡ଼ୀ- ମୋର୍ ବେଳ ନାହିଁ ଲୋ ତୋ ସଙ୍ଗେ ବକର ବକର ହେବାକୁ-

କୁଟିଳା - ହଁ କ'ଣ କହିଲୁ- କ'ଣ କହିଲୁ- ମୁଁ କଳିହୁଡ଼ୀ, ମୁଁ ନିଆଁଗିଳୀ- ଆହା ଭାଗ୍ୟ ଭଲ ମାଇପିଟେ ଲୋ ତୁ। କହୁଛି, ସମୟ ନାହିଁ। ସମୟ କୋଉଠି ହେବ ? ସେଆଡ଼େ ସମୟ ବିତି ଯାଉଛି ପରା- ସେଠି ସେ ଯମୁନା ବାଟରେ କାଳିଆ ଅନାଇଁ ଚାହିଁ ରହିଥିବ, ଶୀଘ୍ର ଯାଆ- କିନ୍ତୁ ମୋ ଭାଉଜ ଯିବନାହିଁ। ସେ ଟଣା ଓଟରା ପାଇଁ ଆମ ଘରର ମାନ ମହତ ଏତେ ଶସ୍ତା ନାହିଁ।

ଲଳିତା - କି ଟଣା ଓଟରା ? କ'ଣ କହୁଛୁ ଲୋ-

କୁଟିଳା - ଆଲୋ ଆଉ ବେଶୀ ପାଣିରେ ବୁଡ଼ି ପାଣି ପିଇନା। ଲୋକେ ଆଡୁଆଳରେ ଥାଇ ସବୁ ଦେଖିଛନ୍ତି। ପୁରା ପ୍ରସଟ ହୋଇ ଗଲାଣି କଥାଟା। ଆଉ ଲୁଚାଇବାର ଚେଷ୍ଟା କଲେ କଥାଟି ଆହୁରି ଭିତରକୁ ଭିତରକୁ ଯିବ।

ଲଳିତା - ହଁ ମ ଗଲେ କେତେ, ନ ଗଲେ କେତେ ?

କୁଟିଳା - ମୋର ବି ଗରଜ ନାହିଁ ଅଲାଜୁକି ପରି ବକର ବକର ହେବାକୁ - ସିଆଡ଼େ ପାଣି ନ ଆଣିଲେ ନ ଚଳେ। (ଗଲା)

ଦୂତୀ - ଓଃ ଭାଗ୍ୟ ଲାଜକୁଳିଟା ଲାଜ ଝରି ଝରି ବହି ପଡୁଛି। (କୁଟିଳା ଗଲା ପରେ ରାଧା ଆସିଲେ, ସେତେବେଳେ ଦୂତୀ ଯିବାକୁ ଉଦ୍ୟତ। ରାଧା ଏଆଡ଼େ ସେଆଡ଼େ ଅନାଇଁଲେ କୁଟିଳା ଗଲା ନା ନାହିଁ - କହିଲେ।)

ରାଧା - ଆଲୋ ଦୂତୀ - ଏତେ ତରତର କାହିଁକି ଲୋ ?

ଦୂତୀ - କିଏ ? ରାଧା କିଲୋ ?

ରାଧା - ଆଲୋ ଟିକିଏ ଚୁପ୍ ଚୁପ୍ କହ। ସେ କୁଟିଳାଟା କୋଉଠି ଥିବ ଯଦି ତ କଥା ସଇଲା।

ଦୂତୀ - ନ ସରି ଆଉ କୋଉ କଥାଟା ରହୁଛି କି ? ତୋ ନଣନ୍ଦ ପାଇଁ ତ ଆଉ ଆମେ ସବୁ ବାଟ ଚାଲି ପାରିବୁନି। କୋଉ କଥା ନେଇ କୋଉଠି ଥୋଉଛି ଲୋ ରାଧା। ସେ ତ ଭିଡ଼ି ଯାଇଥିଲା ଲୋ ଗାଳି ହେବା ପାଇଁ।

ରାଧା - ଆଲୋ ତା' ପାଇଁ ମୋତେ ଦୋଷୀ କରୁଛୁ ? କ'ଣ କରିବି ? ଘରେ ଭାଗ୍ୟ ଚୁପ୍ ଚୁପ୍ ଆଲୋଚନା ଚାଲିଛି। ମୋତେ ପରା ଆଉ ଯମୁନା ଯିବାକୁ ଦେବେ ନାହିଁ।

ଦୂତୀ - ନ ଦିଅନ୍ତୁ। ଚାବି ପକାଇ ସବୁ ବେଳେ ଘରେ ରଖନ୍ତୁ। ମୋର କ'ଣ ଯିବ?

ରାଧା - ହଁ ଲୋ, ତୋର କାହିଁକି କିଛି ଯିବ। ରାଧା ତ ତୋର କେହି ନୁହେଁ... ମୁଁ ଆଉ କୋଉ ରାଇଜରେ ରହିବି। ମୋ ପାଇଁ ସବୁ ଆଡ଼କୁ ରାସ୍ତା ବନ୍ଦ।

ମାର ଯେ କୃଷ୍ଣ କୁମାର ସଜନୀ ମୋର ଲୁଟିଲା ଲାଜ-ଅମାର।।

ଦୂତୀ - ଆଲୋ କି କଥା ମୁହଁରେ ଆଣୁଛୁ ମ। ଛି-ଛି-କୃଷ୍ଣଙ୍କୁ ମାରିବା କଥା କହୁଛୁ ?

ରାଧା - ନା-ଲୋ ସେ କଥା କହନ୍ତି କିମିତି ? ବୁଝୁନୁ ... କାମଦେବକୁ ପରା ମାର ବୋଲି କହନ୍ତି। ସେ ପୁଣି କୁଆଡ଼େ ବିଷ୍ଣୁଙ୍କ ପୁଅ। ସିଏ କ'ଣ ଆଉ ମୋର ଟିକିଏ ବୋଲି ଟିକିଏ ଲାଜ ରଖିଛି ?

ଦୂତୀ - ଓଃ-ହେଲା-ହେଉ କ'ଣ କହୁଛୁ କହ .....

ରାଧା - **ସଙ୍ଗ ତାର ସଙ୍ଗତେ ଅଙ୍ଗନାବର ସତେ ଅନଙ୍ଗ କର ଗତେ**
**ମଙ୍ଗଳ ନୁହେଁ ମୋତେ**
**ଆଳି ଧରୁଛି କର ବାଳୀ-ପରାଣ ହର ଜାଳି ଦେଲା ଶରୀର**
**କାଳୀ-ଜୀବନ ହର ଭଳି ମୁଁ ହରବର ଢ଼ାଳିବି ଆଖି ନୀର।।୧।।**

ଦୂତୀ - ମା'ର ଅର୍ଥାତ୍ କନ୍ଦର୍ପ ବାଧାରେ ତୁ ଅତିଷ୍ଠ ହୋଇପଡ଼ିଛୁ ବୁଝିଲି। ତା'ପରେ କ'ଣ କ'ଣ ଗାଇଗଲୁ ବୁଝିହେଲା ନାହିଁ।

ରାଧା - ଆଲୋ ଟିକିଏ ଆସ୍ତେ କହ। ଗୋପ ନଗରର କାନ୍ଥବାଡ଼ରେ ବି କାନ ଅଛି-

ଦୂତୀ - ହଁ ମ, କଥା ଆଉ ଲମ୍ବାନା, ଶୀଘ୍ର କହ।

ରାଧା - ମୁଁ କହୁଥିଲି ଅନଙ୍ଗ ଅର୍ଥାତ୍ କାମ ଦେବର କରଗତ ହେବା ମୋ ପାଇଁ ହିତକର ହେବ ନାହିଁ। ଏଣୁ ଲୋ ସଖୀ ! ମୋତେ ଯେ ବାଳୀ ପରାଣ ହର ଅର୍ଥାତ୍ କାମିନୀମାନଙ୍କର ପ୍ରାଣପୀଡ଼ାକାରୀ କାମଦେବ ମୋ ଶରୀର ଜାଳି ଦେଉଛି ମୁଁ କେତେ ଆଉ ଲୁହ ଗଡ଼ାଇବି। ତୋ କର ଧରୁଛି କାଳୀଙ୍କର ଜୀବନ ସ୍ୱରୂପ ହରଙ୍କୁ ଭଳି ହରବର ହେଉଛି। ସେ ମହାଦେବ ତ କାମଦେବଙ୍କୁ ଜାଳି ଦେଇଥିଲେ, ସେ ହେଲେ ରକ୍ଷା କରନ୍ତୁ।

ଦୂତୀ - ବଡ଼ ଛଟକରେ କଥାଟାଏ କହିଲୁ- ନୋହିଲେ କି କାହ୍ନୁ ଷୋଳ ସହସ୍ର ଗୋପୀଙ୍କ ଭିତରେ ତୋତେ ହିଁ ରସିକା ଠାବ କରିଥାନ୍ତେ। ତେବେ କ'ଣ କରିବାକୁ କହୁଛୁ ?

ରାଧା - କ'ଣ କରିବାକୁ ହେବ ? ସେ କଥା ତୁ କହ...

ଦୂତୀ - ତୁ କହ ....

କୁଟିଳା - (ପ୍ରବେଶକରି) ଆଲୋ ତୁମେ ଦିହେଁ କହି ପାରିବ ନାହିଁ- ମୁଁ କହୁଛି... ମୋ ବୋହୂ ତ ଯମୁନା ଯିବ ନାହିଁ। ଦେଖା ସାକ୍ଷାତ ହେବ ନାହିଁ। ଏବେ କିଛି ଯୋଗାଡ଼ କର, କେଉଁଠି କୋଉ ଗଛମୂଳେ ରାତି ଅଧିଆ....

ରାଧା - ଚୁପ୍ କର- ମୋ ରାଣ। ସେ ମୁହଁକୁ ନ ଆଣିବା କଥା, ତୁମେ ମୁହଁକୁ ଆଣନା।

କୁଟିଳା - ଚୁପ୍ କରିବି ? କାହିଁକି ମ... ତୁମର କଥା ସିନା ଶୁଣି ପାରିନି। ହେଲେ ଗୀତଟା ଖାଲି ଶୁଣିନି ତ ଲେଖି ବି ରଖିଛି। ସେଇଠୁ ତମ ଦିହିଙ୍କ ମନକଥା ସ୍ପଷ୍ଟ ଜଣାପଡୁଛି- ମୁଁ କ'ଣ ସହଜେ ଛାଡୁଛି ? ପାଞ୍ଚ ପଡ଼ିଶ ବସିବେ- ସଭା ହେବ- ଏ ଗୀତ ମୁଁ ପଢ଼ିବି। ତୁମକଥା ନିଶାପ ହେବ... ଆରେ ଆମ ଘରର କ'ଣ ମାନ ଇଜ୍ଜତ ନାହିଁ ?

ରାଧା - ମୁଁ ଗୀତରେ ତ ଓଲଟା ତାଙ୍କୁ ଗାଳି କରିଛି। ଏ କଣ କହୁଛ କୁଟିଳା-

କୁଟିଳା - ଆଚ୍ଛା କହିଲ- "ହଁ ମା'ର ସେ କୃଷ୍ଣ କୁମାର ସଜନୀ ମୋର ଲୁଟିଲା ଲାଜ ଅମାର"- ଏତକ ତ ଜଣା ପଡୁଛି ତୁମେ ସେ କୃଷ୍ଣକୁ ମାରିବା କଥା କହିଛ। କେବଳ କାଳେ ମୁଁ ଶୁଣିବି ବୋଲି ଏତକ ଗାଇଗଲ। କିନ୍ତୁ ବାକୀ...

ରାଧା - ବାକୀ ଆଉ କ'ଣ କହୁନା ?

ଦୂତୀ - ସେ ନ ପଚାରୁଣୁ ତୁ କାହିଁକି ଅକାଡ଼ି ହେଇ ପଡୁଛୁ ମ।

କୁଟିଳା - ଡ଼ର ମାଡୁଛି ନା କାଳେ ଠିକ୍ ଅର୍ଥଟା ଧରା ପଡ଼ିଯିବ। ମୁଁ କି ଛାଡୁଛି ହେଉ ଆଉ ପଦଟାତ ବୁଝାଅ-ବୁଝାଇବ କ'ଣ ? ପୁରାପୁରି ସେଥିରେ ଅଛି କୃଷ୍ଣ ସଙ୍ଗେ ସଙ୍ଗ ନ ହେଲେ....

ରାଧା - ନା ମ ତା' ମୋଟେ ନୁହେଁ। ତୁମେ ନ ବୁଝି ଏମିତି ହୁଅନା ....

ଦୂତୀ - ହଁ ମୁଁ ତ ବୁଝିନ ବୋଲି ବୁଝାଇବାକୁ କହୁଛି।

(ଖଣ୍ଡେ ତାଳପତ୍ର ଲେଖାକୁ ଦେଖି)

**ସଙ୍ଗ ତାଙ୍କ ସଙ୍ଗତେ ଅଙ୍ଗନାବର ସତେ ଅନଙ୍ଗ କରଗତେ ମଙ୍ଗଳ ନୁହେଁ ମୋତେ।**

ରାଧା - ମୁଁ କହୁଥିଲି ଦୂତୀକି - ଲୋ ବରାଙ୍ଗନା ସେ କୃଷ୍ଣ ସଙ୍ଗତରେ ସଙ୍ଗ ହେବା ଅନଙ୍ଗ ଅର୍ଥାତ୍ କାମଦେବର କରଗତ ହେବା ମଙ୍ଗଳକର ହେବନାହିଁ।

କୁଟିଳା - ହୁଁ ତା' ତ ବୁଝାପଡୁଛି। ପରପଦ - "ଆଳି ଧରୁଛି କର ବାଳୀ-ପରାଣ ହର ଜାଳି ଦେଲା ଶରୀର, କାଳୀ ଜୀବନ ହର ଭାଳି ମୁଁ ହରବର ଢ଼ାଳିବି ଆଖିନୀର"।

ରାଧା - ମୁଁ କହୁଥିଲି - ଲୋ ସଖି ତୋ କର ଧରୁଛି, ପୁତନାବଳୀର ପରାଣ ହରଣକାରୀ ପାଇଁ ହେଉଥିବା ନିନ୍ଦା ମୋ ଶରୀର ଜାଳି ଦେଲାଣି। ସେ କାଳୀନାଗର ଜୀବନହାରୀଙ୍କ ଅପକର୍ମ କଥା ଭାଳି ମୁଁ ଆଉ କେତେ ଆଖି ନୀର ଢ଼ାଳିବି। ଏଣୁ ସେ କୃଷ୍ଣକୁ ।

ଦୂତୀ - ମାର। ଏଆଡ଼େ ଆସିବାକୁ ଦିଅ ନାହିଁ।

କୁଟିଳା - ହେଲା ସେ ସବୁ ଠିକ୍। କିନ୍ତୁ ଏଟା ଭୁଲାଭୁଲି କଥା। ସେ ସବୁ ଥାଉ। ତୁମେ ବୋହୂ ଚ଼ାଲ ଘରକୁ ଚ଼ାଲ। ଆଉ ଯମୁନା ଯିବା କଥା ହେବ ନାହିଁ।

ଦୂତୀ - ହେଉ ଯା' ଲୋ ରାଧା। ମୁଁ ମୋର ଚ଼ାଲିଲି।

ରାଧା - ତୁ ଯାଆ ମୁଁ ଆଉ କେଉଁଠିକି ଯିବି - ମୋ କପାଳରେ କ'ଣ ଆଉ ସ୍ୱାଧୀନତା ଅଛି ? ମୁଁ ତ ବାର ଜଞ୍ଜାଳର ବନ୍ଧା

(ସମସ୍ତେ ଗଲେ)

**-ଦୃଶ୍ୟାନ୍ତର-**

(ଦୂତୀ ଖାଲି ଗଗରା ଗୋଟିଏ କାଖରେ ଧରି ଯମୁନା ବାଟରେ ଏଣେତେଣେ ଚ଼ାହୁଁଛି।)

ଦୂତୀ - ମଲା ମୋର କୋଉଠି ହେଲେ କେହି ନାହାନ୍ତି। ରାଧାଟା ତ ଆଉ ଯମୁନା ଆସିବ ନାହିଁ। କୃଷ୍ଣଙ୍କୁ ଏକଥା ନ ଜଣାଇଲେ ସେ ବାଟ ଚ଼ାହିଁ ଚ଼ାହିଁ ହଇରାଣ ହେଉଥିବେ। ଦେଖୁଛି ସେ କାଳିଆ ବି ନାହିଁ। ହେଉ ଟିକେ ଅପେକ୍ଷା କରେଁ। (ଗଗରାଟାକୁ ଓଲଟାଇ ରଖି ତା' ଉପରେ ବସିଲା।)

କୃଷ୍ଣ - (ପଛ ପଟୁ ଆସି ଦୂତୀର ଆଖି ଦୁଇ ହାତରେ ବୁଜି ଦେଲେ)

ଦୂତୀ - କିଏ ମ-ଛାଡ଼ କହୁଛି। (ହାତ ଅଣ୍ଡାଳି) ମଲା ମୋର ମଣିଷଟାଏ। କିଏ ମ-କାର ଏତେ ସାହସ ମୋ ଦେହରେ ହାତ ମାରିବାକୁ? ଛାଡ଼ କହୁଛି-କଥା ଦୋସରା ହୋଇଯିବ।

କୃଷ୍ଣ - (ଛାଡ଼ିଦେଇ) କାହିଁକି ମ, ଏତେରାଗ କାହିଁକି ?

ଦୂତୀ - ତୁମେ କୃଷ୍ଣଚନ୍ଦ୍ର -ହେଲା ଏ ନବରଙ୍ଗ ଆଉ କାଡ଼ନା। ସେଦିନ ସେଇ ଟିକକ କଥାରେ ଗୋପସାରା ଯେଉଁ ଚହଳ ପଡ଼ିଛି। ସେଥିରେ ଆମପାଇଁ ଆଉ ଠାଆ ନାହିଁ। ଗୋପରେ ଆଉ ରହି ହେବ ନାହିଁ।

କୃଷ୍ଣ - ସେଠି ରହି ନ ପାରିଲେ ମୋ ହୃଦୁଦ ଭିତରେ ଯଥେଷ୍ଟ ଠାଆ ଅଛି। ସେ'ଠି ବେଶ୍ ଆରାମରେ ରହିପାରିବ। ବିକଳ କାହିଁକି?

**କଳକଣ୍ଠୀ ଆଉ ନୁହ ବିକଳ**
**ଫିଟାଇ କହ ଗୋ କଥା ସକଳ**
**କେ କହିଲା କେଉଁ କଥା ନକଲ ଲୋ**
**ଜାଣି କରିବା ଅକଲ**

ଦୂତୀ - **ଅକଳଣା ଦୁଃଖ ଦେଲ ଚନ୍ଦ୍ରମୁଖ ରାଧାକୁ ଗୋ ରାଧାକୁ**
**ସେ ଦିନ ବାଟେ ଯା କଲ।।୧।।**

କହିଲି ପରା ସେ ରାଧାଗୋରୀ ପାଇଁ ଏଇ ତିନିପୁରେ ବି ଠାବ ନାହିଁ।

କୃଷ୍ଣ - ମୁଁ କହୁଛି ପରା ମୋ ହୃଦୁଦରେ ସଭିଙ୍କ ପାଇଁ ଠାବ ଅଛି। ମୋତେ ଯେ ଥରେ ସ୍ମରଣ କରେ ମୁଁ ତାକୁ କେବେ ଭୁଲି ପାରେନା। ମୋ ପାଖକୁ ଯେ ପାହୁଣ୍ଡେ ଆଗାଏ ମୁଁ ତା ଆଡ଼କୁ ସହସ୍ର ପାଦରେ ଆଗେଇ ଯାଏଁ। ମୋତେ ଯେ ଥରେ ନିଜ ହୃଦୁଦରେ ରଖିଥାଏ ମୋ ହୃଦୁଦ ତା' ଲାଗି ସବୁଦିନ ପାଇଁ ଖୋଲା।

ଦୂତୀ - ହେଲେ ହେ ନାଗରବର, ତୁମେ ସେଦିନ ଯାହାକଲ ସେଥି କି ରାଧାର ଦମ୍ଭ ତୁଟି ଯାଉଛି।

**ସେ ଦିନ ଯା କଲ କଳାନାଗର**
**ରାଧାକୁ ସେ ବିଷ କଳା ନାଗର**
**ଯା ହୁଏ କହିବ କା'ର ଆଗର**
**ନବୀନ ନଟ ନାଗର**
**ଅପବାଦ ଅପମାନ ହେଲା ଏବେ ରାଧାକୁ ଗୋ ରାଧାକୁ**
**ଅପାର ଦୁଃଖ ସାଗର।।୨।।**

ତୁମେ ସେ ଦିନ ଟିକିଏ ଛୁଇଁ ଦେଲ କି ଅଳପ ଚାହିଁ ଦେଲ ବୋଲି ରାଧା ଆଗରେ ଅପବାଦ ଆଉ ଅପମାନର ଗୋଟିଏ ସାଗର ହେଲାଣି। ତା' ସେ ଲଂଘିପାରିବ କିମିତି ?

କୃଷ୍ଣ - ସତେ ବାସ୍ତବରେ କ'ଣ ହୋଇଛି ସେ କଥା କହ ।

ଦୂତୀ - **ରାଧାରାଣୀର ନଣନ୍ଦ କୁଟିଳା**
**ରାଧାକୁ ଡ଼ାକିଲାବେଳେ ଭେଟିଲା**
**ଗାଳିରେ ଜାଳି ମୋତେ ଆଉଟିଲା ଯେ**
**କଥା ରାଧାକୁ ଅଙ୍କିଲା**
**କଥା ଶୁଣି ଅଥା ହେଲାଣି ରାଧିକା ଯେ ଦିନୁ ଏଇଠାରୁ ଲେଉଟିଲା ।।୩।।**

ସେଦିନ ତ ଏଠି ତମ ସଙ୍ଗେ ଭେଟ ହୋଇଥିଲା । ଏଠୁ ଲେଉଟିଲା ବେଳୁ ତାକୁ ଆଉ କ'ଣ ରଖି ଥୋଇ ଦେଉଛନ୍ତି ? ମୁଁ ଗଲି ରାଧାକୁ ଡ଼ାକି ପାଣି କି ଯିବାକୁ । ତା' ନଣନ୍ଦ ଆସି ମୋତେ ଯାହା କରିଛି ନା ମୋ ମନ ଜାଣେ । ସେ ଗଲାରୁ ରାଧା ମୋତେ ତା' ଦୁଃଖ ଗୁହାରୁଛି କୋଉଠି ପାଖରେ ଥାଇ ସେ ଅଲାକୁଣୀଟା ଶୁଣୁଥିଲା- ଆସି ହାକର ।

କୃଷ୍ଣ - ହଁ, ଆସି ପୁଣି କ'ଣ କହିଲା ?

ଦୂତୀ - କ'ଣ କହିଲା ? ରାଧା ଗାଇଥିଲା ଗୋଟିଏ ଗୀତ । ରାଣ୍ଡ ତ ଗୋଟା ପଣେ ଗୀତଟା ଲେଖି ରଖିଛି । କହିଲା ଗାଆଁର ସିଆନ ସୁଜନ ପାଞ୍ଚ ପଚିଶ ବସାଇ ନିଶାପ କରାଇବ । ସତରେ କହୁଛି କଳାକାହ୍ନୁ ମୋର ତ ସାହସ ଉଡ଼ିଗଲା । କିନ୍ତୁ ରାଇର ଅସୀମ ସାହସ । ତା'ର ଚ଼ତୁରତାକୁ ଶହେ ଧନ୍ୟବାଦ । ଗୀତଟାର ଅର୍ଥକୁ ଓଲଟାଇ ବୁଝାଇ ଦେଲା । ହେଲେବି ସେ ରାଣ୍ଡ କହିଲା ଆଉ ଯମୁନା ଯିବା କଥା ହେବ ନି ।

କୃଷ୍ଣ - ତେବେ ରାଧା ଆଉ ଆସିବେ ନି ଯମୁନା ?

ଦୂତୀ - ନା -

କୃଷ୍ଣ - ତେବେ କ'ଣ କରାଯିବ?

ଦୂତୀ - କ'ଣ କରାଯିବ- ରାଧା ଆସିବ ନାହିଁ । ରାଧା ନ ଆସିଲେ ତୁମେ ଆସିବ ନାହିଁ - ତୁମେ ଦିହେଁ ନ ଆସିଲେ ମୁଁ ବା ଆସିବି କାହିଁକି ?

କୃଷ୍ଣ - ଏମିତି କହିଲେ ତ ଚ଼ଳିବ ନାହିଁ । କିଛି ବାଟ କର ଲଳିତା...

ଦୂତୀ - ମୋ କଥା କ'ଣ ମାନିବ ? ମୁଁ ବାଟ କରନ୍ତି-

କୃଷ୍ଣ - କହ ଲଳିତା କହ, ମୁଁ ତୁମ କଥାରୁ ବାହାର ହେବି ନାହିଁ ।

ଦୂତୀ - ମୋର ଗୋଟିଏ ଛୋଟ କଥା ମାନନ୍ତ ନାହିଁ କାହ୍ନୁ ?

କୃଷ୍ଣ - କ'ଣ କହ ନା ।

ଦୂତୀ - **ମୋର୍ ଗୁଟେ କଥାକେ**

**ମୋର୍ ଗୁଟେ କଥାଟେ ମାନ୍‌ଲେଁ କହେମି କହ୍ନାଇ**

**ରାଧାକେ ଯମୁନା ହେଲା ନ ଯେ ମନା**

**ପହେଲେଁ ଦଉନ୍ଧେଁ କନାଇ ।।୦।।**

**ଏତ୍‌କେଁ ରାଧାନୁନି ହୁର୍‌ଗୁନି ହୁର୍‌ଗୁନି ସଡୁଥିବା ଘରର୍ କନେ**

**ତୁମେ ଟାକି ଟାକି ବାଟ୍ ଦେଖି ଦେଖି ବସିଥିବ ରାତିଦିନେ**

**ରାଧାକେ ଯେନ୍ ବାଧା ହେବା ସାଦା ସିଧା, କିଏ ପାର୍‌ବା ଫେର୍ ମନାଇ ।।୧।।**

ରାଧା ଏଥର ବିଶେଷ ଭାଙ୍ଗି ପଡ଼ିଛି କାହ୍ନୁ । ତାକୁ ବହୁ କଷ୍ଟରେ ବାଟକୁ ଆଣିଥିଲି । ଏଥର ସେ ଆଉ ମାନିବ ବୋଲି ଜଣାପଡୁନି । ସେ ତ ଆସିବ ନାହିଁ । ଘର କଣେ ବସି ସଡ଼ିବ । ଆଉ ତୁମେ ଏଇ ଯମୁନା ବାଟରେ ତା' ବାଟ ଚ଼ାହିଁ ଚ଼ାହିଁ ବେଦମ୍ ହେବା ସାର ହେବ ।

କୃଷ୍ଣ - କ'ଣ ହେବ ସେ କଥା ଆଉ କୁହ ନି ଲଳିତା । କ'ଣ କରିବାକୁ ହେବ ସେ କଥା କହ ।

ଦୂତୀ - କହିଲେ କ'ଣ ମାନି ପାରିବ ?

**ଗୁଟେ କଥା କର ଆଉର୍ କାହାକେ ଧର ନାଇଁ ହୁଅ ଗୁଲୁଗୁଲା**

**ରାଧାକେ ପାଶୋର ହେ କଳା କିଶୋର ଯାହା ହେବାର୍ ଥିଲା ହେଲା**

**ରାଧା ହେଉ ସତୀ ଫାବିଯାଉ ଦୂତୀ କିଏ ମର୍‌ବା ଧନାଇ ।।**

ଏଇଟା ହେଲା ତମ ପାଇଁ ରାଧାପାଇଁ ଓ ମୋ ପାଇଁ ସୁବିଧାଜନକ । ମୂଳ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି ।

କୃଷ୍ଣ - ଏ ବାଟ ମରଣର ବାଟ ଲଳିତା । ମୁଁ ଯଦି ରାଧା କଥା ମନରୁ ପୋଛି ଦେବି ରାଧା କ'ଣ ଦେହ ଧରି ରହିବ ? ମୋ କଥା ଛାଡ଼ ମୋ ଆଖିକି ସାରା ବିଶ୍ୱ ରାଧାମୟ ଦିଶୁଛି । ତମ କଥା ଅଲଗା । ତୁମ ହୃଦୁଦ କାଳେ ପଥରରେ ତିଆରି ହେଇଥିବ । ମୋ ଦେହର ପ୍ରତି ରକ୍ତ ବିନ୍ଦୁରେ ରାଧା ନାମ ଲେଖା ହୋଇଛି । ମୁଁ ରାଧାକୁ ଛାଡ଼ି ଗୋଟିଏ ମୁହୂର୍ତ୍ତ ମଧ୍ୟ ରହି ପାରିବି ନାହିଁ । ରାଧାକୁ ଛାଡ଼ିବା କଥା ଆଉ କହନା ।

**ସୁର ସୁନ୍ଦରୀ ସେ କଥା କହନା ଆଉ କହନା**
**ବାର ବାର ବାରି ମୋତେ ବାରିକାକ୍ଷି ! ଦହନା ॥୦॥**
**ଏ ସାରା ଶରୀର ଯାକ ଯଦିଁପାର ଚିରିଦେଖ**
**ସବୁଠାରେ ରାଧାନାମ ଲେଖା**
**ମନର ଯେତେ ଭାବନା ସେ ନବୀନା ବିନା ବଣା**
**ନୀରଜାକ୍ଷୀ ମୋର ନୀରାଜନା**
**ମୋ ନୟନେ ଦିଶେ ମିତ-ଭୀତ-ଏଣୀ-ନୟନା ॥୧॥**

ଦୂତୀ - ହୁଁ ତମ ଆଖି କି ହରିଣ ନୟନା ରାଧା ବିନା ଆଉ କିଛି ଦିଶୁନି । ତୁମେ କାହ୍ନୁ ସତରେ କ'ଣ ସେ ପଦ୍ମ-ନୟନା-ରାଧାର ପୂଜା କରୁଛ ? ତୁମେ କ'ଣ ଏତେ ଦୂର ଲିପ୍ତ ରହି ପାରୁଛ ?

କୃଷ୍ଣ - ମୁଁ ଯେଉଁଠି ପ୍ରେମର ଆବାହନ ପାଏଁ ସେଠି ଲିପ୍ତ ରହେ । ପ୍ରୀତି ହିଁ ମୋର ବନ୍ଧନହୀନ ହୃଦକୁ ବାନ୍ଧି ରଖେ । ଏ ସଂସାରରେ ଆଉ ଅନ୍ୟ କିଛି ମୋତେ ଆକର୍ଷଣ କରି ପାରେନି ।

**ପୀରତି ପାଥେୟ କରି ମୁହିଁ ପରା ପଥଚାରୀ**
**ଅସରା ଏ ସଂସାର-ପଥରେ**
**ରତି-ମୂରତିର ରତି ବଢ଼ାଏ ମୋର ଆରତି**
**ତା' ବିରହେ ଛାତି ନିତି ଥରେ**
**ଦୂତୀ ଗୋ ଦୂରେଇ ତାକୁ, ଦୁରୁଦଶା ଦିଅନା ॥୨॥**

ଦୂତୀ - ଏ କି କଥା କହୁଛ କାହ୍ନୁ! ସେ ଦୂରେଇ ଗଲେ ତମକୁ ଦୁର୍ଦ୍ଦଶା ମିଳିଯାଉଛି ।

କୃଷ୍ଣ - ହଁ ସଖୀ । ମୁଁ ପରା ପ୍ରେମକୁ ସମ୍ବଳ କରି ଏଇ ଅସରନ୍ତି ସଂସାର ପଥର ପଥିକ । ଯେଉଁଠି ପ୍ରେମୀ ମୋର ସାନ୍ନିଧ୍ୟ ପାଇବାରେ କଷ୍ଟ ପାଏ, ସେ କଷ୍ଟ ତା' ପାଇଁ ଗୁଣେ ହେଲେ ମୋ ପାଇଁ ଶହେଗୁଣ ।

ଦୂତୀ - ତୁମେ ଆଉ ହେବ-ନାହିଁ-ହେବ ନାହିଁ । ସେ କଥା ଛାଡ଼ ରାଧା ଯମୁନା ଆସିବ ନାହିଁ କି ତା'ର ଦର୍ଶନ ମିଳିବ ନାହିଁ । ତୁମେ ତା' କଥା ପୁରାପୁରି ଛାଡ଼ । ମୋ କଥା ମାନ ।

**ଆଉର୍ ନାଇଁ ଯାଅ ରାଧାର ପାଶ୍**

**ତୁମେ ତାହାଙ୍କେ ନାଇଁକର ଆଣ୍ ହୋ କାହ୍ନୁ ଯାହା ହେବାର୍ ହେଲାନ**
**ରାଧାର୍ ଲାଗି ଅଧା ଦେହ୍ ଛାଡ଼ିନେଲ**
**ଧୂକା କେ ଧର୍ବାର୍କେ ପକାଲେଁ ଫାସ, କେଭେଁକାଏଁ ରହେଲାନ ॥୦॥**
**ଜହ୍ନମାମୁଁ ଦେଖି ମନ ଛନ ଛନ କଲେଁ କି ଆସିବା ହାତେଁ**
**ସରାଗ୍ କଲେଁ ଯେତେ ସରଗର୍ ତରା କାଏଁ ଆସି ଯିବା ତୁମର ବୁତେଁ**
**ନେଇଁ ହେଲା ଜିନିଷ୍କେ ହେବାର୍ ଆଶାକଲେଁ**
**ସୋକ୍ ପାଏବ ପରାଣ୍ ହୋ କାହ୍ନୁ ମନ୍ ଯାହା କହେଲାନ ॥୧॥**

ଦୁଃଖ କାହିଁକି ହୁଏ ଜାଣ କାହ୍ନୁ ?

କୃଷ୍ଣ - କହିଲ, କାହିଁକି ହୁଏ ?

ଦୂତୀ - ଜାଣି ନାହିଁ। ଆମେ ବହୁତ ଗୁଡ଼ିଏ କାମନା କରୁଁ ଏମିତି କି ଯାହା କେବେ ସମ୍ଭବ ନୁହେଁ ସେଭଳି କାମନା କରି ଢ଼ାଲି ଥାଉଁ। ସବୁ କାମନା ପୂରଣ ହୋଇ ପାରେନା। କାମନା ପୂରଣ ନ ହେଲେ ଦୁଃଖ ଆସେ। ତୁମର ଅବସ୍ଥା ବର୍ତ୍ତମାନ ଠିକ୍ ସେମିତି।

କୃଷ୍ଣ - ତୁମେ ଦୂତୀ ! ମୋତେ ଗୁଡ଼ିଏ ଉପଦେଶ ନ ଶୁଣାଇ କେବଳ ରାଧା କଥା ଶୁଣାଅ। ତାଙ୍କରି କଥା ବିନା ଆଉ ଅନ୍ୟ କିଛି ଗ୍ରହଣ କରିବାକୁ ମୋ ମନ ରାଜି ନୁହେଁ।

ଦୂତୀ - ହେଲେ ଯୋଉ ରାଧାକୁ ପାଇ ପାରିବ ନାହିଁ ତା' କଥା ଶୁଣି କେବଳ ବୋଧ ହେବ। ସେ କିନ୍ତୁ ତୁମ କଥା ଆଉ ଶୁଣିବା ଅବସ୍ଥାରେ ନାହିଁ। ତୁମ ନାଆଁ ସଙ୍ଗେ ତା' ନାଆଁକୁ ମିଶାଇ ଯୋଉ ଅପବାଦର ନାଗରା ବାଜୁଛି ସେ କୋଉ ରାଇଜରେ ରହିବ ମୁଁ ବୁଝି ପାରୁନି। ମୋ କଥା ମାନ ତାକୁ ରହିବାକୁ ଦିଅ।

**ରାଇ କାଏଁ ରାଇଜେଁ ରହେବା ସହଜେଁ ଯାହା କଲ କଲା କାହ୍ନୁ**
**ଛନ୍କର୍ ହଁସାହଁସି ଜନ୍କର୍ ହେଲା ଫାସି ଭୁଲିଗଲ ନ କାଏଁ ମନୁ**
**ସାଙ୍ଗେ ଥିଲିଁ ବଲି ବଅଁଢ଼ାଇ ନେଲି**
**(ନେହେଲେଁ) ଯାହା ଯାଇଥିତା ନାଶ ହୋ କାହ୍ନୁ କହମି କାଏଁ ଇ କେହେଲାନ।।**

କୃଷ୍ଣ - ଏ ନାଶ ଶୀଳ ସଂସାରରେ ନଷ୍ଟ ନ ହେବା ଜିନିଷ କ'ଣ ଅଛି ଲଳିତା, ଯାହା କି ମୋ ଦେଇ ନାଶ ଯାଇଥାନ୍ତା ?

ଦୂତୀ - ସେଥିପାଇଁ ପରା ଲୋକ ଗହଳିରେ କହିହେବ ନାହିଁ ବୋଲି କହିଲି।

କୃଷ୍ଣ - ବୁଝିଲି। କିନ୍ତୁ ନିଜର ସ୍ୱତନ୍ତ୍ର ସତ୍ତା ଯେ ବଜାୟ ରଖିବାକୁ ଚାହିଁ ମୋତେ ପାଇବାକୁ ଚାହେଁ, ସେ ଦ୍ୱିଧାରେ ପଡ଼େ। ମୋତେ ଚାହିଁବାଟା ବେଶୀ ହେଲେ ମୁଁ ସ୍ୱତନ୍ତ୍ର ସତ୍ତାକୁ ଲୋପ କରିବାକୁ ଚେଷ୍ଟା କରେଁ। ତୁମେ ତ ସବୁ ଜାଣ ଲଳିତା। ଏ ମୋରି ଖେଳ। ଏ ଖେଳ ସରିବାର ନୁହେଁ। ଏ ସବୁଦିନ ପାଇଁ ଅସରା। ଯା'ର ଶେଷ ନାହିଁ।

ଲଳିତା - ତୁମର ଖେଳ ଶେଷ ନ ହେଉ। କିନ୍ତୁ ଏଆଡ଼େ ଆମେ ସବୁ ଶେଷ ହେବାକୁ ଗଲୁଣି। ତୁମରି ଖେଳକୁ ଆମରି ମରଣ। ତୁମରି ଖେଳ ସରୁ ନ ସରୁ ସେ ସରୁକଟୀ ରାଧା ଆଉ ଆସିବ ନାହିଁ। ଆଉ ମୋର ବି ବେଳ ନାହିଁ ତୁମରି ଖେଳ ଦେଖିବାପାଇଁ। ମୁଁ ଚାଲିଲି।

କୃଷ୍ଣ - **ପ୍ରୀତି-ପାରାବାର ପାର ନ କରାଇ**
**ଏକୁଟିଆ ଛାଡ଼ି ଯିବ କି ପଳାଇ**
**ଯାଅନା ଯାଅନା ସଖୀ ଯାଅନା। ଯାଅନା ସଖୀ ଯାଅନା।**

ଲଳିତା - **ଅପବାଦ-ନିଆଁ କଳାବର ନିଆଁ**
**ଜାଳି ରଖିଛି ପରା ଏ ଗୋପ-ଦୁନିଆଁ**
**ସେ ତାପେ ମୋତେ ଆଉ ତପାଅନା ॥୦॥**
ପ୍ରଣୟର ପରିଣତ ପରିଣୟେ ସୀମିତ

କୃଷ୍ଣ - ହୁଁ ଟିକିଏ ବୁଝାଇ କହ

ଲଳିତା - ପ୍ରେମର ପରିଣାମ ପରା ବିବାହରେ ସୀମାବଦ୍ଧ

କୃଷ୍ଣ - ଓଃ- ନା-

ଲଳିତା - **ହଁ-ପ୍ରଣୟର ପରିଣତି ପରିଣୟେ ସୀମିତ।**

କୃଷ୍ଣ - **ଦେହ ମନ ଖାଲିତହିଁ କଲେ ସିନା ଜଡ଼ିତ।**

ଲଳିତା - **ରାଧାକୁ ବାଧା ବହୁତ ତହିଁ ମନ ଦିଅନା**

କୃଷ୍ଣ - ଯାଅନା ସଖି ଯାଅନା - ଯାଅନା ଯାଅନା ସଖି ଯାଅନା ॥୧॥

ଲଳିତା - ରାଧା ଆଗରେ ବହୁ ବାଧା ବହୁ ପ୍ରତିବନ୍ଧକ ରହିଛି। ସେ ବିବାହିତା। ତା'ର ସ୍ୱାମୀ, ଶାଶୁ, ନଣନ୍ଦ ସମସ୍ତେ ଅଛନ୍ତି। ସେ କ'ଣ ତୁମ ମନ ଯେନି କିଛି କରି ପାରିବ ? ତାକୁ ପରା ଘରୁ ବାହାରିବାକୁ ମନା। ତୁମେ ଏଆଡ଼େ ଗୁଡ଼ାଏ ଭାବ ପ୍ରବଣତା ମୋ ଆଗରେ ଅଜାଡ଼ି ଦେଉଛ। ସେ ସବୁ ରାଧା ଆଗକୁ ଯିବ କିମିତି ? ହେଲା। ତୁମେ କହିଲ ଦେହ ଆଉ ମନକୁ ଜଡ଼ିତ ନ କଲେ ଆଉ କାହିଁରେ ପ୍ରୀତି ସଂପାଦିତ ହେବ ନାହିଁ - ଏହା ମୁଁ ବୁଝି ପାରୁନି।

**ଦେହ ମନ ଛାଡ଼ି ଯଦି କିଛି ଅଛି ବୁଝାଅ।**

କୃଷ୍ଣ - **ବୁଝାଇଲେ ବୋଝ ହେବ ନିଜେ ବୁଝି ପକାଅ।**

ଲଳିତା - **ସେ ସବୁ ବୁଝିବ ଆଉ ରାଧା ମନ-ମୋହନା।**

ମୋ ଲାଗି ବେଳ ନାହିଁ। ସେ ସବୁ ରାଧା ବୁଝିଲେ ତୁମ କାମକୁ ଆସିବ। ମୋତେ ଯିବାକୁ ଦିଅ।

କୃଷ୍ଣ - ନାହିଁ ସଖୀ ! ଦେହ ଆଉ ମନ ଛାଡ଼ି ଅଛି ଆତ୍ମା। ଆତ୍ମା ଆଉ ଆତ୍ମାର ମିଳନ ପାଇଁ ଏହି ସାଂସାରିକ ପ୍ରତିବନ୍ଧକ କିଛି ବାଧା ଦେଇ ପାରେନା।

ଲଳିତା - ତେବେ ମୋତେ କାହିଁକି ବାଟ ଓଗାଳି ରଖୁଛ ! ତମ ଆତ୍ମା ସହ ରାଧାର ଆତ୍ମାକୁ ଉପରେ ଉପରେ ମିଳାଇ ଦିଅ। ତା' ଦେହ ଥାଉ ଚ଼ନ୍ଦ୍ରସେଣା ଘରେ ଆଉ ତମ ଦେହ ନନ୍ଦରାଜାଙ୍କ ଉଆସରେ।

କୃଷ୍ଣ - ବା ସଖୀ ! ଆତ୍ମିକ ମିଳନ ତ ବହୁ ଜନ୍ମର ସଂସ୍କାର ଉପରେ ନିର୍ଭର କରେ। ଆଉ ଆତ୍ମା ଆତ୍ମାର ମିଳନକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ଆତ୍ମାକୁ ଧରି ରଖିଥିବା ଦେହ ଆଉ ମନ ବି ଆପେ ଆପେ ଉଚ୍ଛନ୍ନ ହୋଇଯାଆନ୍ତି ମିଳି ଯିବାକୁ। ସାଗରଠୁ ପରା ଚ଼ନ୍ଦ୍ରର ଉତ୍ପତ୍ତି। ପୂର୍ଣ୍ଣଚ଼ନ୍ଦ୍ରକୁ ଦେଖିଲେ ସାଗର ଉଲସି ଉଠେ, କାୟା ବଢ଼ାଇ ଚ଼ନ୍ଦ୍ର ସଙ୍ଗେ ମିଶିଯିବାକୁ ଚ଼େଷ୍ଟା କରେ। ଠିକ୍ ସେମିତି ଏ ଦେହ ଆଉ ମନ ମଧ୍ୟରେ କୁଆର ଉଠେ ଦୁଇଟି ଆତ୍ମାର ମିଳନକୁ ସ୍ୱାଗତ କରି।

ଲଳିତା - ଥରେ କହୁଛ ଦେହ ଆଉ ମନର ମିଳନ କିଛି ନୁହେଁ। ଥରେ କହୁଛ ଆତ୍ମାର ମିଳନ ଆଗରୁ ଦେହ ଆଉ ମନର ମିଳନ ହୁଏ, ମୋର ଏତେ କଥା ବୁଝିବାର ଶକ୍ତି ନାହିଁ। ମୁଁ ଜାଣେ ମିଳନ ତ ମିଳନ। ଦେହର

ମିଳନ, ମନର ମିଳନ ଆଉ ତମେ କହୁଛ ତ ଆତ୍ମାର ମିଳନ। ତେବେ ସେ ସବୁ ମିଳନ କିମିତି ହେବ ? ରାଧା ତ ଘରୁ ବାହାରିବ ନାହିଁ।

କୃଷ୍ଣ - ସେ ନ ବାହାରିଲେ ବୋଲି ଆମେ କ'ଣ ତାଙ୍କ ପାଖକୁ ଯାଇ ପାରିବା ନାହିଁ।

ଲଳିତା - ତମେ କିମିତି ଯିବ ? ଯାଇ ତା'ଠି ମିଶି ପାରିବ ? କେ ଜାଣେ ? ସେ ବଡ଼ ଗହନ କଥା।

କୃଷ୍ଣ - ଲକ୍ଷ୍ୟ ଯଦି ଠିକ୍ ଥାଏ ବାଟ ଖରାପ ହେଲେ ବି ଯିବାକୁ ପଡ଼େ। ଲକ୍ଷ୍ୟ ଦେଖିବାକୁ ହୁଏ, ବାଟ ନୁହେଁ।

ଲଳିତା - ତେବେ ତୁମେ ଯିବାକୁ କହୁଛ। କିମିତି ଯିବ ?

କୃଷ୍ଣ - ଯିବି। ଯାହା ଅସୁବିଧା ହେଲେ ମଧ୍ୟ ଯିବାକୁ ପଡ଼ିବ।

ଲଳିତା - ତୁମେ କିମିତି ଯିବ କାହ୍ନୁ ? ସିଧା ସଳଖ ତ ଯାଇ ପାରିବ ନାହିଁ। ଲୋକ ଲାଜ ଅଛି। ଲୁଚି କରି ଗଲେ ବିପଦ। ତମେ ଯିବ କିନ୍ତୁ ମୋ ଦେହ ଶୀତେଇ ଯାଉଛି। ହେଲେ ବି ଟିକେ ଦେଖି ଚାହିଁଯିବ-

**ଦେଖି ଚାହିଁ କରି ଯିବ ହୋ କାଳିଆ ଦେଖି ଚାହିଁ କରି ଯିବ**
**ଚିହ୍ନା ପଡ଼ିଲେ ନିନ୍ଦା ଅକଳିବ**
**ଅପବାଦର୍ କାଦେଥି ଭିଜିବ**
**ଜୀବର୍ ଧନ ଜୀବନ ଥିଲେଁ**
**କେତେ ରାଧା ଗଢ୍‌ବେ ଗୋଡ୍ ତଲେଁ।**

କୃଷ୍ଣ - ତୁମେ ମୋତେ ହସାଇଲ ସଖି ! ଗୋଟିଏ ରାଧା ପାଇଁ ମୁଁ କେତେ ନୟାନ୍ତ ହେଲିଣି। ଆଉ କେତେ ରାଧା - ରାଧା ତ ଗୋଟିଏ ବୋଲି ଜାଣେ। ଆଉ କେତେ କେତେ ରାଧା ଥିବାର ଜାଣି ନାହିଁ।

ଲଳିତା - ରାଧା ଜଣେ ହେଲେ ବି ରାଧା ପରି କ'ଣ ଆଉ ନାରୀ ନାହାନ୍ତି ? ଜୀବନ ଦେଖି ଯା' ଆସ କରିବ। ହଁ, ଯିବ ବୋଇଲେ କାହ୍ନୁ ବାଟରେ କଣ୍ଟା ଝଣ୍ଟା ବହୁତ। ଘରର ସିଧା ସିଂହ ଦରଜା ଦେଇ ତ ଯାଇ ପାରିବ ନାହିଁ। କାଛ ଡ଼େଇଁ ଯିବ କି ?

**ଡ଼େଗ୍‌ବ ବେଲେଁ କାଛି କୋଡ଼ ହୋ କାଳିଆ**
**ଡ଼େଗ୍‌ବ ବେଲେଁ କାଛି କୋଡ଼**
**କାଛି ତଲେଁ ଥିସି ଅଦେଖା ଗାଡ଼**

**ପଡ଼େଲେଁ ଭାଙ୍ଗି ଯାଏସି ହାଡ଼ ଗୋଡ଼**
**ଗେଲ୍‌ହା ପିଲା କଳା କହ୍ନାଇ, ତମ୍‌କୁଁ କେତେ କହିଲି ମନାଇ**
**ଆଉର୍ ନାଇଁ ହୁଅ ନ ଧନାଇ॥୨॥**
**ଝଲମଲ ମୟୁରଚୂଳ**
**ଲୁକ୍‌ଲା ବେଲ୍‌କେ ହେବା ଏକା କାଳ॥୨॥**

ହଇ ହେ କାହ୍ନୁ - ଏ ଯେଉଁ ମୟୁରଚୂଳଟାକୁ ମୁଣ୍ଡରେ ଏତେ ଶରଧାରେ ବାନ୍ଧିଛ ସେ ତୁମକୁ କାଳ ହେବ ଦେଖୁଛି। ଏକେ ତ ହଜାରେ ଲୋକ ଭିତରେ ଥିଲେ ବି ଚିହ୍ନା ପଡ଼ିଯିବ। ପୁଣି କୋଉ-ଦୁଆରରେ ଗଳି ଯିବାର ଚେଷ୍ଟା କଲେ ଗଳି ପାରିବ ନାହିଁ।

କୃଷ୍ଣ - ମୁଁ କ'ଣ ଚୋରଙ୍କ ପରି ଯିବି ଲଳିତା ? ସେମିତି ଆଶଙ୍କା କର ନାହିଁ।

ଲଳିତା - ତେବେ କିମିତି ଯିବ ? କହୁନ... ଅନ୍ଧାର ରାତିରେ ଗଲେ ତ ଯା ହେବ ମୋତେ ଜଳ ଜଳ ଦିଶୁଛି।

କୃଷ୍ଣ - କ'ଣ ହେବ ? କିଛି ଆଶଙ୍କା କରୁଛ ?

ଲଳିତା - ଅନ୍ଧାର ରାତିରେ ତ ବାପ୍ପାକୁ ବି ଚିହ୍ନିପାରିବ ନାହିଁ। ସମସ୍ତେ ତୁମକୁ ରାଧା ଭଳି ମନେ ହେବେ। ସେଇଘରେ ଅଛି ବୁଢ଼ୀ ଜଟିଳା ଆଉ ସେ ଅଣ୍ଡିରା ଚଣ୍ଡୀ କୁଟିଳା। ସେମାନଙ୍କୁ ଯଦି ରାଧା ଭାବି-

କୃଷ୍ଣ - ତୁମେ ବଡ଼ ଅଲାଜୁକୀ ଲଳିତା। ମୁଁ କାମାତୁର ନୁହେଁ। ମୁଁ ପ୍ରେମର କାଙ୍ଗାଳ ସିନା।

ଲଳିତା - ହେଲେ ବି ଅନ୍ଧାର ରାତି କଥା ମନେ କଲେ ମୋର ଡ଼ର ହୁଏ
**କଳା କିଟି କିଟି ରାତି ହୋ କହ୍ନାଇ କଳା କିଟି କିଟି ରାତି**
**ଅନ୍ଧାର ରାତିରେ କାହାର ଜାତି**
**ଭାବି ହଲିଯାଏ ମୋର ଛାତି**
**ସୋର୍ ସୁତର୍ ରଖ ସୁନ୍ଦର**
**ବଏସ୍ ନୁହେଁ ଡ଼େଗେ ତ ପନ୍ଦର।**
**ତାକ୍ ଡରକ୍ ରଖିବ କାହ୍ନୁ**
**ଇଜତ୍ ନାଇଁ ଯିବା କାନୁଁ କାନୁଁ॥**

କୃଷ୍ଣ - ସେ ସବୁ ପାଇଁ ତୁମେ ଚିନ୍ତା କର ନାହିଁ। କିନ୍ତୁ କାଲି ରାଧା ଘର ଆଡ଼େ ଟିକିଏ ଆଖି ଆଉ କାନ ଦେଇଥିବ।

ଲଳିତା - ମାନେ ? ତୁମେ କାଲି ରାଧା ପୁରକୁ ବିଜେ ହେବ କାହ୍ନୁ ? କିନ୍ତୁ ଦେଖ ଦେଖି ଚାହିଁ ଯିବ।

କୃଷ୍ଣ - ହେଉ ହେଲା ମୁଁ ଯାଉଛି।

**ଲଳିତା ସଖୀ ଗୋ ଲଳିତମନା**
**ରାଧା ପୁରୁ ଯାଇ ମନ କାମନା**
**ପୂରାଇ ଫେରି ଆସିବି ସୁମନା ଗୋ**
**ରାଧାକୁ ଯମୁନା ମନା**
**ହେଲା ଦିନୁ ମନ ଥିବ ଯେ ଉଛନ୍ନ ରାଧାର ସହକେ ସେ ଉନମନା ॥୧॥**

ସହଜେ ରାଧାର ମନ ତ ଇଆଡ଼େ ସିଆଡ଼େ ହେଉଛି। ତା'ପରେ ଯମୁନା ମନା ହେଲା ଦିନୁ ତାଙ୍କ ମନ ଆହୁରି ଉଛନ୍ନ ହେଉଥିବ। ମୁଁ ଯାଇ ନିରାପଦରେ ଫେରି ଆସିବି ସଖି ତୁମେ କିଛି ଭୟ କର ନାହିଁ।

ଲଳିତା - ଯାଅ କଳାକାହ୍ନୁ ଶୁଭରେ ଯାଅ
ଶ୍ରଦ୍ଧାରେ ରାଧାର ମନ ମଜ୍ଜାଅ
ଜଗତେ ସୁଯଶ-ବାଜା ବଜାଅ ଯେ
ତା' ମନେ ମନ ହଜାଅ
କିଶୋରୀ ପାଶୋରି ଦେଉ ସବୁ ଦୁଃଖ ତାହାକୁ ପ୍ରୀତି-ରସେ ନିମଜ୍ଜାଅ ॥୨॥

ଯଦି ଯାଅ ରାଧା ପାଖରେ ପହଞ୍ଚି ପାରୁଛ ତେବେ ତା'ର ସବୁ ଦୁଃଖ ଉଭେଇଯିବ। କିନ୍ତୁ ମୋ କଥା ମନେ ରଖ, ଦେଖି ଚାହିଁ ଯିବ।

କୃଷ୍ଣ - ହେଉ ଯାଉଛି। ତୁମେ ସେଆଡ଼େ ଟିକିଏ ଆଖି ରଖିଥିବ ।

(ପ୍ରସ୍ଥାନ ଉଭୟଙ୍କର

**-ଦୃଶ୍ୟାନ୍ତର-**

ରାଧା - କଳା ବାଦଲ - କଳା ବାଦଲ - କଳା ବାଦଲରେ
ମୋ ଆଖି ଆଗକୁ ଆ-ନା
ଗଲା ବୋଲି ଜାଣ ଏ ପୋଡ଼ା ପରାଣ
ତାକୁ ନେବାକୁ ଆଉ ଆଗାଅନା ॥୦॥
ବାଟ ଯମୁନାକୁ ମନା ହେଲା ଦିନୁ ଯମଭୁବନକୁ ଫିଟିଛି
ଯେଦିନୁ ଦେଖିନି ମୁଖ-କଳାକର ଆଖି କି ଅନ୍ଧାର ଘୋଟିଛି।

**(ସମାପ୍ତ)**

□□□

# 'ମୁଇଁ' ମଲେଯାଇ

ଗୁଟେ ଅଙ୍କର ନାଟକ୍

(ସମଲ୍‌ପୁରୀ)

ନାଟ୍ୟକାର୍ ; ହେମଚନ୍ଦ୍ର ଆଚାର୍ଯ୍ୟ

# ପ୍ରଥମ୍ ଦୃଶ୍ୟ

ଠାନ୍ - ଗୁଟେ ଗାଁର୍ ସାମେନ୍ ଚାହୀ ଘରର୍ ଗାଁ ଗୁଏଲ ଆଡ଼ର୍ ପର୍ଚି ।

ସମିୟା – ସକାଲ୍ ପାଏଲାନ ଖରା ନୁହେ ଆସେ, ଅନ୍ଧାର୍ ବି ନାଏନ ।

(ଶିବ ପଚିଶ ବରଷ୍

ଡ଼େଁଶିଥିବାର୍ ମେଦାଲ୍ ଯୁଆନ୍ । ଶ୍ୟାମକେ ତାର୍ ନୁ ବଛର୍ ଦୁଟକର୍ ସାନ୍

ପିଲାକେ ଡ଼େନା ଧରି ଖିଡ଼ଖିଡ଼ାଇ ଆନଲା । ଆର୍ ଥାପାଡ଼େ ପିଟିକରି କହେଲା

ଟିକେ ରିଶମିଥିଁ)

ଶିବ – ଜୁଆ ଖେଲୁଛୁ, ଘୁଡ଼୍ ଘୁଡ଼ି ଖେଲୁଛୁ । ଭାତଖିଆ ମୁହୁଁ ଘରୁଁ ଯାଇଛୁ ଯେ, ସକାଲ୍ ପାହିଁ

ରାଁଧନି ଗଧୁଆ ହେନାଲ ବାହାରେଁ ବାହାରେଁ ବୁଲୁଛୁ । ନାଟ୍ ଦେଖୁଥିଲା, କାଏଁ ନାଟ୍

ରେ ?

ହେଁ ନାଟ୍ ଦେଖିହେସି, ବସିହେସି ହେଁ ନ ମିନଟେ ?

ଉଣ୍ ଭେସର୍ ଯାବତ୍ ଟୁଣ୍, ଶୁନି ନୈ ହଏ ;

କେନ୍ତା କରି ହଜାର୍ ଲୁକେଁ କହି ପାରସନ୍ ଯେ ବୁଆ ?

ହଏବୋ ଶ୍ୟାମ ! (ଟିକେ ରାଗ ଥମି ଆଏଲା ବାଗିର୍)

ତୋର୍ ବୁଧିଶୁଧି ଟିକେ ବି ଆର୍ ନାଇଁ ହଏନ ;

ଜୀବନ୍ ଟା କାଣା ଜୁଆ ଆଏ ଇତାକେ ଘୁଡ଼୍ ଘୁଡ଼ିର ବହିତି ନଲିଆନେ ଉହ୍ଲୁଲେଇ

ଦେବୁ ?

(ଶ୍ୟାମ କାନ୍ଦି ବସ୍ ଲା, ଟିକେ ହେଁକାଲା ବି)

ଏଁ ଶ୍ୟାମ ତୁଇଁ କାନ୍ଦୁଛୁ ? କାନ୍ଦ୍ କାନ୍ଦ୍ ବନିହାଁ କରି କାନ୍ଦ୍ ;

ଯଦର୍ପି ପଟ୍ଟେଇ ହଇ କାନ୍ଦୁଛୁ ତ ଆହୁରି କାନ୍ଦ୍ ।

ତୋର୍ ମନର୍ ଦୁଷ୍ ଉହ୍ଲି ବିହ୍ଲି ଯାଉ, ଉଶାସ୍ ଲାଗବା,

ଆର୍ ଯଦିର୍ ମୋର୍ ଦଦା ପିଟ୍ଲା ବଲି କାହ୍ନୁ ତ ଏ ଦେ କାନ୍ ଅଁଠି ହଉଛେଁ ।

(ନିଜେ ନିଜକ କାନ୍ କେ ଧରି)

ଆର୍ କେଭେଁ ପିଟମି ବଏଲେଁ ଗୁହ୍ ଖଏମି, ଗାଏ ମାଉଁଷ ଖାଏମି,

ମଲା ବାପର୍ ଦୁରହୀ ହେମି ଏ ଦେ । (ନିଜେ ଗାଲେଁ ପିଟି ହେଲା)

ଶ୍ୟାମ – (ଟିକେ ଥରଲା ଗଲା ଥିଁ) ଦ..ଦା ଯଦ୍ ରି ମୁଇଁ ଦୋଷ କରିଛେଁ ମତେ ମାର୍

ଆଉର୍ ମାର୍,

ମୁଇଁ ମରିଯିବାର୍ ତକ୍ ମାର୍ ହେଲେଁ ତୁଇଁ ନିଜେଁ ନାଇଁ ମାରି ହ ।

ମୋର ଦେହେଁ ପରଲା ଥାପଡ଼୍ନୁ ଶହେଗୁନ୍ ଅଏତକା ଚିଅଉଛେ,

ତୋର ଗାଲେଁ ପରଲା ତୋର୍ ଥାପର୍ । ମୁଇଁ ଅବାରନ୍ ଆଏଁ, ଅଲାଏକ୍

ଆଏଁ, ଅମାନିଆଁ ଆଏଁ ।

ପାଠ୍ ତ ନୈ ହେଲା ମୋର୍ ଦୁଆରା, କାଁ କରମି ? ତତେ ବୋଝ୍

ହଇକରି ଆର୍ ନୈ

ରହେଁ ନ ।

ଶିବ - ନାଇଁ ରହୁ କେନ୍ କେ ଯିବୁବୋ !

ଘରେ ଥାଇ ଅଥମର୍ ଥାବ୍ ଗାବ୍ ନାଇଁ, ପଡ଼େ ଅଥମକୁଁ କେ ପଚ୍

ରାବା ?

ତତେ ଆକଟ୍ କରି ସୁଧ୍ରବୁ ବଲିଁ, ଦୁଇ କଥାଁ କହେଲି ବୋଲିଁ ।

ଯଦପି ତତେ ବାଧୁଛେ, ତେଭେଁ ମୁଇଁ କାଁ କରି ରହେମି ?

ତୁଇଁ କାଁ କାଯେଁ ପଲାବୁ ମୁଇଁ ପଲଉଛେଁ ।

ସଁଭାଲ୍ ଇ ଘର୍ ଦୁଆର୍ ସଁଭାଲ୍ ଶାନ୍ତନୁର୍ ପଢ଼ାପଢ଼ି ରେ ଖର୍ଚ୍ଚ ବର୍ଚ୍ଚ ।

(ଶିବର୍ ଶେଷ କଥା ପଦ୍ ଦୁକେଁ ଟିକେ ଅଭିମାନ୍ ଆର୍ ରାଗ ମିଶିଥିଲା)

ଲତା – (ମା ଆନ୍ ଜଏସ୍ ପଚାଶ ଡ଼େପି ପାଠେ ପାଖାପାଖି ରାଆଁଭି ଆନ୍ ଧୋବ୍

ନାରାବନ୍ଦୀ ଧଡ଼ିର୍ କପ୍ ଟା ପିନ୍ଧିଛନ୍, ଘର ଭୀତରୁଁ ଆସ୍ ଲେ)

କାଁ କରି ଏନ୍ତା ହଉଛରେ ବାବୁ ! କାଁ ହେଲା ?

ତମକୁ ଲୋକ୍ କାଁ ବଲ୍ ବେ ବଲୁଛେଁ

ବାପ୍ ମର୍ ବାର୍ ବଛର୍ ନୁହେ ଗୁଜ୍ ରେ
ପୁଓ ମାନେ ମାର୍ ଧର୍, ଗୁଏଲ୍ ଝଗର୍
ମେରି ଖମ୍ ଉସ୍ କିଲେଁ ସଥେଁ ଦଲଦ୍ ଦାଇଁ ଛିଡ଼ାଇ ଭାଗସନ୍ ;
ତାକର୍ ତାକର୍ ଲଡ଼ା ଯୁଝା ହେସନ୍
ମତେ ଲୋକ ହଁସା ନାଇଁ କର୍ ରେ ବୁଆ
ମୁଇଁ ନୈ ମରି ତୋର୍ ବା ହେଲେଁ ମରିଯାଏତେ କାଏଁ ? (ଟିକେ ଆଁଏଖ୍ ଛଲେ)
ଘର୍ ଦୁଆର୍ ଦେଖ ଖେତ ଖଲା ସଁଭାଲ୍
ଗାଏଲ୍ ଝଗର୍ ଥୁଁ କାଣା ମିଲ୍ ବା ?

ଏିବ – କାଣା ମିଲା ବା ଯେ ଶ୍ୟାମ୍ କେ ପଚ୍ ରା ମା,
ରାଏତ୍ ସରତା ଉସ୍ ନିଦ୍ରା ହଇ କାଣା ମିଲୁଥିଲା ଇତାକେ, ଯାଏ ପଚରାତ୍

ଲତା – ହେଁଟା କାଣା ପଚରାମି ମୁଇଁ କାଏଁ ନାଇଁ ଜାନ୍ ବାର୍ ?
ଘର୍ ଭିତରେଁ ଥଅଇ ବି ମତେ କାର୍ କେନ୍ କଥା ଅଜନା ଅଛେ ।
ଗାଏ ବଲଦ୍ ଗୁଠେଁ ନୈ ଗଲେଁ, ଙଂଟା ଝଂଟା ଡ଼େଗି ଭବଟିଆ ଯାଏସନ୍ ;
ଇଟା କାଏଁ ନୂଆଁ କଥା ଆଏ ?
ଇସକୁଲ୍ କେ ନାଇଁ ଗଲା ପିଲା, ଖତେ୍ କେ ଯିବା ;
ଖେତକେ ନାଇଁ ମୁହାଲେ, ନାଚ୍ ତାମସା, ଜୁଆ ଘୁଡ୍ ଘୁଡ଼ି, ମଦ୍ ମୁଦକ୍, ଗଞ୍ଜାଇ ଭାଙ୍ଗ୍ ।
କରିଦେ ଯାହା କରବା ;
ଘର୍ ବସା ହେଲାନ ହେଲେ ମନ୍ ଘର୍ ନେ ଧରବାର୍ ।
ଯୁଆନ୍ ପିଲାଟାକେ ହେଲେଁ ପିଟ୍ ବାର୍ ଟା ଆର୍ ସୁନ୍ଦର ଦିଶବା ?
ହଏରେ ବାବୁ ଶ୍ୟାମ ଇସ୍କୁଲର୍ ପାଠ୍ କୈ ହେଲା ନାଇଁ ;
ତୋର୍ ବା ଗୀତା ଭାଗବତ୍ କରି ଘରେଁ ଥାକେ ଥିଇ ନେଇଛନ୍
ସେଥି ହେଲେଁ ସମିୟା କଟାତୁ ବଏନଙ୍କଁ କିଛି ବୁଧି ଶୁଧି ହେବା,
ଗିଆଁନ୍ ଟା କାଣା ଖାଲି ଇସ୍କୁଲେଁ ଥାଏସି ?

(ଶ୍ୟାମର୍ କାନ୍ଦ ବନ୍ଦ୍ ହୋଇଥିଲା ନ ଆର୍ ମାର୍ କଥାକେ ଧିଆନ୍ ଥିଁ ଶୁଣୁଥାଏ ।)

ଶିବ – ହଁ ଠିକ୍ କହୁଚୁ ମା । ମୁଇଁ ବି ଦେଖି ତ କେଢ଼େ ଅନ୍ ମୁନ୍ ଠିଆ ହଇଯାଇଛେ ଯେ,

ଭଲ୍ ଅସାର୍ ବାଛି ନୈ ପାରବାର୍ । କାଁ କର୍ ମି ମା ।

ମୁଁଡ଼େ ମୋର୍ ଅନେକ୍ ଭାବନା କହୁଛେତ,

ମୁଡ୍ ଥାବେଁ ରଖି ନାଇଁ ପାର୍ ବର୍

ହଁ (ସୋର କଲାଲେଖେଁ) ଆଏଜ୍ ଶାନ୍ତନୁର୍ ନିକେ

ଦିଲ୍ଲୀ ଟଙ୍କା ହଜାରେ ନୈ ପଠାଲେଁ ଅଚଲ ଆଏ

ଇ ଆଡ଼ୁଁ ଘରର୍ ଖର୍ଚ୍ଚ ବର୍ଚ୍ଚା ଭିତ ଖର୍ଚ୍ଚାଲନ

ସେ ଆଡ଼େଁ ତୋର୍ ବହୁ କେ ଛାଡ଼ି ଆଇଛେଁ ତାର ବାପ୍ ଘରେଁ ଯେ

କେନ୍ତା କରୁଥିବା କେନ୍ତା ନାଇଁ କେ ଜାନେ (ମୁଁଡ୍ ଖୁଜାଲା)

ଲତା – ଏ ଦେ ନଅ ଯାଇ ଦଶ୍ ମାସ୍ କେ ଗଲାନ ଗରଭ୍

ଦଶ୍ ମାସୀଟାକେ ନାଇଁ ଯାଇ ଦେରେ ବୁଆ ବଏଲିଁ ଯେ ମାନଲୁ କାଏଁ ?

ବହୁଟା ମୋର ଗାଏ ଗଙ୍ଗା ବାଗିର୍,ଜ ହେଲେ କଥା ଜାନଏ ନାଇଁ ;

ନାକ୍ ଧଏଲେଁ ଯାହା କାନ୍ ଧଏଲେଁ ତାହା ।

ଯା ବଏଲୁ ଗଲା ମତେ ସେ, ସେଟା ଲାଗୁଛେ ।

ଶିବ – ତୁଇଁ କେତେ ସାନି ଘାଁଟି ହେବୁ ବଏଲିଁ ମା ।

ଘରର୍ ରନ୍ଧା ବଢ଼ା କରବୁ କି ପିଲାଟି ସଁଖି ଲିବୁ ।

ଫେର୍ ତାର ମା ଘର୍ ଗାଏଁ ସାନ୍ ସୁରୁ କରି ଡ଼ାକ୍ତର୍ଖାନାଟେ ତ ଅଛେ ;ପାର୍ ତାର ହେଲା ବେଲକେ ଥାଏ ତ ବଏଲିଁ

ସେ ବନ୍ ଏ ଥିବା ମାନ, ନୈ ହେଲେଁ ଖବର୍ ବାତନି ପାଏଲେଁ ମୁଇଁ ଜିମି ନ

ହଁ, ଆଏଜ୍ ବେଙ୍କ୍ ନୁ ଟଁକା ହଜାରେ ଆସନିଁ,

ଶାନ୍ତନୁର୍ ନିକେ ପଠାଇନେସି ।

ସୋଜ୍ ମନି ଅର୍ଡ଼ର ଥିଁ ସମିୟାନ ନୈ ମିଳେ ନ ;

ତାର ଥିଁ ମନି ଅର୍ଡ଼ର କରାଲାଗବା ।

ଲତା – ହଜାରେ ଟଁକା କେନେଇ ପାଇବୁ ?

ଶିବ – ତୁଇ ତ ଜାନିନୁ ମା ! ବା ଗଲା ଜନ୍ ବସ୍ ବେଲକେ

ଆମର୍ ତିନହି ଭାଇକର୍ ଅଲଗ୍ ଅଲଗ୍ ପଟ୍ଟା ପାର୍ଚ୍ଚା କରି ନେଇଛନ୍ ;

ମୋର ଜମିନ ଲେଖେଇ କରି ଗନ୍ ମଞ୍ଜୁର କରେଇଛେଁ,

ଆଏଜ୍ ହଜାରେ ଆନଲେଁ ପାଁଚ ହଜାର ହେବା ।

ଲତା – ତେତକେଁ ?

ଶ୍ୟାମ – ତେତକେଁ ମୋର ଜମିନ୍ ଲେଖେଇ ଆନମା ।

ଶାନ୍ତନୁ ପଢ଼ି ସାଏଲଏଁ ନଉକ୍ରି କରବା ବେଲ୍ କେ ମୁକଲାମା ନ ।

ମା ! ମୁଇଁ ମୋର୍ ବନ୍ଧୁକେ ଯାଏ ନୈ ଦେଖି ଆଏତିଁ ? କାଁ ବଲୁଥିବେଟ

ଶିବ – ବୁଆରେ ତୋର ବୁ ସଉକିରେ ।

ସୋଜ୍ ହାତେଁ ଫେର୍ ନାଇଁ ଯାଏଁ ବଲବୁ ଦେଗନ୍ ଦଶ୍ କୁଡ଼େ ;

କେନ୍ ବୁ ଆଏବା ଗା ? ପଏସାଟାକର୍ ଲାଗି ଦେଖୁନୁ ଗୁହ୍, ଗୁବର୍

ହେବାକେ ପଡ଼ିଛେ ।

ଲତା - ଯଅଏନ ଯେ, ତତେ ଟଁକା ପଏସା ଦେବାକେ ନୈ ପଡ଼େ ।

ସୁଆଁଲି ଅର୍ ଅଏରସା ପିଠା ଗୁଡ଼ାକୁ କରି ନଉଛେଁ ।

ବନ୍ଧୁ ମୋର୍ ପିଲାଡି ପାଏନ୍ ହେଲା ଉତରୁଁ ଅଜଡ଼୍ ଜବଡ଼୍ ପାଇ ନୈ ପାରେ ।

ପଥି ଆଟା ଥିଁ ରହେଲେଁ ଯାଇ, ପିଠାପନା ଦୁଇଟା ଖାଇଥାଉ ।

ତୁଇଁ ଯା ତ ଶ୍ୟାମ ଗାଧି ପାଧିଆ ଖାଇକରିଥିବୁ ।

ଶିବ – ହଁ ସେଥିବା ତ ଯିବା ମୁଇଁ ଏଛନ୍ ବାହାରିଲିଁ ।

ଲତା – କାଁକାଣା ମୁଠେ ଖାଇକରି ଯା ।

ଶିବ – କେତେ ଦଶା ହେବୁ ମା ମୁଇଁ ଏ ଦେ ପଲେଇ ଆଉଛେଁ ;

ଖେତ୍ କେ ଗଲେଁ ଯାଇ ଅଥଏଲିଁ କି .. .. (ପଲାଲା)

ଲତା – ଶ୍ୟାମ ! ଦେଖୁଟୁ ତୋର ଦଦାକେ, ଦେଖ୍ ତାର ବାହାରେ ହାଡ଼୍ ମାଉଁସର ରୂପ ନାଇଁ, ତାର୍ ଭିତରେ ମୁନୁଷକେ ଦେଖ୍ । କେଡ଼େ ନୁକୋ, କେଡ଼େ ଅଏନ୍ ।

ଭାଏକର୍ ଲାଗି କେନ୍ ଦଦାର୍ ଏତେ ଦରଦ୍ ଥିସି ରେ ।

ତୋର ବା ମଲେ କି ଖେତ୍ ଖଲା ଭରିଯିବା ବଲିଁ ନଉକ୍ରି ଛାଡ଼ିଲା ।

ଛୁଟିଆ ହେଲେଁ ବି ନଉକ୍ରିଟେ କରୁଥେଲା ତ ।

ଫେର୍ ବିହା ହେଲା ଉତରୁଁ ବି ଦିନକର୍ ଲାଗି ବି କୁଟୁମ୍ ସାଙ୍ଗେ ନେି ନେଲା ।

ମୋର ମା ବା କେତେ ରାନ୍ଧି ଖାଏବେ ବଲି ।

ଏବେ ଶାନ୍ତନୁ ପଢ଼୍ ବା ବଲି, ଦିନ ରାଏତ୍ ଗୁଟେ କରି କମଉଛେ ।

ନେି ହେଲା ବେଲ୍ କେ ତାର ନାଆଁଥି ଥିଲା ଜମିନ୍

ବେଁକ୍ ନ ଲେଖେଇ ପଏସା ଆନୁଛେ

ପୁଓ ବଏଲେଁ ଇଟା ପୁଓ ଆଏ, ଅଥର୍ ଦଦା ବଏଲେଁ

ଦଦା୍ ନୁହେତ, ଜନମ୍ କଲା ବାପ୍ ନୁ ବି ଆଏତ୍ ପର୍ ।

ଯା ଜଲଦି ଆଏବୁ ଯା, ମୁଇ ?ଁ ପିଠା କରି ନଏଛେଁ, ନେଇକରି ଯିବୁ ।

ଶ୍ୟାମ – ମୋର୍ ବହୁକେ ହେଲେଁ କାଣା ଖୁନବୁ ମା ।

ମୋର୍ ଦଦା ପଛେ କେତେବେଲେ ଗାଏଲ୍ ଝଗର୍ ଦେବା

ମୋର୍ ବହୂକେ ଦେଖଲୁ ନ କାଏଁ ଦିନେ ଅଧେ ଗାଏଲ୍ କି ଝଗର୍

ମତେ ପିଠିର୍ ଭାଏ ଲେଖେଁ କେତେ ସେନେହୋ ଆରଦ

ଆର୍ ତତେ ତ ଯେତକି ମାନ୍ ସନ୍ ଯେ

କହେ କାହାରିର୍ ଜନମ୍ ଗଲା ମା କେ ହେତକି ନେି ମାନୁଥିବା ।

ଲତା – ହଁରେ ପୁଓ । ମୋର୍ ଝି ନେି ଥାଇ ଯେ ଭଗବାନ୍ ହଇ ମତେ ଝି ଟେ ଦେଲା । ସବୁବେଲେଁ ଲାଗିଥିବା ନ ମା କିଛି ନେି ଖାଏଲ୍ ଗୋ ଶ୍ୟାମ କାଣା ଖାଏବେ ? ଶାନ୍ତନୁ ସେ ନ କେନ୍ତା କରୁଥିବେ ? ପଚରଉଥିବେ ନ ।

ଶ୍ୟାମ – ମା ବହୁ ଗଲାବେଲେଁ ମତେ କହିଥିଲେ ଶ୍ୟାମ ତମକୁଁ ମୁଛି ନେି ହଏ ; ତମର୍ ଦଦା ତ ଶାଶ୍ ଘର୍ ବଏଲେଁ ମୁହଁ ମୁରୁନେଁସନ୍ ମଝି ମଝି ଆସୁଥିବ ।

ଲତା – ହଁ ଯିବୁ ପରେ, ଯା ଜଲଦି ଗାଧି ପାଧି ଆ

(ଦୁହେଁ ଗଲେ)

# ଦୃଶ୍ୟ ନଂ ଦୁଇ

(ଗାଁ ଗୁଏଲ୍ ସାମନାଥିଁ ସେ ଘରର ପର୍ଚି, ଲତା ବସିକରି ଧାନ୍ ପାଛରୁଛନ୍, ସମିୟା ରାଁଧନି ଗାଦୁଆ ଜଡଲାନ୍, ଶ୍ୟାମ ସାଇକେଲ୍ କୁ ଉତରିଲା, ସାଇକେଲ୍ ଢ଼େରିକରି ଦଉଡ଼ିଗଲା ମାର୍ ନିକେ, ମା କେ ପଛ୍ ଆଡୁ ଅଙ୍କା କରି ଧରି କିହ୍ରାଲା)

ଶ୍ୟାମ – ମା ! ମା ! ବଢ଼ିଆ ଖବର (ହଁସୁଛେ ଆର୍ ବିସୋର୍ ହଇ କିହ୍ରୋଉଛେ)

ଲତା – ଓଃ .. କାଣା ଆଏ କହରେ .. କହ .. କହ

ଶ୍ୟାମ – କହେମି ମା ! କହେମି .. ହା .. ହା .. ହା .. (ହଁସୁଛେ)

(କହ୍ରି କିହ୍ରି ଦୁହେ ପଡ଼ିଗଲେ, ଲତା ତର୍ ସର୍ ତର୍ ସର୍ ଉଠଲେ ମାତରକ୍)

ଲତା - (ସଁଭରିକରି) କାଁ ଖବର୍ ଯେ ଏନ୍ତା ହିଁ ବିସୁରିଆ ବାଗିର୍ ହେଲୁରେ ଶ୍ୟାମ

(ଶ୍ୟାମ ଶୁନଲା ନାଇଁ)

ଶ୍ୟାମ ! ଶ୍ୟାମ ! (ଶ୍ୟାମର୍ ଦିହକେ ହଲାଲେ)

ଏ ମା ମୋର ଶ୍ୟାମର୍ କା ଣା ହେଲା ଯେ କେ ଜାନେ ଶ୍ୟାମ ! ଶ୍ୟାମ !

ଏ ବୂଆ ମୁଁଡ଼୍ ବି ଫାଟି ଯାଇଛେ ତ ରକତ୍ ବୁହୁଛେ

କାଁ ଖବର୍ ନେଁ କାଁ ଖବର୍ କେନୁ ଶୁନି ଅଅଏଲା ଯେ ପୁ ଓ ମୋର ବିସୋର୍

ହଇଗଲା ।

କା ଣା କରସିଁ କାହିଁ ଯାଏସିଁ ସିବ ବି ତ ଖେତୁଁ ନୁହେ ଆସେ ।

କେତେ ବେଳେଁ ଆଏବା ଯେ ମୁଇଁ କା ଣା କରସିଁ ବଲୁଛେଁ ।

(ମୁଁଡ଼େ ହାତ୍ ଦେଇ ହତାଶ୍ ହଇ ବସଲେ)

ଶିବ – (ଖେତୁଁ ଫିରଲା ବେଶ୍ ଗନ୍ଦେ କୁଏଡ଼୍ ପତରେ ଧୁତି ପିନ୍ଦି ଭିରି ହଇଛେ ଦିହେଁ ଗେଞ୍ଜି ଖଁଡ଼େ)

ମା ! ମା ! କାଁ ହେଲା ଗୋ

ଲତା – (ଶିବ କେ ଦେଖି ଅକୁଲ୍ ଥିଁ କୁଲ୍ ପାଏ ପାଏଲା ଲେଖେଁ)

ଅଏଲୁରେ ବାବୁ ଦେଖ୍ ତ ଇ ଶ୍ୟାମ କେ ତୋର୍ ଶାଶ୍ ଘର୍ ଗାଁ ନୁ ଆସଲା କି

ବଲୁଛୁ ପଛ୍ ଆଡୁ ମତେ ଧରି ବଢ଼ିଆ ଖବର୍ ବଲି କିନ୍ଦ୍ରାଲା, କିନ୍ଦ୍ରାଲା ଯେ କିନ୍ଦ୍ରାଉଛେ ନ

ବହୋସ୍ ହଇ ପଡ଼୍ ବାର୍ ତକ୍, ମୁଁଡ଼୍ ବି ଫାଟିଯାଇଛେ,

ରକତ୍ ବୁହୁଛେ, କେନ୍ତା କରମା ।

ଶିବ – (ଶ୍ୟାମର୍ ପାଶ୍ କେ ଯାଇ ବନ୍‌ଏ କରି ଦେଖି ଲା ବନିହାଁ ଦୁଖ୍ ମନା ହଇ)

କା ଣା କରମା ମା ? ଦେଖୁଁ ଘଡ଼େ ଛନ୍‌ଏ । ସୋର୍ ନାଇଁ ଆଏଲେଁ ଡ଼ାକ୍ତର ଡ଼ାକିଯିମି ।

କା ଣା ହେଲା କେ ଜାନ୍‌ଏ କାଁ କରି ଯେ ନୈ ହେଲା କଥା ମାନେ ଆସି ଡ଼ଟୁଛେ ।

ଲତା – ବଢ଼ିଆ ଖବର୍ ତ ବଏଲା ଗୋ ବାବୁ ଖରାପ୍ ଖବର୍ ତ କିଚି ନୈ ହଉଥିବା,

ହେଲେ କା ଣା ଆଏ ଖବର୍ ଟା ଯେ କି ହେଲା କାଏଁ ।

ମୋର୍ ନାଡି ଢେଲା କାଏଁ ।

ଶିବ – ହେତ୍ କରି ଖବର୍ ଥିଁ ବିମୋର୍ ହଇ ଯାଏତା କାଏଁ ମା ।

(ନିଜେଁ ଘର୍ ଭିତରୁଁ ପାଏନ୍ ଗଡୁଟେ ଆନି ଶ୍ୟାମର୍ ମୁହେଁ ପାଏନ୍ ଡ଼ଟକା ମାରି ଆଯାତ୍ ଠାନ୍ କେ ନିଜେଁ ଧରିଥିବା ଜରିଥିଁ ପୁଛି ଆନୁଥାଏ)

ମା ! ଧୁକନା ନାଇଁ ପାଏଲିଁ କେ ନ ରହେଲା ଯେ,

ଟିକେ ଧୁକା ଧୁକି କରିଥିଲେଁ ହଉଥିତା, ଗହଦେଁ ଗାଧିଗଲାନ,

କପଡ଼ା ଲତା ଭକ୍ଚକର ଗଲାନ ।

ଲତା – (ଘର୍ ଭିତରୁଁ ଧୁକନା ଆନି ଧୁକି ବସଲେ)

ଆରେ ବାବୁ ସାଁପ୍ ଗଁପ୍ ନୁହେ ତ, ମୋର ଗିଆନ୍ ଗୁରେ ହଜି ଯାଉଛେ ଶିବ ।

କା ଣା ହେଲା କା ଣା ନାଇଁ କେନ୍ତା ଜାନିହେବା ।

ଶିବ – (କାନ୍ଦି ପକାଲା ଆଖିର୍ ପାଏନ୍ ଧାର୍ ଧାର୍ ହଇ ଶ୍ୟାମର୍ ମୁହେଁ ଥପ୍ ଥପ୍ ଥିପୁଥାଏ)

ମା ! ଶ୍ୟାମକେ କାଏଲ୍ ପିଟି ପକାଲିଁ ମା,ଇ ହେଁ ଥିର୍ ରିଶେଁ ମତେ କଥା ନୈ କହେବାର୍ କାଏଁ

ଶ୍ୟାମ କିଚି କାଣା ହଇଗଲେଁ ମୁଇଁ କାଁ କଲିଁ ରାଏଜେଁ ରହେମି ମା

ଶ୍ୟାମ – (ତାର୍ ମୁହଁ ଉପରେଁ ପଡ଼ୁଥିବା ସିବର୍ ଆଖିର ପାଏନ୍ ପୁଛି ବସଲା, ଚେତା ପାଏଲା ଆର୍ ଦେଖଲା ସିବକେ ଆବରି ଧରି)

ଦ.. ଦା ଦ..ଦା ଶାନ୍ତନୁ ତାର ଇଉନିଭର୍ସିଟି ଥି ଏକ ନମ୍ବର ହଇଛେ

ମୁଜାର ମେଡ଼ଲ ପାଏବା ପରେ

କାଏଲ୍ ହେଁ ଗାଁର୍ ପିଲାଟେ ଦିଲ୍ଲୀକୁ ଆସି କହେଲା ।

ହେଁ ଥିର୍ ଲାଗି ଏକ୍ ସଙ୍କଟ୍ ଆଏଁଖ୍ କାନ୍ ମରକ୍କୁ ପଲାଇ ଆଏଲିଁ

ତମାର ଭାଏ ଏତକେଁ ଜିଲ୍ଲା ସାହେବ ହେବା, କମିଶନର୍ ହେବା, ଲାଟ୍ ହେବା

(ଉଠି ବସିଲା)

ଶିବ – (ଆହୁରି କାନ୍ଦି କାନ୍ଦି କହେଲା) ହେଁ ଥିର୍ ଲାଗି ତୁଇଁ...

ଶ୍ୟାମ – ହଁ ଦଦା ! ହେନ୍ତା କଥା ଥିଁ ସୋର୍ ରହେସି ?

ମା ! ମୋର ଦଦା ମୋର୍ ଗୁରୁ ଆଏ ମା !

କାଏଲ୍ କହେଲା ପରେ ଜୀବନ୍ ଟା କାଏଁ ଜୁଆ ଆଏ ?

ସତ୍ କଥା ମା ଜୀବନ୍ ଟା ଜୁଆ ନୁହେ, ଜୀବନ୍ ଟା ହାୟ ହାୟ ନୁହେତ,

ନୁହେ ଇଟା ଲାଭ ହାନୀର ହୀସାବ୍ କିତାବରଖ ରଙ୍ଗଭମଞ୍ଚସକ୍କୁଭ ଟବ

ଜୀବନ୍ ଟା ମତେ ଲାଗସି ସୁଖ୍ ପାଏବାର୍ ଗୁଟେ ନଏଇ୍ ଆଏ,

ଅମରୁତର୍ ଗୁଟେ ମହା ସମୁଦର୍ ଆଏ

ସେଥିଁ ବୁଡ଼ି ଉଷତ୍ ଆନନ୍ଦ୍ ଥିଁ ବିଭୋର୍ ହେବାର୍ ଟା ବିମୋର ହେବା୍ ଟା ଜୀବନ୍ ଆଏ ।

ଭାଗବତ୍ କହୁଛେ, ସଂସାରେ ଥରବ ଯେତେ ଦିନ ଆନନ୍ଦ କରିଥିବ ମନ ।

(ଉଠିକରି ଇ ଆଡ଼୍ ସେ ଆଡ଼୍ ହଇ ବସଲା)

ଶିବ – ହଏରେ ବେଡ୍ହା, ତୋର ମୁଁଡ଼୍ ଫାଟି ରକତ୍ ଝୋଲ୍ ହୋଇଗଲାନ ।

ନୈ ଜାନ୍ ବାର୍ ଫେର୍ କେନତକ୍ ଯିବୁ ?

ଆ ବସ୍ (ହାତ୍ କେ ଧରି ବସାଲା )ଉଷୋ କଷା କା ଣା ଟିକେ ଲଗଉଁ ।

ତତେ ହେଁଟା ଜାଇଁ ଝିଆବାର୍, ନାଇଁ ଜନାବାର୍ କାଏଁ ।

ଶ୍ୟାମ – (ମୁଁଡ଼୍ ତାମଡ଼ି) ଇଟା କା ଣା ଜନାବା ଦଦା
ଯାର୍ ଭିତରେଁ ଉଷତ୍ ଆନନ୍ଦର୍ ଧାର୍ ବୁହିବାର୍ ମୂଲ୍ ହେସି ।
ଇ ବାହାରର୍ ଦୁଖ୍ କେନ୍ତେଇ ଜନାବା ;
ଆର୍ ଯଦରି ଜନାବା ତ ସେ ଉଷତ୍ ଆନନ୍ଦ୍ ଟା ସତର୍ ନୁହେ ।
ସେ ଟା ଲୋକ୍ ଦେଖା ନିଆଁ ଆଏ, ତମ୍ ଅଥଏ, ଫନ୍ଦି ଆଏ, କି ଆର୍ କାଁ କା ଣା
କୁହାଯିବା ଯେ ।

ଲତା - ଆରେ ବାବୁ ଶ୍ୟାମ, ହଁରେ ତୁଇଁ ତୋର୍ ବନ୍ଧୁ ଘରକେ ଯାଇଥିଲୁ ପରେ,
ସେ କେନ୍ତା ଅଛେ କା ଣା ଯଇଁ କା ଣା ହଉଛୁ ।

ଶ୍ୟାମ – ହଁ ବନ୍ଧୁ ବନଏ ଅଛନ୍ ନ ମା ! ସେନ ରହେବାର୍ ବୁହେ ମନ୍ ନାଇଁ
ମା ଘର ହେଲା ଯେ କାଁ ହେଲା । କହୁଥିଲେ ଶ୍ୟାମ । ଦେଖ୍ ତରେ ମା ଇ ବଏସେଁ
ରାଁଧି ବାଢ଼ି ପରଶୁଛନ୍ । ଆର୍ ମୁଇଁ ଇନ ଅଏସ୍ କରୁଛେଁ, ମତେ କେନ୍ତା କେନ୍ତା
ଲାଗୁଛେ ।
ଶାନ୍ତନୁର୍ ପାସ୍ ଖବର୍ ଶୁନି କେନ୍ତା ହଇ ଯାଉଛନ୍ ମା ମୋର ନୁବି ଜହ ।
ଦେଖଲୁ ମା ମୋର୍ ସୋର୍, ଏ ଦେ ଶାନ୍ତନୁ ସେ ପିଲାର୍ ହାତେଁ ଚିଠି ଦେଇଛେ ।
ମୁଇଁ ମଲା ମେଡାଲ୍ ପାଶରି ପକେଇଛେଁ ।

ଶିବ – ତୁଇଁ ତ ନିଜକେ ପାଶରି ପକେଇଛୁ ବୋ ଚିଠିକେ କେ ପଚାରେ, ଆନ୍ ଆନ୍
ଦେଖମା ଆନ୍ ।

ଶ୍ୟାମ – (କୁର୍ତାର ପକେଟ୍ ରୁ ଚିଠି ବାହାର୍ କରି ଦେଲା) ଏ ଦେ ନେ ପଢ଼୍ ଶୁନ୍ ମା ମୁଇଁ ବି
ନୈ ପଢ଼ି ।

ଶିବ – (ଚିଠି ଖୁଲି ପଢ଼ି ବସଲା, ଫେର୍ କାଣା ଭାବି ଘର୍ ଭିତର୍ କେ ପଶିଗଲା)
ଦେଇକରି ଯାଇଥିଲେଁ ଚିଠିଟା, ମୁଇଁ ହେଲେ ନାଇଁ ପଢ଼ିଥିତିଁ କାଏଁ ।
ତୁଇଁ ନାଇଁ ଶୁନିଥିବୁ ମା । ଆମେ କେତେ ଆଶ୍ କରି ବସିଛୁଁ ..

ଶିବ – (ଘର୍ ଭିତରୁ ଉଷୋ ଶିଶିଟେ ଆନି)

ଆନ୍ ମୁଁଡ଼୍ ଦେଖା ଚିଂଚରେ ଟିକେ ଦେଇନେସି

ଯିବୁ ସେ ଧାଇରନ୍ ସାଡ଼ଙ୍ଗା ଇଂଜେକ୍ସନ୍ ଟେ ନେଇବୁ ।

(ଚିଠି ଖୁଲି ପଢ଼ଲା)

ନୁଆଁ ଦିଲ୍ଲୀ .. ତା

ମାଏନତା ଦଦା ଯୁହାର୍

ମା କେ, ବହୂ କେ ଆର୍ ଶ୍ୟାମ୍ ଦଦା କେ ଯୁହାର ଜନାଇଦେବ ।

ତୁମେ ସବୁ ବନ୍ଏ ଥିବ ବଲି ଅଅଶ୍, ମାର ଦିହପା ଜନାବ ।

ମୋର ଲାଗି ବେଶି ଧନେଇ ହଇ ପଏସା ପତର୍ ଲାଗି ହଏରାନ ନାଇ ହବ ।

ପରୀକ୍ଷା ସରଲା ନ ତ ଏତକେଁ ଟିଉସନ୍ କଲେଁ ବି ଚଲତା ।

ପରୀକ୍ଷା ଥିଁ ମୁଇଁ ବନ୍ଏ କରି ପାସ୍ କରିଛେଁ ।

ଏଛନ୍ ବନିହାଁ ନଉକ୍ରି ଗୁଟା କେତ୍ କର୍ ଅର୍ଜି କରିଛେଁ ।

ସେ ସବୁର୍ ପରୀକ୍ଷା ମାନେ ହବା, ଘରୁ ନାଇଁ ଅଅସି ହଏ ।

ହେଁଥିର୍ ଲାଗି ରହି ଯାଉଛେଁ, କେନସି ଭି ନଉକ୍ରି ହେଲେଁ ଯିମି

ଇନ୍ ମୋର୍ ସାଙ୍ଗ୍ ଟାକର୍ ବାପା ପଏସା ପତର୍ ସାହେଯ୍ କରବାକେ ଚାହେସନ୍

ଯେ ମତେ ଆନବଙ୍କଲ ମନ୍ ନାଇଁ ଲାଗେ ।

ମୋର ଆଁଠୁ ଭାଙ୍ଗି ହାତ୍ ପାତ୍ ବାରଟା ତମେ ପସନ୍ଦ ନାଇଁ କର ଜାନୁଛେ ।

ହଁ ରହେଲିଁ ଜଲଦି ଚିଠି ଦେବ, ତମର ଶାନ୍ତନୁ ।

ଶ୍ୟାମ - ଦଦା ଲେଖିଦେବୁ ଟିଉସନ୍ କର୍ ବାରଟା ବି ଆମର୍ ପସନ୍ଦ ନୁହେ ।

ତୋର ଭାଗର୍ ଜମି ସରଲେଁ ମୋର ଭାଗକେ ଲଗାଇ ଭଗାଇ ପଏସା ପଠାମା

ଶିବ – ତେବେ କହେଲିଁ ପରେ ବୋ ଇଂଜେକ୍ସନ୍ ଗୁଟେ ନେଇନେବୁ, ଯା ..

(ଶ୍ୟାମ ଗଲା, ମାବି ଗଲେ ସିବର୍ ଆମ୍ଭ ସନ୍ତୋଷ ତାହାକେ ଉପର୍ କେ ଉପର୍ କେ ନେଇଯାଉଥିଲା ବେଲକେ ପରଦା ତଲକେ ଖସୁଛେ)

# ଦୁରୁଣ୍ ନଂ ତିନ୍

(ଦିଲ୍ଲୀର୍ ଗୁଟେ କଲେଜ୍ ହଷ୍ଟେଲ୍ ର କୁଠରୀ । ଟେବୁଲ ଟେ ଚଉକି ଟେ ଥୁଆ ହଇଛେ । ଟେବୁଲ୍ ଉପରେଁ ଦୁଇ ଚାଉର୍ ଖଣ୍ଡ ବହି । କାଁଥି ଥିଁ କୁର୍ତା କଣ୍ଡଏ ଭଲା ହଇଛେ ପଟା ଖଟ୍ କେ ତାହି ପଛରା ଖଣେଏ ଦଶା ହଇଛେ । ତାର୍ ଉପରେ ବସିଛେ ଶାନ୍ତନୁ, ମନକେ ଘିଚିନେଲା । ମୋଟାଲ୍ ଚେହେରା, ମୁଡ଼ର ବାଲ୍ କୁଚ୍ କୁଚିଆ ହଇ ସୁନ୍ଦର । ଢ଼ିଲା ପାଇଜାମା ଆର୍ ଗେଞ୍ଜି ଖଣେଏ ପିନ୍ଧି ବସିଛେ । ହାତେଁ ଇଂରାଜୀ ମେଗେଜିନ୍ ଟେ ଥିଲେଁ ବି ନାଇଁ ପଢ଼ବାର୍, ଭାବିତ୍ ମେଡ଼ାଲ୍ ବସିଛେ କବାଟେଁ ଠକ୍ ଠକ୍ ଆବାଜ୍ ଶୁନି କହେଲା )

ଶାନ୍ତନୁ - ଆସୁନ୍ ।

(ଭୀତର୍ କେ ଆଏଲା ଗୁଟେ ଆନ୍ ଟୁକେଲ୍ ବେଶ୍ ଭୁଷା ଥିଁ ବନ୍ଏ ଥିଲା ଘରର୍

ଆର୍ ପଢ଼ାଶୁନା ଲେଖାଁ କେନସି କାଏବ୍ କବିତା ଥିଁ ଲେଖା ହଇଥିବାର୍ ବାଗିର୍ ଚେହେରା ଥିଲେଁ ବି ମୁହେଁ ଟିକେ ନିଜର ବଡ଼ଲୁକି ଦେଖାଲା ବାଗିର୍ ଉପ୍ ଡ଼େଣ୍ଡି ଚେହେରା)

ଶିଳା - ଆଜ୍ଞା । ନମସ୍କାର ।

ଶାନ୍ତନୁ - ଯୁହାର୍ ଆଜ୍ଞା । ଆସୁନ୍ ଆସୁନ୍ (ଚୌକି ଦେଖାଇ) ବସୁନ୍, କେନ୍ତା ଆସିଗଲେ

ଶିଳା – (ଶାନ୍ତନୁର ଖଟର ଗୁଟେ ଆଡ଼େ ବସି) ସେମିତି ମୁଁ ତ ଅନେକ ଥର ଆସୁଛି, ଆଜି

ବି ଆସିଲି ନୂତନତା ନାହିଁ ଅଅପଣ ଇନଭାର୍ସିଟି ଟପର୍ ହେଲା ପରେ ବହୁତ ଲୋକ ଆସିବେ ଆପଣ ବ୍ୟସ୍ତ ନ ହେଲେ ହେଲା

ଶାନ୍ତନୁ – କାଁ କରି ଆସବେ ଆଜ୍ଞା, ମୋର ନିକେ କା ଣା

ପାଏବେ ମୋର ନୁ ହଉ ଚାହା ମଗାମି କି ସର୍ବତ

ଶିଳା - ଆଜ୍ଞା କିଚି ମନେ କରିବେ ନାହିଁ, ଆମେ ଦୁଇଜଣ ଓଡ଼ିଆ ଆପଣ ଓଡ଼ିଆରେ କହିଲେ ଭଲ ଲାଗନ୍ତା । ମୁଁ ଆପଣଙ୍କ କଥା ଶୁଣୀଲା ପରେ ବୁଝୀବା ପାଇଁ ଟିକିଏ ରୋମନ୍ଥନ ଦରକାର ପଡ଼େ ।

ଶାନ୍ତନୁ - ଆମେ ଯଦରି ଦୁହେ ଗୁଟେ ଭାଷୀର୍ ଲୋକ୍ ବଲିଁ ଆପଣ୍ ଭାବୁଛନ୍ ତ ମୋର୍ କଥା ମୋର୍ ଭାଷୀ ଭୀଲ୍ । ଆପଣ୍ କହେବାର୍ ଚେରେଷ୍ଟା କରତେ ବଏଲେଁ ସିନା । ଆପଣ୍ ଆପଣ୍ କର୍ ଭାଷା ନାଇଁ ଛାଡ଼ଲେଁ ମୁଇଁ ମୋର ଭାଷା ଛାଡ଼ମି ବଲିଁ କେନ୍ତା ଆଶା କରସନ୍ । ନିଜର ମାର୍ ପନତ୍ ତଲୁଁ ଖସରିବା କେ କିହେ ନୈ ଚାହାଁନ ଶିଳା

ଆଜ୍ଞା । ଆପଣ୍ ଆମର୍ କଥା ଶିଖ୍ ବଙ୍କଲ ଚେରେଷ୍ଟା କନୁନ୍ ।

ଶିଳା – ହେଉ ଚେଷ୍ଟା କରିବି ।

ଶାନ୍ତନୁ – କରିବି ନୁହେ, କର୍ ମି । ଅହଂ କରୋମି, ଯେନ୍ତା ସଂସ୍ କୁରୁତ୍ ଥିଁ ହେସି ।

ଶିଳା - ଆଛା କରିମି ।

ଶାନ୍ତନୁ – କରିମି ନୁହେଁ କର୍ ମି । ହଁ କହେଲେ ନାଁତ ଚାହା କି ସର୍ବତ ।

ଶିଳା - ଆପଣଙ୍କର କଥା ପଦକରେ ଯେଉଁ ସ୍ୱାଦ ନାଁ ସ୍ୱାଦ୍ ଥାଏ, ଚାହା କି ସର୍ବତ ତା ସଙ୍ଗେ କିଛିନୁହଁ ।

କରିବାକୁ ସାହାସ୍ କରନ୍ତିନି ନା ନା ନାଇଁ କରନ୍ତି ନାଁ କଣ ।

ଶାନ୍ତନୁ - ନାଇଁ କରନ୍ ହଉ ହେବା ଯେ କହୁନ୍ ନ ।

ଶିଳା – ହଁ ନାଇଁ କରନ୍ ଏଣୁ ଚାହା କି ସର୍ବତରେ ସମିୟାକୁ ଆଡ଼େଇ ନ ଦେଇ ବରଂ ଦି ପଦ କଥା ଭାଷା ହେମା । ପରୀକ୍ଷା 'ଲ ତ ଶୁଣଲେ, ଯା ପରେ ଆପଣ୍ କା ଣା କରବାକୁ ଭାବୁଛନ୍ତି ।

ଶାନ୍ତନୁ – ସଭେ ଯା ହା କରସନ୍ ।

ଶିଳା - ମାନେ..

ଶାନ୍ତନୁ – ମାନେ ପାଠ୍ ପରେ ଡ଼ିଗ୍ରୀ ପରେ ଚାକରୀ, ତାର ପରେ ଘର ଦୁଆର୍ ।

ଶିଳା - ନାଁ ସମସ୍ତେ ତାହା ନାହିଁ କରିବାର୍ । ଅନେକ ଏପରିକି ଟପର୍ ମାନେ ବି ଚାକିରି ବାକିରିର ନାଆଁ ନାହିଁ ଧରି ଦେଶ ସେବା ଲାଗି ବାହାରି ଯାଉଛନ୍ତି, ଉଁ ଯାଉଛନ୍ ।

ଶାନ୍ତନୁ – ସେମାନେ ମହାନ୍ ଆନ୍ ଶିଳା ଆଜ୍ଞା । ସେଟା ମୁଇଁ କାହିଁ ପାରମି । ଘରେ ଘରର୍

ଲୁକେ ଆଁ ପାରି ମୋର୍ ବାଟ୍ ଦେଖୁଥିବେ । ସେମାନେ କର୍ ଲାଗି ମୋର୍ ତୋ

ଫେର୍ କିଛି କରବାର୍ ଅଛେ । ମତେ ଚାକରି କର୍ ବଙ୍କଲ ପଡ଼ବା, ହଁ ଚାକରି କେନ୍ତା ଟା ମିଲବା ହେଁଟା କହି ନେି ହଏ ।

ଶିଳା - ଆପଣ୍ ଙ୍କୁ ଚାକିରି ବାଟ ଚାହିଁ ବସିଚି ନା ନା ବସିଛେ, ଭଲରୁ ଭଲ ଚାକିରି ମିଲବା ।

ଶାନ୍ତନୁ – ହଁ ଯାହାବି ମିଲୁ ସେ ଚାକରି ଥିଁ ରହି ଯେତେଟା ଲୋକ ସେବା କରି ହେବା ସେଟା କରମି ଆର୍ ମୋ୍ ବିଚାରେଁ ସେ ଥିଁ ଜହ କରିହେବା ।

ଶିଳା - ଆପଣ ଚାହିଁଲେ ପାରବେ ।

ଶାନ୍ତନୁ - ଆପଣ ବି ପାରବେ । ଦେଶ୍ ଥିଁ ଏଛନି ଯେନ୍ ରକମର୍ ଲାଁଚ ମିଛ୍ ଧରା କରା ଚାଲିଛେ ନେି ଜନ୍ଏ ଯଦର୍ପି ବନ୍ଏ ନିଘା କରବା ତ ଦେଖବା ଯେ ଦେଶ୍ ଟା ଘାଏ କେଁ କୁଶେ ପଛକେ ପଲଉଛେ । ଆଗ୍ କେ ଯିବା କାଣା ଶାସନ୍ କଲର୍ ଯେନ୍ ପାଟକେ ଦେଖବେ ମୁରଚା ଖିଆ ତ କଲ୍ ଚଳବା କେନ୍ତା କରି ।

ଶିଳା - ଆପଣ ସେ କଲରେ ରହେବେ ତ ..

ଶାନ୍ତନୁ – ହଁ ରହେମି, ନଟଟେ କି ଦୁଲୁଟ୍ ଟେ ହଇ ରହେଲେଁ ବି ମୁରଚା ଯେନ୍‌ତା ନାଇଁ ଲାଗବା ହୁସିଆର ହେମି ଭନିଆ ପାଟ୍ ମାନକୁଁ ବି ଯେନ୍ତା ନେି ଲାଗବା ଚେରେଷ୍ଟା କରମି ।

ଶିଳା – ବୋଧ ହୁଏ ସମସ୍ତେ ଚାକିରି କରିବା ଆଗରୁ ଏମତା ଭାବୁଥିବେ । ମାତରକ ଯେତେବେଳେ ବାସ୍ତବ ସଂସାର ସମ୍ମୁଖୀନ ହୁଅନ୍ତ, ସେତେବେଳେ ସେ ଭାବନା ଭାବନାର ସ୍ତରରେ ହିଁ ସମାଧି ନିଏ । ଆପଣଙ୍କର ଚାରିଦିଗରେ ଯେତେବେଳେ ଅର୍ଥ ପଟୁଆରଜଳ ଚାଲିଥିବା ଆପଣ୍ ନୀରବ୍ ରହିପାରଲେ ତ, ଜୀବନ ଯୁଦ୍ଧରେ ଅର୍ଥ କେବଳ ବଡ଼ ଅସ୍ତ୍ର ବୋଲି ଜାଣଲେ ନିଜକେ ଶମ୍ଭାଳି ପାରଲେ ତ ।

ଶାନ୍ତନୁ – ହେଁଟା ତ ଆପଣ ପର୍ଚ୍ଛା ସତ୍ କଥାଟେ କହୁଛନ୍ ଯେ, ନିଜକେ ଯେ ଜିତି ନେି ପାରେ ସେ ଜୀବନ୍ ଯୁଦ୍ଧରଁ ଲଢ଼େଇଟେ ବି ନେି ପାରେ । ଜିତବାର୍ ହାରବାର୍

ଟା ପଛର କଥା ।

ଶିଳା – ଏଲୁଟିଆର୍ ସଂସାର୍ ଅଥଉ ପିଲାପିଲି ନେଇ ସଂସାର ଦୁଇଟା ଅଲଗା କଥା ସଂସାର କ କରିବେ ଉଁ ହୁଁ କରିବେ ।

ଶାନ୍ତନୁ – ହଁ କରବାକେ ପଡ଼ବା, ନିଜର ଲାଗି ନୈ ହେଲେଁ ଭି ମାର୍ ସନ୍ତୋଷ୍ ଲାଗି ତ କରବାକେ ପଡ଼ବା ।

ଶିଳା - ଆଉ ବାପା ।

ଶାନ୍ତନୁ - ନାଏଁନ, ତାକର୍ ବଦଲଥି ଦଦା ମାନେ ଅଛନ୍ ।

ଶିଳା - ଦଦା ମାନେ ବାପାଙ୍କ ଭାଇ ।

ଶାନ୍ତନୁ - ନାଇଁ, ଆମେ ନିଜର ବଡ଼ ଭାଏ ମାନକୁଁ ଦାଦା କି ଦାଦା କହେସୁଁ ।

ଶିଳା- ଓ .. ଯା ପାଇଁ ହେଲେ ବି ବିବାହ କରବାକୁ ପଡ଼ବା ।

ଶାନ୍ତନୁ – ହଁ ..

ଶିଳା – ତେବେ ଡ଼େରି କାହିଁକି ।

ଶାନ୍ତନୁ – ମତେ କିଏ ବାହା ହେବ ଆଜ୍ଞା ଏତେ ଜଲଦି । ଆମର୍ ଚଷା ଭୂଷା ଘର୍, ଗାଁ ନ ଭଙ୍ଗା ଦଦରା ହଇ ଘରଟେ, ମାଟିର୍, ଝାଟିର୍ କରି, ଦନଏ ବରଷାଟେ ହେଲେ କେତେବେଲେଁ ଧସକି ଯିବା ଯେ କେ ଜାନ୍ଏ ଗୁହୁଡ଼େ କୁଟୁମ୍ । ଦଦା ମାନେ ମାଏଟ୍ ହଇ ଯେନ୍ କମାନ୍ କୁପନି ଟିକେ କରସନ୍ ଦିନ୍ ମୁଡ଼୍ ଯଥଏ ନାଇଁ ଫେରମଟର୍ ଟେସନ୍ ବଲ୍ କି ରେଲ୍ ଟେସନ୍ ବଲୁନ୍ କୁଶେ ଗଲେଁ ଯାଇ ମିଲବା ।

ଶିଳା – ଓଃ ଆପଣ ହସାଇଲେ ଶାନ୍ତନୁ ବାବୁ ଇଉନିଭାର୍ସିଟି ଟପର୍ ଆଇ ଏ ଏସ୍ ଚାକିରି ଯାର୍ ହାତ୍ ପାହାନ୍ତାରେ ତାକର୍ ହାତ୍ ଧରବାକୁ ସହସ୍ରେ ଝିଅ ପ୍ରତୀକ୍ଷାରେ ଥିବେ

ପୁଣି ..

ଶାନ୍ତନୁ – ହଁସାବାର୍ ଟା ତ ଆପଣ୍ ମତେ ହଁସଉଛନ୍ ଆଜ୍ଞା । ହଁ ପୁଣି ବଏଲେ ଯେ ସେ ପୁଣି

ଟା କାଣା ଆଏ କହୁନ୍ ଶୁନବା ।

ଶିଳା - ଆପଣଙ୍କର ବଳୀଷ୍ଠ ବଳିଷ୍ଠ ବାହୁ ସୁଷ୍ଠୁ ଆକର୍ଷଣୀୟ ଶରୀର, ଅନଭିବ୍ୟକ୍ତ ବ୍ୟକ୍ତିତ୍ୱ ସହସ୍ର ରୂପସୀର ନୟନରେ ଅଜସ୍ର ସ୍ୱପ୍ନ ସୃଷ୍ଟି କରୁଥିବ । କେତେ ତରୁଣୀ ତପସ୍ୟାରତ ଥିବେ ଆପଣଙ୍କୁ ପାଇବା ପାଇଁ

ଶାନ୍ତନୁ – (ଭାରି ଜୋରରେ ହସି) ହା.. ହା.. ହା.. ହା.. ପୂରା ସାହିତ୍ୟ ଆରମ୍ଭ କଲେ ।

ଶିଳା – ଏଥିରେ ଏତେ ହସ୍ ବାର୍ କା ଣା ଅଛି ।

ଶାନ୍ତନୁ – ଶିଳା ଆଜ୍ଞା ! ଆପଣ ନୂଆଁ କଥାଟେ କଲେ ତ । ବୋଧ୍ ହୁଏ ଆପଣ ଦୁନିଆଁର୍ ପହେଲା ନମ୍ବର ପାଏବେ ଯଦରି ଗୁଲେ ତାଲିକା ଏନ୍ତା ଲୁକକର୍ ତିଆରି ହେଲା । ମାନେ କାଏବ୍ କବିତା କଥେନ୍ କେନସି ଥିଁ ବି ଲେଖକ୍ ହଏନ୍ କି ଲେଖିବା ହଉନ୍ । ନାରୀର ରୂପ କହେବା ଲିଖି ବାର୍ ଥିଁ ନାଇଁ ହଦ୍ ରନ୍ କଞ୍ଜୁସି ନାଇଁ ଦେଖାନ୍ । ହେଲେଁ ପୁରୁଷର୍ ରୂପ ବର୍ଣ୍ଣନା ନାରୀର୍ ମୁହେଁ ସଏଦ୍ ଶୁନଲା ବେଲକେ ଗୁଟେ ନୂଆଁ କଥା ମେତାଲ ଲାଗଲାନ ହେଁଥିର୍ ଲାଗି .. ହଁସି ଆସୁଥିଲା । ମା', କର୍ ବେ ।

ଶିଳା – ମୁଁ କବି କି କବୟତ୍ରୀ କିଚି ନୁହେଁ, ମୁଁ ମୋର୍ ଭିତରର୍ କଥା କହି ପକାଲି । ବାପା ମା ବି ..

ଶାନ୍ତନୁ – (ଟିକେ ଗମ୍ଭୀର ଜନା ପରଲା ) ଶିଳା ଛ

ଶିଳା - ଆଜ୍ଞା ! ଆଶା କରୁଛେଁ ଆପଣ ମୋର୍ ଅଭିଳାଷ୍ କେ ଘୃଣା ନାହିଁ କରବେ ।

ଶାନ୍ତନୁ – ମତେ ପାଇବାର ଅଭିଳାଷ୍ ତ ମୋଟେ ନୁହେଁ ।ଏ ନଉନ୍ ।
(ଖଟରୁ ଉଠି ଗୁଟେ ଇସ୍ତ୍ରୀ କରାହଇଥିବା ସାର୍ଟ ଓ ପ୍ୟାଂଟ୍ ଦେଲେ ତକିଆ ତଲୁ ବାହା କରି)

ଶିଳା – କାଣା କରିବି ଯାକୁ ନେଇ ।

ଶାନ୍ତନୁ - ଆପଣଙ୍କର୍ ଅଭିଳାଷ୍ କେ ଭୁର୍ ତାବେ ।

ଶିଳା – ମାନେ ..

ଶାନ୍ତନୁ - ଆପଣ୍ ମୋର ନିଜର ଯେନ୍ ଗୁନ୍ ଗାଇଗଲେ ହେଁ ଦିହଟା ଆର୍ ଇ ପେଂଟ୍ ସାର୍ଟ ଏକାଟା ଉପରର୍ ଛାଆନି ଆନ୍ ଦୁହିଟା ଯାକ ।

ଶିଳା – (ନିରାଶ ଭଙ୍ଗୀରେ) ଶାନ୍ତନୁ ବାବୁ ଆପଣଙ୍କୁ ଚିହ୍ନି ନାଇଁ ହେଲା ।

ଶାନ୍ତନୁ - ନିଜେଁ ନିଜକେ ଚିହ୍ନଲେ ଯାଇ ଭନିଆ ଲୁକକୁ ଚିହ୍ନି ହେସି ଶିଳା ଆଜ୍ଞା ! ଯଦି କିଚି ନୈ ଭାବରେ, ମୋର ଲାଇବେରୀଥେଁ ଟିକେ କାମ୍ ଥିଲା

ଏିଳା - ଯାଉନ୍, ମୁଁ ବି ଯାଉଛେଁ ନମସ୍କାର ।

ଶାନ୍ତନୁ - ଯୁହାର୍ (ଉଭୟେ ଗଲେ)

# ଟିକେ ଶୁନୁନ୍ ତ

- ୧ -

ପାଏନ୍ କଲ୍‌ନୁ ପାଏନ୍ ଗାଁଆର ଗଲିଁ ହଉ କି ସହରର ଗଲି ହଉ ଛୁଟୁଛେ ଦର୍ ଦର୍। ମେଲା ଘରର୍ ବିକ୍‌ଲି ଫଂଖା କିନ୍ଦୁଛେ ଭର୍‌ଭର୍। ସାଙ୍ଗେଁ ବିକ୍‌ଲି ଲାଇଟ୍ ମାନେ କଲୁଛନ୍ ଯେ କଲୁଛନନ୍‌ନ । ସବୁଠାନୁ ଆଶ୍‌ରିଯ କଥା ଚ଼ଲ୍‌ତା ମଟର୍ ମାନେ ବି ଗର୍ଜୁଛନ୍ ଯେ ଅଟ୍‌କିଁ ଅଟ୍‌କିଁ ଷୋକ୍ ଷୋକ୍। ଡ଼ିକଲ୍ କି ପେଟ୍ରୋଲ୍ କେନ୍ ମଟରେଁ କେନ୍‌ଟା ଲାଗ୍‌ସି ଯେ ପୁଡୁଛେ ତାର୍ ତାର୍। କହେବାକେ କିହେ ନାଇଁ। ଇ ପେଟ୍ରୋଲ୍ ଡ଼ିକଲ୍ ଲାଗିଁ ପରେ ଆମ୍‌କୁଁ ବାହାର୍ ଦେଶର୍ ଲୋକ୍ ଲଗ୍‌ତିଆ ଭାବି ଡ଼ରଉଛନ୍ କେ ଖାତିର୍ କରୁଛେ ? କେନାଲର୍ ପାଏନ୍ ବିନ୍ ଫସଲର୍ କମିମାନ୍ ମାଡ଼ି ପଲଉଛେ ନଏଦ୍ ନଲିଆ କେ କାର୍ ନଜର୍ ଅଛେ ? ଦେଶର୍ ସଂପଦ୍ ନାହାକ୍ ବର୍‌ବାଦ୍ ହଉଛେ ଯେ ମୁଇଁ ମଟ୍ ମଟ୍ ଦେଖୁଛେଁ, ମୋର ହେକ୍‌କେ ନାଇଁ ଆଏବାର୍ ଯେ ଇ ସବୁ ନକ୍‌ସାନି ଥିଁ ମୋର୍ ବି ଭାଗ୍ ଅଛେ। ଟିକେ ହର୍‌ତାଲ୍ କି କିଛି ବିଗଡ୍ ବାଗଡ୍ ହେଲା ତ ଦିଅ

ଆମର୍ ଦେଶ୍ ଆଗ ଆଦୁଁ ଗରିବ ନେ ଥାଇଁ । ଇଛନି ବି ତ ବାହାରର୍ ଲୋକ୍ ଇନ୍‌କେ ଧନ ଦଉଲତର ଲୁଭେଁ ଆସୁଛନ । ଏଛ୍‌ନି ବି ଯାହା ଅଛେ ଆମେ କୁଗି ରଖି ଆମେ କହେସୁଁ ସେମାନ୍‌କର ବୁଧି ନାଇଁ ବିବେକ୍ ନାଇଁ। ଆମେ ବୁଧି ବିବେକ୍‌ର ଠିକା ନେଇଥିବାର୍ ଦାବି କରୁଥିବାର୍ ଲୋକ୍ ଯେ ସୁବିଧା ପାଏଲା ଭାଗ୍‌ସୁଁ ଆଗ୍‌କେ ଆଗ୍‌କେ, ପଛ୍ ପଡ଼ଲା ଲୋକ୍ ରେଙ୍ଗୋ ଘେଁଟୋ। ହଉଥାଉ କାର୍ ଯାଉଛେ !

ସମିଯ୍ଯା ପଲେଇଁ ଯାଉଛେ, ଏଛ୍‌ନି ହେଲେଁ ଭାବୁଁ ଇ ଦେଶ୍, ଇନିର୍ ସଂପତ୍ତି ଇତାର୍ ଲୋକ୍ ସବୁ ଆମର୍ ସମ୍‌କରର୍ ଆନ୍। ଏକ୍‌ଲା କାହାରିର୍ ବାପର୍ ନୁହେଁ, କି କାହାକେ ଇଥିଁ ବର୍ଥିଚୁତ୍ କରି ନାଇଁ ହଏ। ଆମେ ସଭେ ଏକା ସାଙ୍ଗେଁ ଯିମା; ସୁଖ୍ ହେଲେଁ ସମ୍‌କର୍, ଦୁଖ୍ ହେଲେଁ ବି ସମ୍‌କର୍ ଥାଏ। ଆମର୍ ବାପ୍ ଅକା କହୁଥିଲେ, ବସୁଧୈବ କୁଟୁମ୍ବକମ୍। ସାରା ବସୁଧା ଗୁଟେ କୁଟୁମ୍ ଆଉଁ। ଆମେ ଆମର୍ ଦେଶ୍‌ଟାକେ ହେଲେଁ ଗୁଟେ କୁଟୁମ୍ ବଲିଁ କହୁଁ। କନ୍‌କର୍ ଜର୍ ହେଲେଁ ସମ୍‌କର୍ ଦିହ ତପୁ, ସମକର୍ ମୁଡ଼ ବଥା ହଉ। ଚେ଼ରେଷ୍ଟା କରୁଁ ତ, ହେବାନ। ହେଲା ଦିନ ଜାନ୍‌ମା ଆମେ କେଡ଼େ ବଡ଼ିଆ କାମ୍ କଲାଁ।

- ୨ -

ଗଛଟେ ଜାଗ୍‌ଲେଁ ପଚ୍ଛାଶ୍ ବର୍ଷେଁ କେଡ଼େ ବୁର୍‌ସାଲ୍ ହେସି; କେତେ ଫଲ୍ କେତେ ଫୁଲ୍, କେତେ ଛଏରା ଦେସି । ସେ ସବୁ ହିସାବ୍ କଲେଁ କେନ୍ ସୁନାର୍ ମୂଲ୍ ତୋଲ୍ ଦେବା ? ଆମର୍ ଇ ଦେଶର୍ ପୁର୍‌ଖା ପାତିର୍ ଲୋକ୍ କେତେ ଲାଠି କେତେ ଗୁଲି ଖାଇ, କେତେ ଫାସି ଚଢ଼ି ଦେଶ୍‌ନେ ଆନି ଜଗେଇ ନେଇଥିଲେ ସ୍ୱାଧୀନତାର୍ ଗଛ । ସେ ତାକେ, ଏସୁର ବଛର୍‌ଏଁ ପଚ୍ଛାଶ ବରଷ୍ ହେଲାନ ଯେ କାହିଁ ତାର୍ ଫୁଲ୍ ଫଲ୍ କି ଛଏରା ? ପଚ୍ଛାଶ୍ ବଛର୍ ପରେଁ ବି ସେଟା ଜୀନ୍ନାଲା ଲେଖେଁ ଦିଶୁଛେ । ନାଇଁ ହେବା ? ଆମେ କେବେ ବୁଝୁଛୁଁ ସେ ଗଛର୍ କଥା । କିଏ ପତର୍ ଛିଡ଼ାଲା ତ କିଏ ଡ଼ାହି କେଲେଇ ନେଲା ନ । ଆର୍ କିଏ କିଏ ଅଛନ୍ ଯେ ଚେର୍ ଉପଡ଼ାବାର୍ ବତରେଁ ଅଛନ୍ । କିହେ କାହାରି ସାଙ୍ଗେଁ ପଟୁଁ ନାଇଁ । କିଏ ବଲୁଛେ ମୁଇଁ ବଡ଼, କିଏ ବଲୁଛେ ମୁଇଁ ତରାପଟିଆଁ ଅଛେଁ ଯେ ଭାଗ୍ ନୁ ଚୁକିଯିମି ? ଆର୍ କେତେ ଅଛନ୍ ଯେ ଦେଶ୍ ବାହାରିଆ ଅହଂକାରିଆ ଲୁକର୍ ପଟିଁଥି ପରିଁ ସେ ଗଛର ମୁଷ୍‌ଲି ଚେର୍‌କେ କାଟ୍‌ବାର୍‌କେ ଦଁତି ବସିଛନ୍ । ଆମେ ଏକ୍ ଗୁଛା ହଇଁ, ଏକ୍ ଜୁଟ୍ ହଇଁ ନାଇଁ ରହି ପାରଲାଁ ଯେ ତ ବାହାର୍ ଦେଶର୍ ଲୋକ୍ ଆମ୍‌କୁଁ ଶ ' ଶ ' ବଛର୍ ଲାଲ୍ ଆଏଁଖ୍ ଦେଖେଇ ଉଠ୍‌ବସ୍ କଲେ । ଆମେ ଆଏଜ୍ ଯଦର୍‌ପି ଭିଲ୍ ବାନ୍ଧି ଏକ୍ ଗୋଛ୍ ହେଇ ନାଇଁ ରହେମା ତ, ବିଦ୍‌କିଲେଁ ବିଦେଶୀ ବାଘର ମୁହଁକେ ଯିମା । ଏ'ଦେ ମାସେ ମେଡାଲ୍ ହେବା ଇ ସ୍ୱାଧୀନତା ପାଏଲା ଦିନ୍‌କେ କେତେ ରକ୍‌ମେ ମାନ୍‌ଲାଁ । ପତାକା ଉଡ଼ାଲାଁ । ଆମେ କେଡ଼େ ବର୍‌କସ୍ ଆଉଁ, ଆମର୍ ସଏନ୍ ସାମନ୍ତ, ହାତୀ ଘୁଡ଼ା, ଟେଙ୍କ ଉଡ଼ାଜାହାଜ୍ ବହରେଇଁ ବାହାର୍ ଜଗତ୍‌କେ ଦେଖାଲାଁ ଆମେ ସହଜେଁ ନାଇଁ ଡ଼ରୁଁ । ହେଲେଁ ଆମେ ଆମର୍ ଭିତର୍ ମାନ୍‌କୁଁ ଅଁଡ଼ଲେଇ ନୁରାଖୁଜା କରିଥିଲେଁ ପାଇଥିତାଁ ଆମେ ଇଥିର୍ କେତେ ଲାଏକ୍ ଆଉଁ । ଆମେ ଯେନ୍‌ମାନେ ପତାକା ଉଡ଼ାଲାଁ, ଆମେ କେତେ ସାଫ୍ କେତେ ନିର୍‌ମଲ୍ ଆଉଁ ଜନାବାର୍‌କେ ଚେ଼ରେଷ୍ଟା କଲାଁ କାଏଁ ? ଆମର୍ ଭିତରେଁ କେତେ ସ୍ୱାର୍ଥଭାବନା, କେତେ ମୁଁକାର୍, କେତେ ପଖ୍‌ପାତର୍ ଭାବ୍‌ନାର୍ ମଏଲା ଭରି ରହିଛେ ହିସାବ୍ କଲାଁ କାଏଁ ? କରି ପାରିଥିଲେଁ ଆମେ ଲଜେଇ ଥିତାଁ । ସେ ପତାକାକେ ଧରିଁ କେ ଜାନ୍‌ଏ ଆମ୍‌କୁଁ ଲାଜ୍ ନାଇଁ ଲାଗ୍‌ଲା ଯେ ପତାକା ଲଜେଇଁ ଗଲା କାଏଁ ?

ଆମେ ରେଲ୍ ଲାଇନ୍ ଉଦରଉଛୁଁ, ରେଲ୍ ଡ଼ବା ଲେହେଁଟଉଛୁଁ, ପୁଲିଆଁ ମାନ୍‌କୁ ଧସ୍‌କଉଛୁଁ, ଆମର୍ ଦେଶର୍ ଲାଗିଁ ଜୀବନକେ ପାଏନ୍ ଛଡ଼େଇ ଜୁଗ୍‌ଲା ଲୁକ୍‌କୁଁ ଲୁକିଛପି

କରି ମାରି ପକଉଛନ୍ତି। ଦେଶର୍ ସଂପଦ୍ କେ ନୁକ୍‌ସାନ୍ କରୁଛନ୍ତି ଯେ, ହେଁ କବାରେଁ ସ୍ୱାଧୀନତା ରହେବା କାଏଁ ? ଭଗବାନ୍ ନାଇଁ କରୁନ୍ ଫେର୍ ପରାଧୀନ ହେମା କେନ୍ ଅନ୍‌ମୁନ୍‌ଷିଆ ଶକ୍ତିଟାକର୍ ? ଆର୍ ଥରେ ପରାଧୀନ୍‌ନୁ ମୁକ୍‌ଲାବାର୍ ତାକତ୍‌ଦାର୍ ଲୋକ୍ ଆମର୍ ଭିତ୍‌ରେ ଆଏଁଖକେ ପାଉଛନ୍ ଭାଏଲ୍ ? ସ୍ୱାଧୀନତା ସହଜ୍ କଥାଟେ ନୁ ହୁ ଆଏ। ଥରେ କା'ର୍ ଫିଂଜ୍‌ରାକେ ଡୁକ୍‌ଲେଁ ବାହାର୍‌ବାର୍‌ଟା ସହଜ୍ ନୁହେଁ। ଶହେ କୋଟି ଲୋକର୍ ଦେଶ୍‌ଟେ ଆମର୍ ଆଏ। ଆମେ ସଭେ ଏକ୍ ଆଉଁ। ଆମେ ଭିଲ୍ ଭିଟ୍‌କିଆ ନାଇଁ ହଉଁ। ଆମେ ଜନ୍‌ଏ ଜନ୍‌ଏ କରି ଇ ରାଏଜ୍ ସେ ରାଏଜର୍ ନାଏଁ, ଆମର୍ ଇ ମହାନ୍ ଦେଶ୍ ନୁ ଅସ୍‌ରେଇ ନାଇଁ ହଉଁ। ଆମେ ଗୁଟେ ଦେଶର୍ ଗୁଟେ ଜାତିର ଆଉଁ ନ ଆମର୍ ତିନ ରଙ୍ଗିଆ ପତାକା କହୁଛେ, କାଏଁ ଲେଖେଁ ଲାଗ୍‌ସିଁ ଦେଖ ପୁତେ ! ରଥର ଇଆଡ଼୍ ସେଆଡ଼୍ ହେଲ ବଏଲେଁ ତୁମର୍ ରକ୍ଷା ନାଏଁନ। ପରାଧୀନତାର୍ ମୁହଁକେ ଗଲ ହେଲେଁ ଯାଉଛ ନ। ପଛେଁ ପସ୍ତାବ, ପସ୍ତାବାର୍ କିଛି ଅର୍ଥ ନାଇଁ ଥାଏ ସେତିକି ବେଲେଁ; ଦେଖ, ତୁମର ପଛେଁ ଯେନ୍‌ମାନେ ସ୍ୱାଧୀନ୍ ହେଲେ ସେମାନେ ତୁମର୍ ଜେତେ ଆଗେଁ ଅଛନ୍। ତୁମେ ସବୁ କଥା ଥିଁ ସ୍ୱାଧୀନ୍ ଅ, କାହାରି ଆଗେଁ ହାତ୍ ନାଇଁ ପାତ, ମଗ୍‌ତିରିର୍ ସ୍ୱାଧୀନତା କଥା କିଏ ଭାବି ପାର୍‌ବା?" ସତେଁ କହୁଛେ କାଏଁ ଶୁନୁନ୍ ତ ଆଜ୍ଞା। ଯେନ୍ ଦେଶ୍ ସ୍ୱାଧୀନ୍ ହେସି ସେ ଦେଶେଁ ରୋଗ୍, ଗରିବି, ଅନ୍ନିୟେ, ଅତ୍ୟାଚାର୍ ଆଦି ସ୍ୱାଧୀନ ଭାବେଁ ନାଇଁ ରହିପାରେ। ବିଦେଶର୍ କେନ୍‌ସି ଶକ୍ତି ତାହାକେ ଧମ୍‌କେଇ ନାଇଁ ପାରେ। ଆମେ କାହାରି ଅଧୀନ୍ ନୁହୁଁ କି କାହାକେ ଅଧୀନ୍ କରି ରଖ୍‌ବାର୍‌କେ ନାଇଁ ଚାହୁଁ। କେନ୍‌ସି ଭି ହିସାବେଁ ଆମେ କାହାରିର୍ ତଲେଁ ନୁହୁଁ। ଇ ଭାବ୍‌ନା ସବୁବେଲେଁ ସବୁଠାନେ ସମ୍‌କର୍ ମନେ ଝଂକରୁ ଥାଉ।

- ୩ -

ଗାଁ ସହର୍ ଯେନ୍‌କେ ଯିବ ଶୁନ୍‌ବାକେ ମିଲୁଛେ ଦେଶ୍‌ଟା ଲାଁଚୁଆ ହଇଁଗଲା। ବିନା ଲାଂଚ୍ ନେ କେନ୍‌ସି କାମ୍ ହଇ ନାଇଁ ପାରେ। ତଲୁଁ ଉପର୍‌କେ ଗରିବ୍ ମହାଜନ୍ ଶିକ୍ଷିତ୍ ଅଶିକ୍ଷିତ୍ ସମ୍‌କର୍ ମୁହେଁ ଇ କଥା। ଦେଶର୍ ସବୁ ଲୋକ୍ ଯଦର୍‌ପି ଚ଼ର୍‌ଚ଼ା କରୁଛନ୍, ଇ କଥାଟା ଖରାପ ଆଏ, ତେବେଁ କାହାକେ ନେଇ ହଉଛେ ଇ କାର୍‌ବାର୍ ? ସଭେ ଚାହେଁଲେଁ ବନ୍ଦ୍ ହଇଁ ଯାଏତା ଯେ, ସଭେ ଅସ୍‌କଟାଲେଁ ବି ନେବାର୍ ଲୋକ୍ ତ ନାଇଁ ଛାଡ଼ି ପାରନ୍, ଲାଭେଁ ଅଛନ୍। ଦେବାର୍ ଲୋକ୍ ହେଲେଁ ତ ଛାଡ଼୍‌ତେ। ସେମାନେ ବି ନାଇଁ ଛାଡ଼୍‌ନ୍। ଉନିଆଁ ଲୁକର୍ ନୁ ଆଗୋ ନିଜର୍ କାମ୍ କରାବେ, ଲାଭ୍ ଲବ୍‌ଧି ନିଜେଁ ଏକ୍‌ଲା ଆଗୋ

ମାରିନେବେ ବଲି ଦେବାର୍‌ଟା ବି ନାଇଁ ଛାଡ଼ନ୍। ଲାଁଚ୍ ନେବାର୍‌ଟା ଯେନ୍ତା ଅପ୍‌ରାଧ୍ ଆଏ, ଦେବାର୍‌ଟା ବି ସେନ୍ତା ଅପ୍‌ରାଧ୍ ଆଏଁନ। ଦେଶଟା ଇଥିଁ କେତେ ତଲକେ ଗଲା ନ ସବେ ଜାନି ବି ଅନ୍‌ଜାନ୍ ଆ'ନ୍। ଆମର୍ ଦେଶର୍ କହ କି ଜାତିର୍, ଇ କବାଗେଁ କେତେ ବଦ୍‌ନାମ୍ ହଉଛେ କିଏ ବୁଝୁଛେଁ ? ଇଟା ବନ୍ଦ୍ କର୍‌ବାକେ ନୀତି ନିୟମର ଅଭାବ୍ ନାଇଁ ନ, ଆହୁରି ବି ନୂଆଁ ନୂଆଁ ନିୟମ୍ କାନୁନ୍ ରୋଜ୍ ରୋଜ୍ ତିଆର୍ ହଉଛେ ଯେ, ସେ ସବୁକେ ମାନ୍‌ଲେଁ ପରେ।

ମାଧ କହୁଥିଲା ତାକର୍ ଗାଁର୍ କଥା ଟେ। ଦୁଖର୍ କଥା ତ ନିଶ୍ଚେ ଆଏ, ତ ବି ମଜାର କଥା ବି ଆଏ। ଇ ଗଲା ଖରା ମାସର୍ କଥା ଆଏ। ମର୍‌ଡି ଅଁଚ୍‌ଲର କଥା। ଗଲା ବଛର ଯେନ୍ ପାଏନ୍‌ଛାଡ଼୍ ହେଲା, ଖେତ୍ ଖଲାନୁ କିହେ କିଛି ନାଇଁ ପାଇଁ ବଏଲେଁ ଚଲେ। କେନ୍ତା କରି ଜୀଇଁବେ ଖାଏବେ, ପିଲାଛୁଆ ବଅଁଚ୍‌ଚାବେ, ବଡ଼େ ଟେ ଚିନ୍ତା ସମ୍‌କୁଁ ଘାରୁଥିଲା। ବନିହାଁ ଦିନ୍ ତକ୍ ସର୍‌କାରୀ ସାହେବ ବାଟ୍ ଦେଖି ଦେଖି ପଛେଁ ଆଏଲା ମାଏଟ୍‌ବୁହା କାମ୍। ନୂଆଁ କରି ସର୍‌ପଂଚ ହଇଥିବା ପିଲା କହେଲା ଖଲିହା ବନ୍ଧେଁ ମାଏଟ୍ ବୁହା ହେବା। ଯାହା ବି ହଉ କାମ୍ ତ ମିଲ୍‌ଲା, କଲେଁ ପଏସା ବି ମିଲ୍‌ବା, ପଏସା ମିଲ୍‌ଲେଁ ଜିନିଷ୍ ବି ମିଲ୍‌ବା। ପଚ଼ରା ପଚ଼ରି ହଇଁ କନା ଶୁନା ହେଲେ ଯେ ଶହେ ଫୁଟ୍ (ଘନ ଫୁଟ୍) କେ ତିରିଶ ତ କେ କହେଲା ଚ଼ାଲିଶ୍ ଟଂକା। ଆଁପୁର୍ ଚ଼ିପୁର୍ ହଇ ଲୋକ୍ ମାଏଟ୍ ବୁହଲେ। ପଏସା, ଦେବାକେ ସର୍‌ପଂଚ୍ ବନିହାଁ ଟିକେ ଡେରି କଲା। ଆଏଜ୍ କାଏଲ୍ କରି ମାସେ ଗରେଇ ନେଲା। ମାଏଟ୍ କାମ୍ ଯେତ୍‌କି ହେବାର୍ କଥା ହେଲା। ପରେଁ ପଏସା ଆଏଲା। ଲୋକ୍ ଦିନ୍ ରାଏତ୍ କରି କାମ୍ କରିଛନ୍। ଖଲିହା ମାଏଟ୍, କୁଏଡ୍ ଗର୍ଏତି ଖୁପେ ନାଇଁ, ତାହିଁ ଫେର୍ ଡ଼ଙ୍ଗର୍ ମେଡାଲ ବନ୍ଧ୍ ଆଏର୍‌କେ ମାଏଟ୍ ଚ଼ଡ଼ାବାର୍ ଦୁଖ୍ ଯେ କରିଛେ ସେ ହିଁ ଜାନ୍‌ଏ । ଭୁଖେଁ ଶୁଷେଁ ଏଡ଼େ କଡ଼ା କବାର୍ କରି କିଏ ଜରେଁ ପର୍‌ଲା ନ, ତ କିଏ ଖାର୍ସି, କିଏ ବାହାର୍କେ। ତ' ବି ଦମ୍ କରିଛନ୍, ପଏସା ପାଏଲେଁ ଉଷୋ କଷା କର୍‌ତେ ! ଗରିଆ ଗଡ଼ୁ ଗହନା ଦେଇଛନ୍ । ପଏସା ପାଏଲେଁ ମୁକଲାବେ । ପଏସା ମିଲ୍‌ଲା ବେଲ୍‌କେ ଦେଖ୍‌ଲେ ଯେ ଯେତ୍‌କି ହେବାର୍ କଥା ତା'ର୍ ଅଧା ନେଇଁହେବାର୍ ; କଥା କା'ଣା? ସରପଂଚ୍ ବୁଝେଇ ନେଲା। ବନିହାଁ ବନିଜ୍‌କରି ପଂଚ଼େତ୍ କେ ସମିତି କେ ମେମ୍ବର ମାନେ ଭୋଟ୍ ଟେ ପାଇଛନ୍। ଇ ମାଏଟ୍‌ବୁହା, ପଏସା ହେଲେଁ ସେ ସହଜେଁ ପାଇଛେ ? ଏମେଲେ କେତେ ଲଢ଼ା ଭିଡ଼ା କରିଛନ୍। ଇ ସବେ କିଛି ନାଇଁ ନେବେ ତ, ଯେତ୍‌କି ଖର୍‌ଚା କରିଛନ୍ ନିଜର୍ ଜମିନ୍ ବିକିଁ ଭର୍‌ନା କର୍‌ବେ କାଏଁ

? ଫେର୍ ସର୍କାରୀ ଲୋକ୍ ଅଛନ୍, ଓଭର୍‌ସିଅର୍, କିଲାର୍ କେତେ ! ସର୍କାରୀ ଖାଜ୍‌ନା ନୁ ସହଜେଁ ବାହାର୍‌ବା ପଏସା ? ଘର୍‌ଟେ ଜୁଗିଥିବା କୁକୁର୍ ଯେ ତାହାକେ ଶିକାର୍ ଫୁଟେ କି କମ୍ ସେ କମ୍ ମୁହିଁ ମୁଠେ ନାଇଁ ଫିଙ୍କ୍‌ଲେଁ ହେଲେ ଖୁଁଟି ଖଣ୍ଡ୍‌ଏ ବେଁଟି ହେବା ? ଇସବୁ ବାବଦ୍ କିଛି କିଛି ଗଲେଁ ବାକୀ ସବୁ କାଏଁନ ତମର୍ ଆଏ। ଲୁକ୍‌କର୍ ମୁହୁଁ ବନ୍ଦ୍। ମାଧ କହୁଥିଲା ସର୍‌ପଂଚ୍-ଭୋଟ୍ ବେଲ୍‌କେ ଆମର୍ ପରାନେ ହଜାରେ ଟଂକିଆ ମେଲ୍‌ଛା ବନ୍ଧା ହଇଥିଲା। ଆମେ ସେ ସର୍‌ପଂଚ୍‌କେ ଜିତେଇଥିଲୁଁ।

ଆଜ୍ଞା ମାନେ ! ଶୁନ୍‌ଲେ କାଏଁ ? ଦେଖୁନ୍ ତ କାହାକେ କହେମା ? କାହାକେ ଦୋଷ୍ ଦେମା ?



(ସଂବଲପୁର ଆକାଶବାଣୀ କେନ୍ଦ୍ର ପକ୍ଷରୁ 'ଟିକେ ଶୁନ୍ନନ୍ତ' କାର୍ଯ୍ୟକ୍ରମ ପାଇଁ ଲିଖିତ । ସମୟ ୧୯୯୬)

# ଉପନିଷଦର ସ୍ୱର

## ବନ୍ଦନା

ଯେ କାହାକେ  ଦେଖା ନାଇଁ ଦିଏ ସମ୍‌କୁଁ ଦେଖୁଥାଏ
ଛିନୁ ନାଇଁ ଛିନୁ ତାହାର୍ ପାହେଁ ପରୁଛେଁ ଘାଏ  ॥୧॥
ଯେ ସତେଁ ଅଛେ କି ନି କିହେ ନାଇଁ ଜାନ୍‌ଏ
କାହାର୍ ନାଇଁ ଥିବାର୍ ଟାକେ ଯେ ନାଇଁ ମାନ୍‌ଏ ॥୨॥
ଚ଼ରେର୍ କଁଠେଁ ଗୀତ୍ ଗାଇ ଶୁନ୍‌ଏ-ଅନ୍ତର-କାନେ
ଗଛ୍-ଲତାର ମୁଡ୍ ହଲାଇଁ ବୁଝେ ତା'ର୍ ମାନେ ॥୩॥
କେତେ ରଙ୍ଗର୍ ଫୁଲ୍ ଫୁଟି ହଁସେ ମୁଲ୍ ମୁଲ୍
କହର୍ ଧାରେଁ କହି ନିଏ "ଗନି ନୁହେ ମୂଲ୍'"॥୪॥
ସୂରୁଯ୍ ହଇଁ ଏକସ୍‌କଁଟି ରୁକି ନିଏ ଉକିଆ
ବନ୍‌ଏ ବୂତାକେ ଜନ୍‌ଏ ନ, ତା'ର୍ କବାର୍ ଏକ୍‌ଲୁକିଆ ॥୫॥
ଗୁଣି ବସ୍‌ଲେଁ ହଏ ସଂଖ୍ୟା-ସଂସାର୍‌ନୁ ପାର୍
ଭାଗ୍ କର୍‌ଲେଁ କେତେ ଯାନ୍ ଯେ ହିସାବ୍ ନାଇଁ ତା'ର୍ ॥୬॥
କାହା କେ ଧରାଦିଏ ନାଇଁ ସମ୍‌କୁଁ ରଖେ ଧରି
ସୁତର୍ ଆଏ ଜାନ୍‌ଲେଁ ହଏ ସବୁ ଦୁସ୍ତର୍ ତରି ॥୭॥
ସୂତା ହଇଁ ଗୁଁଥା ରଖେ ଗର୍‌ହ ନଖତର୍ ଯାରା
ନିଶାସେଁ ତା'ର୍ ନିସ୍‌ରି ଆସେ ଜୀବନ୍-ଗିଆନ୍ ଧାରା ॥୮॥
ସେ ଧାଗୁଁ ରଁଚ଼େ ମେତାଲ୍ ମୋର୍ ପୁହୁଁଚ଼କେ ହେଲେଁ
ଦୁରେଁ ଥାଇ ଭି ପାଶେଁ ଅଛେଁ ମାନ୍‌ତିଁ ସବୁବେଲେଁ ॥୯॥
ଅକଥନ୍ ତାର୍ କଥନ୍ ସତେଁ ଅଘଟନ୍ ହଇଁ ଘଟେ
କା'ଣା ବୁଝ୍‌ମି ? ମୁଇଁ ଗିଆନ୍ ଗୁଆଁଲା ପଶୁ ପଟେ ॥୧୦॥
ଜନ୍‌କର୍ କାହାରି ନୁହେ ଯାହାକେ କହେସନ୍ ଧନ୍
ଏକ୍‌ଲା ନିଜର୍ କର୍‌ବାର୍ ମନ୍ ପର୍‌ଛା ଅପରଛନ୍ ॥୮॥

ତାର୍ ଦେନ୍‌କେ ନାଇଁ ମାନି ଯେ ସବୁ କହେସି ମୋର୍
ଅଶାନ୍ତ୍ ସିଏ ନିତାନ୍ତ୍ ଭାବେଁ ଆଏ ଦୁର୍ଦ୍ଧାନ୍ତ୍ ଚୋର୍ ॥୯॥
ପାଏଲା ଅଧିକାରର୍ ଯେ ନାଇଁ ଡ଼େଗେ ସୀମା
ଲାଏକ୍ ଜାନି ବନ୍‌ଏ ଭାଏଗର୍ ଦିଏ ତା'ର୍ ଜିମା ॥୧୦॥

-୨-

**କୁର୍ବେନ୍ନବେହ କର୍ମାଣି ଜିଜୀବିଷେଚ୍ଛତଂ ସମାଃ ।**
**ଏବଂ ତ୍ୱୟି ନାନ୍ୟଥେ ତୋଽସ୍ତିନ କର୍ମ ଲିପ୍ୟତେ ନରେ ॥୧॥**
ଏନ୍ତା ଭାବେଁ ବୁତା କରି ଜୀଇଁଲେଁ ବଛର୍ ଶଏ
ଉନିଆଁ କେନ୍ କାର୍‌ବାର୍‌ରେ ମନ୍ କାହିଁ ହଏ ? ॥୨॥
କବାର୍ ଅଗ୍‌ବାର୍ ଲବାର୍ ଆଏ କବାରୀକେ ବାନ୍ଧେ
କବାରୀ ଉପ୍‌ରେ ସବାରୀ ହଇଁ ବର୍କସ୍ କରି ଫାନ୍ଦେ ॥୩॥
କବାରେଁ ହେଲେଁ ସାନି ଘାଁଟି କର୍‌ତା ପରାଧୀନ୍
କବାରେଁ ଗୁଲେଇଁ ହଇଁ କାଟେ ବୁର୍‌ଥା ରାଏତ୍ ଦିନ୍ ॥୪॥
କବାର୍ ଭିତରେଁ ବାରବାର୍ ନର୍ ବୁଡ଼ି ଉପ୍‌କି ରହେ
ଶୁଦ୍ଧ ଅଲିପ୍ତ କବାରେଁ 'ସିନା' ଜୀବନର୍ ଜଏ ଜଏ ॥୫॥
ଯେନ୍ କର୍‌ମେ ବଂଧନ୍ ନାଇଁ ସେ କରମ୍ କେ କରି
କରମ୍-ଉପାସନା କରି ରହୁ ଦେହେ ଧରି ॥୬॥
ନେହେଲେଁ ଇ କାମ୍ ହଏ ଆତ୍ମ-ଘାତର୍ ବାଟ୍
ବାଁକ୍ ଟେଁକ୍ ବାଟ୍ କେଭେଁ ନୁହେ ଟିକେ ଛାଟ୍ ॥୭॥
ତ'ବି କାଁଯେ କବାର୍‌କେ ହାଜର୍ ହେସି ନର୍
ମରନ୍ ନାଇଁ ଥିଲେଁ ବି ତ ଡ଼ାକି ହାକି ମର୍ ॥୮॥

-୩-

**ଅସୁର୍ଯ୍ୟା ନାମ ତେ ଲୋକା ଅନ୍ଧେ ନ ତମସାଽଽବୃତାଃ**
**ତାଂସ୍ତେ ପ୍ରେତ୍ୟାଭିଗଛନ୍ତି ଯେ କେ ଚ୍ୟାତ୍ମ ହନୋ ଜନାଃ ॥୩॥**
ଆତ୍‌ମା କେ ନାଇଁ ଜାନି ପାର୍‌ଲେଁ, ଆତ୍ମଘାତୀ
ଜାନି ହେସି ତାହାକେ ଯେବେଁ ପର୍‌ସି କାମର୍ ଘାତୀ ॥୮॥
ଆତ୍ମା କେ ଭୁଲିଁ କଲେଁ ଦେହର ଲାଗିଁ କାମ୍
ନିଜର୍ କାଯେଁ କରି ଚ଼ାଲ୍‌ସି ଅନେକର୍ ନୁକ୍ ସାନ୍ ॥୯॥

ବାଟ୍ ଦେଖୁ ଅସୁର୍ ଲୋକ ଅଜ୍ଞାନ୍ ଅଁଧାର୍ ଘେରା
ଦେହୋ ମାଣାନ୍ ପଦା 'ଆତ୍ମା ସେ' ନେ ଧରେ ଢ଼େରା ।।୧୦।।
କାମ୍ କରି ନାଇଁ ଜାନ୍‌ଲେଁ ଅସୁର୍ ପୁରେଁ ବାସ
ଅମର୍ ଆତ୍ମା ଅମର୍ ପୁର୍‌କେ ଯାଏତା ସିନା ଖାସ୍ ।।୧୧।।
କାମର୍ ଭାବେଁ କାମ୍ କର ନାଇଁ ହୁଅ ଲିପି
ନାଇଁ ମାଖ କାମ୍‌ନା-ରସ୍ ତାହୁଁ ପଡ଼୍‌ସି ଥିପି ।।୧୨।।

-୪-

**ଅନେଜଦେକଂ ମନସୋ ଜବୀୟୋ**
**ନୈନ ଦେବା ଆପ୍ନୁବନ୍ ପୂର୍ବମର୍ଷତ୍ ।**
**ତଦ୍ଧାବତୋଽନ୍ୟାନତ୍ୟେତି ତିଷ୍ଠତ୍**
**ତସ୍ମିନ୍ନପୋ ମାତରିଶ୍ୱା ଦଧାତି ।।୪।।**

ଅଗତି ହଇଁ ବି ମତିର ଗତି କିତିଁ ତା'ର୍ ଗମନ୍
ତା'ର୍ ଠାନେ ତଲ୍ ପର୍‌ସି ସବୁ ଦୁରୁତ୍ ଧାବନ୍ ।।୧।।
ସବୁ ତୁର୍‌ତି ଗତି କେ ସେ ହଇ ଯାଏସି ପାର୍
କେହେନି ଦେବ୍‌ତା ପୁହୁଁଚି ପାରନ୍ ନାଇଁ ପାଶ୍‌କେ ତାର୍ ।।୨।।
ପାଏନ୍ ପବନ୍ ଯେନ୍‌ମାନ୍‌କର୍ ଅଛେ ଅଧିକାରେଁ
କାମ୍ କର୍‌ସନ୍ ସେ ସବ୍ ତା'ର୍ ମନ୍ ଅନୁସାରେଁ ।।୩।।
ସମ୍‌କର୍ ଶାସନ୍ ତାର୍ ସବୁକାଲେଁ ଜାରି
ସୁର୍‌ଷ୍ଟି ଥିଁ କିଏ ? ତାହାଗୁଁ ଶେରେଷ୍ଠ ଆଏ ଭାରୀ ।।୪।।

-୫-

**ତଦେଜତି ତନ୍ନୈଜତି ତଦ୍‌ଦୂରେ ତଦ୍ୱନ୍ତିକେ**
**ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ।।୫।।**

ହରୁମେଷା ଚ଼ାଲେ ଆରୁ ଆହୁଁ ଚ଼ାଲେ ନାହିଁ
ବନିହାଁ ଦୁରେଁ ଥାଏ ବି ସେ ଅଗ୍‌ବା ପାଶେଁ ଥାଇଁ ।।୧।।
ସବୁ ଜିନିଷର୍ ଭିତ୍‌ରେଁ ଥାଇ ଥାଏ ସବୁର୍ ବାହାରେଁ
ଏନ୍ତା ଶକ୍ତି ସାଧିତ୍ ହେବା ତାହାର ବିନା କାହାରେଁ ।।୨।।
ଯାଇଁ ଯାଏ ନାହିଁ ଥାଇଁ ଥାଏ ନାହିଁ ସିଏ
ଇ ଶକ୍‌ତି ଯାର ଅକ୍‌ତିଆର ପରମ୍ ପୁରୁଷ୍ ସିଏ ।।୪।।

-୬-

**ଯସ୍ତୁ ସର୍ବାଣି ଭୂତାନ୍ୟାତ୍ମନ୍ୟେବାନୁ ପଶ୍ୟତି**
**ସର୍ବ ଭୂତେଷୁ ଚାତ୍ମାନଂ ତତୋ ନ ବିଜୁ ଗୁପ୍‌ସତେ ॥୬॥**
ଯେ ଯଦରପି ସବୁ ପ୍ରାଣୀର ଆତ୍ମା ଭିତ୍‌ରେଁ ଭିତ୍‌ରେଁ
ଦରାଡ଼ି ହଇଁ ନୁରି ଦେଖେ ଆତ୍ମାକେ ଠିକ୍ ସୂତ୍‌ରେଁ ॥୧॥
ତାହାକେ ଦିଶେ ସବୁ ଆତ୍‌ମା ପରମାତ୍ମାର ରୂପ୍
ଅପ୍‌କଟାବା କାହାକେ ? ରହେ ନିଜେଁ ନିଜେଁ ଚୁପ୍ ॥୨॥
ଜଗଦାତ୍ମା ଜକ୍ ଜକ୍ ଦିଶେ ସବୁ ଜୀବ୍ ଭିତ୍‌ରେଁ
କିଏ ଅପ୍‌କଟ୍, କିଏ ସୁନ୍ଦର୍ ବାଆରିବା କେନ୍ ବତ୍‌ରେଁ ॥୩॥

-୭-

**ଯସ୍ମିନ୍ ସର୍ବାଣି ଭୂତାନ୍ୟାତ୍ମୈବା ଭୂଦ୍ ବିଜାନତଃ**
**ତତ୍ର କୋ ମୋହଃ କଃ ଶୋକ ଏକତ୍ୱମନୁପଶ୍ୟତଃ ॥୭॥**
ସବୁ ପରାନୀର୍ ଠାନେ ଆତ୍ମା ଥିବାର୍ ଯେ ଜାନ୍‌ଏ
ସେତାକେ କାଁ କର୍‌ବା ମୋହ୍ ଦୁଖ୍‌କେ କାହିଁ ମାନ୍‌ଏ ?॥୧॥
ନିଜର୍ ଆତ୍ମା ଦେଖି ପାରେ ଯେ ସବୁ ପରାନୀର୍ ଠାନେ
'ସେ ଯେ ଆଏ' 'ମୁଇଁ ସେ ଆଏଁ' ଅନୁଖନୁ ମାନେ ॥୨॥

-୮ -

**ସ ପର୍ଯ୍ୟଗାଚ୍ଛୁକ୍ରମକାୟ୍ ମବ୍ରଣ -**
**ମସ୍ନାବିରଂ ଶୁଦ୍ଧ ମ ପାପ ବିଦ୍ଧମ୍ ।**
**କବିର୍ ମନୀଷୀ ପରିଭୂଃ ସ୍ୱୟମ୍ଭୂର୍**
**ଯାଥା ତଥ୍ୟତୋଽର୍ଥାନ୍ ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ॥୮॥**
ତାହାକେ ଜାନ୍‌ବ ସତେଁ ଆଏ ସରବ୍ ଶକ୍ତିମାନ୍
ଛିର୍ ସର୍‌ସର୍ ଶରୀର୍ ହୀନ୍ ଶୁଦ୍ଧ୍ ନିଷ୍ପାପ୍ ଆନ୍ ॥୧॥
କବି ଆଏ ମନୀଷୀ ଆଏ ସବୁ ନୁ ବି ମହାନ୍
ନିଜେଁ ନିଜେଁ ଜନମ୍ ହେସି ଆଏ ସରବ୍‌ଜାନ୍ ॥୨॥
ତାହାର୍ ଜାଗେଁ ମନ୍‌ମାନେ ସବୁକାଲର୍ ଲାଗି
ସମାନ୍ ଭାବେଁ ଦିଆ ହେସି ନାଇଁ ବି କେଭେଁ ମାଗି ॥୩॥
ଇଟା ସେ ଅଭୂତ୍ ଆତ୍ମାର୍ ଆଏ ନ ପରିଚ୍ଚୟ୍
ତାହାକେ ଚିହ୍ନି ଜାନି କର୍ ତାହରି ଜୟ୍ ଜୟ୍ ॥୪॥

-୯-

**ଅନ୍ଧଂ ତମଃ ପ୍ରବିଶ୍ୟନ୍ତି ଯେଽବିଦ୍ୟା ମୁପାସତେ ।**
**ତତୋ ଭୂୟ୍ ଇବ ତେ ତମୋ ଯ ଉ ବିଦ୍ୟାୟାଂ ରତାଃ ॥୯॥**

ଅଜ୍ଞାନ୍-ଅଁଧାର୍‌କେ ଡୁକ୍‌ସନ ଅବିଦ୍ୟାକେ ପୂଜ୍‌ଲେଁ
ତାହାଗୁଁ ଜହ ଅଁଧାର୍ ବିଦ୍ୟା-ବିବାଦ୍ ନେ ବି ଯୁଝ୍‌ଲେଁ ॥୧॥
କାଁଣା ପରାଭେଦ୍ ଆଏ ବିଦ୍ୟା ଅବିଦ୍ୟାର୍
ନାଇଁ ଜାନି ସାନି ହେଲେଁ ଅଗ୍‌ବାର୍ ଅଁଧାର୍ ॥୨॥

-୧୦-

**ଅନ୍ୟ ଦେବାହୁର୍ବିଦ୍ୟୟା ନ୍ୟ ଦାହୁର ବିଦ୍ୟୟା ।**
**ଇତି ଶୁଶ୍ରୁମଧୀରାଣାଂ ଯେ ନସ୍ତଦ୍ ବିଚ୍ଚ ଚ୍ଛିରେ ॥୧୦॥**

ଗିଆନୀ ଶିଆନ୍ ସୁଧୀର୍ ମାନେ ଦେଇଯାଇଛନ୍ ବୁଝେଇ
ଶୁନି ସେ'ଟା ମନ୍ ମାନ୍‌କୁଁ ରଖ୍‌ବାର କଥା ଗିଝେଇ ॥୧॥
ବିଦ୍ୟାର୍ ପାଦେଁ ଅଧ୍ୟା ପର୍‌ଲେଁ ମିଲ୍‌ସି ଯେନ୍ ଫଲ୍
ଅବିଦ୍ୟାଥିଁ ମିଲ୍‌ବା କାଏଁ ହେନ୍ତା ଅବିକଲ୍ ॥୨॥
ବିଦ୍ୟାଥିଁ ବିନୟ୍ ମିଲେ ଅବିଦ୍ୟାନେ ଗରବ୍
ବିଦ୍ୟା ବୁଝେ ଆତ୍ମାକେ ଅବିଦ୍ୟା ତ ଦରବ୍ ॥୩॥

-୧୧-

**ବିଦ୍ୟାଂ ଚ୍ଚା ବିଦ୍ୟାଂ ଚ୍ଚ ଯସ୍ତଦ୍ ବେଦୋଭୟଂ ସହ ।**
**ଅବିଦ୍ୟାୟା ମୃତ୍ୟୁଂତୀର୍ତ୍ତ୍ୱା ବିଦ୍ୟୟା ମୃତମଶ୍ନୁତେ ॥୧୧॥**

ବିଦ୍ୟା ଆର୍ ଅବିଦ୍ୟା ଯେ ଦୁହିକୁଁ ଜାନିଥାଏ
ଅବିଦ୍ୟାଥିଁ ମୁର୍‌ତୁ ପର୍ଗେ ମୁର୍‌ତୁ ଢ଼େଗୁଥାଏ ॥୧॥
ବିଦ୍ୟାର୍ ବଲେଁ ମୁର୍‌ତୁ କେ ସବୁଦିନର୍ ଲାଗି
ଢ଼େହେଁକି ଯାଇ ଅମର୍ ପନ୍‌ର ହଏ ହର୍ଦମ୍ ଭାଗୀ ॥୨॥
ଆତ୍ମାକେ ଜାନ୍‌ବାରଟା ହିଁ ତ ବିଦ୍ୟା ଆଏ
ସେଥିର୍ ବଲେଁ ମୁର୍‌ତୁ ଜିତି ଅମ୍ରତ୍‌କେ ପାଏ ॥୩॥

-୧୨-

**ଅନ୍ଧଂ ତମଃ ପ୍ରବିଶନ୍ତି ଯେଽସମ୍ଭୂତି ମୁପାସତେ ।**
**ତତୋ ଭୂୟ୍ ଇବ ତେ ତମୋ ଯ ଉ ସମ୍ଭୁତ୍ୟାଂ ରତାଃ ॥୧୨॥**

କ୍ଷିତି ନେ ଯାର୍ ଥିତି ନାଇଁ ସେ'ଟା ଅସଂଭୂତି
ତାହାକେ ପୂଜ୍‌ଲେଁ ନେଇ ଯାଏସି ଅଜ୍ଞାନ୍-ଅଁଧାର୍ କୁଡି ॥୧॥

ତାହାଗୁଁ କହ ଅଁଧାର୍ ନିକେ ନେସି ଘିଚ଼ି ଟାନି
ଥିତି ଥିବାର ସଂଭୂତି କେ ଯେ ବସ୍‌ସି ମାନି ।।୨।।
ଅସଂଭୂତି ଅସମ୍ଭବ ଥିତି ତା'ର୍ ଜାନି
କାଁ କରି ତାର୍ ଉପାସନାକେ ଯିବ ହଇଁ ଟାନି ।।୩।।
ସଂଭୂତି ତ ଇହାଦେ ଅଛେ ପଛେଁ ନାଇଁ ଥାଏ
କାଁ କରି ତାର୍ ପଛ୍ ପଛ୍ ହେଲେଁ ହଉଥିବ ଘାଏ ।।୪।।

-୧୩-

**ଅନ୍ୟ ଦେବାହୁଃ ସମ୍ଭବାଦ ନ୍ୟଦାହୁର ସମ୍ଭବାତ୍ ।**
**ଇତି ଶୁଶ୍ରୁମ ଧୀରାଣାଂ ଯେ ନସ୍ତଦ୍ ବିଚ଼ଚ଼କ୍ଷିରେ ।।୧୩।।**

ଥିର୍ ମନା ଧୀର୍‌ମାନେ ବୁଝି ବିଚ଼ାରି କହନ୍
ଥିତି ସବୁର୍ କାରଣ୍ ଯେନ୍ ପରମ୍ କାରଣ୍ ବୁହନ୍ ।।୧।।
ତାର୍ ପୂଜା କଲେଁ ମିଲେ ଚ଼ରମ ପରମ୍ ଫଲ୍
ଉନିଆଁକୁ କାଏଁ ପୂଜ୍‌ଲେଁ ହେନ୍ତା ମିଲ୍‌ବା ଅବିକଲ୍ ।।୨।।
ଇଟା ଆଏ ସବୁ ଦିନର୍ ଶୁନା ଜନା କଥା
ଶୁନି ପାର୍‌ଲା ଲୁକେ ସିନା ପାଆନ୍ ତାର୍ ପତା ।।୩।।
ପୂଜାର୍ ଲାଏକ୍ କେ ପୂଜ ଯେତ୍‌କି ପାର୍‌ବ ସେତକି ତୁଡ୍ଁ
ମାହାଲିଆ ନାଇଁ ଗୁରସ୍ ରୁକ ପେଡେନ୍ ଭୂତେନ୍ ମୁଡ୍ଁ ।।୪।।

-୧୪-

**ସମ୍ଭୂତିଂ ଚ଼ ବିନାଶଂ ଚ଼ ଯସ୍ତଦ୍ ବେଦୋଭୟଂ ସହ ।**
**ବିନାଶେ ନ ମୃତ୍ୟୁ ତୀର୍ତ୍ୱା ସମ୍ଭୂତ୍ୟାମୃତ ମଶ୍ନୁତେ ।।୧୪।।**

ସବୁଦିନ୍ ଯାର୍ ସମାନ୍ ଥିତି ସେ ହିଁ ପରମ୍ ପୁରୁଷ୍
ବାକି ଯାହା ବିନାଶ୍-ବାଟେଁ, ହେସନ୍ ସିନା ଦୁରୁଶ୍ ।।୧।।
ବିନାଶ୍ ବାଟିଆ କୁଁ ଜାନି ମୁର୍‌ତୁ ହେସି ପାର୍
ପରମପୁରୁଷ୍ ଜାନି ପିଏ ଅଗ୍‌ବା ଅମ୍‌ରତ୍ ଧାର୍ ।।୨।।
ଆନନ୍ଦ୍ ମିଲେ ଅନୁଖନୁ ଗିଆନ୍ ନୁହେ ଆନ୍
ପରମ୍ ପୁରୁଷ୍ ଜାନ୍‌ଲା ମରମ୍ ଆଏନ ତ ମହାନ୍ ।।୩।।

-୧୫-

**ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତଂ ମୁଖମ୍ ।**
**ତତ୍ ତ୍ୱଂ ପୂଷନ୍ନପାବୃଣୁ ସତ୍ୟଧର୍ମାୟ ଦୃଷ୍ଟୟେ ।।୧୫।।**

ତୁଇଁ ବ୍ରହ୍ମାଣ୍ଡ ପୁଷା ! ପରମ୍ ବ୍ରହ୍ମ ଜ୍ୟୋତିର୍ମୟ୍

ଚ଼ରମ୍ ତେଜେଁ ଡ଼ାପି ହଇଛେ ତୋର୍ ମୁହୁଁ ସଦାଶୟ୍ ॥୧॥
ଧର୍ମର୍ କାଯେଁ ସତ୍‌କେ ଦେଖା ହି଼ଟେଇ ନେ ଘାଏ ଡ଼ାପ୍‌ନି
ତୋର୍ ସେ ତେଜ୍ ନାଇଁ ହଉ କାର୍ ମନ୍ ତାପ୍‌ନୀ ॥୨॥
ଯେତେ ତେଜ୍ ହେଲେଁ ବି ସେ ଜ୍ୟୋତିର୍ ଆଛାଦନ୍
ସତ୍ କେ ଡ଼ାପି ରଖି ପାର୍‌ବା କାଏଁ ଅକାରଣ୍ ? ॥୩॥

-୧୬-

**ପୂଷନ୍ନେକର୍ଷେ ଯମ ସୂର୍ଯ୍ୟ ପ୍ରାଜାପତ୍ୟ**
**ବ୍ୟୂହ ରଶ୍ମୀନ୍ ସମୂହ ତେଜୋ ।**
**ଯତ୍ ତେ ରୂପଂ କଲ୍ୟାଣତମଂ ତତ୍ ତେ ପଶ୍ୟାମି**
**ଯୋଽସାବସୌ ପୁରୁଷଃ ସୋଽହ ମସ୍ମି ॥୧୬॥**

ବିଶ୍ୱ ପାଳନ୍ ପୋଷଣ୍‌କାରୀ ଆତ୍ମବାଦୀ ଜୁହ୍ନା
ନୀତି ନିୟ୍ମକ୍ ଭକତ୍‌ସୂରି-ଗୁହାରି ଶୁନା ॥୨॥
ଆମର୍ ପୂର୍ବ ପୁରୁଷ୍ ମାନ୍‌କର୍ ଶୁଭଚ଼ିନ୍ତନ୍‌କାରୀ
ତେଜ୍ ସବୁକେ ସଂକ୍‌ରାଇ ନେ ମୁହୁଁ ଦୟ୍ କରି ॥୨॥
ଯାହା ତ ଡ଼ାପିଛେ କଲ୍ୟାଣକାରୀ ରୂପକେ ତୋର୍ ସ୍ୱାମୀ
ତେବେଁ ସିନା ମୁଇଁ ଫଟିକ୍ ଦେଖ୍‌ମି ଅନ୍ତର୍ଯ୍ୟାମୀ ॥୩॥
ସୂର୍‌ଯ୍ ଆର୍ ତା'ର୍ କିରଣର୍ ସମନ୍ଧ୍ ଆଏ ଯେନ୍ତା
ପରମ୍ ପୁରୁଷ୍ ମୋର ସମନ୍ଧ୍ ତୋହରି ସାଙ୍ଗେଁ ସେନ୍ତା ॥୪॥
ତେଜେଁ ତୁଇଁ ଲୁକି ରହିଛୁ ମୋର୍ ଆଏଁଖ୍ ଯାଏ ଝଲ୍‌ସି
ତୁଇଁ ଚ଼ାହେଁଲେ ସିନା ମୁଇଁ ଦେଖି ଯିମି ଉଲ୍‌ସି ॥୫॥

-୧୭-

**ବାୟୁରନିଳମମୃତ ମଥେଦଂ ଭସ୍ମାନ୍ତଂ ଶରୀରମ୍**
**ଓଁ କ୍ରତୋ ସ୍ମର କୃତଂ ସ୍ମର କ୍ରତୋ ସ୍ମର କୃତଂ ସ୍ମର ॥୧୭॥**
ଅମୃତ୍ ଅନିଲ୍ ସାଗ୍‌ରେଁ ହଜ୍‌ବା ପରାନ୍-ପବନ୍ ଉଡ଼ି
ଖାର୍ ହେବା ଛାର୍ ଶରୀର୍‌ଟାକ ପୁଡ଼ି ପୁଡ଼ି ॥୧॥
ସେତ୍‌କି ବେଳେଁ ଆତ୍ମା ମୋର୍ ଓଁ କେ କର୍‌ବୁ ଯୋର୍
ସାଙ୍ଗେଁ ସୁର୍‌ତା କର୍‌ବୁ କରିଥିବା କରମ୍ ଘୋର୍ ॥୨॥

-୧୮-

**ଅଗ୍ନେନୟ ସୁପଥାରାୟେ ଅସ୍ମାନ୍**
**ବିଶ୍ୱାନି ଦେବ ବୟୁନାନି ବିଦ୍ୱାନ୍ ।**
**ଯୁଯୋଧ୍ୟ ସ୍ମଜ୍ଜୁ ହୁରାଣ ମେନୋ ଭୂୟିଷ୍ଠାଂ**
**ତେ ନମଉକ୍ତିଂ ବିଧେମ ।।୧୮।।**

ଅଗ୍‌ନି ବାଗିର୍ ଶକ୍ତବାନ୍ ! ହେ ମୋର୍ ଭଗବାନ୍
ନିଅ ନ ସେ ବାଟ୍‌କେ ଯାହା ଅଏନ୍ ଆର୍ ମହାନ୍ ।।୧।।
ଆମ୍‌କୁଁ ସମ୍‌କୁଁ ସଁଖ୍‌ଲି ମୁକ୍‌ତି ମାର୍‌ଗେଁ କର ଯାତ୍‌ରୀ
ସେ ମାର୍‌ଗର୍ ବାଧା ବିଘ୍ନ ଶକତ୍ ହାତେଁ କତ୍‌ରି ।।୨।।
ସବୁ କାମର୍ କର୍‌ତା ତୁଇଁ ସବୁ ଜ୍ଞାନର୍ ବିଦ୍ୱାନ୍ !
ଭୂଇଁ ଥିଁ ପଡ଼ି ଗୋଡ୍ ତଲେଁ ଗଡ଼ି କରୁଛେଁ ମୁଇଁ ପ୍ରଣାମ୍ ।।୩।।
ଯାହା କରିଛେଁ ଏତ୍‌କି ଦିନ୍ ତକ୍ ସବୁ କାନୁ ତୁଇଁ
ଅସ୍‌କଟିଆ ଯାହା ତାହାକେ ଦେବୁ ନ ଯାଏ ଧୁଇ ।।୪।।



# କେନୋପନିଷଦ୍

- ଓଁ ପରଂବ୍ରହ୍ମଣେ ନମଃ -

- ଶାନ୍ତି ପାଠ -

**ଓଁ ଆପ୍ୟାୟନ୍ତୁ ମମାଙ୍ଗାନି ବାକ୍-ପ୍ରାଣଶ୍ଚକ୍ଷୁଃ ଶ୍ରୋତ୍ରମଥୋ ବଲ-**
**ମିନ୍ଦ୍ରିୟାଣି ଚ ସର୍ବାଣି ସର୍ବ ବ୍ରହ୍ମୌପନିଶଦଂ ମାହଂ ବ୍ରହ୍ମ ନିରାକୁର୍ଯ୍ୟାଂ**
**ମା ମା ବ୍ରହ୍ମ ନିରାକରୋଦ ନିରାକରଣ ମସ୍ତ୍ୱନିରାକରଣଂ ମେଽସ୍ତୁତଦାତ୍ମନି**
**ନିରତେ ଯ ଉପନିଷତ୍ସୁ ଧର୍ମାସ୍ତେ ମୟି ସନ୍ତୁ ତେ ମୟି ସନ୍ତୁ ।**
**ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।**

ମୋର ଅଙ୍ଗ୍ କଥା, ପରାନ୍, ଆଏଁଖ୍, କାନ୍ ଆର୍ ବଲ୍
ସବୁ ଇନ୍ଦ୍ରିୟ୍ ପୁଷ୍ଟ୍ ହେଉ, ମୋର୍ ସବ୍ ସମ୍ବଲ୍ ॥୧॥
ଇ ସବୁ ତ ବ୍ରହ୍ମ ଆଏ ଉପନିଷଦ୍ କହେ;
ବ୍ରହ୍ମ ଯାଙ୍ଗେଁ ମୋର୍ ଛଡ଼ା ଛଡ଼ି ନାଇଁ ହଏ ॥୨॥

-ପ୍ରଥମ ଖଣ୍ଡ-

**କେନେଷିତମ୍ ଇତ୍ୟାଦ୍ୟୋପନିଷତ୍, ପରବ୍ରହ୍ମ ବିଷୟା ବକ୍ତବ୍ୟା ଇତି ନବମସ୍ୟା-ଧ୍ୟାୟସ୍ୟ ଆରମ୍ଭଃ । ପ୍ରାତଗତସ୍ମାତ୍କର୍ମାଣି ଅଶେଷତଃ ପରି ସମାପିତାନି, ସମସ୍ତ କର୍ମାଶ୍ରୟ ଭୂତସ୍ୟ ଚ ପ୍ରାଣସ୍ୟୋପାସନାନ୍ୟୁକ୍ତାନି, କର୍ମାଙ୍ଗସାମ ବିଷୟାଣି ଚ । ଅନନ୍ତରଂ ଚ ଗାୟତ୍ର ସାମ ବିଷୟଂ ଦର୍ଶନଂ ବଂଶାନ୍ତମୁକ୍ତଂ କାର୍ଯ୍ୟମ୍ । ସର୍ବମେତଦ୍ୟ ଥୋକ୍ତଂ କର୍ମ ଚ ଜ୍ଞାନଂ ଚ ସମ୍ୟଗନୁଷ୍ଠିତଂ ନିଷ୍କାମସ୍ୟ ମୁମୁକ୍ଷୋଃ ସତ୍ୱ ଶୁଦ୍ଧ୍ୟର୍ଥ ଭବତି**

-ପ୍ରଥମ ଖଣ୍ଡ-

**ଓଁ କେନେଷିତଂ ପତତି ପ୍ରେଷିତଂ ମନଃ ।**

-୨-

**ଶ୍ରୋତ୍ରସ୍ୟ ଶ୍ରୋତ୍ରଂ ମନସୋ ମନୋ ଯଦ୍ୱାଚୋ ହବାଚଂ ସ ଉ ପ୍ରାଣସ୍ୟ**
**ପ୍ରାଣସ୍ୟ ପ୍ରାଣଶ୍ଚକ୍ଷୁଷ୍ଚକ୍ଷୁରତିମୁଚ୍ୟ ଧୀରାଃ ପ୍ରେତ୍ୟାତ୍ମାଲ୍ଲୋକାଦମୃତା ଭବନ୍ତି ॥୨॥**
କାନର୍ ବାଟେଁ ଶୁନେ କେ ସେ କାନର୍ ହଇଁ କାନ୍
ମନ୍‌କେ ମନାଏ ମାଏନ୍ ମନ୍‌ସା ମନର୍ ମନ୍ ମହାନ୍ ॥୧॥
କଥାର୍ କଥକ୍ ଆଏ, ପ୍ରାଣର୍ ଆଏ ପୂରା ପ୍ରାଣ୍

ଆଁଖିର୍ ଆଏଁଖ୍, ମମ୍‌ତା ମୁକ୍‌ଲା ସେ ସୁଧୀର୍ ସୁଜାନ୍ ।।୨।।
ଧଏଲା ଶରୀର୍ ଛାଡ୍‌ଲେଁ ଆଉର୍ କାହିଁ ରହେ ନାଇଁ
ସବୁ କାଲ୍‌କେ ଅନବରତ୍ ଅମର୍ ହଏ ଯାଇଁ ।।

-୩-

**ନ ତତ୍ର ଚକ୍ଷୁର୍ଗଚ୍ଛତି ନ ବାଗ୍‌ଗଚ୍ଛତି ନୋ ମନ ନ ବିଦ୍ମୋ ନ ବି ଜାନୀମୋ**
**ଯଥୈତଦନୁ ଶିଷ୍ୟା ଦନ୍ୟଦେବ ତଦିଦିତାଦଥୋ ଅବିଦିତାଦଧି ।**
**ଇତି ଶୁଶ୍ରୁମ ପୂର୍ବେଷାଂ ଯେ ନ ସ୍ତଦ୍ୱ୍ୟାଚ ଚ କ୍ଷିରେ ।।୩।।**

ସେ ଯେ ଆଏ ଜାନିହେବା କାଏଁ ଆଁଖିର୍ ପୁହୁଁଚ୍ ନାଇଁ
କଥା ଭାଏଲ୍ ତାର୍ ପାଶ୍‌କେ ଅମ୍‌ରି ପାର୍‌ବା କାହିଁ ? ।।୧।।
ମନର୍ ଗମନ୍ ନାହିଁ ସେନ୍‌କେ ନୁହେ ତ ସେ ଜନା
ଜାନି ହେବାର୍ ବିଷେ ଭିତ୍‌ରେଁ ନୁହେ ବି ସେ ଗନା ।।୨।।
ଅଜ୍ଞାନର୍ ଅଗ୍‌ବା ଅଗମ୍ ଅପହଁଚ୍ ବି ଜ୍ଞାନର୍
ଜାନ୍‌ବାର୍ ଥୁଁ ଉପର୍ ଆର୍ ଅଜାନ୍‌ବାରନୁ ପର୍ ।।୩।।
କେନ୍ ପ୍ରକାର୍ ଶିଷ୍ୟକେ ଶିଖାବ କାଁ ବଲି
ଆଗର୍ ଲୁକର୍ କୁହାବୁଲାଥିଁ ଅବତକ୍ ଗଲୁଁ ଚଲି ।।୪।।
ଯାର୍ କଥା ଜନାତ ସେ ତ ଅଏଣୋ ଅଜ୍ଞାତ୍ ଥାଏ
ସେ ଆଏ ସେ 'ବ୍ରହ୍ମ', 'ଆତ୍ମା'ର୍ ନାମେ ଖ୍ୟାତ୍ ଆଏ ।।୫।।

-୪-

**ଯଦ୍‌ବାଚାନଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ ।**
**ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ।।୪।।**

ବଚନ୍ ଥିଁ ଯେ ବକ୍‌ତି ନୁହେ ଯେ ବକ୍‌ତାଏ ବଚନ୍ କେ
ସେ ହିଁ ଆଏ 'ବ୍ରହ୍ମ' ନାଇଁ ତୁକେ କଥାର୍ ବଂଧନ୍ କେ ।।୧।।
ଜାନି ହେବା ସିନା କରି ନୁହେ ଉପାସନା
ସେ ହିଁ ସେ ଆତ୍ମା ଆଏ ବିରାଟ୍ ବ୍ରହ୍ମମନା ।।୨।।

-୫-

**ଯନ୍ମନସା ନ ମନୁତେ ଯେ ନାହୁର୍ମନୋ ମତମ୍ ।**
**ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ।।୫।।**

ମନେ ନୁହେଁ ସେ ମନନ୍ କର ମନର ନିୟମନ

ସେ ଆଏ ନ ବ୍ରହ୍ମ, ଯାହାକୁଁ ପୂଜୁଁ ସେ ତ ନୁହନ୍ ।।୧।।
ସବୁ ଇନ୍ଦ୍ରିୟର୍ ମେଟ୍ ମେତାଲ୍ ଆଏ ତ ସେ ମନ୍
ତାର୍ ଆଏତ୍‌କେ ଆଏବା କେନ୍ତା ଆଏତ୍ ବାହାର୍ ଆତ୍‌ମନ୍ ।।୨।।
ପୂଜାକରୁଁ ଯାହା ତାହାକେ ନୁହେ ପୂଜାର୍ ଲାଏକ୍
ପୂଜା କରୁ କେତେ ନାଇଁ ଜାନିଥିବାର୍ ଯାଏକ୍ ।।୩।।
ଉପନିଷଦ ଜନା ଯାଏ ଧରମ ବଲିଁ ଯାହା
ମୋର ଆତ୍ମାନେ ଲାଗି ରହୁ ହରୁମିଷା ତାହା ।।୩।।
ତିନ୍‌ହି ତାପର୍ ଶାନ୍ତି ହେଉ, ଶାନ୍ତି ହେଉ ବିଶ୍ୱର୍
ଇନ୍ତା ଆଜ୍ଞା କର୍ ପ୍ରଭୁ ହେ ପରମେଶ୍ୱର !

**କେନ ପ୍ରାଣଃ ପ୍ରଥମ ପ୍ରୈତି ଯୁକ୍ତଃ ।**
**କେନେଷିତାଂ ବାଚ୍‌ମିମାଂ ବଦନ୍ତି ଚକ୍ଷୁଃ ଶ୍ରୋତ୍ରଂ କ ଉ ଦେବୋ ଯୁନକ୍ତି**

କା'ର୍ ଇଚ୍ଛା ଥିଁ ତହିଁକି ମନ୍ ପଡ଼େ ବିଷେର୍ ଖାଲେଁ
କାହାର୍ ବୁତେଁ ପରାନ୍ ବିଚ଼ରା ଲାଗେ ନିଜର୍ ଚ଼ାଲେଁ ।।୧।।
କାହାର୍ ଇଛେଁ କହେସି କଥା ? କେନ୍ ଦେବ୍‌ତା ଦାୟୀ ?
ଆଏଁଖ୍‌କେ ଦେଖାଏ କାନ୍‌କେ ଶୁନାଏ ଇଚ୍ଛା ଅନୁଯାଇ ।।୨।।

-୬-

**ଯଚ୍ଚକ୍ଷୁଷା ନ ପଶ୍ୟତି ଯେ ନ ଚ଼କ୍ଷୁଁସି ପଶ୍ୟତି ।**
**ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେ ଦଂ ଯଦିଦମୁପାସତେ ।।୬।।**

ଆଏଁଖ୍‌କେ ଦିଶେନାହିଁ ସିଏ ଆଏଁଖ୍‌କେ ସିନା ଦେଖାଏ
ତତୁ ଭାବେଁ ହେତୁ କଲେଁ ସେ ହିଁ ବ୍ରହ୍ମ ଆଏ ।।୧।।
ତାହାକେ ନାଇଁ ଜାନି ବୁର୍‌ଥା ଦୁସ୍‌ରା ଉପାସନା
କରୁଥାଉଁ ସିନା ବ୍ରହ୍ମ ସହଜେଁ ନୁହେ ଜନା ।।୨।।
ଆଖିର୍ କାମ୍ ରହି ଥିସି ତାର୍ ହାତେଁ ପାତେଁ
ତାର୍ ଶକ୍ତି କେ ନିକର୍ ବଲିଁ ଭାବୁଁ ଉଦୁର୍‌ମାତେଁ ।।୩।।

-୭-

**ଯ ଚ୍ଛୋତ୍ରେଣ ନ ଶୃଣୋତି ଯେନ ଶ୍ରୋତ୍ର ମିଦାଂ ଶ୍ରୁତମ୍**
**ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେ ଦଂ ଯଦିଦମୁପାସତେ ।।୭।।**

କାନେ ଯାହାକେ ଶୁନି ନୁହେ ଶୁନାଏ ସେ କାନ୍‌କେ
ତାହାକେ ଜାନ୍‌ଅ ବ୍ରହ୍ମ ଆଏ ଛାଡ଼ି ନିଜର୍ ମାନ୍‌କେ ।।୧।।
ଯାହିର୍ ତାହିର୍ ଦେ' ଦେବ୍‌ତା ମନ୍‌ଭର୍‌ମେ ଥାପି
ପୂଜା କରି ଯୋଜ୍ ରୋକ୍ ଦିନ୍ ମର୍ ସୁଁ ଯାପି ।।୨।।
ଶୁନ୍‌ବାର୍ ସେ ଶକ୍ତି ଆଏ ଶୁନଅ ତାର୍ ଶବଦ୍
ଉନିଆଁ ଶକ୍ତିଁ ବାଏ ହଇଁ ନାଇ ହ'ନ ତବଧ୍ ।।୩।।

-୮-

**ଯତ୍‌ପ୍ରାଣେ ନ ପ୍ରାଣିତି ଯେ ନ ପ୍ରାଣଃ ପ୍ରଣୀୟତେ ।**
**ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ।।୮।।**

ଜୀବନ୍‌ଟା କାଏଁ ଜୀଇଁ ରହେସି କେଭେଁ ତାର୍ ତାର୍
ଜୀଆଁଇ ରଖ୍‌ସି ମହାନ୍ ଶକ୍‌ତି ଜାନ୍‌ଅ ଆଏ କା'ର୍ ।।୧।।
ସେ ନ ଆଏ ବ୍ରହ୍ମ ତାହାକେ ବର୍‌କଷ୍ କରି ଜାନ୍‌ଅ
ଯାହାକେ ପୂଜା କର୍‌ସୁଁ ସେ ଆଦୁଁ ନୁହେଁ ମାନ୍‌ଅ ।।୨।।

## -ଦ୍ୱିତୀୟ ଖଣ୍ଡ-

### "ବ୍ରହ୍ମଜ୍ଞାନ୍ ଅକଥନ୍ ଆଏ" ।

**ଯଦି ମନ୍ୟସେ ସୁବେଦେତି ଦଭ୍ରମେବାପି ନୂନମ୍ । ତ୍ୱଂ ବେତ୍‌ଥ ବ୍ରହ୍ମଣୋ**
**ରୂପଂ ଯଦସ୍ୟ ତ୍ୱଂ ଦେବେଷ୍ୱଥ ନୁ ମୀମାଁ, ସ୍ୟମେବ ତେ ମନ୍ୟେ ବିଦିତମ୍ ।।୧।।**

ଯଦର୍ପି କେ କହେ ବ୍ରହ୍ମକେ ପାରିଅଛେ ଜାନି
ବ୍ରହ୍ମର୍ ଅଲପ୍-ରୂପକେ ଦେଖି ବଲାଏ ବ୍ରହ୍ମଜ୍ଞାନୀ ।।୧।।
ବ୍ରହ୍ମର୍ ଯେନ୍ ରୁପ୍ ଜାନ୍‌ଏ ସେ, ଦେବ୍‌ତା ବି ଜାନନ୍
ସେ ଜାନ୍‌ବାର୍ ଟାକେ ବ୍ରହ୍ମଜ୍ଞାନୀ ଅଲପ୍ ମାନନ୍ ।।୨।।
ବ୍ରହ୍ମର୍ କାଏଁ ସାନ୍ କି ବଡ୍ ରୂପ୍ ? କମ୍ କି ବେଶୀ ?
ନାମ୍ ରୂପ୍ ଉପାଧି ନେଇ ଅଲପ୍ ବହୁତ୍ ହେସି ।।୩।।
ବ୍ରହ୍ମ ନିଜେଁ ନୁହେ କମ୍ ବେଶୀ ବଡ୍ ସାନ୍
ଦେଖନ୍‌ହାରୀର୍ ମନେ ସିନା ହଏ ଆନ୍ ଆନ୍ ।।୪।।
ଶବ୍‌ଦେଁ ନୁହେ ବର୍‌ନି ସେ ରୂପ୍‌ନୁ ଆଏ ବାହାର୍

କେ ହେଲେଁ କାଏଁ ଛିଇ ପାର୍‌ସି କିଛି କା'ଣା ତାର୍ ? ।।୫।।
କ୍ଷଏ ନାଇଁ ତାର୍, ନୀରସ୍ ନିତ୍ୟ ଆଏ ଗନ୍ଧ ହୀନ୍
ଚେ଼ତ୍‌ନା ଥିଁ ଧରିହଏ କରି ପରି ଛିନ୍ ।।୬।।
ବ୍ରହ୍ମକେ ଜାନି ପାରିଛେ କହେ ଯେ ଅଜ୍ଞାନୀ
'ନାଇଁ ଜାନି' କହେସି ଟିକେ ଗୁଁଚେ଼ ଥିଲେଁ ଜାନି ।।୭।।
ଜାନ୍‌ବାର୍ ଆର୍ ଅଜାନ୍‌ବାର୍ ଥୁଁ ଆଏ ବ୍ରହ୍ମ ବାହାର୍
ଚେ଼ତ୍‌ନା ଥିଁ ଅନ୍‌ଭବ୍ କରି ବିଚା଼ର କର ତା'ର୍ ।।୮।।

**ନାହଂ ମନ୍ୟେ ସୁବେଦେତି ନୋ ନ ବେଦେତି ବେଦ ଚ଼ ।**
**ଯୋ ନସ୍ତଦ୍ୱେଦ ତଦ୍ୱେଦ ନୋ ନ ବେଦେତି ବେଦ ଚ଼ ।।୨।।**

ବ୍ରହ୍ମ କେ ମୁଇଁ ଜାନି ଯାଇଛେଁ ହେବାର୍ ନାଇଁ କହି
ନାଇଁ ଜାନି କହେମି କେନ୍ତା ? ତାହାରି ଭିତ୍‌ରେଁ ରହି ।।୧।।
ବ୍ରହ୍ମ ଜାନେ କହି ମୁରୁଖ୍‌ପନ୍ ମୁଡ଼ାବା କିଏ ?
'ନାଇଁ ଜାନି' କହେବା କେନ୍ତା କଥା କୁହାଏ ସିଏ ।।୨।।
ଜାନ୍‌ବାର୍ ଅଜାନ୍‌ବାର୍‌ନୁ ଯେ ଆଏ ତ ବାହାର୍
ମାନ୍‌ଲା ଯିଏ ଜାନ୍‌ଲା ମେତାଲ୍ ଗିଆନ୍ ଆଏ ତାହାର୍ ।।୩।।

**ଯସ୍ୟାମତଂ ତସ୍ୟ ମତଂ ଯସ୍ୟ ନ ବେଦସଃ ।**
**ଅବିଜ୍ଞାତଂ ବିଜାନତାଂ ବିଜ୍ଞାତ ମବି ଜାନତାମ୍ ।।୩।।**

ସେହିଁ ଜାନି ପାରେ ବ୍ରହ୍ମ ଯାହାକେ ନୁହେ ଜନା
ବ୍ରହ୍ମ ସହଜ ନୁହେ, ଜାନ୍‌ବାର୍ କିନ୍‌ଷେଁ ନୁହେଁ ଗନା ।।୧।।
ଯେ ବୁଝିଛେ ବ୍ରହ୍ମ କା'ଣା ସେ ନୈ କହେ ଜାନେଁ
'ନାଇଁ ଜାନେ' କହେ ବ୍ରହ୍ମର୍ ବିରାଟ୍ ପନ୍ ଯେ ମାନେ ।।୨।।
ଆଏଁଖ୍ କାନ୍ ସବ୍ ଇନ୍ଦ୍ରିୟର୍ ଅଗମ୍ ହରୁମେଶା
କହିନୁହେ ତାହାକେ ଜାନ୍‌ବାର୍ ଆଏ ସହଜ୍ ପେଶା ।।୩।।
ବ୍ରହ୍ମ କେ ଯେ ବୁଝେ କହେବା ଜାନିଛେଁ କାଏଁ ଲାଗେଁ
ବ୍ରହ୍ମ ବିତ୍‌ର ସବୁ ଗିଆନ୍ ଗଁଥା ବ୍ରହ୍ମର୍ କାଯେଁ ।।୪।।

**ପ୍ରତିବୋଧ ବିଦିତଂ ମତ ମମୃତତ୍ୱଂ ହି ବିନ୍ଦତେ ।**

**ଆତ୍ମନା ବିନ୍ଦତେ ବୀର୍ଯ୍ୟଂ ବିଦ୍ୟୟା ବିନ୍ଦତେଽମୃତମ୍ ॥୪॥**

ଆତ୍ମ ବୁଦ୍ଧିର୍ ବଲେଁ ଯେନ୍‌ଟା ହେସି ଅନୁଭବ୍
ସେ ହିଁ ବ୍ରହ୍ମ ଜ୍ଞାନ୍ ତାହୁଁ ଜାନି ହେସି ସବ୍ ॥୧॥
ସେ ଥୁଁ ଅମୃତ୍ ମେତାଲ୍ ଆନନ୍ଦ୍ ମିଲେ ଅନୁଖନୁ
ଆତ୍ମ ଜ୍ଞାନ୍ ଦିଏ ତାହା ନାଇଁ ବାହାରେ ମନୁ ॥୨॥
ଆତ୍ମ ଜ୍ଞାନର୍ ବଲେଁ ଅମରତ୍ୱ ମିଲେ ସିନା
କାହିଁ କିଏ ପାଏବା ଆତ୍ମ-ବଲ୍-ସଂବଲ୍ ବିନା ॥୩॥
ଆତ୍ମ ଜ୍ଞାନ୍ ଆଏ ବ୍ରହ୍ମ ଜ୍ଞାନ୍ ପୂରାପୂରି
ନିଜ୍‌କେ ମିଲ୍‌ସି ନିଜର୍ ଭିତ୍‌ରେଁ ଯେ ଦେଖିସି ନୁରି ॥୪॥

**ଇହ ଚେ୍ଦ ବେଦୀଦଥ ସତ୍ୟ ମସ୍ତିନ ଚେ୍ଦିହ୍ୟ ବେଦୀନ୍ନହତୀ ବିନଷ୍ଟିଃ ।**
**ଭୂତେଷୁ ଭୂତେଷୁ ବିଚି୍ତ୍ୟ ଧୀରାଃ ପ୍ରତ୍ୟାତ୍ମାଲ୍ଲୋକାଦମୃତା ଭବନ୍ତି ॥୫॥**

ଯଦ୍‌ରି ଇ ଜନ୍‌ମେ ବ୍ରହ୍ମ ପାର୍‌ଲା ଜନ୍‌ଏ ଜାନି
ଅଏନ୍ ଆଏ ନେହେଲେଁ ହଏ ହାଏ ! କେତେ ହାନି ॥୧॥
ଜୀବେଁ ଜୀବେଁ ଯେ ବ୍ରହ୍ମ ଦେଖେ ମରିଁ ହଏ ଅମର୍
ବ୍ରହ୍ମ ଜାନ୍‌ଲା ଲୋକ୍ ହିଁ ବ୍ରହ୍ମ ଯାର୍ ନାଇଁ ପରାପର୍ ॥୨॥

(ଅସଂପୂର୍ଣ୍ଣ)

□□□

(୧୯୯୮ ରେ ଲେଖା ଆରମ୍ଭ କରି କବି 'ଉପନିଷଦର ସ୍ୱର'କୁ ସଂପୂର୍ଣ୍ଣ କରି ପାରିନାହାନ୍ତି ।)

# ପରିଶିଷ୍ଟ

## ହେମଚନ୍ଦ୍ର ଆଚାର୍ଯ୍ୟ ; ଜୀବନ ଓ କୃତି

ହେମଚନ୍ଦ୍ର ଆଚାର୍ଯ୍ୟଙ୍କର 'ଶବରୀ ସଂଦେଶ' ଏକ କାବ୍ୟ । ୧୯୭୫ ମସିହାରେ ଯେତେବେଳେ ଆନ୍ତର୍ଜାତିକ ମହିଳା ବର୍ଷ ପାଳନ କରାଯାଉଥିଲା, ସେତେବେଳେ ତା'ର ସୃଷ୍ଟି । 'ଶବରୀ' ଆଦିବାସୀ ମହିଳା ଜଣେ, ଯାହାର ପରିଚୟ କେବଳ ତାର ଆଦିବାସୀ ଜାତିରେ; ନାଁରେ ନାହିଁ ; ନିଜ ଭକ୍ତି ଓ ପ୍ରେମ ବଳରେ ରାମାୟଣ ଯୁଗର 'ପୁରୁଷୋତ୍ତମ' ରାମଚନ୍ଦ୍ରଙ୍କୁ ସେ ନିଜ ଘରେ ପାଇଛି । ଖାଇବାକୁ ଦେଇଛି । ଭକ୍ତି ବିଭୋରଏହି ନାରୀର ଅଇଁଠା ଖାଇବାକୁ ରାମଚନ୍ଦ୍ର ପଶ୍ଚାଦ୍‌ପଦ ହୋଇନାହାନ୍ତି । ଭକ୍ତି ଓ ପ୍ରେମରଏହି ବିଜୟ ଯାତ୍ରା, ଯାହା – ଭଗବାନ ଓ ଭକ୍ତକୁଏକାକାର କରିଦିଏ, ତାହା ହେଲା 'ଶବରୀ ସଂଦେଶ' ର ଉପଜୀବ୍ୟ । ଦ୍ୱିତୀୟରେ, ଗଭୀର ଧର୍ମଭାବ ସାଂଗରେ ସମାଜର ଉପେକ୍ଷିତ ବର୍ଗ ପ୍ରତି ସହମର୍ମିତା ହେଲା କବିଂକର ସୃଜନ ବୈଶିଷ୍ଟ୍ୟ। ପଚିଶଟି ଛାନ୍ଦରେ ଲିଖିତଏହି କାବ୍ୟର ପ୍ରତ୍ୟେକ ପଦର ଆରମ୍ଭ ଓ ଶେଷରେ ତାଳବ୍ୟ 'ଶ' । ବାଲୁଗାଁ ଲୋକନାଥ ପ୍ରେସରୁ ଏକ ଚଟି ବହି ଆକାରରେ ପ୍ରକାଶିତ ଏହି କାବ୍ୟରେ ପ୍ରକାଶନ କାଳ କିମ୍ବା ପ୍ରକାଶକଙ୍କର ନାମ ସୁଦ୍ଧା ନାହିଁ । ପ୍ରକାଶନ କାଳ, ସମ୍ଭବତଃ ୧୯୮୫ । ମୁଦ୍ରଣ ପରିପାଟୀ ଏବଂ କଳେବରକୁ ଦେଖିଲେ କାବ୍ୟଟି ସାହିତ୍ୟକମାନଙ୍କର ଦୃଷ୍ଟି ଆକର୍ଷଣ ନ କରିବା ଅତି ସ୍ୱାଭାବିକ କଥା ।

'ଶବରୀ ସଂଦେଶ' କାବ୍ୟର ପ୍ରଥମ ସର୍ଗର ଶେଷ ପଦରେ କବି ନିଜର ବଂଶ ପରିଚୟ ଦେଇ ଲେଖିଛନ୍ତି–

ଶ୍ରୀରାମ ତନୁଜ ବିଦ୍ୟାଧର ଦ୍ୱିଜ ତାହାଙ୍କ ସୁତ ସୁଧୀଶ
ଶ୍ରୀଡ଼ୋଳାମଣିଙ୍କ ସୁତ ହେମଚନ୍ଦ୍ର ସଦା ଅଜ୍ଞତା ବିବଶ
ଶ୍ରମକୁଣ୍ଠ, ଶାସ୍ତ୍ରଜ୍ଞାନ ନାହିଁ ଲେଶ;
ଶୁଦ୍ଧ ହୃଦୟରେ ଭଜି ନାହିଁ କେବେ ନେଉଛି ଲେଖିବା କ୍ଳେଶ ।

ଅର୍ଥାତ ଶ୍ରୀରାମ ଆଚାର୍ଯ୍ୟଙ୍କ ଅଣ-ନାତିହେଲେ କବି ହେମଚନ୍ଦ୍ର ଆଚାର୍ଯ୍ୟ । କବିଙ୍କ ପିତାମହ ବିଦ୍ୟାଧର ଆଚାର୍ଯ୍ୟ ଏବଂ ପ୍ରପିତାମହ ଶ୍ରୀରାମ ଆଚାର୍ଯ୍ୟ ମୁଖ୍ୟତଃ କୁଳ ପୁରୋହିତ ଭାବରେ ଜଜମାନି କରି ନିର୍ବାହ କରୁଥିଲେ । ସାଙ୍ଗରେ କୃଷି ଯୋଗ୍ୟ ଜମି

ମଧ ଶସ୍ତାରେ ଗୌନ୍ତିଆ ମାନଙ୍କ ପାଖରୁ କିଣି ଚାଷ କରୁଥିଲେ । ଆଚାର୍ଯ୍ୟ ପରିବାର ଯେତିକି ମାତ୍ରାରେ ପୁରୋହିତ କର୍ମରେ ପ୍ରବୀଣ, ତହିଁରୁ ଅଧିକ କୃଷି ନିପୁଣ। ବିଦ୍ୟାଧର ଆଚାର୍ଯ୍ୟଙ୍କ ସାତ ପୁଅ । ସବୁ ପୁଅଙ୍କ ପାଇଁ ଚଳଣି ଯୋଗ୍ୟ ଜମି ସେ ବର୍ତମାନର ବରଗଡ଼ ଜିଲ୍ଲାର ଗର୍ଭଣା,ବୁରୋମାଲ, ମରେକେଲ ଏବଂ ବରମୁଣ୍ଡା ଗାଁରେ କିଣିଥିଲେ । ଏଥିରେ ତାଙ୍କ ବଡ଼ ସହାୟକ ଥିଲେ ବଡ଼ ପୁଅ ଡ଼ୋଳାମଣି ଆଚାର୍ଯ୍ୟ । ଡ଼ୋଳାମଣି ସଂସ୍କୃତ ପଣ୍ଡିତ ଥିଲେ। ଖଡ଼ି, ପାଞ୍ଜି ଦେଖି ଅନେକ ଭୂତଭବିଷ୍ୟତ କଥା କୁଆଡ଼େ କହିପାରୁଥିଲେ । ପ୍ରାଥମିକ ସ୍କୁଲର ଜଣେ ଶିକ୍ଷକଭାବରେ ସେ ଅନେକବର୍ଷ ବୋଡ଼ାସମ୍ବର ପଦମପୁର, ଧମା ତଥା କନଗାଁ ସ୍କୁଲରେ ଅବସ୍ଥାପିତ ଥିଲେ । ଜଣେ ନାଟ୍ୟକାର ଓ କବିଭାବରେ ସେ ଅନେକ ସଂସ୍କାର ଧର୍ମୀ ନାଟକ ଗାଁରେ ମଂଚସ୍ଥ କରିଥିଲେ । ୧୯୨୩ ମସିହାରେ ଲେଖିଥିବା ସଂସ୍କୃତ ଭାଗବତ (ଅପ୍ରକାଶିତ), ତାଙ୍କୁ ଅନେକ ଲୋକ ପରିଚିତି ଦେଇଥିବାର ଅନୁମାନ କରିହୁଏ । ଏହା ଡୋଳାମଣିଂକ ସଂସ୍କୃତ ଜ୍ଞାନର ମଧ୍ୟ ପରିଚୟ ଦିଏ। ୧୯୬୨ ମସିହାରେ ତାଙ୍କର ଦେହାବସାନ ହେଲା । ବୋଡ଼ାସମ୍ବରରେ ଶିକ୍ଷକତା କଲାବେଳେ କୁଆଡ଼େ ତାଙ୍କର ଗଙ୍ଗାଧର ମେହେରଙ୍କ ସହ ବନ୍ଧୁତା ଥିଲା । ଉଭୟେ ପଦମପୁରର ରହଣି କାଳରେ ସାଂଗରେ ପରିବାର ରଖିନଥିଲେ। ସାହିତ୍ୟ ସେବାରେ ଅଧିକ ସମୟ ଦେଇପାରୁଥିଲେ। ଛୁଟି ଦିନମାନଂକରେ ନିଜନିଜ ଗାଁକୁ (ବରପାଲି ଓ ଗର୍ଭଣା ) ପାଦରେ ଚାଲିଚାଲି ଫେରୁଥିଲେ। ସଂଧ୍ୟାରେ ପଦମପୁରରେ ଏକ ସାହିତ୍ୟ ଆସର ମଧ୍ୟ ହେଉଥିଲା। ସଂସ୍କୃତ ଦେବଭାଷା; ଏହାକୁ କେବଳ ମନେ ରଖାଯାଏ। ଏଥିରେ ନିଜ ରଚନା ସ୍ଥାନ ପାଏନା । ଏଭଳି ଏକ ଧାରଣାର ବିପରୀତ ଡ଼ୋଳାମଣିଙ୍କ ସ୍ୱ-ଲିଖିତ ସଂସ୍କୃତ ରଚନା। ତାକୁ ଯେତେବେଳେ ସେ ଉକ୍ତ ସାଂଧ୍ୟ ଆସରରେ ପାଠ କଲେ, କେହି କେହି ବିଦୃପ କରି କହିଲେ, ଏହା ପଂଡିତଂକ ନିଜସ୍ୱ ରଚନା; ସଂସ୍କୃତ ଶ୍ଳୋକ ନୁହେଁ। ସେତେବେଳେ ଗଂଗାଧର କୁଆଡେ ଡୋଳମଣିଂକ ପକ୍ଷ ନେଇ ଜବାବ ଦେଲେ, ମାତୃଭାଷା ହେବା ସତ୍ୱେ ଓଡିଆରେ ବି ଆମ ପାଇଁ ଲେଖିବା ସହଜ ନୁହେଁ। ସେହି ସ୍ଥିତିରେ ପଂଡିତେ ଯଦି ସଂସ୍କୃତରେ କବିତା ରଚନା କରୁଛଂତି, ସେ ତ ଅହୁରି ବଡ କଥା। ଏହା ପରେ ସମାଲୋଚକଂକ ମୁହଁ ବଂଦ ହେଲା।

ଡୋଳାମଣିଂକ ତୃତୀୟ ପୁତ୍ରହେଲେ ହେମଚନ୍ଦ୍ର ଆଚାର୍ଯ୍ୟ । ଯଦିଓ ମୋର ଜନ୍ମର ବର୍ଷକ ପୂର୍ବରୁ ୧୯୬୨ରେ ଡ଼ୋଳାମଣିଙ୍କର ମୃତ୍ୟୁ ହୋଇସାରିଥିଲା, ସ୍କୁଲ୍‌ରେ ତଥା ଅନେକ ଲୋକ ଗହଣରେ ସେତେବେଳେ ମୋର ପରିଚୟ ଥିଲା 'ଡ଼ୋଳାମଣି ଆଚାର୍ଯ୍ୟଙ୍କ ନାତି' । ଅଜାଙ୍କ (ଜେଜେ) ପିଢ଼ି ଶେଷ ହେଲା । ପର ପିଢ଼ିରେ ଆମଭାଇ ଭଉଣୀଙ୍କୁ 'ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ପୁଅ-ଝିଅ ଭାବରେ' ଭାବରେ ପରିଚୟ ମିଳେ ।

ବାପାଙ୍କ ଡ଼ାକ ନାଁ 'ଚତୁର', ତେଣୁ ଆମ ସେହି ଛୋଟିଆ ଅଂଚଳରେ 'ଚତୁରର ପୁଅ' କହିଲେ ମତେ ସମସ୍ତେ ଚିହ୍ନିବେ । କିଛି 'ଅବିବେକୀ' କାମକଲା ବେଳେ ବି ଅଜା (ଜେଜେ) ଓ ବାପାଙ୍କ ନାଁ ପ୍ରତିବନ୍ଧକର କାମକରେ । କାଳେ ଲୋକ କହିବେ – ଡ଼ୋଳାମଣି ଆଚାର୍ଯ୍ୟର ନାତି ବା ଚତୁର ଆଚାର୍ଯ୍ୟର ପୁଅ ହୋଇଏମିତି ଖରାପ କାମ ତୁ କରିପାରୁଲୁ ? ଏହି ଭୟରେ ଅନେକ ବେଳାରେ ଅ - କର୍ମରୁ ନିବୃତ ରହିବାକୁ ପଡେ । ନିଜ ଅଜାଣତରେ କେତେ ଯେ ଅବସରରେ ସେହି ନାଁର ଫାଏଦା ମତେ ମିଳିଥିବ, ତାହା ଗଣିବା କଠିନ । ବାପାଂକ ( ହେମଚଂଦ୍ରଂକ)୨୦୦୯ ରେ ଦେହାଂତ ହେଲା। ତାପରେ ବି ପଶ୍ଚିମ ଓଡିଶାର ଯାହିଁ ଯେଉଁଠି ସଭା ସମିତି କୁ ମୁଁ ଯାଇଛି, କବି ହେମଚଂଦ୍ରଂକ ପୁଅ ଭାବରେ ମୋର ପରିଚୟ ଦିଆ ଯାଇଛି। ସେତେବେଳେ ବାପାଂକ ଲୋକ ପରିଚିତିକୁ ମୁଁ ପ୍ରତ୍ୟକ୍ଷ କରିପାରିଛି।

ହେମଚନ୍ଦ୍ର ଆଚାର୍ଯଙ୍କର ଜନ୍ମ ଗର୍ଭଣା (ସୋହେଲା)ରେ ୨୦ ଏପ୍ରିଲ୍ ୧୯୨୬ ରେ । ପିତା ଡ଼ୋଳାମଣି ଆଚାର୍ଯ୍ୟ ଓ ମାତା କମଳା ଦେବୀ । ପ୍ରାଥମିକ ଶିକ୍ଷା ଆରମ୍ଭ ହେଲା ଗର୍ଭଣାରୁ ଦୁଇ କି.ମି. ଦୂର କନଗାଁ ସ୍କୁଲରେ । ମଧ୍ୟ ଇଂରାଜୀ ଶିକ୍ଷା ସୋହେଲାରେ, ଗାଁରୁ ଦୁର ପାଂଚକିମି । କନଗାଁ ସେ ପ୍ରତିଦିନ ଗାଁରୁ ଯିବା ଆସିବା କରୁଥିଲେ । ତାଙ୍କର ଆଦର୍ଶ ଶିକ୍ଷକଙ୍କ ଭିତରେ ଥିଲେ ପାଣିମୋରା ଗାଁର ଫୁଲଶର ପ୍ରଧାନ। 'ଆମ ପ୍ରଥମ ଶ୍ରେଣୀ ଆଜ୍ଞା' ନାମକ ଏକ ଲେଖାରେ ଫୁଲଶରବାବୁଙ୍କ ଆଦର୍ଶ ଶିକ୍ଷାର ଏ ସଂକ୍ଷିପ୍ତ ଆଲୋଚନା ସେ କରିଛନ୍ତି । ସ୍କୁଲ୍ ପରିଦର୍ଶକ ବିଶିଷ୍ଟ ଶିକ୍ଷାବିତ୍ ଶରତ ଚନ୍ଦ୍ର ମହାରଣା ଯେତେବେଳେ ସ୍କୁଲ୍ ପରିଦର୍ଶନରେ ଆସି ପିଲାଙ୍କୁ ନାନା ପ୍ରଶ୍ନ କରନ୍ତି, ଯେମିତି ତୁମକୁ କେଉଁ ଫୁଲ ଭଲ ଲାଗେ ?, କ'ଣ ଖାଇବାକୁ ଭଲ ଲାଗେ, କେଉଁରଙ୍ଗ ଭଲ ଲାଗେ ? ଇତ୍ୟାଦି, ପିଲା ଭିନ୍ନ ଭିନ୍ନ ଉତ୍ତର ଦିଅନ୍ତି । ମାତ୍ର 'କେଉଁ ଆଜ୍ଞା ଭଲ ଲାଗନ୍ତି' ପ୍ରଶ୍ନରଏକମାତ୍ର ସାମୂହିକ ଉତ୍ତର 'ପ୍ରଥମ ଶ୍ରେଣୀ ଆଜ୍ଞା' ଅର୍ଥାତ ଫୁଲଶର ପ୍ରଧାନ। କାରଣ ସେ ପାଠ ବାହିର ଉପାଖ୍ୟାନକୁ ନେଇ ନାଟକ କରାନ୍ତି, ସ୍କୁଲ୍ ବଗିଚାରେ ପିଲାଙ୍କୁ ନେଇ ଫୁଲ ଗଛ ଲଗାନ୍ତି, ଗପ କହନ୍ତି, ଇତ୍ୟାଦି । ସ୍କୁଲ୍ ପରିସରରୁ ଯାଇ ଗାଁ ପିଣ୍ଡାରେ ବି ପିଲା ତାଙ୍କ ନେତୃତ୍ୱରେ ନାଟକ କରିଛନ୍ତି, ପରବର୍ତୀ ଜୀବନରେ କଳାକାର ହୋଇଛନ୍ତି । ସ୍ୱାଧୀନତା ଆନ୍ଦୋଳନର ଡ଼ାକରାରେଏହି ଶିକ୍ଷକ ପୁଣି ଶିକ୍ଷକତା ଛାଡ଼ି ଜେଲଗଲେ, ଖଦି କାମକଲେ । ତାଙ୍କ ନେତୃତ୍ୱରେ ପାଣିମୋରା ଗାଁର ୩୨ ଜଣ ସ୍ୱାଧୀନତା ପାଇଁ ଜେଲ ଯାଇଥିଲେ । ପାଣିମୋରା ପଶ୍ଚିମ ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ଏକ ତୀର୍ଥ ଭୂମିରେ ପରିଣତ ହେଲା ।

ସୋହେଲା ମ.ଇ.ସ୍କୁଲରେ ହେମଚନ୍ଦ୍ରଙ୍କ ଜଣେ ପ୍ରିୟ ଶିକ୍ଷକ ହେଲେ ଖତି ତ୍ରିପାଠୀ । ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ର । ହଷ୍ଟେଲରେ ୯୬ ଜଣ ଛାତ୍ରଙ୍କ ପଢ଼ାକୁ କୁଆଡେ

ସେ ପ୍ରତିଦିନ ସଂନ୍ଧ୍ୟାରେ ତତ୍ୱାବଧାନ କରନ୍ତି । ସେହି ଦୁଇ ଘଂଟା ସେ କେବଳ ଛିଡ଼ା ହୋଇରହନ୍ତି । ପ୍ରତ୍ୟେକ ପିଲା ପାଖକୁ ଯାଇ ତାର ଅବୁଝା ପାଠ ବୁଝେଇ ଦିଅନ୍ତି । ଥରେ ଜଣେ ସହପାଠୀ ରୋଗଗ୍ରସ୍ତ ହେବାର ଖବର ପାଇ ତାଙ୍କ ଘର ଲୋକ କୁଆଡ଼େ ଆସିଲେ ପିଲାଟିକୁ ଘରକୁ ନେଇଯିବେ ବୋଲି । ସେତେବେଳକୁ ପିଲାଟି ଆଜ୍ଞାଙ୍କର ଘରେ ଶୁଶ୍ରୁଷା ପାଉଥାଏ 'ଗୁରୁମା'ଙ୍କ ପାଖରୁ । ଯେତେବେଳେ ତାକୁ ଗାଁକୁ ଯିବାପାଇଁ ତାର ପରିବାର ଜନ କହିଲେ, ପିଲାଟି ଚାହିଁଲା ଆଜ୍ଞାଙ୍କ ଘରେ ରହିବାକୁ । ଷଷ୍ଠ-ସପ୍ତମ ଶ୍ରେଣୀରେ ପାଠ ପଢୁଥିବା ୧୨-୧୩ ବର୍ଷର ପିଲାଟି ଘର ବଦଳରେ ଆଜ୍ଞାଙ୍କ ଘରେ ଅର୍ଥାତ୍ ହଷ୍ଟେଲରେ ରହିବାକୁ ଚାହିଁଲା । ହେମଚନ୍ଦ୍ରଙ୍କ ଭାଷାରେ ଏଥିରୁ ବଳି ଶିକ୍ଷକଙ୍କ ଛାତ୍ରବତ୍ସଳତାର ଆଉ କ'ଣ ଅଧିକ ପ୍ରମାଣ ଦିଆଯାଇ ପାରେ ?

ହେମଚନ୍ଦ୍ର ହାଇସ୍କୁଲ ଶିକ୍ଷା ହେଲା ବରଗଡ଼ ଜର୍ଜ ହାଇସ୍କୁଲରୁ । ୧୯୪୪ ମସିହାରେ ସେ ଉକ୍ତ ହାଇସ୍କୁଲରୁ ମେଟ୍ରିକ୍ ପାସ୍ କଲେ । ହାଇସ୍କୁଲର ବିଭିନ୍ନ ଶିକ୍ଷକଙ୍କର ମଧ୍ୟରେ ସେ ଶଶିଭୂଷଣ ମିଶ୍ରଙ୍କ କଥା ବାରମ୍ବାର କହନ୍ତି; ଲେଖିଛନ୍ତି ମଧ୍ୟ । 'ବୁଢ଼ା ମାଷ୍ଟେ' ନାମରେ ପରିଚିତ ଶଶିଭୂଷଣ ବାବୁଙ୍କ ପାରିବାରିକ ଜୀବନ ବଡ଼ ଦୁଃଖମୟ ଥିଲା । ପତ୍ନୀ ବିକ୍ଷିପ୍ତ ମସ୍ତିଷ୍କା । ଏକମାତ୍ର ଝିଅ ଓ ବଡ଼ ପୁଅର ଆକସ୍ମିକ ମୃତ୍ୟୁ ଘଟିଥାଏ । ମାତ୍ରଏହି ସବୁ ସାଂସାରିକ ଦୁଃଖ ତାଙ୍କ ଶିକ୍ଷକତା ଆଗରେ ପ୍ରତିବନ୍ଧକ ହୋଇ ରହିପାରିନି । ସବୁ ବିଷୟ ସେ ପଢ଼ାନ୍ତି । ପାଠ-ବହି ବାହାରେ ତାଙ୍କ ସଂଯୋଜନାରେ ସ୍କୁଲରେ ପ୍ରାଚୀର-ପତ୍ର'ମଧୁଚକ୍ର'ଲେଖାହୁଏ । ସମ୍ବଲପୁରୀରେ ଲେଖିବାର ଆତ୍ମବିଶ୍ୱାସ କବିଙ୍କୁ ମିଳିଛି ତାଙ୍କର ଏହି ଶିକ୍ଷକଙ୍କ ପାଖରୁ । ନିଜେ ଲେଖନ୍ତି, ପିଲାଙ୍କୁ ଲେଖିବା ପାଇଁ ଉତ୍ସାହିତ କରନ୍ତି । ହଷ୍ଟେଲର ସୁପରିଟେଣ୍ଡେଂଟ ଭାବରେ ପିଲାଙ୍କ ରହଣିଠାରୁ ଆରମ୍ଭ କରି ପାଠ ପଢ଼ା ଯାଏ ସବୁ କଥା ବୁଝନ୍ତି ; ବୋର୍ଡ଼ିଂ ଆଗରେ ସ୍ଥିତ ଛୋଟିଆ ଜାଗାଟିରେ ବଗିଚା କରନ୍ତି, ପିଲାଙ୍କୁ ବଗିଚା ଶିକ୍ଷା ଦିଅନ୍ତି । ଏତେ କାମ ପାଇଁ ଆଜ୍ଞାଙ୍କୁ ସମୟ ମିଳେ କେମିତି ? ଛାତ୍ର ହେମଚନ୍ଦ୍ର ନିଜକୁ ନିଜେ ପଚାରନ୍ତି । କୌଣସି ବ୍ୟାଖ୍ୟାନ ବା ପ୍ରବଚନ ମାଧ୍ୟମରେ ନୁହେଁ, ବରଂ ନିଜ ଆଚରଣ ଦ୍ୱାରା'ବୁଢ଼ାମାଷ୍ଟେ' ନାମରେ ପରିଚିତ'ଶଶିମାଷ୍ଟେ'ଯେଉଁ ପାଠଟି ଛାତ୍ର ମନରେ ଦେଇଯା'ନ୍ତି, ଛାତ୍ର ସମାଜ ତାଙ୍କୁ ହୃଦୟଙ୍ଗମ କରି ପାରିଲେ, ସମାଜକୁ ନିରାଶା କେବେ ଘୋଟି ପାରିବନି । ନିଜ ଅବର୍ତ୍ତମାନରେ ସୁଦ୍ଧା ଶିକ୍ଷକ ଛାତ୍ରର କାନେ କାନେ କହନ୍ତି 'ମୁଁ ତୋ ଭିତରେ ଅଛି, ମୋର ସାହାଯ୍ୟ ତୋ ପାଇଁ ସର୍ବଦା ଉନ୍ମୁକ୍ତ ରହିଛି ।' ଅଶୀତିପର ବୟସରେ ୨୦୦୬ରେ ଲେଖକ (ହେମଚନ୍ଦ୍ର ) 'ଗୁରୁ ସାକ୍ଷାତ ପରଂବ୍ରହ୍ମ'ଶୀର୍ଷକ ଏକ ଲେଖାରେ

ଏହାର ଉଲ୍ଲେଖ କରିଛନ୍ତି । ଜାଣି, ପ୍ରତିଦିନ ସେହି ଶାନ୍ତ ସରଳ ଗୁରୁବାଣୀ 'ମନ୍ତ୍ର' ପରି ତାଂକ ପାଇଁ କାର୍ଯ୍ୟକରେ ।

ହେମଚନ୍ଦ୍ର ଚାକିରି ଜୀବନ ଆରମ୍ଭ ହୁଏ ବିଜେପୁରରେ ଶିକ୍ଷକତାରୁ । କିଛି ଦିନ ପରେ ଗ୍ରାମସେବକ ଭାବରେ ବରଗଡ ପାଖରେ ଥିବା ବୁଦେଲପାଲି ଗାଁରେ ଚାକିରି କଲେ। ପୁଣି, ବ୍ଲକରେ ସୋସିଆଲ ଏଡୁକେଶନାଲ ଅଫିସର ପଦରେ ସୁନ୍ଦରଗଡ଼, ବିନିକା, ଉଲୁଣ୍ଡା, ନୂଆପଡ଼ା, ବିସ୍ରା, ମୟୂରଭଞ୍ଜ ଜିଲ୍ଲାର ଖୁଂଟା, ସୁନ୍ଦରଗଡ଼ ଜିଲ୍ଲାର ହେମଗିରି, ଏବଂ ସମ୍ବଲପୁର ଜିଲ୍ଲାର ଗାଇସିଲେଟ ବ୍ଲକରେ ଅବସ୍ଥାପିତ ଥିଲେ । ୧୯୬୬ ମସିହାରେ ଗାଇସିଲେଟ ବ୍ଲକରେ ଅବସ୍ଥାପିତ ଥିଲାବେଳେ ଆସିଷ୍ଟାଣ୍ଟ ବିଡ଼ିଓ ପଦରୁ ଇସ୍ତଫା ଦେଇ ସୋସିଆଲିଷ୍ଟ ପାର୍ଟିରେ ଯୋଗଦାନ କଲେ ।

ହେମଚନ୍ଦ୍ରଙ୍କର ଏକ ବଡ଼ ପରିଚୟ ହେଲା ତାଙ୍କ ସୋସିଆଲିଷ୍ଟ ରାଜନୀତି । ୧୯୬୭ ମସିହାରେ ମେଲଛାମୁଣ୍ଡାରୁ ସଂଯୁକ୍ତ ସୋସିଆଲିଷ୍ଟ ପାର୍ଟି ପକ୍ଷରୁ ବିଧାନ ସଭା ପାଇଁ ପ୍ରାର୍ଥୀ ମଧ୍ୟ ହୋଇଥିଲେ । ନିର୍ବାଚନରେ ପରାଜୟ ପରେ ସୋହେଲା ବ୍ଲକ ଚେୟାରମ୍ୟାନ ନିର୍ବାଚନରେ ମଧ୍ୟ ପ୍ରତିଦ୍ୱନ୍ଦିତା କରି ପରାଜୟର ଶିକାରହେଲେ । ତା'ପରେ ନିର୍ବାଚନରେ ପ୍ରତିଦ୍ୱନ୍ଦିତାକରି ନାହାନ୍ତି, ମାତ୍ର ସୋସିଆଲିଷ୍ଟ ରାଜନୀତିରୁ ମଧ୍ୟ ନିଜକୁ ଦୂରରେ ରଖି ନାହାନ୍ତି । ଡକ୍ଟର ରାମମନୋହର ଲୋହିଆ ଓ କିଶନ ପଟ୍ଟନାୟକ ଥିଲେ ତାଙ୍କର ଦୀକ୍ଷା ଗୁରୁ । ଶେଷଯାଏ ସେ ଅନ୍ୟ ରାଜନୀତିକ ଦଳକୁ ଯାଇନାହାନ୍ତି, 'ସମାଜବାଦୀ' ହୋଇ ରହିଯାଇଛନ୍ତି । ଜଣେ ସମାଜବାଦୀ ଭାବରେ ଜୀବନସାରା ସେ ଖଦି ପିନ୍ଧନ୍ତି; ଜାତିର ବାରଣ ମାନନ୍ତି ନାହିଁ। କିଶନ ବାବୁ ଏବଂ ତାଙ୍କ ସହଯୋଗୀଙ୍କ ଦ୍ୱାରା ପରିଚାଳିତ'ସମତା ସଂଗଠନ' 'ସମାଜବାଦୀ ଜନପରିଷଦ' ର 'କୃଷକ ଆନ୍ଦୋଳନ' ଆଦିରେ ଯଥାଶକ୍ତି ଅଂଶଗ୍ରହଣ କରନ୍ତି । ୧୯୯୧ ମସିହାରେ ଦିଲ୍ଲୀରେ ଜଗତୀକରଣ ବିରୁଦ୍ଧରେ ଏକ ବଡ଼ ରେଲି ଆୟୋଜିତ ହୋଇଥିଲା । ସେଥିରେ ମଧ୍ୟ ସେ ଯୋଗଦାନ କରିଥିଲେ । ଏହା ଥିଲା ତାଙ୍କର ପ୍ରଥମ ଦିଲ୍ଲୀ ଯାତ୍ରା । ଏହି ସମୟରେ ସେ ସପତ୍ନୀକ ଦିଲ୍ଲୀ ବ୍ୟତୀତ ଆଗ୍ରା, ମଥୁରା, ଋଷିକେଶ, ହରିଦ୍ୱାର, ବନାରସ ଓ ଆଲ୍ଲାହାବାଦ ଦର୍ଶନ କରି ରାୟପୁର ଦେଇ ଗାଁକୁ ଫେରିଥିଲେ । ଅନ୍ୟ ଶବ୍ଦରେ କହିଲେ, ସେ ଏକା ସାଂଗରେ ସମାଜବାଦୀ ଓ ଗଭୀର ଧର୍ମବିଶ୍ୱାସୀ, ଯଦିଓ ତାଂକ ଧର୍ମ ବିଶ୍ୱାସରେ କର୍ମକାଂଡ-ପ୍ରୀତି ନଥିଲା ପ୍ରାୟ। ସାଂପ୍ରଦାୟିକତାର ତ ସେ ପ୍ରଖର ବିରୋଧୀ ଥିଲେ।

ତାଙ୍କ ରାଜନୀତିର ଅନେକ ପ୍ରଭାବ ପଡ଼ିଥିଲା ଆମମାନଙ୍କ ଜୀବନ ଓ ବ୍ୟକ୍ତିତ୍ୱରେ । ବ୍ୟକ୍ତିଗତ ଭାବରେ ମୁଁ ଗୋଟିଏ ଘଟଣାର ଉଲ୍ଲେଖ କରିବି । ମୁଁ ଦଶମ ଶ୍ରେଣୀରେ

ପଢୁଥିବା ବେଳେ ଆମ ସ୍କୁଲର ସଂସ୍କୃତ ଶିକ୍ଷକ ତଥା ରାଷ୍ଟ୍ରୀୟ ସ୍ୱୟଂ ସେବକ କର୍ମୀ ଖଗେଶ୍ୱର ବେହେରାଙ୍କ ସମ୍ପର୍କରେ ଆସି ଆରଏସ୍ ଏସ୍‌ର ଏକ'କେମ୍ପ୍' ରେ ଯୋଗ ଦେବାକୁ ବାହାରିଥିଲି । ଆର୍‌ଏସ୍‌ଏସ୍‌ର ରାଜନୀତି ସମ୍ପର୍କରେ ସେତେବେଳେ ମୋର ଆଦୌ ଧାରଣା ନଥିଲା । 'ଆଜ୍ଞା କହିଛନ୍ତି, ମୁଁ ଯିବି ।' ଏହା ହିଁ ଥିଲା ମୋର ଯୁକ୍ତି । ଶେଷ ମୁହୂର୍ତ୍ତରେ ବାପା ମନା କରି ଦେଇ କହିଲେ 'ସେମାନେ ମୁସଲମାନଙ୍କୁ ଦେଶର ଶତ୍ରୁ ବୋଲି ମନେ କରନ୍ତି । ସେମାନଙ୍କ ସାଙ୍ଗରେ ସମ୍ପର୍କ ରଖିବା ତୋ ପକ୍ଷେ ଭଲ ହେବ ନାହିଁ ।' ଆଜି ଲାଗେ, ବୋଧହୁଏ ବାପା କହି ନଥିଲେ ମୁଁ ହୁଏତ ଆର୍‌ଏସ୍‌ଏସ୍‌ରେ ପଶିଯାଇଥାନ୍ତି । କୈଶୋରାବସ୍ଥା; ବିଚାର ଅପେକ୍ଷା ବ୍ୟକ୍ତି ପ୍ରତି ଅଧିକ ଆକୃଷ୍ଟ ହେବାର ସମୟ । ଏମିତି ଆମରି ଅଜାଣତରେ ତାଙ୍କଠାରୁ କେତେ ଯେ ସୁରକ୍ଷା ମିଳେ, ତାର ହିସାବ ନାହିଁ; ଏହା ତାଙ୍କ ଧର୍ମନିରପେକ୍ଷତାକୁ ମଧ୍ୟ ଦର୍ଶାଏ ।

ସାହିତ୍ୟ ଲେଖିବା ପାଇଁ ହେମଚନ୍ଦ୍ରଙ୍କୁ ଆଗକରି ପ୍ରେରଣା ମିଳିଛି ବରଗଡ଼ ଜର୍ଜ ହାଇସ୍କୁଲର ଶିକ୍ଷକ ତାଙ୍କ ଆରାଧ୍ୟ ଓ ସମ୍ପର୍କୀୟ ମାମୁଁ ଶଶିଭୂଷଣ ମିଶ୍ରଙ୍କ ଠାରୁ । ଏହି ଶିକ୍ଷକ ଜଣକ ଜଣେ ଆଦ୍ୟ ସମ୍ବଲପୁରୀ ଲେଖକ ଭାବରେ ଖ୍ୟାତ, ଯଦିଓ ପ୍ରକାଶିତ ପୁସ୍ତକମାଳା ତାଙ୍କ ଜୀବନକାଳ ମଧ୍ୟରେ ବିଶେଷ ନାହିଁ ବୋଲି ମନେହୁଏ । କିନ୍ତୁ ବଡ଼ ପ୍ରଭାବଶାଳୀ ଲେଖକ ଥିଲେ ସେ । ହେମଚନ୍ଦ୍ରଙ୍କୁ ଲେଖିବା ପାଇଁ ଓ ସ୍ୱାଭିମାନର ସହ ସମ୍ବଲପୁରୀରେ ଲେଖିବା ପାଇଁ ସେ ପରାମର୍ଶ ଦେଇଥିଲେ । ଗାଁ ପରିବେଶ ଏବଂ ସମାଜବାଦୀ ରାଜନୀତି ତାଙ୍କୁ (ହେମଚନ୍ଦ୍ରଙ୍କୁ) ଲେଖିବା ପାଇଁ ପ୍ରେରଣା ଦେଇଛି । ତେଣୁ ଚାକିରିରୁ ଇସ୍ତଫା, ଗାଁରେ କେବଳ ଚାଷକୁ (ଜମି ଅଣ-ଜଳସେଚିତ) ଆଶ୍ରୟ କରି ଚଳଣି, ନିର୍ବାଚନ ରାଜନୀତିରେ ଅସଫଳତା ଏବଂ ପାରିବାରିକ ଦୁଃଖ ଯନ୍ତ୍ରଣା (୧୯୭୨ ମସିହାରେ ୨୨ ବର୍ଷ ବୟସରଙ୍କ ବଡ଼ ପୁଅ ସତୀଶ ଦର୍ଶନଶାସ୍ତ୍ରରେ ଉପାଧି ପରିକ୍ଷା ଦେବା ଆଗରୁ ସମ୍ବଲପୁରରୁ କେଉଁଆଡ଼େ ଗଲା ଯେ, ଶେଷ ଯାଏଁ ତାର କୌଣସି ଖବର ବି ମିଳିଲା ନାହିଁ ।) ତାଙ୍କ ସୃଜନୀକୁ ପ୍ରତିରୋଧ କରିପାରିନି, ବରଂ ଦୁରବସ୍ଥାକୁ ହଜମ କରିବା ସକାଶେ ଅଧିକରୁ ଅଧିକ ଲେଖିବାକୁ ବାଧ୍ୟ କରିଛି । ଲେଖିବା ପାଇଁ ତାଙ୍କୁ କେବେ ଟେବୁଲ ଚେୟାର ମିଳିନି, ରାଇଟିଂ ବୋର୍ଡ଼ ମିଳିନି । ୧୯୮୧-୮୨ ଯାଏଁ ଘରେ ବିଜୁଳି ଆଲୁଅ ନଥିଲା । ଚାଷ, ବଡ଼ ପରିବାର; ଗାଁ ଜୀବନରେ ନିର୍ଜନତା ମିଳିବା କଷ୍ଟ । ତା' ସତ୍ୱେ ତାଙ୍କ ଲେଖା ବାଧାପ୍ରାପ୍ତ ହୋଇନି । ତାଙ୍କର ଅଧିକାଂଶ ଲେଖାକୁ ସେ କ୍ଷେତର ଗଛମୂଳେ ବସି ଲେଖିଛନ୍ତି । ରାତିରେ ଲଣ୍ଠନ ବା ଡ଼ିବିରି ଆଲୁଅରେ ଦଉଡ଼ିଆ ଖଟରେ ବସି ଲେଖାଗୁଡ଼ିକୁ ପୂରା କରନ୍ତି । ଲେଖା ସାମଗ୍ରୀ ଭିତରେ ୧/୮ ଡ଼ିମାଇ ସାଇଜର ଗୋଟିଏ କପି । କଲମରେ କିଛି ବାଛ ବିଚାର ନଥାଏ । ମାତ୍ର ତାଙ୍କ କଲମଟି ଯଦି ଖୋଜିଲା ବେଳେ ମିଳେନି ପିଲାଙ୍କ ଉପରେ ଭୀଷଣ ବିରକ୍ତ ହୁଅନ୍ତି । ବିଚାର ବାଧାପ୍ରାପ୍ତ

ହେବାର ଡ଼ର ଥାଏ । ତା'ଠାରୁ ବଡ଼ କଥା, ସ୍ୱତଃ ଆସୁଥିବା ଭାବକୁ କାଗଜ କଲମରେ ଧରି ନ ରଖିଲେ, ଭାବ ଚାଲିଯିବାର ଆଶଂକା ରହିଥାଏ ।

ଘରେ ବାପାଙ୍କ କୋଠରୀର ଗୋଟାଏ ବଡ଼ ବିଶେଷତ୍ୱ ହେଲା – ତାର ଦୁଇଟି ବାଟ – ଗୋଟାଏ ଘରର ବାହାରକୁ ଏବଂ ଅନ୍ୟଟି ଘର ପଟକୁ, ଯଦିଓ ସେଇଟା ଘରପାଇଁ ମୁଖ୍ୟ ପ୍ରବେଶଦ୍ୱାର ନୁହେଁ ବାପା ଥିବା ବେଳେ ରାତିକୁ ବାଦ ଦେଲେ ସର୍ବଦା ଦୁଇଟି ଯାକ କବାଟ ମେଲା ଥାଏ । 'ବାଟଘର' ନାମରେ ପରିଚିତ ଏହି କୋଠରୀରେ ବସି ବାପା ଗୁହାଳର ଗାଈଗୋରୁ, ଘରର ହାନିଲାଭ, ତାଙ୍କୁ ଭେଟିବା ପାଇଁ ଆସୁଥିବା ଲୋକ, ସମସ୍ତଙ୍କୁ ଭେଟନ୍ତି, ସମସ୍ତଙ୍କ କଥା ବୁଝନ୍ତି । ସାହିତ୍ୟ ସୃଷ୍ଟି ସକାଶେ ଏହି କାମ ସବୁ ଉପେକ୍ଷିତ ହୁଅନ୍ତି ନାହିଁ । ବରଂ ଗାଁର ପରିବେଶରେ ସାହିତ୍ୟ କଦାପି ପ୍ରାଥମିକତା ପାଏ ନାହିଁ । ସାହିତ୍ୟ ଓ ପରିବାର କାମ ଏକାସାଙ୍ଗରେ ଚାଲନ୍ତି । ଉଭୟେ ଉଭୟଙ୍କର ପରିପୂରକ । 'ବାଟଘର' ର ଦୁଇଟି ବାଟରୁ ଗୋଟାଏ ଯଦି ତାଙ୍କୁ ଅନ୍ତର୍ମୁଖୀ କରାଏ, ଅନ୍ୟଟି ବାହାର ଦୁନିଆଁକୁ ଦେଖିବା ପାଇଁ ଆଖି ଭଳି କାମ କରେ; ବିଶ୍ୱକୁ ଗବାକ୍ଷ ହୁଏ ।

ହେମଚନ୍ଦ୍ରଙ୍କ ସାହିତ୍ୟ ଲେଖା ଆରମ୍ଭ ହେଲା ବୋଧେ ମେଟ୍ରିକ୍ ପଢ଼ା ବେଳେ ବା ତତ୍ ପରେ ପରେ । ସେତେବେଳେ ଗାଁ ଗାଁରେ କୀର୍ତ୍ତନ ମଣ୍ଡଳୀ ସବୁ ଥାଏ । ଦିନର ପରିଶ୍ରମ ପରେ ଆମ ଗାଁରେ ପୁରୁଷ ଲୋକ ଅନ୍ଧାର ରାତିରେ ଗାଁ 'ଭାଗବତ ଗୁଡ଼ି' ରେ ଅର୍ଥାତ ଟୁଙ୍ଗି ପିଣ୍ଡାରେ ବସି କୀର୍ତନ କରନ୍ତି । କେବେ ଡ଼କରା ପାଇ କୀର୍ତନ ଦଳ ଅନ୍ୟ ଗାଁକୁ ମଧ୍ୟ କୀର୍ତନ ନାଚିବାକୁ ଯାଆନ୍ତି । ଅବସର ବିନୋଦନ ସକାଶେ ଗାଁ ଜୀବନରେ କୀର୍ତନ ଏକ ବଡ଼ ସାଧନ । ୧୯୪୪ ମସିହାରେ ମେଟ୍ରିକ୍ ପାସ କଲା ଉତାରୁ ବା ସେହି ସମୟରେ କୀର୍ତନର ପ୍ରଭାବରେ ହେମଚନ୍ଦ୍ର ଭଜନ ଲେଖିବା ଆରମ୍ଭ କଲେ । ସେତେବେଳେ ବଙ୍ଗଳା କୀର୍ତନର ହିଁ ପ୍ରଚଳନ ଚାରିଆଡ଼େ । ଓଡ଼ିଆରେ କୀର୍ତନ ଗୀତ ଲେଖିବାର ଆବଶ୍ୟକତାରୁ କବିଙ୍କର ସୃଜନ କ୍ରିୟା ଆରମ୍ଭ ହେଲା । ଲୋକଙ୍କର ଏହା(ଓଡିଆରେ ଲିଖିତ କୀର୍ତନ ଗୀତ) ସହଜରେ ବୋଧଗମ୍ୟ ହେଲା; କୀର୍ତନର ଲୋକପ୍ରିୟତା ବଢ଼ିଲା । ବାପାଙ୍କର ସମ୍ପୃକ୍ତି ଯୋଗୁଁ ଆମ ଗାଁରେ କୀର୍ତନ ସମସ୍ତ ଶିକ୍ଷିତ, ଅଶିକ୍ଷିତ, ଆଦିବାସୀ-ଅଣ ଆଦିବାସୀ, 'ଉଚ୍ଚ' ଜାତି -'ତଳ'ଜାତି ମଧ୍ୟରେ ଏକ ସମନ୍ୱୟର ସୂତ୍ର ଭଳି କାମ କଲା । ଅନ୍ୟଥା ଅନ୍ୟ ଲୋକକଳା ଭଳି କୀର୍ତନକୁ 'ତଳ' ସ୍ତର କଳା ବୋଲି ବିବେଚନା କରାଯାଏ । ଶିକ୍ଷିତ ଲୋକ କ୍ୱଚିତ ତହିଁରେ ପ୍ରତ୍ୟକ୍ଷ ଭାବେ ଭାଗ ନିଅନ୍ତି । କୀର୍ତନରେ'ଅସ୍ପୃଶ୍ୟ' ଜାତିର ଲୋକଙ୍କର ସାଧାରଣତଃ ପ୍ରବେଶ ରହେନା । ସେମାନଙ୍କ ପ୍ରବେଶ ପାଇଁ ଗର୍ଭଣାରେ (ଆମ ଗାଁରେ) ମଧ୍ୟ ଯଥେଷ୍ଟ ପଦକ୍ଷେପ ନିଆଯାଇଛି ବୋଲି କହି ହେବନି । ଜାତି ବାରଣ ନମାନି ବାପା ହରିଜନ ଘରକୁ

ଯାଆନ୍ତି, ବିଶେଷ କରି ଶିକ୍ଷିତ ଲୋକ ଭାବରେ ରୋଗର 'ଫାଷ୍ଟଏଡ୍' ଦେଲାବେଳେ । ତା' ପାଇଁ ସେ ଲୁଗା ବଦଳାନ୍ତି ନାହିଁ । ଘରେ ତାଙ୍କ ମା' ଆଦି ଏହାକୁ ସ୍ୱୀକାର କରନ୍ତି ନାହିଁ ବୋଲି ସେ ହରିଜନ ସାହିକୁ ଯିବା କଥା ଘରେ ଜଣାନ୍ତି ନାହିଁ । ମାତ୍ର କୀର୍ତନରେ ହରିଜନଙ୍କ ପ୍ରବେଶ ପାଇଁ ତାଙ୍କ ପକ୍ଷରୁ ଗାଁରେ ଯଥେଷ୍ଟ ପଦକ୍ଷେପ ନିଆଯାଇଛି ବୋଲି ମନେ ହୁଏନା । ସେହି ଦୃଷ୍ଟିରୁ ଦେଖିଲେ, ମନେହୁଏ ହେମଚଂଦ୍ର ପରଂପରାକୁ ଭାଂଗିବା ବଦଳରେ ତା'ଭିତରେ ରହି ସଂସ୍କାର ପାଇଁ ପ୍ରୟାସ କରୁଥିଲେ। ଏଥିପାଇଁ ସେ ଗାଁ ସମାଜରେ କେବେ ଅଗ୍ରହଣୀୟ ମଧ୍ୟ ହୋଇନଥିଲେ।

ବାପାଙ୍କର କୀର୍ତନ ଗୀତର ଲୋକପ୍ରିୟତା ବଢ଼ିବା ଯୋଗୁଁ ଆଖ ପାଖର ଗାଁ ଲୋକ ମଧ ତାଙ୍କୁ କୀର୍ତନ ଗୀତ ଲେଖିବା ପାଇଁ ଅନୁରୋଧ କଲେ । ପିଲାଦିନେ ଦେଖିଛି, ଅନ୍ୟ ଗାଁରୁ ଦୁଇଚାରିଜଣ ଲୋକ ଆସି ଖାତାଟିଏ ଦେଇ ଗୀତ ଲେଖିବା ପାଇଁ ଅନୁରୋଧ କରନ୍ତି । କିଛି ଦିନ ଉତାରୁ ବାପା ସେହି ଖାତାଟିରେ ନୂଆ ଗୀତ ଲେଖି ଦିଅନ୍ତି । ଖାତାଟି ଅର୍ଥାତ୍ ତାଙ୍କ ସର୍ଜନାର 'ଅରିଜିନାଲ୍ କପି' ଚାଲିଯାଏ । ପରବର୍ତୀ ସମୟରେ ତାଙ୍କ ପାଖରେ ନିଜର ଅନେକ କୃତିର କପି ନ ରହିବା ପଛରେ ତାହା ହିଁ ବଡ଼ କାରଣ । 'କୃଷ୍ଣ ଜନ୍ମ', 'ରାଧା ସନ୍ୟାସ' ଏବଂ 'ଶରତ ରାସ' ଆଦି ହେଲେ ହେମଚନ୍ଦ୍ରଙ୍କର ପ୍ରକାଶିତ କୀର୍ତନ ଗୀତ। 'ହେମଚନ୍ଦ୍ର ଚୟନ'ରେ ତାଂକ ଦେହାନ୍ତ ପରେ ୨୦୧୨ରେ ପ୍ରକାଶିତ । ତାକୁ ବାଦ ଦେଲେ ଆହୁରି ୩୦୦ରୁ ଅଧିକ ଭଜନ ଲେଖିଛନ୍ତି ସେ ।

କବି ହେମଚନ୍ଦ୍ରଙ୍କ ପାଇଁ ଏକ ବଡ଼ ଆକର୍ଷଣ ହେଲା ନିଜ ଗାଁ । ପ୍ରଥମ ଶ୍ରେଣୀରୁ ଗାଁ ବାହାରେ ପାଠ ପଢ଼ିଛନ୍ତି । ଷଷ୍ଠ ଶ୍ରେଣୀରୁ ବୋର୍ଡିଂ ରେ ରହିଛନ୍ତି। ମେଟ୍ରିକ୍ ପାସ କଲା ଉତାରୁ ଚାକିରି ଯାଗାରେ ଅର୍ଥାତ୍ ଗାଁ ବାହାରେ ରହିଛନ୍ତି । ତା' ସତ୍ୱେ ଗର୍ଭଣା ସାଙ୍ଗରେ ତାଙ୍କର ସମ୍ପର୍କ ଅତୁଟ ରହିଛି । ତେଣୁ ନାଁ ସାଙ୍ଗରେ ଗାଁ ସ୍ୱତଃ ଯୋଡ଼ିଯାଏ ତାଙ୍କୁ ମନେ ପକାଇଲା ବେଳେ , "ହେମଚନ୍ଦ୍ର ଆଚାର୍ଯ୍ୟ, ଗର୍ଭଣା" । ଗାଁର କୀର୍ତନ୍ୟ ମଣ୍ଡଳୀ, ଯୁବକ ସଙ୍ଘ, ନାଟକ ମଣ୍ଡଳୀ, ଦୁର୍ଗା ପୂଜା ଆଦି ସାମୂହିକ କାମ ପଛରେ ସେ ମୁଖ୍ୟ ପ୍ରତିଷ୍ଠାତା, ମୁଖ୍ୟ ସଂଯୋଜକ । ସମ୍ବଲପୁର ଜିଲ୍ଲାରେ ଗର୍ଭଣାକୁ ସମାଜବାଦୀ ରାଜନୀତିର ଏକ ମୁଖ୍ୟକେନ୍ଦ୍ର କରି ଗଢ଼ିବାରେ ମଧ୍ୟ ତାଂକ ଭୂମିକା କେବେ ଗୌଣ ନୁହେଁ ।

ପଶ୍ଚିମ ଓଡ଼ିଶାରେ ଦଶହରାର ଏକ ବିଶେଷ ମହତ୍ୱ ରହିଛି । ବିବାହିତା ଝିଅମାନେ ସେତେବେଳେ ମା' ଘରକୁ ଆସନ୍ତି । ପିଲାଙ୍କ ସ୍କୁଲ ଛୁଟୀ ହୁଏ । ଚାଷର ଭିଡ଼ ନଥାଏ । ଏହି ସମୟରେ ଦୁର୍ଗାପୂଜା ପରିବେଶକୁ ଅଧିକ ଆନନ୍ଦଦାୟୀ କରେ । ଆଗରୁ ଆମ ଗାଁରେ ଦୁର୍ଗା ପୂଜା ହେଉ ନଥିଲା । ମନୋରଞ୍ଜନର ଏକ ବଡ଼ ସାଧନ ରୂପେ ଗାଁର ଯୁବକ ସଙ୍ଘ ଦୁର୍ଗାପୂଜା ଆରମ୍ଭ କଲେ । ମୁଖ୍ୟ ଉଦ୍ୟୋକ୍ତା ଥିଲେ ହେମଚନ୍ଦ୍ର ଏବଂ ତାଙ୍କ ବଡ଼ ଭାଇ

ଚିତରଞ୍ଜନ ଏବଂ ବନ୍ଧୁ ଲାଲ ପ୍ରଧାନ, ଜୀବର୍ଦ୍ଧନ ଗୌନ୍ତିଆ, ହର ସାହୁ ଆଦି । ଏହା ୧୯୪୮ ମସିହାର କଥା । ଦୁର୍ଗା ପୂଜାରେ ଅଭିନୀତ ହେବା ପାଇଁ ଗାଁ କଳାକାରମାନେ ନାଟକ କଲେ । ଗାଁ ପରିବେଶରେ ସେ ଏକ ବଡ଼ କୃତିତ୍ୱ - ନୂଆଁ କରି ଅନୁଷ୍ଠାନଟିଏ ସୃଷ୍ଟି ହେଲା ।

ଗାଁର କଳାକାରମାନଙ୍କୁ ଦୃଷ୍ଟିରେ ରଖି ହେମଚନ୍ଦ୍ର ସଂସ୍କାରଧର୍ମୀ ନାଟକମାନ ଲେଖିଲେ । ମାସ ମାସ ଧରି ରାତିରେ ନାଟକ ପାଇଁ ଆଖଡ଼ା ହେବ । ଶେଷରେ ନାଟକର ମଂଚାଭିନୟ ହେବ । ଆଖପାଖ ଅଂଚଳରେ ଦୁର୍ଗାପୂଜା ସାଙ୍ଗକୁ ନାଟକ ପାଇଁ ଗର୍ଭଣାର ପ୍ରସିଦ୍ଧି ବଢ଼ିଲା । ଏ କ୍ଷେତ୍ରରେ ହେମଚନ୍ଦ୍ରଙ୍କର ବଡ଼ ଭାଇ ଚିତରଞ୍ଜନ ଥିଲେ ବଡ଼ ସହଯୋଗୀ । ସମ୍ବଲପୁରରେ ସେ ପୋଲିସ ବିଭାଗରେ ଚାକିରି କରୁଥିଲେ । ସେ ମଧ୍ୟ ନାଟକ ଲେଖିଲେ ଏବଂ ସମ୍ବଲପୁରର ଦଳେ ବନ୍ଧୁଙ୍କୁ ନେଇ ନାଟକ କରାନ୍ତି । ତାଙ୍କ ସୌଖିନ ନାଟକ ଦଳ ଆସି ଗର୍ଭଣାର ପୂଜାରେ ମଂଚାଭିନୟ କରନ୍ତି । ପୂଜା, ମଂଚ ସାଜସଜ୍ଜା ଓ ଆୟୋଜନରେ ମଧ୍ୟ ଏହି ସହରିଆ କଳାକାର ବନ୍ଧୁମାନେ ସକ୍ରିୟ ଭୂମିକା ନିର୍ବାହ କରନ୍ତି । ଅନ୍ୟ ଶବ୍ଦରେ କହିଲେ, ପୂଜା, ନାଟକ ଏବଂ ଆଚାର୍ଯ୍ୟ ଭାତୃଦ୍ୱୟଙ୍କୁ ନେଇ ଗର୍ଭଣା ଗାଁ ଏବଂ ସମ୍ବଲପୁର ସହର ମଧ୍ୟରେ ଏକ ସମନ୍ୱୟର ସୂତ୍ର ପ୍ରସ୍ତୁତ ହେଲା । ଗାଁ ଲୋକ ଗର୍ବିତ ଯେ, ତାଙ୍କ ପିଲା ସମ୍ବଲପୁର କଳାକାରଙ୍କ ସହ ତାଳ ଦେଇ ନାଟକ କରନ୍ତି । ସହରକୁ ପାଖରୁ ଦେଖିବାର ଏହି ଅନୁଭୂତି ଯୋଗୁଁ ଗର୍ଭଣାବାସୀଙ୍କ ମନରେ ସହର ପ୍ରତି ଭୟ ଉଣା ହେଲା। ସବୁ ପରିସ୍ଥିତିରେ ଗର୍ଭଣା ନିଡ଼ର, ନିର୍ଭୟ । ତାର ପୋଲିସ୍‌କୁ ଭୟ ନାହିଁ ; ସହରକୁ ସେ ଖାତିର କରେ ନା, ମରାଠା ଅମଳରୁ ରହିଆସିଥିବା ସେହି ନିର୍ଭୟ ଭାବର ପରମ୍ପରା ଯଦି ଆଜି ବି ଗାଁରେ ବଂଚିରହିଛି, ଦୁର୍ଗାପୂଜାର ଅନୁଷ୍ଠାନ ଏବଂ ଆଚାର୍ଯ୍ୟ ଭ୍ରାତୃଦ୍ୱୟଙ୍କର ଭୂମିକା ତା' ପଛରେ ଏକ ବଡ଼ କାରଣ । ମରାଠା ଆକ୍ରମଣକୁ ପ୍ରତିହତ କରିବା ପାଇଁ ଗର୍ଭଣାର ଚମରା ଗୌନ୍ତିଆ କୁଆଡ଼େ ଅଷ୍ଟାଦଶ ଶତାବ୍ଦୀରେ ସମ୍ବଲପୁର ରାଜା ପକ୍ଷରୁ ସିଂଘୋଡ଼ା ଘାଟିରେ ଯୁଦ୍ଧ କରିଥିଲେ । ଯୁଦ୍ଧରେ ଅନେକ ମରାଠା କୁଆଡ଼େ ନିହତ ହୋଇଥିଲେ । ଇତିହାସର ଆଉ କେଉଁ ଏକ କାଳଖଣ୍ଡରେ ଜଣେ ବର୍ଗୀ ବରକଂଦାଜକୁ ଘନାସାଲର ଗୁଡ଼ ରନ୍ଧା ଝୁଲିରେ (ଚୁଲିରେ) ଝୁକି (ପୋଡ଼ି) ଦିଆଯାଇଥିଲା । ତେଣୁ ସ୍ଥାନୀୟ ସ୍ତରରେ ଗାଁକୁ 'ଝୁଲି ଝୁକା ଗର୍ଭଣା' ବୋଲି କୁହାଯାଏ । ପ୍ରଥମ ଘଟଣା ସମ୍ପର୍କରେ ସମ୍ବଲପୁର ଗେଜେଟିଅରରେ ଉଲ୍ଲେଖ ରହିଛି । ଦ୍ୱିତୀୟ ଘଟଣାଟି କିମ୍ବଦନ୍ତୀ ପ୍ରସୂତ । ତାକୁ ପୂର୍ଣତଃ ମନଗଢ଼ା ବୋଲି ବି କୁହାଯାଇ ନପାରେ । ଆଉ ଏକ ବିଶ୍ୱାସ ଅନୁସାରେ, ସୁରେନ୍ଦ୍ର ସାଏଂକ ପାଇଁ ଗାଁର ଗୌନ୍ତିଆଂକ ସହଯୋଗ ରହୁଥିଲା। ଗାଁର ଏ ଯେଉଁ ଇତିହାସ ତାହା ହେମଚନ୍ଦ୍ରଙ୍କର ବ୍ୟକ୍ତିତ୍ୱ ଗଠନରେ

ମଧ୍ୟ ଯଥେଷ୍ଟ ସାହାଯ୍ୟ କରିଛି। ଗାଁ ପ୍ରତି ଦୃଢ଼ ଆକର୍ଷଣ ପଛରେ ଗାଁକୁ ନେଇ ସ୍ୱାଭିମାନ ଏକ ପ୍ରମୁଖ କାରଣ । ପୁଣି ସେହି ଆକର୍ଷଣ ଯୋଗୁଁ ଚିରକାଳ ଗାଁର ମଣିଷ ହୋଇ ରହିବାରେ ତାଙ୍କର ଆଦୌ ଆପତି ନାହିଁ । ଅନ୍ୟ ଅର୍ଥରେ, ଗାଁରୁ ଅଲଗା କରି ହେମଚନ୍ଦ୍ରଙ୍କର ସୃଷ୍ଟିଶୀଳତାକୁ ବୁଝିବା ସହଜ ନୁହେଁ ।

ଗାଁର ଦର୍ଶକ ମଣ୍ଡଳୀକୁ ଦୃଷ୍ଟିରେ ରଖି ଗାଁ କଳାକାରମାନଙ୍କୁ ନେଇ ହେମଚନ୍ଦ୍ର ଏକାଧିକ ନାଟକ ଲେଖିଛନ୍ତି । ତନ୍ମଧ୍ୟରେ ରହିଛି ଅଭିଶାପ (୧୯୪୫), ନିର୍ବାସିତା (୧୯୪୬), ମହାରଥୀ କର୍ଣ୍ଣ (୧୯୪୮-୪୯), ବିଶ୍ୱାସ (୧୯୫୪), ପ୍ରତୀକ୍ଷା (୧୯୭୭) ଏବଂ ସମ୍ବଲପୁରୀ ନାଟିକା, 'ମୁଇଁ ମଲେ ଯାଇ' (୧୯୯୦) । କେବଳ ମହାରଥୀ କର୍ଣ୍ଣକୁ କଟକ ଟ୍ରେଡ଼ିଂ କମ୍ପାନୀ ୧୯୫୫-୫୬ ରେ ପ୍ରକାଶିତ କରିଥିଲେ । ଏହି ନାଟକକୁ ବାଦ ଦେଲେ ଅନ୍ୟ ସବୁଗୁଡ଼ିକ ଅପ୍ରକାଶିତ । ପ୍ରତ୍ୟେକ ନାଟକ ସଂସ୍କାରଧର୍ମୀ । 'ମହାରଥୀ କର୍ଣ୍ଣ' ରେ ନାୟକ କର୍ଣ୍ଣ ଅବିବେକୀ କୌରବ ବଂଶର ପକ୍ଷ ନେଇଛନ୍ତି ମହାଭାରତ ଯୁଦ୍ଧରେ ସତ, ମାତ୍ର ତା' ପଛରେ ବଡ଼ କାରଣ ତାଙ୍କ ବିବେକଶୀଳତା । ଦୁର୍ଯ୍ୟୋଧନ ତାଙ୍କୁ ଜଣେ ବନ୍ଧୁର ସମ୍ମାନ ଦେଇଛନ୍ତି । ଯୁଦ୍ଧରେ ସେ ଦୁର୍ଯ୍ୟୋଧନଙ୍କୁ ପ୍ରତାରିତ କରି ନପାରନ୍ତି । କଥା ଦେଇ କଥା ରଖିଥିବା, ରୋକଠୋକ କଥା କହୁଥିବା, ପୁତ୍ରର ପ୍ରାଣ ବିନିମୟରେ ହେଉ ପଛେ ଅସତ୍ୟର ଆଶ୍ରୟ ନେଇ ନଥିବା ଜଣେ ବାଉଁଶ ପରି ସିଧା ମଣିଷ କର୍ଣ୍ଣ । ତେଣୁ, ଆଦିବାସୀ ଠାରେ, ଗାଁ ଲୋକଠାରେ ଏବଂ ବିଶେଷ କରି ପଶ୍ଚିମ ଓଡ଼ିଶାବାସୀ 'ସମ୍ବଲପୁରୀଆ'ଠାରେ ଲେଖକ ଯେଉଁ ସିଧା ଓ ଟାଣପଣ ରହିଥିବାର ଆଶା ପ୍ରକାଶ କରନ୍ତି, ତାଙ୍କ ନାୟକ କର୍ଣ୍ଣ ତାର ପ୍ରତିନିଧିତ୍ୱ ମାତ୍ର କରେ । ଠିକ ସେହିଭଳି 'ବିଶ୍ୱାସ' ନାଟକରେ ଲୋକଙ୍କ ଭିତରେ ଆପୋଷ ବିଶ୍ୱାସ ଓ ପରସ୍ପର ସହଯୋଗ ବଳରେ ଗାଁ ଏକ ଆଦର୍ଶ ସମାଜରେ ପରିଣତ ହୋଇଛି । ତା' ପାଇଁ ନା ସହର ଅନୁକରଣୀୟ ନା ଅନୁକରଣୀୟ ପାଶ୍ଚାତ୍ୟ ସଭ୍ୟତା । ନିଜ ଅନ୍ତଃଶକ୍ତି ବଳରେ ଗାଁ ବଳିୟାନ, ସ୍ୱର୍ଗ, ସୁଖ, ସମ୍ପଦ, ସହଯୋଗ ଓ ଶାନ୍ତିର ପ୍ରାଣକେନ୍ଦ୍ର । 'ପ୍ରତୀକ୍ଷା' ନାଟକରେ ରାଜନେତାର ଶଠତାର ପର୍ଦ୍ଦାଫାସ ହୋଇଛି । 'ମୁଇଁ ମଲେ ଯାଇ' ସମ୍ବଲପୁରୀ ନାଟକ ନା ପ୍ରକାଶିତ ହୋଇଛି, ନା ମଂଚସ୍ଥ ହୋଇଛି । କାରଣ ସୁଯୋଗର ଅଭାବ । ଗାଁରେ ତାର ଅଭିନୟ ହୋଇ ନାହିଁ । ୧୯୯୦ ରେ ନାଟକ ଲେଖା ହେଲାବେଳକୁ, ଗାଁ ପିଲା ଟି. ଭି. ଫିଲ୍ମର ମୋହରେ । ଲେଖକ ଚାହିଁଛନ୍ତି ତାକୁ ସମ୍ବଲପୁର ବେତାର କେନ୍ଦ୍ର ଯାଏଁ ପହଂଚାଇବାକୁ । ଆବଶ୍ୟକ ଲୋକ ସମ୍ପର୍କ ଅଭାବରେ ତା' ବି ସମ୍ଭବପର ହୋଇନାହିଁ । ତାର ପାଠକ ନାହାନ୍ତି, ଦର୍ଶକ ନାହାନ୍ତି, ଅନାଲୋଚିତ ସେ । ତାକୁ ଆବିଷ୍କାର କରିବା ପାଇଁ କାହାରି ଆଗ୍ରହ ନାହିଁ । ପ୍ରତିଭାର ଏହି ଅଲୋଡ଼ା

ଅପଚରା ହେବାର କ୍ରୁର ସତ୍ୟକୁ ଉତ୍‌ଥାପନ କରି ଲେଖକ ନାଟକରେ ଅଭିଯୋଗ କରିଛନ୍ତି ଯେ ସମାଜ ପ୍ରତିଭାର ମଲା ପରେ ଯାଇ ପ୍ରତିଭା ପୂଜା କରେ । ସମୟ ଗଡ଼ି ଗଲାପରେ କ'ଣ ମୂଲ୍ୟଥାଏ ସେ ପ୍ରତିଭା ପୂଜାର । ସମାଜର ହିତ ପାଇଁ କୁହାଯାଉଥିବା କେଇଁପଦ କଥା ଅଶୁଣା ରହିଯାଏ । ଏହା ଏକ ସାମାଜିକ ସଙ୍କଟକୁ ଇଙ୍ଗିତ କରେ ।

ଜଣେ କବି ଭାବରେ ହେମଚନ୍ଦ୍ର 'ଶ୍ରବଣ କୁମାର', 'ଶକ୍ତିବିଦ୍ଧ ରାମ', 'ବ୍ରହ୍ମା ବି ବ୍ରହ୍ମଙ୍କୁ ଚିହ୍ନିଲେ ନାହିଁ', 'ଶବରୀ ସନ୍ଦେଶ', ଆଦି ଲେଖିଛନ୍ତି । 'ପ୍ରଣୟ ପ୍ରକାଶ' ଓ 'ପରୀକ୍ଷିତ' ୧୯୪୦-୫୦ ଦଶକରେ ଲେଖା । ଅନ୍ୟଗୁଡ଼ିକ ୧୯୭୦ ଦଶକରେ ଲେଖା । ପୌରାଣିକ ବିଷୟବସ୍ତୁର ଆଧାରରେ ଲିଖିତ ଏଗୁଡ଼ିକୁ କାବ୍ୟ ବା କବିତା ନ କହି କବି 'ଗୀତିଗାଥା' ଶ୍ରେଣୀରେ ରଖିଛନ୍ତି । 'ଗୀତିଗାଥା' ୨୦୦୮ରେ କଟକର ଓଡିଶା ବୁକ ଏଂପୋରିଅମରୁ ପ୍ରକାଶିତ। ପ୍ରତ୍ୟେକଟି ଲେଖାର ପ୍ରଚ୍ଛନ୍ଦରେ ଗୋଟାଏ ଗୋଟାଏ ଲମ୍ବା କାହାଣୀ ।

ସଂଚାର ବା ସ୍ଥାନୀୟ ଭାଷାରେ ଯାହାକୁ 'ଗାହାକ-ବାହାକ' ବୋଲି କୁହାଯାଏ, ପଶ୍ଚିମ ଓଡ଼ିଶା ଓ ଓଡ଼ିଆଭାଷୀ ଛତିଶଗଡ଼ ଅଂଚଳରର ଏକ ପରିଚିତ ଲୋକକଳା । ଜଣେ ବାହାକ (ମୃଦଙ୍ଗ ବାଦ୍ୟକାର) ଏବଂ ଦୁଇଜଣ ପାଳିଆଙ୍କୁ ନେଇ ଗଠିତ ହୁଏ ସଂଚାର ଦଳ । ମୃଦଙ୍ଗ ଏବଂ ଝାଞ୍ଜ ଏହାର ମୁଖ୍ୟ ବାଦ୍ୟଯନ୍ତ୍ର । ଚମ୍ପୁ, ଚଉତିଶା, ଓଡ଼ିଶୀ, ସମ୍ବଲପୁରୀ ଆଦି ବିଭିନ୍ନ ଗୀତ ଓ ନୃତ୍ୟ ମାଧ୍ୟମରେ ବିଭିନ୍ନ ପୁରାଣ ଆଖ୍ୟାନକୁ ସଂଚାର ଦଳ ପରିବେଷଣ କରନ୍ତି, ଲୋକପ୍ରିୟ କରାନ୍ତି, ସାଙ୍ଗରେ ଲୋକଶିକ୍ଷା ଦିଅନ୍ତି । ଭାଷା ଓଡ଼ିଆ ଯେତିକି, ଶ୍ରୋତାମଣ୍ଡଳୀ ବୁଝିପାରିବେ ବୋଲି ସମ୍ବଲପୁରୀ ମଧ୍ୟ ସେତିକି । ସଂଚାରରେ ଏକ ବଡ଼ ବିଶେଷତ୍ୱ ହେଲା ଯେ କଳାକାର ଏଠି ସ୍ୱୟଂ ଗାଏ, ନାଚେ, ବଜାଏ ଏବଂ ବ୍ୟାଖ୍ୟାନ ଦିଏ । ଘଂଟା ଘଂଟା ଧରି ଚାଲେ ଏହି କାର୍ଯ୍ୟକ୍ରମ । ମାଟି ହାଣିବା, ଗଛ ଫାଡ଼ିବା ଠାରୁ ଏ କମ୍ ପରିଶ୍ରମ କାମ ନୁହେଁ । ତେଣୁ ସାଧାରଣତଃ ପରିଶ୍ରମୀ 'ତଳ' ଜାତିର ଲୋକ ଏ କଳାର କଳାକାର। ଉଚ୍ଚ ଜାତିର ଲୋକ କ୍ୱଚିତ ଦେଖାଯାଆନ୍ତି ସଂଚାର କଳାକାର ଭାବରେ । ଲୋକ ପରିଚିତି ସତ୍ୱେ ଅନ୍ୟ ଲୋକକଳା ପରି ଏହା ମଧ୍ୟ ରାଜ ସମ୍ମାନର ବିଶେଷ ଭାଗୀ ହୋଇ ପାରିନାହିଁ । ଶିକ୍ଷିତ ଏବଂ ଉଚ୍ଚ ଜାତିର ଲୋକ ଏଥିରେ ସାମିଲ ନ ହେବା ବି ତା' ପଛରେ ଏକ କାରଣ । ତା' ସତ୍ୱେ, ରାମାୟଣ, ମହାଭାରତ, ବେଦ, ଉପନିଷଦ ଭଳି ମହାନ ମହାନ ସୃଷ୍ଟି ଏବଂ ଚମ୍ପୁ, ଓଡ଼ିଶୀ ଆଦି ଉଚ୍ଚାଙ୍ଗ କଳା ପରମ୍ପରାକୁ ଲୋକ ସ୍ତରରେ ପହଂଚାଇବାରେ ସଂଚାର କଳାର ଯେଉଁ ଯୋଗଦାନ, ତାହା ଏକ ସ୍ୱତନ୍ତ୍ର ଗବେଷଣାର ବିଷୟ ହେବ । ଠିକ୍ ସେହିଭଳି ବିନା ଅପରାଧବୋଧରେ ସମ୍ବଲପୁରୀ ଗୀତ ଗାଇବା, ସମ୍ବଲପୁରୀରେ ବକ୍ତବ୍ୟ ଦେବା

ମାଧ୍ୟମରେ ସଂଚାର କଳାକାରମାନେ ସମ୍ବଲପୁରୀକୁ ସ୍ୱାଭିମାନ ଦେଇଛନ୍ତି, ସ୍ଥାନୀୟ ଲୋକଭାଷାକୁ ଲେଖାର ଭାଷା, କଳାର ଭାଷା ହେବାରେ ସାହାଯ୍ୟ କରିଛନ୍ତି ।

ହେମଚନ୍ଦ୍ରଙ୍କର ସଂଚାର କଳାକାରମାନଙ୍କ ସହ ପରିଚୟ ହେଲା । ସେ ସଂଚାର ପାଇଁ ଭଜନ, ଗୀତିଗାଥାମାନ ଲେଖିଲେ । ତାଙ୍କ ରଚନା ଲୋକପ୍ରିୟ ହେଲା । କଳାକାରମାନଙ୍କର ସୁନାମ ବଢ଼ିଲା । ଆଜି ପଶ୍ଚିମ ଓଡ଼ିଶାର ଅନେକ ସଂଚାରକଳାକାର ହେମଚନ୍ଦ୍ରଙ୍କ ରଚନାରୁ ନିଶ୍ଚୟ କିଛି ନା କିଛି ପରିବେଷଣ କରନ୍ତି । ତାଙ୍କର ନିକଟତର ହୋଇଥିବା କଳାକାରମାନଙ୍କ ମଧ୍ୟରେ ଗଣ୍ଡିଆପାଲିର ଗଜରାଜ ପଶାୟତ ଏବଂ ତାଙ୍କ ଶିଷ୍ୟ ବାସୁଦେବ ପଶାୟତ, ଚିଚିଣ୍ଡାର ଅମୃତ ବାହକ ଅନ୍ୟତମ । ହେମଚନ୍ଦ୍ରଙ୍କର ରଚନା ସଂଚାରରେ ଲୋକପ୍ରିୟତା ପାଇବା ପଛରେ ଗୋଟାଏ ବଡ଼ କାରଣ ହେଲା ଯେ ତାହା ସହଜବୋଧ୍ୟ ପଶ୍ଚିମ ଓଡ଼ିଶାର ଗାଁ ଗଣ୍ଡାର ପରିବେଶରୁ ସୃଷ୍ଟ ପ୍ରତ୍ୟେକ ରଚନା, ଯଦିଓ ସେଗୁଡ଼ିକର ଆଧାର ହେଲା କୌଣସି ନା କୌଣସି ପୌରାଣିକ ଉପାଖ୍ୟାନ । ପୁଣି ମାଟି ସାଙ୍ଗରେ ସମ୍ପର୍କିତ ହୋଇ ପ୍ରତ୍ୟେକ କୃତି ଆକାଶକୁ ଛୁଇଁବାର ଉଦ୍ୟମ କରନ୍ତି, ଏକ ଆଦର୍ଶ ସମାଜ ଗଢ଼ିବାର ପରିକଳ୍ପନା କରନ୍ତି, କିଛି ସଂସ୍କାରର ବାର୍ତ୍ତା ଦିଅନ୍ତି । ତେଣୁ କବିଙ୍କର ଦେଶାତ୍ମବୋଧକ ଗୀତ 'ମୁଇଁ ଭାରତ ଦେଶର ପିଲା', 'ଦେଶ ଜାତିର ଗୁଟେ(ଗୋଟାଏ) ବାପ କରମଚାନ୍ଦ ଗାନ୍ଧି' ବୋଲି ସୂଚନା ଦିଏ; 'ଦେଶ ଯାକର ସଭେ ଗୁଟେ ଡୁରେ ହେଇଛୁଁ ବାନ୍ଧି' ବୋଲି ଦେଶର ଐକବଦ୍ଧତାକୁ ଦର୍ଶାଏ ଏବଂ ତା' ସାଙ୍ଗରେ 'ଦିନ ଆଏବା ଫେର ଫଳବା ଆମର ଦେଶେ ସୁନା, ଦୁଖେଁ ମରବାର ଭୁଖେଁ ମରବାର କଥା ହେବା ଜୁନ୍‌ହାଁ' ବୋଲି ଦୃଢ଼ତାର ସହ ଆଶା ପ୍ରକାଶ କରେ ।

ବାସ୍ତବିକତା ସହ ଓତଃପ୍ରୋତଃ ହେଇ ଆଦର୍ଶର ବିକଳ୍ପ ଖୋଜିବାର ଯେଉଁ ସ୍ୱଭାବ ସୁଲଭ କବିପ୍ରାଣ, ତାହା ହେମଚନ୍ଦ୍ରଙ୍କର ପ୍ରତ୍ୟେକ କାବ୍ୟ କବିତାରେ ସୁସ୍ପଷ୍ଟ ହୋଇ ଦେଖାଯାଏ ।

ବଡ଼ ପରିବାର, ଛଅ ଛଅଟା ଛୁଆ; ଚିର ମରୁଡ଼ିଗ୍ରସ୍ତ, ପଦମପୁର ଅଂଚଳର ଚାଷୀ; ଏତେ ସବୁ ଅଭାବ ଅନଟନ, ମାନସିକ ଦୁଃଶ୍ଚିନ୍ତାରେ ରହି ସୁଦ୍ଧା ତାଙ୍କ କାବ୍ୟ କବିତାରେ ନିରାଶା ନାହିଁ । ପାଠକଙ୍କୁ କବି ନିରାଶା ଭିତରକୁ କଦାଚିତ୍ ଠେଲି ଦେଇ ନ ପାରନ୍ତି । ସମ୍ବଲପୁରୀ 'ସୁରୁ ସୁରୁ କୁରିଆ ଉପରେ ଦୁରା ଦୁରା ପୁଆଲ' ଗୀତରେ ଗାଁର କୁଡ଼ିଆ ଘରର ବର୍ଣ୍ଣନା କରିବାକୁ ଯାଇ 'ରନ୍ଧାଘର' ଏବଂ 'ଗୁହାଳ' ଏକା ସ୍ଥିତିରେ ଥିବାର କରୁଣତାକୁ ଦେଖିଛନ୍ତି । କେଉଁଠି 'କାନ୍ଥି' 'ଧସକି' ଯାଇ 'ପାଟି' 'ମସକି' ନେବାର ଦୁସ୍ଥିତିକୁ ଦେଖିଛନ୍ତି, ସାଙ୍ଗରେ କୁଡ଼ିଆର ଦାରିଦ୍ର୍ୟ ଓ ଦୁଃସ୍ଥିତି ର କାରଣ ରୂପେ 'ଗାଁ ବାହାରେ ଫେର ମୁଁଡ଼ ଟେକିଛେ ବଡ଼େ ମହଲା' କୁ ଦେଖିଛନ୍ତି, ସେଇ ମହଲାରେ ଗାଁର ଧନସମ୍ପତି

ସବୁ 'ସାଂଖଲି' ହୋଇ ରହିବାର ଦେଖିଛନ୍ତି । ସାଙ୍ଗରେ ପ୍ରଶ୍ନ ପଚାରିଛନ୍ତି - 'କେତେ ଦିନ ଇ କୁଡ଼ିଆ' ଆଉ 'ମହଲା' ଭିତରେ 'ଜବାବ – ସୁଆଲ' (ଲଢ଼େଇ) ଚାଲିବ ? ସମତାର ଅନ୍ୱେଷଣରେ କବି ତାଙ୍କର ଅନ୍ୟ ଏକ ଗୀତରେ ପ୍ରଜାକୁ ଜଣେଇ ଦେଇଛନ୍ତି, 'ପରଜାରେ ତୁଇଁ ରଜା ହେଲୁ ନ ପରେ ନୁହେଁ ଜାନୁ ତାଏଲ' ।

ମାଟି ଓ ଆକାଶ, ବାସ୍ତବତା ଓ କଳ୍ପନା ମଧ୍ୟରେ ସମ୍ପର୍କ ଯୋଡୁଥିବା ତାଙ୍କର ସମ୍ବଲପୁରୀ ଓ ଓଡ଼ିଆ ଗୀତଗୁଡ଼ିକ ସଂଚାର କଳାକୁ ସମ୍ମାନର କଳା ହେବାରେ ସାହାଯ୍ୟ କରିଛି । ସାଙ୍ଗରେ କବିଙ୍କୁ ଲୋକ ପରିଚିତି ଦେଇଛି, ନୂଆଁ ନୂଆଁ କିଛି ନା କିଛି ସର୍ଜନା କରିବାକୁ ଅହରହ ପ୍ରେରଣା ଦେଇଛି । କୀର୍ତନ ଶ୍ରୋତା, ସଂଚାର ଦର୍ଶକ ମଣ୍ଡଳୀର ପ୍ରତିକ୍ରିୟା କବିଙ୍କୁ ଆହୁରି ଲେଖିବାକୁ ପ୍ରୋତ୍ସାହିତ କଲା । ଅନ୍ୟଥା ୧୯୮୫ ମସିହା ଯାଏ, ମହାରଥୀ କର୍ଣ୍ଣକୁ ବାଦ ଦେଲେ, ଯାହା ୧୯୫୫-୫୬ରେ ପ୍ରକାଶିତ, ତାଙ୍କର କୌଣସି ପୁସ୍ତକ ପ୍ରକାଶିତ ହୋଇନାହିଁ । କୌଣସି ସରକାରୀ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ସାହିତ୍ୟିକ ସମ୍ମାନ ମିଳିନି, ପଦ-ପଦବୀ ମିଳିନି । ରାଜ୍ୟସ୍ତରର କୌଣସି ସାହିତ୍ୟ ସଭାକୁ ତାଙ୍କର ପ୍ରବେଶ ସୁଦ୍ଧା ନାହିଁ । ୧୯୯୦ ପର୍ଯ୍ୟନ୍ତ ସମ୍ବଲପୁରର ସାହିତ୍ୟିକ ଗତିବିଧି ସାଙ୍ଗରେ ବି ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ନାହିଁ । ସେ ବି ତାଂକ ପାଇଁ ଦୂର । ନିଜର ତଥା ଆଖପାଖର କେତେଖଣ୍ଡି ଗାଁ, ପରିବାର, ଚାଷଜମି, ବନ୍ଧୁବାନ୍ଧବ ଭିତରେ ସୀମିତ ତାଙ୍କର ଦୁନିଆଁ । ତା' ସତ୍ତ୍ୱେ ତାଙ୍କର ଲେଖା ନିୟମିତ ଢ଼ଙ୍ଗରେ ଚାଲିଛି, ତାଙ୍କୁ ଲୋକସ୍ୱୀକୃତି ମିଳିଛି ସଂଚାର କଳାକାର, କୀର୍ତନ କଳାକାର, ଦଣ୍ଡ କଳାକାର, ଗ୍ରାମ୍ୟ କଳାକାର ମାନଙ୍କଠାରୁ । ଅପଚରୋ ନୁହନ୍ତି ସେ । ସର୍ଜନାକାର ସେ, ଦୁସ୍ଥ ହୋଇ ନ ପାରନ୍ତି । ନିଜର ସର୍ଜନା ବଳରେ କବି ସେହି ଲୋକକଳାଗୁଡ଼ିକୁ ନୂଆଁ ଦୃଷ୍ଟିକୋଣ ଦେଇଛନ୍ତି, ସଭ୍ୟ ସମାଜରେ ସମ୍ମାନ ଓ ସଂବୃଦ୍ଧି ଦେବାକୁ ପ୍ରୟାସ କରିଛନ୍ତି । ପ୍ରତିବଦଳରେ ସେହି ସମ୍ମାନ ଓ ବଂଚିରହିବାର ତଥା ନିରନ୍ତର ସର୍ଜନା କରିବାର କଳା ତାଙ୍କୁ ମିଳିଛି ସେହ ଲୋକ ସଂସ୍କୃତିରୁ । ଏହି ଅନୁପୂରକତାରୁ ଜନ୍ମ ନେଇଛି 'ସତର ସତୀ ବୃନ୍ଦାବତୀ' (୧୯୯୨), 'ନୁନୀ' (୧୯୯୪), 'ଶବରୀ ସନ୍ଦେଶ' (୧୯୭୫), ସଂସ୍କାରମୂଳକ ଦଣ୍ଡନାଟିକା 'କୃଷ୍ଣକେଳି' (୧୯୭୩) ଆଦି ।

ଗର୍ଭଣାଠାରୁ ୧୨-୧୪ କିଲୋମିଟର ଦୂରେ ଏକ ଆଦିବାସୀ ବହୁଳ ଛୋଟ ଗାଁ ବୁରୋମାଲ । ହେମଚନ୍ଦ୍ରଙ୍କର ଦୁଇଜଣ କାକା ଓ ସେମାନଙ୍କ ପରିବାର ରହନ୍ତି ସେଠି । ସେହି ସୂତ୍ରରେ ବୁରୋମାଲ ବି ତାଙ୍କ ଗାଁ । ଗାଁର ଆଦିବାସୀ ଓ ଅଣ-ଆଦିବାସୀ ପିଲା ମିଶି ଦଣ୍ଡ ନୃତ୍ୟ କରନ୍ତି । ଦଣ୍ଡନୃତ୍ୟ ଏକ ପରିଚିତ ଲୋକକଳା, ଯେଉଁଥିରେ କୃଷ୍ଣପ୍ରେମର ବିସ୍ତୃତ ଚର୍ଚ୍ଚା ରହିଥାଏ । ସଭ୍ୟ ସମାଜରେ ତାର ବିଶେଷ ସମ୍ମାନ ନଥାଏ । ଅନ୍ୟ ସବୁ ଲୋକକଳା ପରି । ଗାଁ (ବୁରୋମାଲ) ଲୋକଙ୍କ ଆଗ୍ରହରେ ସେ ୧୯୭୩ ମସିହାରେ

ସଂସ୍କାରମୂଳକ ଦଣ୍ଡନୃତ୍ୟ 'କୃଷ୍ଣକେଳି' ଲେଖିଲେ ଓ ନିର୍ଦ୍ଦେଶନା ଦେଲେ । ଡଁଡ଼( ଦଂଡନାଚ)ର ଢୋଲ କେମିତି ବାଜିବ, ରାଧା, ଦୂତି ଆଦି କଳାକାର କେଉଁଠାଣିରେ ନାଚିବେ, ସବୁ ତାଂକ ନିର୍ଦ୍ଦେଶନାର ଅଂଶ। ତାଙ୍କ ଲିଖିତ କୃଷ୍ଣକେଳିର ବୈଶିଷ୍ଟ୍ୟ ହେଲା ଯେ ଏଥିରେ ଉଭୟ ସମ୍ବଲପୁରୀ ଓ ଓଡ଼ିଆ ମିଳିମିଶି ରହିଛି । ଚମ୍ପୁ, ଓଡ଼ିଶୀ ଅଛି, ସାଙ୍ଗରେ ଡ଼ାଲଖାଇ, ରସରକେଲି ମଧ୍ୟ ଅଛି । କଳାକାର ହେଲେ ଗାଁର ଆଦିବାସୀ ଓ ଅଣ-ଆଦିବାସୀ ପିଲା । ପ୍ରମୁଖ ଭୂମିକା ନିର୍ବାହ କରନ୍ତି ହେମଚନ୍ଦ୍ରଙ୍କର କାକାପୁଅ ଭାଇମାନେ, ଗୁରୁ ଚରଣ, ଧ୍ରୁବ ଚରଣ, ଆଦି । ରାଧାକୃଷ୍ଣ ପ୍ରେମର ବ୍ୟାଖ୍ୟାନ ଏଥିରେ ଯେଉଁଭଳି ଭାବେ ରୂପାୟିତ ହୋଇଛି, ତହିଁରେ ରାଧା ଏବଂ ଗୋପୀମାନଙ୍କୁ ବାଦ ଦେଲେ ଆଉମାନେ ବି ରଙ୍ଗାୟିତ, ଫଳରେ ରାଧାଙ୍କ ପ୍ରଥମ ପତି 'ଚନ୍ଦ୍ରସେଣା' ଜଣେ ହିଞ୍ଜିଡ଼ା, ମାଇଚିଆ ନୁହେଁ। ନିଜ ପତ୍ନୀଙ୍କୁ ଯୌନ ସୁଖ ଦେଇପାରୁ ନଥିବା ଜଣେ 'ଅସଫଳ' ବିଦ୍ରୁପଯୋଗ୍ୟ ବ୍ୟକ୍ତି ନୁହେଁ, ବରଂ ସେ ମଧ୍ୟ ରାଧା ପରି ସେହି ଅନନ୍ତ ପ୍ରେମର ଜଣେ ପିପାସୁ । କୃଷ୍ଣ ପ୍ରେମରେ ଯେମିତି ସମଗ୍ର ଗୋପପୁର ସମାହିତ, ଠିକ ସେମିତି 'କୃଷ୍ଣକେଳି'ରେ ଭାଷା, ଭାବ, ସମ୍ବଲପୁରୀ, ଓଡ଼ିଆ, ଚମ୍ପୁ, ଓଡ଼ିଶୀ ଡ଼ାଲଖାଇ, ରସରକେଲି, ଆଦିବାସୀ, ଅଣ-ଆଦିବାସୀ, ସବୁ ମିଶି ଯାଇଛନ୍ତି । ହେମଚନ୍ଦ୍ରଙ୍କର 'କୃଷ୍ଣକେଳି' ଦର୍ଶକଙ୍କୁ ସମନ୍ୱୟର ପାଠ ପଢ଼ାଏ । ସାଙ୍ଗରେ ଅନନ୍ତ କୃଷ୍ଣପ୍ରେମରେ ଏକାକାର କରାଇବାର ବି ସାମର୍ଥ୍ୟ ରଖେ । ଭବିଷ୍ୟତରେ କେବେ ପ୍ରକାଶିତ ହୋଇପାରେ ଆଶା କରି ଦଣ୍ଡନୃତ୍ୟ ପରମ୍ପରା ସମ୍ବନ୍ଧରେ ପାଣ୍ଡୁଲିପିର ଆଦ୍ୟରେ କବି ଏକ ଲମ୍ବା ମୁଖବନ୍ଧ ଲେଖିଛନ୍ତି । ତହିଁରେ ଏହି ଲୋକକଳା ଏବଂ ତାକୁ ବଂଚେଇ ରଖିଥିବା ଗାଁର ନିରକ୍ଷର ଲୋକ ସମାଜକୁ ସମ୍ମାନ ଓ ସମାଜିକ ସ୍ୱୀକୃତି ଦେବାକୁ କବି 'ସଭ୍ୟ' ସମାଜକୁ ବିନୀତ ନିବେଦନ କରିଛନ୍ତି । ଏହା 'ହେମଚଂଦ୍ର ଚୟନ'ରେ(୨୦୧୨) ସ୍ଥାନିତ।

ସମ୍ବଲପୁରୀ ହେଉଛି ଲେଖକଙ୍କର ମାତୃଭାଷା, ଆରମ୍ଭରୁ ସେ ସମ୍ବଲପୁରୀରେ ଲେଖି ଆସିଛନ୍ତି । ସମ୍ମାନ ଓ ଉପାଧିର କାମନା ବଦଳରେ ମନଖୋଲି ଅଭିବ୍ୟକ୍ତିଙ୍କୁ ପ୍ରକାଶ କରି ପାରିବାର ସନ୍ତୁଷ୍ଟୀ, ତାଙ୍କୁ ସମ୍ବଲପୁରୀରେ ଲେଖିବା ପାଇଁ ନିରନ୍ତର ଅନୁପ୍ରେରିତ କରିଛି । ପ୍ରକାଶନ ନିମିତ୍ତ ସୁଯୋଗର ଅଭାବ ସେଥିପାଇଁ ବାଧକ ହୋଇନାହିଁ । ସାଙ୍ଗରେ ଓଡ଼ିଆରେ ବି ଲେଖିଛନ୍ତି । ଓଡ଼ିଆ ତାଙ୍କ ପାଠବହିର ଭାଷା, ସମଗ୍ର ଓଡିଶା ଆଗରେ ନିଜ ବକ୍ତବ୍ୟକୁ ଜଣାଇବାର ମାଧ୍ୟମ । ଯାହା ଓଡ଼ିଆରେ ଲେଖିଛନ୍ତି, ତାକୁ ମଧ୍ୟ ଆଖପାଖର ଶ୍ରୋତା ପାଖରେ ବ୍ୟକ୍ତ କଲାବେଳେ ସମ୍ବଲପୁରୀର ସହାୟତା ନେଇଛନ୍ତି । ତାଙ୍କ ସର୍ଜନାର ଗୁଣଗ୍ରାହୀଙ୍କ ମଧ୍ୟରେ 'ପାଠକ'ଙ୍କ ସଂଖ୍ୟା କମ୍, 'ଶ୍ରୋତା'ର ସଂଖ୍ୟା ଅଧିକ । ଯେଉଁଠି ସେ ନିଜେ ଶ୍ରୋତା ପାଖରେ ପହଂଚିବାରେ ଅସମର୍ଥ ହୋଇଛନ୍ତି, ସେଠି

କୀର୍ତ୍ତନ, ସଂଚାର କଳାକାର ଆଦି ଗ୍ରାମ୍ୟ କଳାକାରମାନେ, କବିଙ୍କ ତରଫରୁ ସମ୍ବଲପୁରୀରେ ବ୍ୟାଖ୍ୟାନ କରିଛନ୍ତି । ଏହି ଦୃଷ୍ଟିରୁ ହେମଚନ୍ଦ୍ର ଆଗ ସମ୍ବଲପୁରୀ ଲେଖିଲେ, ନା ଓଡ଼ିଆରେ, ତାହା ଧାର୍ଯ୍ୟ କରିବା କାଠିକର । ବରଂ କହିଲେ ଭଲ ହେବ ଯେ, ସେ ଏକା ସମୟରେ ଉଭୟ ଓଡ଼ିଆ ଓ ସମ୍ବଲପୁରୀରେ ଲେଖିଛନ୍ତି। ଆରମ୍ଭରେ ତାଙ୍କ ସମ୍ବଲପୁରୀ ରଚନା ଗୀତ, ଭଜନ ଯାଏଁ ସୀମିତ, କାରଣ ସେତେବେଳେ ସମ୍ବଲପୁରୀରେ ନାଟକ, କାବ୍ୟ ଆଦି ବଡ଼ ଲେଖାର ପ୍ରକାଶନ ପାଇଁ 'ଫୋରମ'ର ଅଭାବ ରହିଥିଲା ।

ବାପା ଡୋଳାମଣି ସେତେବେଳେ(୧୯୪୦ ଦଶକର ଆରଂଭ) ଧମା ସ୍କୁଲରେ ଶିକ୍ଷକତା କରୁଥାନ୍ତି। ବାପାଂକ ସାଂଗରେ ପାଦରେ ଗର୍ଭଣାରୁ ଧମା ଯାଉଥାନ୍ତି ବାଳକ ହେମଚଂଦ୍ର । ଫେରିଲା ପରେ ସେହି ଅନୁଭୂତିକୁ ନେଇ ଲେଖିଲେ ପ୍ରଥମ ଗୀତ 'ହୁମା ପଥେ'। ଏହା ତାଂକ ପ୍ରଥମ ରଚନା। ତେଣିକି ମେଟ୍ରିକ ପଢା (୧୯୪୪) ଉତାରୁ ନିୟମିତ ଲେଖା ଚାଲିଲା। ଉଭୟ ସଂବଲପୁରୀ ଓ ଓଡିଆରେ।

ଏହି ପରିପ୍ରେକ୍ଷୀରେ ହେମଚନ୍ଦ୍ରଙ୍କର 'ଶବରୀ ସଂନ୍ଦେଶ' (୧୯୭୫) ର ବିଶେଷ ପ୍ରାସଙ୍ଗିକତା ରହିଛି । ୧୯୭୫ ମସିହାରେ ଆନ୍ତର୍ଜାତିକ ସ୍ତରରେ 'ମହିଳା ବର୍ଷ' ପାଳିତ ହେଉଥାଏ । ତାକୁ ଲକ୍ଷ୍ୟରେ ରଖି କବି ଓଡ଼ିଆରେ 'ଶବରୀ ସଂନ୍ଦେଶ' ଲେଖିଲେ । ଶବରୀ ହେଲା ରାମାୟଣ ଯୁଗର କିମ୍ବଦନ୍ତୀ ପ୍ରସୂତ ଆଦିବାସୀ ମହିଳା । ଶିକ୍ଷା ଓ ସଭ୍ୟତାର ଦୂରରେ ସେ, ଭକ୍ତି ବଳରେ ପୁରୁଷୋତ୍ତମ ରାମଙ୍କୁ ସ୍ୱଗୃହରେ ଅତିଥି ରୂପେ ପାଇଲା । ଭକ୍ତି ବିଭୋରା ଶବରୀର ଅଇଁଠା ଖାଇବାକୁ ସୁଦ୍ଧା ରାମ ମନା କଲେ ନାହିଁ । ପ୍ରେମ ଓ ଭକ୍ତି ବଳରେ ଅସାଧ ସାଧ କରିବାର କଳା ଶବରୀ ସମାଜକୁ ଶିଖାଇ ଦେଲା । ପୂଜା, ଆରାଧନା, ଜପ, ତପ ଆଦି ତୁଳନାରେ ସ୍ନେହ ଓ ପ୍ରେମର ମହନୀୟତାକୁ ଦର୍ଶାଏ ଶବରୀ ଉପାଖ୍ୟାନ । ସେହି ମହନୀୟତାକୁ କବି 'ଶବରୀ ସଂନ୍ଦେଶ' ରେ ଦର୍ଶାଇଛନ୍ତି । କାବ୍ୟଟିରେ ୨୫ଟି ଛାନ୍ଦ ବା ସର୍ଗ । ସର୍ଗଗୁଡ଼ିକ 'ମଙ୍ଗଳ କାମୋଦୀ', 'କଳହଂସ କେଦାର', 'ବଙ୍ଗଳାଶ୍ରୀ', 'ବସନ୍ତ', 'ରାମକେରୀ', 'କେଦାର କାମୋଦୀ', 'କୁମ୍ଭ କାମୋଦୀ', 'ସଙ୍କରରା ଭରଣ', ନଳିନୀ ଗୌଡ଼ା, 'କଲ୍ୟାଣ ଆହାରୀ', 'ନଟବାଣୀ' ଇତ୍ୟାଦି ବିଭିନ୍ନ ରାଗରେ ଲିଖିତ । ତା'ଠାରୁ ବଡ଼ କଥା ପ୍ରତ୍ୟେକ ସର୍ଗର ପ୍ରତିଟି ପଦର ଆରମ୍ଭ ଓ ଶେଷ ଅକ୍ଷର ତାଳବ୍ୟ 'ଶ'। କବିଙ୍କର ଏତେଗୁଡ଼ାଏ ରାଗକୁ ବ୍ୟବହାର କରିବାର ପାରଙ୍ଗମତା ଏବଂ ଓଡ଼ିଆ ଭାଷା ଓ ଶବ୍ଦ ଉପରେ ଗଭୀର ଜ୍ଞାନ ଶ୍ରୋତାକୁ ଆଶ୍ଚର୍ଯ୍ୟ ଚକିତ କରେ । ପୁଣି ଶବ୍ଦର ସନ୍ଧାନବେଳେ କବିଙ୍କର ଭାବ ଝୁଂଟି ପଡ଼ିନି । ତେଣୁ, ଶବରୀର 'ସଂନ୍ଦେଶ' ରେ କେବଳ ଶବ୍ଦର କସରତ ରହିଛି ବୋଲି କହିହେବ ନାହିଁ; ସାଙ୍ଗରେ ଭାବର ଗଭୀରତା ବି ରହିଛି । ପୁଣି, ସାହିତ୍ୟ ସାଧନା ବି ଏକ କସରତ,

ବିଲ ଚଷିବା ଭଳି ଏକ କର୍ଷଣ, ଯାହାକୁ ଆୟତ ନକଲେ ହୁଏନା। ରୀତିଯୁଗୀୟ ପରମ୍ପରାରେ ଲିଖିତ ଏହି କାବ୍ୟଟିକୁ ସଂଚାର କଳାକାର ଗଜରାଜ ପସାୟତ ପ୍ରଥମେ ପରିବେଷଣ କରି ଦର୍ଶକ ଗହଣରେ ବିଶେଷ ଖ୍ୟାତି ଅର୍ଜନ କଲେ ।

ଓଡ଼ିଆ ସାହିତ୍ୟର ଏହିଭଳି ଏକ ଅନନ୍ୟ କୃତି ପାଇଁ ପ୍ରକାଶକ ମିଳିଲେ ନାହିଁ। ନିଜ ସ୍ତରରେ କବି ପ୍ରକାଶକ ପାଇଁ ଚେଷ୍ଟା କରିଥିବେ ନିଶ୍ଚୟ । ମାତ୍ର ପ୍ରକାଶକ ମହଲରେ ତାଙ୍କର କୌଣସି ପରିଚୟ ନଥିବାରୁ ସେଥିରେ ସଫଳତା ମିଳିନି । ଶେଷରେ କାବ୍ୟ ଲେଖାର ଦଶବର୍ଷ ପରେ ତାଙ୍କର ବନ୍ଧୁ (ସମ୍ବନ୍ଧୀ) ଓ ପଣ୍ଡିଚେରୀର ସାଧକ ମଧୁସୂଦନ ମିଶ୍ରଙ୍କର ଜଣେ ବନ୍ଧୁ ତାକୁ ପୁରୀ ବାଲୁଗାଁରୁ ପ୍ରକାଶିତ କଲେ । 'ପ୍ରକାଶକ' ଯେହେତୁ ପେଷାରେ ପ୍ରକାଶକ ନୁହନ୍ତି, ଏକ ଚଟି ବହି ଆକାରରେ 'ଶବରୀ ସନ୍ଦେଶ' ପ୍ରକାଶିତ ହେଲା, ଯେଉଁଥିରେ ପ୍ରକାଶନର ନାଁ, ପ୍ରକାଶନ କାଳ ଆଦିର ମଧ ଉଲ୍ଲେଖ ନାହିଁ । ଏମିତି ଏକ ପ୍ରକାଶନର ଓଡ଼ିଆ ସାହିତ୍ୟ ଜଗତରେ କୌଣସି ଚର୍ଚ୍ଚା ନ ହେବା ସ୍ୱାଭାବିକ। ନିଜ କୃତିର ପ୍ରଚାର, ପ୍ରସାର ନ ହେବାର ଏହି ଯେଉଁ ତିକ୍ତ ଅନୁଭୂତି ତାହା ତାଙ୍କୁ ନିଶ୍ଚିତ ରୂପେ କଷ୍ଟ ଦେଇଛି । ପରବର୍ତ୍ତୀ ସମୟରେ ଓଡ଼ିଆ ଲେଖାରୁ ତାଙ୍କର ବୀତସ୍ପୃହ ହେବା ପଛରେ ଏହା ଏକ ବଡ଼ କାରଣ । ଏହାର ପରିଣାମ ସ୍ୱରୂପ ୧୯୯୦ ଦଶକରେ ବିଶେଷ କରି ସମ୍ବଲପୁରୀରେ ହିଁ ସେ ଲେଖିଥିଲେ ।

୧୯୮୪-୮୬ ରେ ସମ୍ବଲପୁରୀରେ ତାଙ୍କର ବଡ଼ ରଚନା ହେଲା 'ରାମରାହା', ଯାହାକୁ ସମ୍ପୂର୍ଣ୍ଣ କରିବାକୁ କବି ପ୍ରାୟ ପାଂଚ ବର୍ଷ ସମୟ ନେଇଛନ୍ତି । 'ଶବରୀ ସନ୍ଦେଶ'ର ବର୍ଦ୍ଧିତ ରୂପ ଭାବରେ ଏଥିରେ ଭକ୍ତି ମାର୍ଗରେ ଭଗବାନଙ୍କୁ ପ୍ରାପ୍ତ କରିବା କଥା କବି କହିଛନ୍ତି । କଥାବସ୍ତୁ ହେଲା 'ରାମକଥା' । ମାତ୍ର ତାକୁ ବାଲ୍ମୀକି ରାମାୟଣ ବା ଅନ୍ୟ କେଉଁ ରାମାୟଣର ଅନୁବାଦ ବୋଲି କହିହେବନି । ନିଜ ପରିବେଶରେ ରାମକଥାକୁ ପ୍ରାସଙ୍ଗିକ କରିବା ନିମିତ୍ତ 'ରାମରାହା' ହେଲା ଏକ ସୃଜନାତ୍ମକ ପ୍ରୟାସ । ଅନ୍ୟ କୃତି ଗୁଡ଼ିକ ପରି 'ରାମରାହା' ଲେଖିବା ପଛରେ ମୁଖ୍ୟ ପ୍ରେରଣା ସ୍ରୋତ ହେଲେ ଗାଁର ଶ୍ରୋତାମଣ୍ଡଳୀ । ବିଭିନ୍ନ ଅବସରରେ ଏବଂ ପରେ ନିୟମିତ ଭାବରେ ଗାଁ ଭାଗବତ ଗୁଡ଼ି (ମନ୍ଦିର) ର ସନ୍ଧ୍ୟାରେ ପୁରାଣ ଆଲୋଚନା ହୁଏ । କବି ପୁରାଣ ବ୍ୟାଖ୍ୟାତା । ସରଳ, ତରଳ ଭାଷାରେ ସେ ରାମାୟଣର ବିଭିନ୍ନ ପ୍ରସଙ୍ଗକୁ ଗାଁ ଲୋକଙ୍କୁ ବୁଝାନ୍ତି । ସେଥିରେ ସାମ୍ପ୍ରତିକ ପରିସ୍ଥିତିରେ କାବ୍ୟଟିର ପ୍ରାସଙ୍ଗିକତା କଥା ରହିଥାଏ । ତେଣିକି ଏମିତି ହେଲା ଯେ ଦିନରେ କିଛି ଲେଖିବେ; ସନ୍ଧ୍ୟାରେ ତାର ପାଠ ଆଲୋଚନା ଓ ସମୀକ୍ଷାକୁ ଦୃଷ୍ଟିରେ ରଖି ରାତିରେ ଲେଖାର ପୁର୍ନଲିଖନ ହେବ, ନୋହିଲେ ନୂଆଁ ଲେଖା ହେବ । ଅନେକ ଦିନ ଧରି ଗୋଟାଏ ଗତାନୁଗତିକ ଢ଼ଙ୍ଗରେ ଏହା ଚାଲିଲା । ଏହି ପ୍ରକ୍ରିୟାରେ ତହିଁରେ

ସର୍ଜନା, ପଠନ, ଆଲୋଚନା, ମତାମତ, ସମୀକ୍ଷା, ପୁର୍ନଲିଖନ ଏବଂ ପୁର୍ନସର୍ଜନା ସବୁ ସାମିଲ ଥିଲା । ସଂଧ୍ୟାରେ ଅପେକ୍ଷାରତ ଶ୍ରୋତାମଣ୍ଡଳୀର ସାମାଜିକ ଚାପରେ ଲେଖା ଆଗକୁ ଆଗକୁ ବଢ଼ି ଚାଲିଲା । ନୂଆଁ କରି ପ୍ରତିଦିନ କିଛି ଲେଖା ନ ହେଲେ ଶ୍ରୋତା ନିରାଶ ହେବେ । କବି, ସର୍ଜନା ଓ ଶ୍ରୋତା ମଧ୍ୟରେ ଏ ଯେଉଁ ଅନୁପୂରତା ସୃଷ୍ଟି ହେଲା, ତାହା 'ରାମରାହା'ର କଳେବରକୁ ବୃଦ୍ଧି କଲା । ମା' କହେ, ଅନେକ ରାତିରେ ସେ (ବାପା) ଅଧରାତିରେ ଉଠି ଲେଖିବା ଆରମ୍ଭ କରିଦିଅନ୍ତି । ଅନେକ ଥର ଲେଖି ସାରି କାନ୍ଦନ୍ତି । କାରଣ ତାଙ୍କର ବିଶ୍ୱାସ ହୁଏ ନି ଯେ, ସେହି ପଦ ବା ସର୍ଗର ସେ ନିଜେ ଲେଖକ । କିଏ ଯେମିତି ହାତଧରି ତାଙ୍କୁ ଲେଖାଇ ଦେଇଛି । କୃତି ଓ ତାର ସୃଷ୍ଟି ଭିତରେ ବୁଡ଼ି ରହିବାର ସେହି ଅଭିନବ ଅନୁଭୂତି ଓ ସନ୍ତୁଷ୍ଟୀ ଯୋଗୁଁ ବିଜୁଳି ବତିର ମିଞ୍ଜି ମିଞ୍ଜି ଆଲୁଅ (ସେତେବେଳକୁ ଘରେ ବିଜୁଳି ସଂଯୋଗ ହୋଇସାରିଥିଲା) ଲେଖାରେ ଅସୁବିଧା ସୃଷ୍ଟି କରିନି । ଷାଠିଏ ବର୍ଷ ପୁରି ସାରିଥିଲାଣି ସେତେବେଳକୁ ତାଙ୍କୁ । ତଥାପି ଦଉଡ଼ି ଖଟରେ ଘଂଟା ଘଂଟା ବସି ଲେଖିବା କଷ୍ଟକର ହୋଇନି । ତା'ଠାରୁ ବଡ଼ କଥା, ସର୍ଜନା ପାଇଁ କବି କ୍ଷେତକାମରୁ ଅବ୍ୟାହତି ନେଇ ନାହାନ୍ତି । ସାମାଜିକ ସମ୍ବନ୍ଧକୁ ଏଡ଼ାଇ ନାହାନ୍ତି, ଲେଖିବା ପାଇଁ କିଛି ଅଧିକ ସୁଖସୁବିଧା ମାଗି ନାହାନ୍ତି ; ପାଇ ନାହାନ୍ତି । ୨୦୦୦ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ 'ରାମରାହା' ପାଇଁ ହେମଚନ୍ଦ୍ରଙ୍କୁ ସମ୍ମାନିତ କଲା; ୨୦୦୧ ମସିହାରେ 'ରାମରାହା'କୁ ଦୁଇଟି ଖଣ୍ଡରେ ପ୍ରକାଶିତ କଲା । ସେ ବାବଦରେ ତାଙ୍କୁ ଏକକାଳୀନ ୨୫,୦୦୦ ଟଙ୍କା 'ରୟାଲ୍ଟି' ଦେଲା । ବୋଧହୁଏ ଏହି ଟଙ୍କା ବାହାରେ ସେ କେବେ ନିଜର କୃତି ପାଇଁ 'ରୟାଲ୍ଟି' ପାଇନାହାନ୍ତି । ସମ୍ବଲପୁର ବିଶ୍ୱବିଦ୍ୟାଳୟସ୍ତରୀୟ ସମ୍ମାନକୁ ବାଦ ଦେଲେ ଆଉ କୌଣସି ସରକାରୀ ବା ଅର୍ଦ୍ଧ ସରକାରୀ ସଂସ୍ଥା କବିଙ୍କୁ ସମ୍ମାନୀତ କରିନାହାନ୍ତି । ତାଂକ ଦେହାନ୍ତ ପରେ(୨୦୧୦) ଓଡିଶା ସାହିତ୍ୟ ଏକାଡେମୀ ସମ୍ମାନୀତ କରିଛି। ବିଶ୍ୱବିଦ୍ୟାଳୟର ଏହି ସମ୍ମାନ ଓ ପ୍ରକାଶନ ପଛରେ କୁଳପତି ଧ୍ରୁବରାଜ ନାୟକଙ୍କର ବ୍ୟକ୍ତିଗତ ଉଦ୍ୟମ ରହିଥିଲା । ବ୍ୟକ୍ତଗତ ପରିଚୟ ନଥିବା ସତ୍ୱେ ପ୍ରଫେସର ନାୟକ ସମ୍ବଲପୁରୀ ସାହିତ୍ୟ ଓ ସଂସ୍କୃତିର ଉନ୍ନତି ପାଇଁ ଯେଉଁ କେତୋଟି ମହତ୍ୱପୂର୍ଣ୍ଣ ପଦକ୍ଷେପ ନେଇଥିଲେ, ତହିଁରେ 'ରାମରାହା'ର ପ୍ରକାଶନ ଅନ୍ୟତମ । ଓଡ଼ିଆ ଅଧ୍ୟାପକ ନିମାଇଁ ଚରଣ ପଣ୍ଡାଙ୍କର ମଧ୍ୟ ଏଥିରେ ପ୍ରତ୍ୟକ୍ଷ ସହଯୋଗ ରହିଥିଲା ।

୨୦୦ ମସିହା ଯାଏ 'ରାମରାହା' ଓ ତାର କବିଙ୍କୁ ସରକାରୀ ଅନୁଷ୍ଠାନିକ ସମ୍ମାନ ମିଳି ନଥିଲା ସତ, ମାତ୍ର ଲୋକସ୍ତରରେ, ଗାଁ ଗାଁ ରେ ଲୋକ ତାଙ୍କୁ ସମ୍ମାନୀତ କରିଥିଲେ, ପଦପଦବୀ ଦେଉଥିଲେ । 'କୋଶଳ ବାଲ୍ମୀକି' ଉପାଧି ତନ୍ମଧ୍ୟରେ ଅନ୍ୟତମ । ସେଭଳିଆ ଆଉ କେତୋଟି ଗ୍ରାମ୍ୟ ସ୍ତରର ସାହିତ୍ୟିକ ସଂସ୍ଥା ହେଲେ ; ମନୋହର ସାଂସ୍କୃତିକ

ସଂସଦ, ଭେଡ଼େନ (୧୯୯୭), ନିସାନ ସାହିତ୍ୟ ସଂସଦ, ସମ୍ବଲପୁର (୧୯୯୩), ସଂଗୀତ ସାହିତ୍ୟ ନାଟକ ଏକାଡ଼େମୀ ସମ୍ବଲପୁର (୧୯୯୪), ଢ଼େବ୍ରିଗଡ଼ କଳା ସାହିତ୍ୟ ସଂସଦ, ଭଟଲି (୧୯୯୫) କେଦାରନାଥ ସାହିତ୍ୟ ସଂସଦ, ଅମ୍ବାଭୋନା, ଅଭିମନ୍ୟୁ ସାହିତ୍ୟ ସଂସଦ, ଘେଁସ (୧୯୯୪), ଖଗେଶ୍ୱର ସାହିତ୍ୟ ସଂସଦ, ଚିଚିଣ୍ଡା (୧୯୯୬), ସଏଲତା ମହାସମ୍ମେଳନ, ଘେଁସ (୧୯୯୪), ବୋଡ଼ାସମ୍ବର ଭେଟଘାଟ, ପଦମପୁର (୧୯୯୮), ଅନୁଗୁଳ ଜିଲ୍ଲା ଲେଖକ ସଂଘ, ଅନୁଗୁଳ (୨୦୦୨) ପ୍ରଜ୍ଞାଭାରତୀ ସାହିତ୍ୟ-ସଂସ୍କୃତି ସଂସଦ, କେର୍ମେଲି (୨୦୦୩), ନୂଆଁଖାଇ ଭେଟଘାଟ, ଭୁବନେଶ୍ୱର (୨୦୦୨) ସୋସିଆଲ୍ କ୍ଲବ୍, ବରଗଡ଼, ବାସନ୍ତି, ବରପାଲି ମହାବିଦ୍ୟାଳୟ, ବରପାଲି, ଭରନି ସାହିତ୍ୟ ସଂସଦ, ସମ୍ବଲପୁର (୨୦୦୬), ପଡ଼ା ସାହିତ୍ୟ ସଂସଦ, ପଡ଼ା ବିଜେପୁର (୨୦୦୪) ।

'ରାମରାହା'କୁ ବାଦ ଦେଲେ ହେମଚନ୍ଦ୍ରଙ୍କ ଅନ୍ୟାନ୍ୟ ସମ୍ବଲପୁରୀ ରଚନା ଭିତରେ 'ସତର ସତି ବୃନ୍ଦାବତୀ' (୧୯୯୨) 'କଥାନି ସତସତାନୀ' (୧୯୯୨), 'କଥାନି ସତସତାନୀ' (୧୯୯୨), 'କଥାନି ଲେଖେଁ ଲାଗସି' (୧୯୯୫), 'ନୁନୀ' (୧୯୯୪) ଆଦି ଅନ୍ୟତମ । ଅଧିକାଂଶ ୧୯୯୦ ଦଶକରେ ଲିଖିତ । ଦ୍ୱିତୀୟରେ ସବୁଗୁଡ଼ିକ ପ୍ରକାଶିତ । କବିଙ୍କର ଏହି ସବୁ ସମ୍ବଲପୁରୀ ରଚନା ଏବଂ ସେଗୁଡ଼ିକର ପ୍ରକାଶନକୁ ସମ୍ବଲପୁରୀ ଭାଷା ଆନ୍ଦୋଳନ ପରିପ୍ରେକ୍ଷୀରେ ଦେଖିହେବ । ୧୯୯୦ ଦଶକରେ ଆରମ୍ଭରେ ପାରିବାରିକ ସୂତ୍ରରେ ସମ୍ବଲପୁରୀ ଭାଷା ଆନ୍ଦୋଳନର ଜଣେ ପ୍ରମୁଖ କର୍ତ୍ତା ଏବଂ ଲେଖକ ଧନପତି ମହାପାତ୍ରଙ୍କ ସଙ୍ଗେ ତାଙ୍କର ସମ୍ବନ୍ଧ ସ୍ଥାପିତ ହେଲା । ଧନପତି ମହାପାତ୍ରଙ୍କର ଯେହେତୁ ଆନ୍ଦୋଳନର ଅନ୍ୟାନ୍ୟ ନେତୃସ୍ଥାନୀୟ ବ୍ୟକ୍ତି, ଯଥା ନୀଳମାଧବ ପାଣିଗ୍ରାହୀ, ପ୍ରୟାଗଦତ୍ତ ଯୋଷୀ, ଦ୍ୱାରିକାନାଥ ନାଏକ, ଶ୍ୟାମ ସୁନ୍ଦର ଧର, ଆଦିଙ୍କ ସହିତ ସାହିତ୍ୟିକ ସମ୍ପର୍କ ରହିଥିଲା, ହେମଚନ୍ଦ୍ର ମଧ୍ୟ ସେହି ସମ୍ପର୍କ ସୂତ୍ରର ପରିଧିକୁ ଆସିଲେ । ତେଣିକି ଭାଷା ଆନ୍ଦୋଳନର ବିଭିନ୍ନ ସଭାସମିତିରେ କବି ଯୋଗଦେଲେ, ଆନ୍ଦୋଳନର ବିଭିନ୍ନ କର୍ତ୍ତାଙ୍କ ସହ ପତ୍ରାଚାର କଲେ । ଅନ୍ୟ ଶବ୍ଦରେ କହିଲେ, ଗର୍ଭଣା ଗାଁ ଏବଂ ଆଖପାଖର କେତେ ଖଣ୍ଡି ଗାଁ ଯାକେ ସୀମିତ ହେମଚନ୍ଦ୍ର ଆଚାର୍ଯ୍ୟ ଏଣିକି ପଶ୍ଚିମ ଓଡ଼ିଶା ସ୍ତରର ସାହିତ୍ୟିକ ଗତିବିଧିରେ ସ୍ଥାନ ପାଇଲେ । ଏଥିପାଇଁ ଧନପତି ବାବୁଙ୍କ ବ୍ୟତୀତ ଯେଉଁ ଦ୍ୱିତୀୟ ବ୍ୟକ୍ତିଙ୍କର ପ୍ରମୁଖ ଯୋଗଦାନ ରହିଥିଲା ସେ ହେଲେ ଡ଼ଃ ନୀଳମାଧବ ପାଣିଗ୍ରାହୀ ।

ସମ୍ବଲପୁରୀ କାବ୍ୟ 'ନୁନୀ' ପ୍ରକାଶିତ ହେଲା । ପ୍ରକାଶ ଚନ୍ଦ୍ର ଦେବତାଙ୍କ ଆର୍ଥିକ ସହଯୋଗ ଏବଂ ଟେକଚାନ୍ଦ ଦୁଆନ ଆଦିଙ୍କ ଉଦ୍ୟମରେ ; 'ସତର ସତି ବୃନ୍ଦବତୀ' କୁ

ଧନପତି ମହାପାତ୍ରଙ୍କ ପ୍ରଚେଷ୍ଟାରେ 'ସମ୍ବଲପୁରୀ ପ୍ରକାଶନ' ପକ୍ଷରୁ ପ୍ରକାଶିତ କରାଗଲା। 'କଥାନି ସତ୍ ସତାନି' ଗଳ୍ପ ସଙ୍କଳନକୁ ଡ଼ଃ ନୀଳମାଧବ ପାଣିଗ୍ରାହୀଙ୍କ ଉଦ୍ୟମରେ 'ନିସାନ' ସାହିତ୍ୟ ସଂସଦ ପକ୍ଷରୁ ପ୍ରକାଶିତ କରାଗଲା । 'କଥାନି ଲେଖେଁ ଲାଗସି' ଆଉ ଏକ ଗଳ୍ପ ସଙ୍କଳନ । ତାକୁ ବରଗଡ଼ର ଆନନ୍ଦ ଆଚାର୍ଯ୍ୟଙ୍କ ଆର୍ଥିକ ସହଯୋଗରେ ପ୍ରକାଶ କରାଗଲା । ଯଦିଓ ପ୍ରକାଶକ ଭାବରେ ନାଁ ରହିଲା ଦ୍ୟୁତୀଶ ଆଚାର୍ଯ୍ୟଙ୍କର (ହେମଚନ୍ଦ୍ର ଆଚାର୍ଯ୍ୟଙ୍କର କନିଷ୍ଠ ପୁତ୍ର) । ହେମଚନ୍ଦ୍ରଙ୍କର ବିଭିନ୍ନ ସମୟରେ ଲେଖା ହୋଇଥିବା ୩୪ଟି ସମ୍ବଲପୁରୀ ଗୀତକୁ ତାଙ୍କ କାକାପୁଅ ଭାଇ ମଙ୍ଗଳ ଚରଣ ଆଚାର୍ଯ୍ୟ ସଂଗ୍ରହ କରିଥିଲେ । ଗୀତଗୁଡ଼ିକୁ ୨୦୦୪ରେ ଦ୍ୟୁତୀଶ ଆଚାର୍ଯ୍ୟ ପ୍ରକାଶିତ କଲେ । ହେମଚନ୍ଦ୍ରଙ୍କର ସମଗ୍ର ଲେଖାକୁ ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ କରିବାର ଉଦ୍ୟମ ମଝିରେ ହୋଇଛି । ମାତ୍ର ପ୍ରକାଶକ ଅଭାବରେ ସଫଳତା ମିଳିନି । ଲେଖାଗୁଡ଼ିକୁ ସଂଗ୍ରହ କରିବାରେ ମଙ୍ଗଳ ଚରଣ ଆଚାର୍ଯ୍ୟଙ୍କ ବ୍ୟତୀତ ଆଉ ଜଣେ କାକାପୁଅ ଭାଇ ଗିରିଜାଶଙ୍କର ଆଚାର୍ଯ୍ୟଙ୍କର ମଧ୍ୟ ଯଥେଷ୍ଟ ଭୂମିକା ରହିଛି । ୨୦୦୪ ଜୁଲାଇ ମାସରୁ ୨୦୦୯ ରେ ମୃତ୍ୟୁ ପର୍ଯ୍ୟନ୍ତ କବି ଥିଲେ ଶଯ୍ୟାଶାୟୀ । ସେହି ଅଶୀତିପର ବୟସରେ ଲେଖାଟିଏ ଲେଖି ସାରି ଆବଶ୍ୟକ ମତେ ତାର 'ଫାଇନାଲ କପି' ତିଆରି କରିବା ମଧ୍ୟ ତାଙ୍କ ପକ୍ଷେ କଷ୍ଟକର ଥିଲା । ଏହିଭଳି ସ୍ଥିତିରେ ବି ସେ ଲେଖିଛନ୍ତି ଓ ଭାଇ ଗିରିଜା ଶଙ୍କରଙ୍କର ନିରନ୍ତର ସହଯୋଗରେ ଲେଖାକୁ ଫାଇନାଲ କରିଛନ୍ତି ।

ସମ୍ବଲପୁରୀ ଭାଷା ଆନ୍ଦୋଳନର ଏକ ମହତ୍ୱପୂର୍ଣ୍ଣ ଏବଂ ମୋ ମତରେ ଦୁର୍ବଳ ଦିଗ ହେଲା ପ୍ରତି ଯୋଗୀ ଭାଷା ମନେ କରି ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଅନେକ ସମୟରେ ଅସୂୟା ଭାବ ପ୍ରକଟ କରିବା । ଶହେ ବର୍ଷ ତଳେ ବଙ୍ଗଳା ଭାଷା ଓ ସଂସ୍କୃତି ପ୍ରତି ଓଡ଼ିଆ ଭାଷା ଆନ୍ଦୋଳନର ଯେଉଁ ଭାବ ଥିଲା, ତାର ଏକ ଭିନ୍ନ ରୂପ ଭାବେ ଏହାକୁ ଦେଖାଯାଇପାରେ । 'ସମ୍ବଲପୁରୀ'ର ଅସ୍ମିତା ସାବ୍ୟସ୍ତ କରିବା ପାଇଁ ଯେମିତି 'ଓଡ଼ିଆ'କୁ ଗାଳିଗୁଲଜ କରିବା ଏକ ଆବଶ୍ୟକତା। ଏହି ପରିପ୍ରେକ୍ଷୀରେ ହେମଚନ୍ଦ୍ରଙ୍କ ସର୍ଜନା ସେହି ଗାଳିଗୁଲଜରୁ ଦୂରରେ ରହି ସୃଷ୍ଟିଶୀଳତା ପ୍ରତି ଅଧିକ ଧ୍ୟାନ ଦିଏ ବୋଲି କୁହାଯାଇପାରେ । 'ରାମରାହା' ହେଉ ବା 'ନୁନୀ. କୌଣସି ରଚନାରେ କବି କୌଣସି ଭାଷା ଓ ସଂସ୍କୃତି ପ୍ରତି ଅସୂୟା ଭାବ ପ୍ରକଟ କରିନାହାନ୍ତି । ସମ୍ବଲପୁରୀ 'ଲେଖାର ଭାଷା', 'ଭାବର ଭାଷା', 'ସାହିତ୍ୟର ଭାଷା' ହେବାର ସାମର୍ଥ୍ୟ ରଖେ, ଏହା ଜଣାଇ ଦେବାକୁ ପ୍ରୟାସ କରନ୍ତି । ତାଙ୍କପାଇଁ ସମ୍ବଲପୁରୀ ଓ ଓଡ଼ିଆ ଦୁଇଟି ସଂଘର୍ଷର ଭାଷା ନୁହନ୍ତି; ଉଭୟେ ସହୋଦରା; ଅନୁପୁରକତାର ଭାଷା । ତାଙ୍କ ସର୍ଜନାକୁ ସମ୍ବଲପୁରୀରେ ଅନ୍ତଃଶକ୍ତି ଖୋଜିବା ଦିଗରେ ଏକ ବ୍ୟକ୍ତିକ ଉଦ୍ୟମ ରୂପେ ଦେଖାଯାଇପାରେ । ହେମଚନ୍ଦ୍ରଙ୍କର ସମ୍ବଲପୁରୀ ଲେଖାର

ଆଉ ଏକ ବିଶେଷତ୍ୱ ହେଲା ବ୍ୟାକରଣ । ଅନେକ ସମ୍ବଲପୁରୀ ଲେଖକ ଓଡ଼ିଆ ତାଳବ୍ୟ 'ଶ' ଏବଂ ମୂର୍ଦ୍ଧନ୍ୟ 'ଷ' ର ବ୍ୟବହାର ସ୍ଥାନରେ କେବଳ ଦନ୍ତ୍ୟ 'ସ'ର ବ୍ୟବହାର କରନ୍ତି । ଦୀର୍ଘ 'ଈ' ର ସ୍ଥାନରେ କେବଳ ହ୍ରସ୍ୱ 'ଇ' ର ଏବଂ ଅବର୍ଗ୍ୟ 'ଯ'ର ସ୍ଥାନରେ କେବଳ 'ବର୍ଗ୍ୟ' 'ଜ'ର ବ୍ୟବହାର କରନ୍ତି । ସେମାନଙ୍କ ଯୁକ୍ତି ଯେ ସମ୍ବଲପୁରୀ ଉଚ୍ଚାରଣରେ ଯେହେତୁ ତିନୋଟି 'ସ'ର ଭିନ୍ନତା ନଥାଏ, ଦୀର୍ଘ 'ଈ' ର ଦରକାର ପଡ଼େନି, ଲେଖାରେ ସେ ସବୁ ରହିବା କଥା ନୁହେଁ । ବରଂ ସେ ସବୁ ଅନାବଶ୍ୟକ ; ଏଭଳି ଅକ୍ଷର ଭାଷାକୁ ଅଯଥା କ୍ଲିଷ୍ଟ ଓ ଜଟିଳ କରେ, ଭାବ ପ୍ରକାଶରେ ବାଧକ ସାଜେ । ମାତ୍ର ସସ୍କୃତ ପଣ୍ଡିତ ଡ଼ୋଳାମଣି ଆଚାର୍ଯ୍ୟଙ୍କର ପୁତ୍ର ହେମଚନ୍ଦ୍ର ଏହାକୁ ସହଜରେ ସ୍ୱୀକାର କରିପାନ୍ତି ନାହିଁ । ସମ୍ବଲପୁରୀ ଲେଖା ମଧ ତାଙ୍କର କଦାଚିତ୍ ଓଡ଼ିଆ ବ୍ୟାକରଣର ପ୍ରଭାବରୁ ମୁକ୍ତ ହୋଇ ପାରେନା । ତାଙ୍କର ଯୁକ୍ତି ଯେ ସଂସ୍କୃତ ବ୍ୟାକରଣକୁ ମୁଖ୍ୟ ଆଧାର କରି ଯେମିତି ଓଡ଼ିଆ ବ୍ୟାକରଣ ସୃଷ୍ଟି ହୋଇଛି ଏବଂ ତା' ସତ୍ତ୍ୱେ ଉଭୟେ ଦୁଇଟି ସ୍ୱତନ୍ତ୍ର ଭାଷା ହୋଇ ରହନ୍ତି, ଠିକ ସେମିତି ସଂସ୍କୃତ ଓ ଓଡ଼ିଆ ବ୍ୟାକରଣକୁ ଆଧାର କରି ସମ୍ବଲପୁରୀ ବ୍ୟାକରଣର ପରିଯୋଜନା ହୋଇପାରିବ । ଏହାଦ୍ୱାରା ସମ୍ବଲପୁରୀର ମହତ୍ୱ ଊଣା ହେବ ନାହିଁ । ଦ୍ୱିତୀୟତଃ, ସାହିତ୍ୟ ମଧ ଏକ ସାଧନା । ବ୍ୟାକରଣକୁ ଆୟତ କରିବା ସାଧନାର ଏକ ନିମ୍ନତମ ଆବଶ୍ୟକତା । ସେହି ନିମ୍ନତମ ସାଧନାର ଅଭାବରେ କେବଳ ଲେଖକର ଉଚ୍ଚାକାଂକ୍ଷା ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟିରେ ସହାୟକ ହେବ ନାହିଁ । ତୃତୀୟରେ, କୋଶଲି-ସଂବଲପୁରୀ ଭାଷାର ମୂଳରେ କେବଳ ସଂସ୍କୃତରୁ ଆନୀତ ଶବ୍ଦ ଖୋଜିବା ବଦଳରେ ଆଦିବାସୀ ଭାଷାକୁ ମଧ୍ୟ ଅସ୍ୱୀକାର କରିବା କଥା ନୁହେଁ। ତାଙ୍କର ଏହି ଅବଧାରଣା ଖୁବ ଯୁକ୍ତିଯୁକ୍ତ । ଆଜି ଏ ନେଇ ଅଧିକ ଆଲୋଚନା ହେବା କଥା ।

'ଶବରୀ ସନ୍ଦେଶ'ର ପ୍ରକାଶନକୁ ନେଇ ଲେଖକଙ୍କର ଓଡ଼ିଆ ପ୍ରତି ମୋହଭଙ୍ଗ ହୋଇଛି ସତ । ମାତ୍ର ଏହା ତାଙ୍କୁ ଓଡ଼ିଆ ସାହିତ୍ୟରୁ ପୂରାପୂରି ବିଚ୍ୟୁତ କରିନାହିଁ । ଏହାର ପ୍ରମାଣ ମିଳେ ତାଙ୍କର ୨୦୦୨-୨୦୦୪ ମସିହାରେ ଲେଖିଥିବା, କେତୋଟି ଓଡ଼ିଆ ଗଦ୍ୟରୁ । ନିଜ ପିଲାଦିନର ସ୍ମୃତିରୁ ସେ 'ପ୍ରଥମ ଶ୍ରେଣୀ ଆଜ୍ଞା', 'ସୁନ୍ଦର ସାଏ ଓ ସାଇ ଦୁଏଳ', 'ଡ଼ାକୁଆ ବୁଢ଼ାର ସ୍କୁଲ୍', 'ପଇସା ନେଲେ ବିଦ୍ୟା କାଟୁ କରେ ନାହିଁ, ଆଦି ଶୀର୍ଷକରେ ଅନେକଗୁଡ଼ିଏ ଲେଖା ଲେଖିଛନ୍ତି, ସେଗୁଡ଼ିକ ଓଡ଼ିଆ ପତ୍ରିକା 'ସମ୍ବାଦ' ପୃଷ୍ଠାରେ ପ୍ରକାଶିତ । 'ସମ୍ବାଦ' ରେ ପ୍ରକାଶିତ ହେବାର ଭରସା ମିଳିନଥିଲେ ବୋଧହୁଏ ସେହି ସ୍ମୃତିକୁ ସାଉଁଟି ନଥାନ୍ତେ । ଅର୍ଥାତ୍ ଶ୍ରୋତା ମିଳିଲେ ଯେମିତି ଗୀତ କାବ୍ୟ ଲେଖି ହୋଇଯାଏ ଗଦ୍ୟ ପାଇଁ ଦରକାର ପଡ଼େ ପାଠକର । ପ୍ରକାଶନ ଦିଏ ପାଠକ ଗୋଷ୍ଠୀ ।୧୯୮୦ ଦଶକର ଉତରାର୍ଦ୍ଧରେ ବରଗଡ଼ରୁ କିଶନ ପଟ୍ଟନାୟକଙ୍କ ସମ୍ପାଦନାରେ

ପ୍ରକାଶିତ 'ଭୂମିପୁତ୍ର'ରେ ସେ 'ବଏଲାରେ' ଶୀର୍ଷକରେ ନିୟମିତ ସ୍ତମ୍ଭ ଲେଖୁଥିଲେ । 'ବଏଲାରେ' ହେଲା ଏକ ସମ୍ବୋଧନ; ହଳିଆ କୃଷକର ଲଙ୍ଗଳରେ ଜୋଚା ହୋଇଥିବା ବଳଦ ପାଇଁ । ହଳିଆ 'ବଏଲାରେ' କହି ବିଲରେ ହଳ କଲାବେଳେ ତା' ମନ କଥା କହେ । ଚାଷୀ ହେମଚନ୍ଦ୍ରଙ୍କ 'ବଏଲାରେ' କୃଷି ଓ କୃଷକର ସମସ୍ୟାକୁ ବଖାଣେ । ୨୦୦୪ ଜୁନ୍ ୩୦ ତାରିଖରେ ଗୋଡ଼ ଭାଙ୍ଗି ଶଯ୍ୟାଶାୟୀ ହୋଇ ନଥିଲେ ନିଜର ଅଙ୍ଗେ ନିଭା ଆହୁରି ଅନେକ ଘଟଣାକୁ ସେ ଗଦ୍ୟର ରୂପ ଦେଇଥାନ୍ତେ ନିଶ୍ଚୟ । ଶଯ୍ୟାଶାୟୀ ହେଲା ପରେ ପରାଧୀନତା ତାଙ୍କ ଲେଖନୀକୁ ଯେମିତି ବନ୍ଦ କରିଦେଲା । ଫଳରେ ତା' ପରଠାରୁ ଲେଖାର ପରିମାଣ ହ୍ରାସ ପାଇଛି । ଲେଖିବା ପାଇଁ ଦୃଢ଼ ପ୍ରୟାସ କରନ୍ତି, ସକ୍ରିୟ ହେବା ପାଇଁ ଉଦ୍ୟମ କରନ୍ତି, ଖଟରେ ବସି ବସି ଅନେକ ଅସମାପ୍ତ ଲେଖାକୁ ସମ୍ପୂର୍ଣ୍ଣ କରିବାର ଯୋଜନା କରନ୍ତି । ତାଙ୍କ ମନରେ ନିରାଶା ନ ଥାଏ । ତାଙ୍କର ଆଶା ପୁଣି ସେ ସୁସ୍ଥ ହେବେ, ଲେଖିବା ପାଇଁ ବଂଚିବେ ଏବଂ ବଂଚିବା ପାଇଁ ଲେଖିବେ । ଏହି ଆଶାବାଦୀତା ତାଙ୍କର ସମ୍ପତି, ଅଜାଡିତ ଭାବରେ ସେ ପରପିଢ଼ିକୁ ମ୍ନ ଏହି ସମ୍ପତି ଦେଉଥିଲେ ।

ସମ୍ବଲପୁରୀ ସାହିତ୍ୟକୁ ଯଦି ବିଚାର କରାଯାଏ ହେମଚନ୍ଦ୍ର ଆଚାର୍ଯ୍ୟ ଜଣେ ଆଗଧାଡ଼ିର ଲେଖକ । ଉଭୟ ସମ୍ବଲପୁରୀ ଓ ଓଡ଼ିଆରେ ତାଙ୍କର ଲେଖାର ପରିମାଣ କମ୍ ନୁହେଁ । ନାଟକ କାବ୍ୟ, ପ୍ରବନ୍ଧ, ଅନୁବାଦ (ପ୍ରଭୁଦତ ବ୍ରହ୍ମଚାରୀଙ୍କ ହିନ୍ଦୀ ୧୦୮ ଖଣ୍ଡ 'ଭାଗବତ କଥା'ର ଦୁଇଖଣ୍ଡ ସେ ୧୯୭୨-୭୩ ମସିହାରେ ଓଡ଼ିଆରେ ଅନୁବାଦ କରିଛନ୍ତି । ବିଜେପୁରର ତୁଳସୀ ପ୍ରସାଦ ଗୁଡ଼ତିଆ ଓଡିଆ ଅନୁବାଦକୁ ପ୍ରକାଶନ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ପ୍ରକାଶନ ହୋଇପାରିଲା ନାହିଁ । ଫଳରେ ଦୁଇଖଣ୍ଡ ପରେ ଅନୁବାଦ ବି ଆଗକୁ ବଢ଼ି ପାରିଲା ନାହିଁ ।), ଗୀତ, ଭଜନ ସବୁ ସାମିଲ୍ ଅଛି ସେ ଲେଖାରେ । ପୃଷ୍ଠା ଗଣିଲେ କେବଳ ତାହା କେତେ ହଜାରରୁ ଊଣା ନୁହେଁ । ତା'ସତ୍ୱେ ଓଡ଼ିଆର ଜଣେ 'ଲେଖକ' ବୋଲାଇବା ପାଇଁ ଯାହା ସବୁ ଲୋଡ଼ା, ତାହା ତାଙ୍କ ପାଖରେ ନାହିଁ । 'ବଡ଼' ଅନୁଷ୍ଠାନ ପକ୍ଷରୁ ସାହିତ୍ୟିକ ସମ୍ମାନ ପାଇନାହାନ୍ତି ; କୌଣସି ବଡ଼ ନାଁ କରା ପ୍ରକାଶକ ତାଙ୍କ ଲେଖାର ପ୍ରକାଶକ ନୁହନ୍ତି ; ରାଜ୍ୟ ବା ରାଷ୍ଟ୍ର ସ୍ତରୀୟ କୌଣସି ଅନୁଷ୍ଠାନ ତାଙ୍କୁ ବକ୍ତା, ଅତିଥି କରି ଡ଼ାକି ନାହାନ୍ତି । ଏହି ପରିସ୍ଥିତିରେ ଓଡ଼ିଆ ସାହିତ୍ୟରେ ତାଙ୍କୁ ନେଇ ଆଲୋଚନାର କ'ଣ ଯଥାର୍ଥତା ରହିଛି – ତାହା ଇତିହାସ ବିଚାର କରିବ ।

୧୯୬୬ ମସିହାରେ ମାତ୍ର ଚାଳିଶ ବର୍ଷ ବୟସରେ ହେମଚଂନ୍ଦ୍ର ଚାକିରିରୁ ଇସ୍ତଫା ଦେଲା ପରେ କୃଷି ତାଙ୍କର ଏକମାତ୍ର ବୃତି । ଏମିତିରେ ଦେଖିଲେ କଲମ ସାଙ୍ଗରେ ସମ୍ବନ୍ଧ ଛିନ୍ନ ହେବାର ସେ ସମୟ । ଖାତାଟିଏ କିଣିବା, କଲମଟିଏ ରଖିବା ମଧ ଜଣେ କୃଷକ ପାଇଁ ଯେତେବେଳେ ବିଳାସିତା, ସେତେବେଳେ ସେ ନିରବଛିନ୍ନ ଭାବେ ଲେଖିଛନ୍ତି ।

ପ୍ରକାଶିତ ହୋଇନାହିଁ । ସାହିତ୍ୟିକ ପରିବେଶ ମିଳିନି । ପଦ, ପଦବୀ ମିଳିନି । ସହିତ୍ୟିକ ଗତିବିଧି ସାଙ୍ଗରେ ପ୍ରତ୍ୟକ୍ଷ ସମ୍ବନ୍ଧ ନାହିଁ । ଅନ୍ୟପକ୍ଷରେ ଲେଖାପଢ଼ା ପାଇଁ ମଧ୍ୟ ସୁଯୋଗ ନାହିଁ । ପାଖରେ ଓଡ଼ିଆ ଅଭିଧାନଟିଏ ମଧ୍ୟ ନାହିଁ । କେଉଁ ଶବ୍ଦକୁ ନେଇ ସଂଶୟ ହେଲେ କାକା ପୁଅ ଭାଇ ଓ ସୋହେଲା ହାଇସ୍କୁଲରେ ଶିକ୍ଷକତା କରୁଥିବା ଗିରିଜା ଶଙ୍କରଙ୍କୁ ହାଇସ୍କୁଲରେ ଉପଲବ୍ଧ ଅଭିଧାନରୁ ଦେଖି କହିବା ପାଇଁ ଅନୁରୋଧ କରିବେ । ଦୁଇ ଦିନ ପରେ ଯାଇ ସଂଶୟ ଦୂର ହୁଏ । ଏତେ ସବୁ ପ୍ରତିକୂଳ ପରିସ୍ଥିତି ତାଙ୍କ ସୃଜନୀ ଆଗରେ ପ୍ରତିବନ୍ଧକ ସୃଷ୍ଟି କରି ନାହିଁ । ଏହା କମ୍ ବଡ଼ କଥା ନୁହେଁ । ବରଂ ସେହି ସ୍ଥିତି ତାଙ୍କୁ ନିରୋଳା ଭାବ ଦେଇଛି । ଅନ୍ୟ କିଏ କଣ ସମୀକ୍ଷା, ସମାଲୋଚନା କରିବ ସେଥିପ୍ରତି ଦୃଷ୍ଟି ନ ଦେଇ ତାଂକୁ ନିରନ୍ତର ଲେଖିବା ପାଇଁ ଉତ୍ସାହିତ କରିଛି । ତାଙ୍କ ଆଗରେ ସଦାବେଳେ ଶ୍ରୋତା ରହିଛନ୍ତି ; ତାଙ୍କ ଅଭିବ୍ୟକ୍ତିକୁ ଶ୍ରୋତାମଣ୍ଡଳୀରେ ପହଂଚାଇବା ସକାଶେ ଗ୍ରାମ୍ୟକଳାକାର ଅଛନ୍ତି । ତାଙ୍କ ପାଖରେ ଶ୍ରୋତାର ମନଖୋଲା ପ୍ରତିକ୍ରିୟା ମ୍ଭ କଳାକାରମାନଙ୍କ ମାଧ୍ୟମରେ ପହଂଚିଛି । ସେସବୁ ତାଙ୍କୁ ଆହୁରି ଆହୁରି ଲେଖିବା ପାଇଁ ଖୋରାକ ଯୋଗାଇଛି । ଲେଖାକୁ ସରଳ, ତରଳ ଓ ଅଧିକରୁ ଅଧିକ ମଧୁର କରିବା ପାଇଁ ଖୋରାକ ଯୋଗାଇଛି । ଏହି ଦୃଷ୍ଟିରୁ ପ୍ରତିକୂଳ ପରିସ୍ଥିତିର ଆଳରେ ଚୁପ୍ ହୋଇ ନିସ୍ତେଜ୍ ପଡୁଥିବା ସମାଜ ଏବଂ ଆଗାମୀ ପିଢ଼ି ଆଗରେ କବି ହେମଚନ୍ଦ୍ର ସର୍ବଦା ପ୍ରେରଣାର ସ୍ରୋତ ହୋଇ ରହିବେ । ସ୍ୱାଧୀନତ୍ତୋର ଭାରତର ଅର୍ଗାନିକ ଇଂଟେଲ୍‌କ୍‌ଚୁଆଲ୍ ବା ସଶ୍ରମୀ ବୁଦ୍ଧିଜୀବୀ ବା ଶରୀରଶ୍ରମୀ ବୁଦ୍ଧିଜୀବୀର ଜୀବନ ଦୃଷ୍ଟି, କଥନଶୈଳୀ, ଭାଷା, ଭାବ, ବିଷୟବସ୍ତୁ, ଶବ୍ଦଚୟନ ଆଦିକୁ ନେଇ କେବେ ଯଦି ବିସ୍ତାରରେ ବିଚାର ଆଲୋଚନା ହୁଏ, ସେତେବେଳେ ସମ୍ବଲପୁରୀ ଓ ଓଡ଼ିଆରେ ୧୯୪୪ ମସିହାରୁ ୨୦୦୯ ପର୍ଯ୍ୟନ୍ତ ନିରନ୍ତର ଲେଖିଥିବା ଏହି କୃଷକ-ଲେଖକ ହେମଚନ୍ଦ୍ର ଆଚାର୍ଯ୍ୟଙ୍କୁ ବାଦ୍ ଦିଆଯାଇପାରିବ ନାହିଁ । ଏହା ନିଶ୍ଚିତ କଥା । ସମ୍ବଲପୁରୀରେ ଓଡ଼ିଆ ଏବଂ ଓଡ଼ିଆରେ ସମ୍ବଲପୁରୀ, ପେଟପାଟଣାର ସାଧାରଣ ବକ୍ତବ୍ୟ ଭିତରେ ଆଧ୍ୟାତ୍ମିକତା ଏବଂ ଆଧ୍ୟାତ୍ମିକତା ମଧ୍ୟରେ ପେଟପାଟଣାର କଥାକୁ ସଫଳ ଭାବେ ଫେଟିଂବାକୁ ତଥା ସମାହିତ କରିବାକୁ ସେ ଜୀବନସାରା ପ୍ରୟାସ କରିଛନ୍ତି । କାରଣ ତାଙ୍କର ବିଶ୍ୱାସ ଯେ କେହି କାହାଠାରୁ ଅଲଗା ନୁହଁନ୍ତି । ସମସ୍ତେ ସେହି 'ଏକ'ରୁ ସୃଷ୍ଟ, ଅଲଗା ଅଲଗା ନୁହନ୍ତି । ତାଙ୍କୁ ରାମ କୁହ କି କୃଷ୍ଣ , କି ପରମାତ୍ମା, କି ଇଂରାଜିରେ the wholebeing । ଏହି ସତ୍ୟକୁ ଅନ୍ତର ମନରେ ଅନୁଭବ କରିପାରିଥିବା ବ୍ୟକ୍ତିଟି ସେ ଚାଷୀ ହେଉ ବା ଋଷି, କବି ହେଉ ବା କୃଷକ, ଚାକର ହେଉ ବା ଚାକିରିଆ, କେବେ ନିରାଶ ହେବ ନାହିଁ । ସେ କେବେ ଭାଷା, ସମ୍ପ୍ରଦାୟ, ଜାତି, ଧର୍ମର ବାହ୍ୟ ପ୍ରଭେଦକୁ ସ୍ୱୀକାର ଯିବ ନାହିଁ । ଏହା ନିଶ୍ଚିତ

କଥା ଯେ ସେ ବିଶ୍ୱ ଜାତିର ମଣିଷ । ତାର ସୃଜନୀରେ ବିଶ୍ୱ ସଂସ୍କୃତିର ପ୍ରତିଫଳନ । ପୁରସ୍କାର, ପଦବୀର ନିକିତିରେ ତାଙ୍କୁ ମାପିବା ଠିକ୍ ହେବ ନାହିଁ ।

ହେମଚନ୍ଦ୍ର ଆଚାର୍ଯ୍ୟ କବି, ନାଟ୍ୟକାର, ନାଟ୍ୟ ନିର୍ଦ୍ଦେଶକ ଥିଲେ, ସମାଜବାଦୀ କର୍ମୀ ଥିଲେ, ଚାଷୀ ଥିଲେ, ଗୀତ ଗାଉଥିଲେ, ସଂଗୀତରେ ତାଂକର ଭଲ ପ୍ରବେଶ ଥିଲା; ଏସବୁ ମେଧା ସେ ସ୍ୱାଧ୍ୟାୟ ବଳରେ ଆୟତ୍ତ କରିପାରିଥିଲେ। ହେମଚଂଦ୍ର ଥିଲେ ମୋର ବାପା। ଅତି ନିକଟ ସମ୍ପର୍କୀୟଙ୍କ ସମ୍ବନ୍ଧରେ ଟୀକା ଟିପ୍ପଣୀ କଲାବେଳେ ସାଧାରଣତଃ ଯେଉଁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ ସେହି ଅସୁବିଧା ଏହି ଲେଖା ପ୍ରସ୍ତୁତ କଲାବେଳେ ମୋର ବି ହୋଇଛି । ତାଙ୍କର ସାହିତ୍ୟିକ ଦିଗକୁ ଆଲୋଚନା କଲାବେଳେ ବ୍ୟକ୍ତିଗତ ସମ୍ବନ୍ଧ ଯେ ତାକୁ ପ୍ରଭାବିତ କରିଛି, ଏହା ଅସ୍ୱୀକାର କରାଯାଇ ନପାରେ । ବାପ-ପୁଅର ସମ୍ବନ୍ଧରେ ଯେଉଁ ନିବିଡ଼ତା, ସେଥିରେ ପରିପିଡ଼ି ଭାବରେ ମୋର ତାଙ୍କର କେତେଗୁଡ଼ାଏ କାର୍ଯ୍ୟ ଓ ଆଚରଣକୁ ପସନ୍ଦ ନ ହେବା ଯେତିକି ସ୍ୱାଭାବିକ, ଅନ୍ୟମାନଙ୍କ ତୁଳନାରେ ତାଙ୍କ ପ୍ରତି ଅଧିକ ଭକ୍ତି ଓ ମୋହ ରହିବା, ତାଙ୍କୁ ସାହିତ୍ୟ ଜଗତରେ ପରିଚିତ କରିବା ପାଇଁ ପ୍ରୟାସ କରିବା ମଧ୍ୟ ସ୍ୱାଭାବିକ । ସେହି ଦୃଷ୍ଟିରୁ ଏହି ଆଲୋଚନାର ବସ୍ତୁନିଷ୍ଠା ପ୍ରତି ପାଠକମନରେ ସନ୍ଦେହ ରହିବା ଅତି ସାଧାରଣ କଥା । ଆଲୋଚନାର ଏହା ଏକ ଦୁର୍ବଳତା । ଅନ୍ୟ ଏକ ପକ୍ଷରେ କବି ହେମଚନ୍ଦ୍ର ଏବଂ ତାଙ୍କ ସାହିତ୍ୟକୁ ଅତି ପାଖରୁ ଦେଖିବାର ଅବସର ମିଳିଛି ମୋତେ । ସ୍କୁଲରେ ଅକ୍ଷର ଶିକ୍ଷା ହେବା ପୂର୍ବରୁ, ମତେ ଅନାୟାସରେ ତାଙ୍କ ପାଣ୍ଡୁଲିପିକୁ ଶୁଣିବାର ଅବସର ମିଳିଛି । ଶିଶୁ ବୟସରୁ ମୁଁ ତାଙ୍କ କଣ୍ଠରୁ ତାଙ୍କ ଗୀତଗୁଡ଼ିକୁ ଶୁଣିବାର ସୌଭାଗ୍ୟ ପାଇଛି । ତାଂକଠାରୁ ମତେ ମିଳିଛି ରାଜନୀତିକ ଓ ସାମାଜିକ ଦୃଷ୍ଟି। ସେହି ପ୍ରକ୍ରିୟାରେ ମୋର ସାହିତ୍ୟ ରୁଚି ମଧ୍ୟ ବଢ଼ିଛି । ଏହି ସବୁ କାରଣରୁ ତାଙ୍କ ଜୀବନ ଓ ସାହିତ୍ୟର ଆଲୋଚନା ମୋ ପାଇଁ ବିଶେଷ ପରିଶ୍ରମର କାମ ହୋଇନାହିଁ । ତା'ସାଙ୍ଗରେ ଏକଥା ମଧ୍ୟ ସତ ଯେ ହେମଚନ୍ଦ୍ରଙ୍କର ସମଗ୍ର ସାହିତ୍ୟ ମୁଁ ଗଭୀର ଭାବେ ଅଧ୍ୟୟନ କରିଛି ବୋଲି ଦାବି କରି ପାରିବି ନାହିଁ । ପରିବାରର ଜଣେ ସଦସ୍ୟ ଏବଂ ସାହିତ୍ୟ ଆଗ୍ରହୀ ଭାବରେ ସର୍ଜନାଗୁଡ଼ିକର 'ଜନ୍ମ ଯନ୍ତ୍ରଣା' କୁ ଅତି ନିକଟରୁ ଦେଖିବାର ସୁଯୋଗ ପାଇଛି । ତାଙ୍କର ଅନେକ ଲେଖା ସ୍ୱତଃ ମୋର ପାଠ୍ୟ ହୋଇଛି। ଜଣେ ଗବେଷକର ଦୃଷ୍ଟି ଓ ନିର୍ମୋହୀ ଭାବ ନେଇ ସମଗ୍ର ସାହିତ୍ୟକୁ ଅଧ୍ୟୟନ କରିପାରିଥିଲେ ଆଲୋଚନା ହୁଏତ ଅଧିକ ବସ୍ତୁନିଷ୍ଠ ହୋଇପାରିଥାନ୍ତା । ଆଲୋଚନାର ଏହା ଅନ୍ୟତମ ବଡ଼ ଦୁର୍ବଳତା । ତେଣୁ ହେମଚନ୍ଦ୍ରଙ୍କ ସାହିତ୍ୟ ସମ୍ବନ୍ଧରେ ମୋର ଏହି ବକ୍ତବ୍ୟକୁ ଏକ 'ପ୍ରାମାଣିକ' ଏବଂ 'ଅନ୍ତିମ' କଥନ ବୋଲି ଦାବି ନ କରି ସେ ଦିଗରେ ଏକ ମୋହାବିଷ୍ଟ ପ୍ରୟାସ ବୋଲି କହିବା ବୋଧେ ଉଚିତ୍ ହେବ ।

- ପ୍ରୀତୀଶ ଆଚାର୍ଯ୍ୟ

# କୋଶଲି-ସମ୍ବଲପୁରୀ ଭାଷା ଚର୍ଚ୍ଚା

## ଭାଷାର ନାଁ

'କୋଶଲି-ସଂବଲପୁରୀ' ଭାଷା-ସାହିତ୍ୟ ଆନ୍ଦୋଳନକୁ ନେଇ ଚର୍ଚ୍ଚା କଲାବେଳେ ପ୍ରଥମେ ଏହାର ନାଁ ରୁ ଆଲୋଚନା ଆରମ୍ଭ କରିବା ଉଚିତ ହେବ, କାରଣ ଏହା ଦ୍ୱାରା ଭାଷା ଆନ୍ଦୋଳନର ପୃଷ୍ଠଭୂମି ସମ୍ବନ୍ଧରେ ଧାରଣା ସୁସ୍ପଷ୍ଟ ହେବ ।

କୋଶଳ ଏକ ଭୂଗୌଳିକ କ୍ଷେତ୍ର, ଯାହାର ବିସ୍ତୃତି ବର୍ତ୍ତମାନର ପୂର୍ବ-ଛତିଶଗଡ଼ ଓ ପଶ୍ଚିମ ଓଡ଼ିଶା ଅଂଚଳ । ପୂର୍ବ-ଛତିଶଗଡ଼ର ଅଂଚଳ ହେଲା ; ସରଗୁଜା, ରାୟଗଡ଼, ସାରଂଗଡ଼ ଓ ବସ୍ତା, ଆଦି, ଏବଂ ପଶ୍ଚିମ ଓଡ଼ିଶାର ଅଂଚଳ ହେଲା ; ସୁନ୍ଦରଗଡ଼, ଝାରସୁଗୁଡ଼ା, ସମ୍ବଲପୁର, ଦେବଗଡ଼, ବରଗଡ଼, ନୂଆପଡ଼ା, କଳାହାଣ୍ଡି, ବଲାଙ୍ଗୀର, ବଉଦ ଓ ସୁବର୍ଣ୍ଣପୁର ବା ସୋନପୁର ଜିଲ୍ଲା । ଏହାକୁ ଗୋଟାଏ କ୍ଷେତ୍ର କହିବା ପଛରେ ଦୁଇଟି ପ୍ରମୁଖ ଆଧାର; ଗୋଟାଏ ହେଲା ଭାଷା ଓ ଅନ୍ୟଟି ଐତିହାସିକ ପୃଷ୍ଠଭୂମି । ଏହି ଅଂଚଳର କଥିତ ଭାଷା ଗୋଟାଏ, ଯଦିଓ ତା' ଭିତରେ ବହୁ କିସମ ରହିଛି । କ୍ଷେତ୍ରର ନାଁ ହିସାବରେ ଭାଷାର ନାଁ କୋଶଳି ହେବା କଥା । ତହିଁରେ ଅନେକ କିସମ ରହିବା ସତ୍ୱେ ମୌଳିକ ସାମଞ୍ଜସ୍ୟ ରହିଛି , ଯାହା ଉକ୍ତ ଭାଷାକୁ ଅନ୍ୟ ଭାଷାରୁ ପୃଥକ କରେ । ଉଦାହରଣ ସ୍ୱରୂପ,'କୋଶଳି'ରେ ନାହିଁ ର ପ୍ରୟୋଗ ବାକ୍ୟର କ୍ରିୟା ପୂର୍ବରୁ ହୁଏ । ଓଡ଼ିଆରେ ବାକ୍ୟରେ ନାହିଁର ପ୍ରୟୋଗ ପ୍ରାୟତଃ କ୍ରିୟା ପରେ ହୁଏ । ହିନ୍ଦୀରେ 'ନାହିଁ' ଅବଶ୍ୟ କ୍ରିୟା ପୂର୍ବରୁ ବ୍ୟବହୃତ ହୁଏ, ମାତ୍ର କୋଶଳି କେବେ ହିଂଦୀ ମଧ୍ୟ ନୁହେଁ, କାରଣ ଏଥିରେ ବ୍ୟବହୃତ ଶବ୍ଦ, ଉପମା, ଅଳଙ୍କାର ଆଦି ଓଡ଼ିଆର ନିକଟତର ମନେ ହୁଅନ୍ତି । ସେହି ସୂତ୍ରରେ କୋଶଳି ଉଭୟ ଓଡ଼ିଆ ଓ ଛତିଶଗଡ଼ରେ ବ୍ୟବହୃତ ଭାଷା, ସ୍ଥାନୀୟ ଲରିଆ, ମଧରେ ଏକ ସେତୁ ଭଳି ପ୍ରତୀତ ହୁଏ । ଏହା ସ୍ୱତନ୍ତ୍ର, ପୁଣି ଉଭୟ ପଡ଼ୋଶୀ ଭାଷା ସହ ସୁସମ୍ପର୍କିତ । ଯଦି ମୋଟ କୋଶଳ ଅଂଚଳର ବିବିଧ କିସମକୁ ଦେଖାଯାଏ, ତେବେ ଜଣାଯିବ ଯେ ଛତିଶଗଡ଼ର ନିକଟତର ଅଂଚଳର କୋଶଳି ଯଦି ଲରିଆର ପାଖାପାଖି, ବଉଦ-ଆଠମଲ୍ଲିକର କୋଶଳି ଅପେକ୍ଷାକୃତ ଭାବେ ଓଡ଼ିଆର ଅଧିକ ନିକଟତର । ଏଠାରେ ଆଉ ଗୋଟାଏ କଥା ସ୍ପଷ୍ଟ ହେବା କଥା ଯେ ଉଲ୍ଲିଖିତ କୋଶଳ ଅଂଚଳରେ ଆଦ୍ୟରୁ କୋଶଳି ବ୍ୟତୀତ ଅନ୍ୟ ଭାଷାର ମଧ ଉପସ୍ଥିତି ରହିଛି । ଯେମିତି ଆଦିବାସୀ ଓ ଲରିଆ ଭାଷା । ଛତିଶଗଡ଼ ସୀମାରେ ରିଷିଡ଼ା, ପୁରତ, ଲେଂଧ୍ରା,

ବସ୍ନା ଆଦି ଅଂଚଳରେ ସେହି ଗୋଟାଏ ଗାଁରେ ଉଭୟ କୋଶଳି ଓ ଲରିଆ ଭାଷୀ ଲୋକ ବସବାସ କରନ୍ତି, ଯାହା ସେମାନଙ୍କୁ ଜନ୍ମଜାତ ଦ୍ବିଭାଷୀ କରିଥାଏ । ପୁଣି, ଅନ୍ୟ ଅଂଚଳ ଭଳି, କୋଶଳ କ୍ଷେତ୍ରରେ ମଧ୍ୟ ଆଦିବାସୀର ଭାଷା ଗୋଟାଏ ନୁହେଁ ; ଅନେକ । ଫଳରେ ଭାଷାର ପ୍ରାଚୀନତା ସତ୍ୱେ ଆଦିବାସୀର Linguistic Minority ବା ଭାଷା-ସଂଖ୍ୟାଲଘୁ ହେବା ହେଲା ଯେମିତି ନିୟତି ।

'କୋଶଳ' ନାଁ ର ଐତିହାସିକ ପୃଷ୍ଠଭୂମି ହେଲା ଯେ ପ୍ରାଚୀନ ସମୟରେ କୋଶଳ ନାମରେ ଏକ ରାଜ୍ୟ ଥିଲା, ଯାହାର ବିସ୍ତୃତି କ୍ଷେତ୍ର ମୋଟାମୋଟି ଭାବେ ଏହି କ୍ଷେତ୍ରରେ । କାଳକ୍ରମେ ମଧ୍ୟଯୁଗରେ ଦକ୍ଷିଣ କୋଶଳ ବା ବର୍ତ୍ତମାନର ପଶ୍ଚିମ ଓଡ଼ିଶା ମୂଳ କୋଶଳରୁ ବିଚ୍ଛିନ୍ନ ହେଲା । ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରୁ ସମ୍ବଲପୁର ଉଲ୍ଲିଖିତ ଦକ୍ଷିଣ କୋଶଳର ରାଜନୀତିକ କେନ୍ଦ୍ର ସାବ୍ୟସ୍ତ ହେଲା । ସମ୍ବଲପୁରର ରାଜା ବଳିଆର ସିଂହ (ରାଜତ୍ୱ କାଳ ୧୬୫୦ ରୁ ୧୬୮୮) ନିଜକୁ 'ହିରାକୁଦ ଛତ୍ରପତି ମହାରାଜା ଅଠରଗଡ଼ ମଉଡ଼ମଣି' ବୋଲି ମାନ୍ୟତା ଦାବି କଲେ । (ଶିବପ୍ରସାଦ ଦାସ, ସମ୍ବଲପୁର ଇତିହାସ, ସମ୍ବଲପୁର, ୧୯୬୨, ପୃ. ୨୩୬) ଯେଉଁ ଅଠରଟି 'ଗଡ଼' ବା ସାମନ୍ତ ରାଜ୍ୟର ସେ ନିଜକୁ 'ମଉଡ଼ମଣି' ବା ମୁଖ୍ୟ ରାଜା ବୋଲି ଦାବି କଲେ, ସେଗୁଡ଼ିକ ହେଲା: ସଂବଲପୁର, ପାଟଣାଗଡ଼ (ବର୍ତ୍ତମାନର ବଲାଙ୍ଗୀର), ସୋନପୁର, ବଉଦ, ଆଠମଲ୍ଲିକ, ଖରିଆର, ରେଢ଼ାଖୋଲ, ବାମଣ୍ଡା, ଗାଙ୍ଗପୁର, ବଣାଇ, ରାୟଗଡ଼, ବିଂଦ୍ରା-ନୂଆଗଡ, ସରଗୁଜା, ଚଂଦ୍ରପୁର, ବରଗଡ଼, ସାରଂଗଡ଼, ଶକ୍ତି ଓ ଫୁଲଝର । ଏହି ମାନ୍ୟତା ଲାଗି ସମ୍ବଲପୁର ରାଜାଙ୍କୁ ଯୁଦ୍ଧ ଜୟ କରିବାକୁ ପଡ଼ି ନ ଥିଲା । ରାଜ୍ୟଗୁଡ଼ିକ ସମନ୍ୱିତ ରାଜ୍ୟ ବ୍ୟବସ୍ଥା (Integrative Polity) ଆଧାରରେ ବର୍ହିସମ୍ବନ୍ଧ ପାଇଁ ତଥା ଆନ୍ତରିକ କଳହ ବେଳେ ଆପୋସ ସମାଧାନ ଉଦ୍ଦେଶ୍ୟରେ ସମ୍ବଲପୁରକୁ ଜ୍ୟେଷ୍ଠର ମାନ୍ୟତା ଦେଇଥିଲେ । ଏହି ବ୍ୟବସ୍ଥାର ଅର୍ଥ ହେଲା, ଗୋଟାଏ କ୍ଷେତ୍ରରେ ସ୍ଥିତ ଅନେକ ଗୁଡିଏ କ୍ଷୁଦ୍ର ରାଜ୍ୟ ମିଳିତ ହୋଇ ସେମାନଂକ ମଧ୍ୟରୁ ଗୋଟାଏ ରାଜ୍ୟକୁ ଅଗ୍ରାଧିକାର ପ୍ରଦାନ କରନ୍ତି । ଏହା ଏକ ନୂଆଁ ବ୍ୟବସ୍ଥା ନୁହେଁ ଏବଂ ପୁରୀର ଗଜପତି ରାଜାଙ୍କୁ ମଧ ଉତ୍କଳର ଅନ୍ୟ ରାଜ୍ୟମାନେ ପାରଂପରିକ ଭାବେ ଜ୍ୟେଷ୍ଠର ମାନ୍ୟତା ଦେଇ ଆସୁଥିଲେ । ଅନ୍ୟ ଶବ୍ଦରେ କହିଲେ, ସମ୍ବଲପୁରର ଏହି ପ୍ରତିନିଧି ସ୍ଥାନୀୟ ମାନ୍ୟତା କୋଶଳ କ୍ଷେତ୍ରର ରାଜ୍ୟଗୁଡ଼ିକୁ ଏକ ରାଜନୈତିକ ସଙ୍ଘର ମର୍ଯ୍ୟାଦା ଦେଲା । ଫଳରେ ଉକ୍ତ ଭୂଗୌଳିକ କ୍ଷେତ୍ର ଏକ ରାଜନୈତିକ କ୍ଷେତ୍ର ମ୍ନ ହେବାର ଅବସର ପାଇଲା । ଏଠାରେ ସ୍ପଷ୍ଟ ହେବା କଥା ଯେ, ସପ୍ତଦଶ ଶତାବ୍ଦୀ ପୂର୍ବରୁ ସମ୍ବଲପୁରକୁ ମୂଳ ପାଟଣା ରାଜ୍ୟର ଭାଇଭାଗ କୁହାଯାଉଥିଲା । ଅର୍ଥାତ ସମ୍ବଲପୁରର ଅଭିବୃଦ୍ଧି ଆଗରୁ ମଧ ଉକ୍ତ ହୁଗୁଳା ସଂଘୀୟ

ବ୍ୟବସ୍ଥା (Loose Federation) କୋଶଳରେ ମୋଟାମୋଟି ଭାବେ ପ୍ରଚଳିତ ରହିଥିଲା ।

ସପ୍ତଦଶ ଶତାବ୍ଦୀରେ ବଳିଆର ସିଂହଙ୍କ ରାଜକବି ଥିଲେ ଗଙ୍ଗାଧର ମିଶ୍ର, ଯିଏ ସଂସ୍କୃତରେ "କୋଶଳାନନ୍ଦମ" କାବ୍ୟ (୧୬୬୩) ରଚନା କରିଥିଲେ । ରାଜ ପୃଷ୍ଠପୋଷକତାରେ ଏହି ଅବଧିରେ 'ଜୟ ଚନ୍ଦ୍ରିକା' "ନୃସିଂହ ମାହାତ୍ମ୍ୟ", "ରମାଇ ଦେବ" (ଦ୍ୱାଦଶ ଶତାବ୍ଦୀରେ ପାଟଣା ରାଜ୍ୟର ପ୍ରତିଷ୍ଠାତା) ଏବଂ "ରାବଣ-ଅଙ୍ଗଦ ଉବାଚ" ଆଦି କାବ୍ୟର ରଚନା ହୋଇଥିଲା, ଯାହାର ଉଦ୍ଦେଶ୍ୟ ଥିଲା ସମ୍ବଲପୁର ରାଜାଙ୍କୁ ଉଚ୍ଚ ମାନ୍ୟତା (Legitimacy) ପ୍ରଦାନ କରିବା । (Fanindam Deo, The Setting and Historical Experience, in Srinivas Udgata, et al (ed), Cultural Legacy of Western Odisha, Bolangir, 2010, P. 119) ଲକ୍ଷ୍ୟ କରିବା କଥା ଯେ, ପଂଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟ ଓ ଅନ୍ୟାନ୍ୟ ଭାରତୀୟ ଭାଷାର ସାହିତ୍ୟ ବିକାଶ ଲାଭ କରିଥିଲା । ମାତ୍ର ଏହାର ଶହେ ବର୍ଷ ପରେ ମଧ୍ୟ କୋଶଳ ଅଂଚଳର ଚାରଣ କବିମାନେ(Bard poets) ସ୍ଥାନୀୟତାକୁ ମାନ୍ୟତା ଦେବାଲାଗି ସଂସ୍କୃତରେ କାବ୍ୟ ଲେଖିଥିଲେ, ସଂସ୍କୃତର ସାହାଯ୍ୟ ନେଇଥିଲେ। ଫଳରେ କଥିତ କୋଶଳି ଭାଷାକୁ ଲେଖା ସାହିତ୍ୟ ହେବାର ଆବଶ୍ୟକୀୟ ଅବକାଶ ମିଳି ନ ଥିଲା । ଏହି ସମୟରେ 'କୋଶଳାନନ୍ଦମ' କାବ୍ୟ ସୂତ୍ରରୁ କ୍ଷେତ୍ର ପାଇଁ 'କୋଶଳ' ନାଁକୁ ବୌଦ୍ଧିକ ମାନ୍ୟତା ମିଳିଲା, ହେଲେ ବାହାରର ଲୋକ ଅଂଚଳଟିକୁ ସମ୍ବଲପୁର ବୋଲି ଜାଣିଲେ । ଏହା ପଛରେ କାରଣ ହେଲା ଯେ, ମହାନଦୀ କୂଳରେ ସ୍ଥାପିତ ସମ୍ବଲପୁର ସହର ମହାନଦୀ ନଦୀବ୍ୟବସ୍ଥା (River System)ର ଉପଯୋଗ କରି ପୂର୍ବ ଓ ପଶ୍ଚିମ ଓଡିଶା କ୍ଷେତ୍ରର ପ୍ରମୁଖ ବ୍ୟବସାୟିକ କେଂଦ୍ର ହେଲା। ପୁଣି, ସ୍ଥଳ ପଥରେ ମଧ୍ୟ-ଭାରତ(ନାଗପୁର) ଓ ଛୋଟନାଗପୁର(ରାଂଚି) ପାଇଁ ସମ୍ବଲପୁର ହେଲା ସଂଯୋଗ ସ୍ଥଳ । ସପ୍ତଦଶ ଶତାବ୍ଦୀରେ ୟୁରୋପୀୟଂକ ଭାରତ ଆଗମନ ସମେତ ବିଭିନ୍ନ ପରିସ୍ଥିତି ଯୋଗୁଁ କ୍ଷେତ୍ରର ବର୍ହିବାଣିଜ୍ୟ ବୃଦ୍ଧି ପାଇଲା । ପଶ୍ଚିମ ଓଡ଼ିଶାର ହସ୍ତତନ୍ତ ଲୁଗା ଦେଶ-ବିଦେଶକୁ, ଏପରିକି ୟୁରୋପରେ ଯାଇ ପହଂଚିଲା । ସେତେବେଳେ ସମ୍ବଲପୁର ହେଲା ପଶ୍ଚିମ ଓଡ଼ିଶା ପାଇଁ ଦ୍ୱାର ସଦୃଶ । ଫଳରେ ମୋଟ ପଶ୍ଚିମ ଓଡ଼ିଶାକୁ ବାହାର ଲୋକ'ସମ୍ବଲପୁର' ନାଁରେ ଜାଣିଲେ । ସେହି ସୂତ୍ରରେ ଭାଷାର ନାଁ ହେଲା 'ସମ୍ବଲପୁରୀ', ଲୋକଗୀତର ନାଁ ସମ୍ବଲପୁରୀ ଗୀତ ; ପୁଣି ଶାଢ଼ିର ନାଁ 'ସମ୍ବଲପୁରୀ ଶାଢ଼ି' ।

ବିଂଶ ଶତାବ୍ଦୀର ଅଶୀ ଦଶକ ଯାଏଁ ଅନ୍ତତଃ କୋଶଳି ଭାଷାକୁ ଲୋକ 'ସମ୍ବଲପୁରୀ' ନାଁ ରେ ଜାଣୁଥିଲେ । ନାଁ କୁ ନେଇ କୌଣସି ଭିନ୍ନମତ ମଧ୍ୟ ନ ଥିଲା। ମାତ୍ର ଅଶୀ

ଦଶକରୁ କୋଶଳି ଭାଷା ଆନ୍ଦୋଳନ ତେଜିଲା । ଆନ୍ଦୋଳନ ପଛରେ ଥିଲା ଆଂଚଳିକ ଅସ୍ମିତା ଓ ସ୍ୱାଭିମାନର ପ୍ରସଙ୍ଗ । ସେତେବେଳେ ପଶ୍ଚିମ ଓଡ଼ିଶାର ଭାଷା, ସଂସ୍କୃତି, ପରମ୍ପରା ଏବଂ ସର୍ବୋପରି ବିବିଧତାକୁ ସମନ୍ୱିତ କରି ଧରି ରଖିବା ପାଇଁ ଏକ ସର୍ବମାନ୍ୟ ନାମର ଲୋଡ଼ାପଡ଼ିଲା । ସମୟାନ୍ତରରେ ସମ୍ବଲପୁର ମଧ୍ୟ ଆଉ ପଶ୍ଚିମ ଓଡ଼ିଶା ପାଇଁ ମୁଖ୍ୟ ପ୍ରବେଶଦ୍ୱାର ହୋଇ ରହିଲା ନାହିଁ । ଅଂଚଳର ଆଉ ଅନେକ ସହର ଏକାମାତ୍ରାରେ ବାଣିଜ୍ୟ ଓ ବ୍ୟବସାୟର କେନ୍ଦ୍ର, ଶିକ୍ଷା ଓ ସଂସ୍କୃତିର ଅନ୍ୟତମ ପୀଠଭୂମି ହେଲେ। ୧୯୫୦ ଦଶକରେ ରାଉରକେଲାର ନୂଆଁ କରି ନିର୍ମାଣ ହେବା ଉତ୍ତାରୁ ସମ୍ବଲପୁର ପଶ୍ଚିମ ଓଡ଼ିଶାର ସବୁଠାରୁ ବଡ଼ ସହର ହୋଇ ବି ରହିଲା ନାହିଁ । ଏହି ସ୍ଥିତିରେ ପଶ୍ଚିମ ଓଡ଼ିଶାର ଭାଷାର ନାଁ 'କୋଶଳି' ହେଉ ବୋଲି ମତ ଶୁଣିବାକୁ ମିଳିଲା।ଏବେ ୧୯୯୩ରୁ ଉଭୟ ନାମକୁ ମିଶାଇ 'କୋଶଳି-ସମ୍ବଲପୁରୀ' ନାଁରେ ଏହାକୁ ଗ୍ରହଣ କରାଯାଇଛି। ମାତ୍ର ଉଭୟ 'ସମ୍ବଲପୁରୀ' ଓ 'କୋଶଳି' ନାଁ ର ରହିବାରେ କୌଣସି ଅସ୍ୱାଭାବିକତା ନଥିଲା । ଏମିତିରେ ଆମର ପ୍ରଦେଶ, ଦେଶ ଓ ଦେବା-ଦେବୀଙ୍କର ଯଦି ଏକାଧିକ ନାଁ, ଭାଷାର ନାଁ ଉଭୟ 'କୋଶଳି' ଓ 'ସମ୍ବଲପୁରୀ' ରହିବାରେ ଆଦୌ ସମସ୍ୟା-ପୂର୍ଣ ନୁହେଁ । ବରଂ ତାହା ଆଂଦୋଳନର ପୃଷ୍ଠଭୂମିକୁ ଦର୍ଶାଂତା। ଲୋକ ନିଜ ଇଚ୍ଛା ମତେ ଗୋଟାକୁ ବାଛି ନିଅଂତେ। ବ୍ୟକ୍ତିଗତ ଭାବେ ମୁଁ ଏହି ଭାଷା-ସାହିତ୍ୟ ଆନ୍ଦୋଳନର ଚର୍ଚ୍ଚା ବେଳେ ନିଜ ସୁବିଧାମତେ ଉଭୟ ନାଁ ର ବ୍ୟବହାର କରିଛି । ଦୁଇଟି ନାଁ ଯୋଗୁଁ ଚର୍ଚ୍ଚା ବାଧିତ ହୋଇନାହିଁ।

## ଭାଷା ଚର୍ଚ୍ଚାର ଆରମ୍ଭ କେବେ ?

ମନେହୁଏ, ପ୍ରଥମେ ବରଗଡ଼ ଅଂଚଳର କବି ସ୍ୱପ୍ନେଶ୍ୱର ଦାସ ସମ୍ବଲପୁରୀ ଭାଷାକୁ ନେଇ ଚର୍ଚ୍ଚା ଆରମ୍ଭ କରିଥିଲେ । ଏହା ୧୯୨୦ ଦଶକର ପୂର୍ବାର୍ଦ୍ଧ କଥା । ସେତେବେଳେ କୋଶଳି ନାଁ ର ପ୍ରଚଳନ ନ ଥିଲା । ନିଜ ସମ୍ପାଦିତ 'ସାଧନା' ପତ୍ରିକାରେ ଏକାଧିକ ପ୍ରବନ୍ଧରେ ପଶ୍ଚିମ ଓଡ଼ିଶାର ଭାଷା-ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ କବି ଦାସ ଆଲୋକପାତ କଲେ । ତାଙ୍କ ମତରେ, ପଶ୍ଚିମ ଓଡ଼ିଶାରେ ପ୍ରଥମେ ଆଦିବାସୀ ଏବଂ ତଦୁତ୍ତାରୁ ତଥାକଥିତ 'ତଳ' ଜାତିର ଲୋକ ଜନବସତିମାନ ସ୍ଥାପନ କଲେ । ସମୟକ୍ରମେ ବାହାର ଲୋକ ଆସି କୃଷି କର୍ମ କଲେ । ଶେଷରେ ବ୍ରାହ୍ମଣ ମଧ୍ୟ ଆସିଲେ । କବିଂକ ମତ ନିରାଧାର ମନେ ହୁଏ ନାହିଁ। ହଳ ନ କରୁଥିବା ସତ୍ତ୍ୱେ ବ୍ରାହ୍ମଣର କୃଷି ପରିଚାଳନାଗତ ଦକ୍ଷତା ଯୋଗୁଁ କୃଷି ସଂପ୍ରସାରଣ ହେଲା; ଉତ୍ପାଦନ ଓ ଆର୍ଥିକ ଗତିବିଧି ବୃଦ୍ଧି ପାଇଲା । ଆମ ଆଲୋଚନା ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ ହେଲା ଯେ ଗାଁ ସମାଜରେ ଏକ ସମ୍ପର୍କର ଭାଷା ରୂପରେ ସମ୍ବଲପୁରୀ ବିକାଶ ଲାଭ କଲା । ଏକ ନିରୋଳା ସାଂସ୍କୃତିକ ଓ

ଭାଷା ଭିତ୍ତିକ ଖଣ୍ଡ ଭାବରେ ବହୁଦିନ ଧରି ଅଂଚଳଟି ରହିଥିଲା ବୋଲି ତା'ର ଭାଷା ଓ ସଂସ୍କୃତିରେ ସ୍ୱାତନ୍ତ୍ର୍ୟ ଦେଖିବାକୁ ମିଳିଲା । କଥିତ ଭାଷାରୁ ଜାତ ହେଲା ଲୋକ ସାହିତ୍ୟ ଏବଂ ତେଣିକି ଲେଖା ସାହିତ୍ୟ । ଭାଷା ତତ୍ତ୍ୱବିଦମାନେ ସମ୍ଭବତଃ ଏକମତ ହେବେ ଯେ ସବୁ ଭାଷା-ସଂସ୍କୃତିର ବିକାଶର ଏହା ହିଁ ସ୍ୱାଭାବିକଧାରା । ଅନ୍ୟ ଶବ୍ଦରେ କହିଲେ, ଗୋଟାଏ ଦୃଷ୍ଟିରୁ ଦେଖିଲେ, ପ୍ରତ୍ୟେକ ଭାଷା-ସଂସ୍କୃତି ସ୍ୱତନ୍ତ୍ର, ପୁଣି ଅନ୍ୟ ଦୃଷ୍ଟିରୁ ପ୍ରତ୍ୟେକଟି ଗୋଟାଏ ଗୋଟାଏ ମିଶ୍ର ଭାଷା-ସଂସ୍କୃତି । ସଂସ୍କୃତ ବି ଏହାର ବ୍ୟତିକ୍ରମ ନୁହେଁ। ଗ୍ରାମୀଣ ସମାଜରେ ଆଦିବାସୀ, 'ତଳ' ଜାତି, କୃଷି କର୍ମ ପାଇଁ ଆସିଥିବା ବାହାର ଲୋକ ଏବଂ ସର୍ବୋପରି 'ଉଚ୍ଚ' ଜାତିର ସମାଗମ ଯୋଗୁଁ ଏକ ମିଶ୍ରିତ ଭାଷା-ସଂସ୍କୃତି ରୂପେ ସମ୍ବଲପୁରୀ ଅସ୍ତିତ୍ୱ ଲାଭ କଲା ।

**ଲେଖା ସାହିତ୍ୟର ଉନ୍ମେଷ**

କୋଶଳି ଲେଖା ସାହିତ୍ୟର ଉନ୍ମେଷ ଉନବିଂଶ ଶତାବ୍ଦୀର ଶେଷ ଦଶକ ବୋଲି ଆକଳନ କରିହୁଏ । ୧୮୯୧ ରେ 'ସଂବଲପୁର ହିତୈଷିଣୀ' ପତ୍ରିକାରେ କବି ମଧୁସୂଦନ ନାମରେ ଜଣେ 'ଦୂତି ଲୋ' ଶୀର୍ଷକରେ କବିତାଟିଏ ପ୍ରକାଶ କରିଥିଲେ। ଅବଶ୍ୟ ଗୀତି-କବିତା ମ୍ନାମରେ ସଂବଲପୁରୀ -କୋଶଳି ଲୋକ ସାହିତ୍ୟ ବହୁ ପ୍ରାଚୀନ ନିଶ୍ଚୟ । ୧୯୦୦ ରୁ ୧୯୧୦ ର ଅନୁମାନିକ ଅବଧି ମଧ୍ୟରେ ଚଇତନ ଦାସ ଲେଖିଥିବା 'ଚଢ଼େଇ ଚଉତିଶା'ର ମଧ୍ୟ ଚର୍ଚ୍ଚା ହୋଇଥାଏ। ସେହି ସମୟରେ (୧୯୧୦-୨୦) ବାଲାଜୀ ମେହେରଙ୍କ 'ଗୁଡ଼ିଆଁ', 'କୁମ୍ଭାର ପସରା' ଓ 'ସୁନାରି ପସରା' ମଧ ଲେଖା ହୋଇଥିଲା । ଲକ୍ଷ୍ମଣ ପତି ୧୯୧୫ରୁ ୧୯୨୫ ମ୍ନରେ 'ଆଦି ବନ୍ଦନା','ମୁନୁଷ ବରନ', 'ମାଏଝି ବରନ','ତେଲି ପସରା','ଭୁଲିଆ ପସରା' ଓ 'ଶବର ଲୀଳା' ଆଦି ଶୀର୍ଷକରେ କ୍ଷୁଦ୍ର କଳେବର ବିଶିଷ୍ଟ କେତୋଟି ଚଟି ଗୀତ ଲେଖିଥିଲେ । ଗ୍ରାମ୍ୟ ମଂଚରେ ଏହି ସବୁ ଛନ୍ଦବଦ୍ଧ ଗୀତର ପ୍ରଦର୍ଶନ ହେଉଥିଲା । ନାଟକ ଅଭିନୟ ଭିତରେ ମଧ କ୍ଷୁଦ୍ର କଳେବର ବିଶିଷ୍ଟ ସମ୍ବଲପୁରୀ ରଚନାକୁ ସ୍ଥାନିତ କରାଯାଉଥିଲା । ସେଗୁଡିକ ମୁଦ୍ରିତ ହୋଇଥିଲା ଯଦି, ଏବେ ଉପଲବ୍ଧ ନୁହେଁ। ଏହି ସନ୍ଦର୍ଭରେ କପିଳ ମହାପାତ୍ର (୧୮୯୧-୧୯୪୭)ଙ୍କ ସମ୍ବଲପୁରୀ କାବ୍ୟ 'ଗାଉଁଲିଆ ରାମାୟଣ' (୧୯୨୫) ହେବ ଏକ ଅନବିଦ୍ୟ କୃତି । ଚଟି ଗୀତ ଆକାରର ଏହି ସଂକ୍ଷିପ୍ତ ରାମାୟଣ କାବ୍ୟକୁ କବି ମୁଦ୍ରଣ କରି ନିଜେ ଗାଇ ଗାଇ ବିକ୍ରୀ କରୁଥିଲେ ।

**ଖଗେଶ୍ୱର ଶେଠ: ଯୁଗାନ୍ତକାରୀ କବି ପ୍ରତିଭା**

ଖଗେଶ୍ୱର ଶେଠ(୧୯୦୬-୧୯୮୭) ହେବେ କୋଶଳିର ଜଣେ

ଯୁଗାଂତକାରୀ କବି ପ୍ରତିଭା। ଖଗେଶ୍ୱର ୧୯୨୯-୩୦ ରୁ ନିରନ୍ତର ଉଭୟ ସମ୍ବଲପୁରୀ ଓ ଓଡ଼ିଆରେ ଅନେକ କାବ୍ୟ କବିତା ଲେଖିଥିଲେ । ତାଙ୍କ ସମ୍ବଲପୁରୀ କୃତି ମଧ୍ୟରେ ରହିଛି - 'ପଏର୍ଛା ସତୀ', 'ଭୋଟ ବିଚାର', 'ଦଲେଇ ପଡ଼ାର ସମଲେଇ', 'ପାପର ମା-ବାପ', 'ଠାଙ୍ଗରୁ ବାବା' ଓ 'ମୁନୁଷ ଜାତିର ସଭାବ' । ସେହିଭଳି ତାଙ୍କର କେତେ ଗୋଟି ଓଡ଼ିଆ କୃତି ହେଲା ; 'ଅଶ୍ରୁତର୍ପଣ', 'ଆମେ ଗରିବ କାହିଁକି', 'ମୁକ୍ତାବଳୀ', 'ମୁକ୍ତି', 'ସୁରଙ୍ଗୀ', 'ମହାପ୍ରଭୁ', 'ଧନ୍ୟ କଳିକାଳ', 'ବିଶାଦ ନିଶା' ଓ 'ଉତ୍କଳ କବିତା' । ଖଗେଶ୍ୱର ଗ୍ରାମ୍ୟ ମଂଚ ପାଇଁ ନାଟକ ଲେଖୁଥିଲେ; ତା'ର ନିର୍ଦ୍ଦେଶନା ଦେଉଥିଲେ ତଥା ତହିଁରେ ନିଜେ ମଧ୍ୟ ଅଭିନୟ କରୁଥିଲେ । ତାଙ୍କ ଲିଖିତ ନାଟକ ମଧ୍ୟରେ 'ଦାନବୀର ହରିଶ୍ଚନ୍ଦ୍ର', 'ମାୟାବିନୀ' ଓ 'ସତି ସାବିତ୍ରୀ' ଅନ୍ୟତମ । ତାଂକ ନାଟକ ଭିତରେ ସଂବଲପୁରୀ ଗୀତି-କାବ୍ୟର ପରିବେଷଣ ନାଟ୍ୟ ପରିବେଶକୁ ମନୋରମ କରୁଥିଲା ।

କୋଶଲି ଭାଷା-ସାହିତ୍ୟ ଆନ୍ଦୋଳନର ବ୍ୟାପକ ପରିପ୍ରେକ୍ଷୀରେ ଖଗେଶ୍ୱରଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟକୃତିର ଅନେକ ମହତ୍ୱ ରହିଛି । ସେ ଥିଲେ ଦଳିତ କେଉଟ ଜାତିର ଏବଂ ଜମିହୀନ; ସମଗ୍ର ଜୀବନ ଧାନ କୁଟି, ଜଂଗଲରୁ କାଠ କାଟି, ମୁଢ଼ି ଭାଜି ଶ୍ରମଜୀବୀର ଜୀବିକା ନିର୍ବାହ କରୁଥିଲେ । ତାଙ୍କର କୌଣସି ଔପଚାରିକ ଶିକ୍ଷା ନ ଥିଲା । ଆର୍ଯ୍ୟ ସମାଜ ଓ ଗାନ୍ଧୀ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ସମାଜ ସଂସ୍କାରର ଦୃଷ୍ଟି ରଖୁଥିଲେ । ଗ୍ରାମୀଣ ସମାଜରେ ଜାତି ଭେଦ, ଧାର୍ମିକ କୁସଂସ୍କାର ଓ ଲିଙ୍ଗଗତ ପକ୍ଷପାତ ବିରୁଦ୍ଧରେ ମୁଖର ଥିଲେ ବୋଲି ତାଂକୁ ବାରମ୍ବାର ସାମାଜିକ ବାସନ୍ଦର ଶିକାର ହେବାକୁ ପଡୁଥିଲା । ନିଜ ଜୀବଦ୍ଦଶାରେ ସେ ଅନ୍ୟୂନ ଦଶଥର ଗ୍ରାମାନ୍ତରୀ ହୋଇଛନ୍ତି ଏବଂ ଘୋର ଆର୍ଥିକ ଓ ସାମାଜିକ ଅସୁବିଧା ଭୋଗିଛନ୍ତି । ଶ୍ରମଜୀବୀ ଚଳଣି, ବୈଚାରିକ ସଂଘର୍ଷ ଓ ସୃଜନଶୀଳତାର ଏକ ଅପୂର୍ବ ସମନ୍ୱୟ ତାଂକ ରଚନାରେ ଦେଖିବାକୁ ମିଳିଥାଏ ।

ଖଗେଶ୍ୱର ନିଜ କାବ୍ୟ କବିତାରେ ନିଡର ହୋଇ ସାମାଜିକ ଓ ଆର୍ଥିକ ପକ୍ଷପାତିତା ବିରୁଦ୍ଧରେ ସ୍ୱର ଟୋଳିଛନ୍ତି । ଧାର୍ମିକ କୁସଂସ୍କାର, ଜାତିଭେଦ ଓ ଲିଙ୍ଗଗତ ଅସାମ୍ୟ ବିରୁଦ୍ଧରେ ସେ ଯେଉଁ ମାତ୍ରାରେ ସ୍ୱର ଟୋଳିଥିଲେ ତାହା ତାଙ୍କ ସମସାମୟିକ ବୌଦ୍ଧିକ ଜଗତରେ ବିରଳ ପ୍ରାୟ । ସେତେବେଳେ ବୌଦ୍ଧିକ ଚର୍ଚ୍ଚାରେ ପଶ୍ଚିମ ଓଡ଼ିଶାରେ ମଧ୍ୟ ସଂସ୍କୃତ ଓ ଓଡ଼ିଆର ମାତ୍ରାଧିକ କର୍ତ୍ତୃତ୍ୱ ରହିଥିଲା । ଲୋକ ସେହି ଯୋଗୁଁ ସମ୍ବଲପୁରୀକୁ ଅପାଠୁଆ, ମୁର୍ଖ ସ୍ତରର ସାହିତ୍ୟ ବୋଲି ହେୟଜ୍ଞାନ କରୁଥିଲେ । ଅର୍ଥାତ ୧୯୩୦ ରେ ସମ୍ବଲପୁରୀରେ ଲେଖିବା ତଥା ଓଡ଼ିଆ ଲେଖାରେ ସମ୍ବଲପୁରୀ ଶବ୍ଦ ଓ ଉପମା ଅଳଙ୍କାର ର ବ୍ୟବହାରକୁ ବୌଦ୍ଧିକ ମାନ୍ୟତା ଦିଆଯାଉ ନ ଥିଲା । ପୁଣି, ଖଗେଶ୍ୱର ଦଳିତ କେଉଟ

ଜାତିର ବୋଲି ବୌଦ୍ଧିକ କାର୍ଯ୍ୟ ଲାଗି ତାଂକ ଉପରେ ଏକ ଅଘୋଷିତ ବାରଣ ବି ରହିଥିଲା। ଏହି ଭଳି ଏକ ବିପରୀତ ସ୍ଥିତିରେ ନିଡ଼ର ହୋଇ ସେ ସମ୍ବଲପୁରୀରେ ଲେଖିଥିଲେ । ସଂସ୍କାର କଥା କହୁଥିଲେ; ନିଜ ରଚନାର ମଂଚାଭିନୟ କରୁଥିଲେ। ଶିକ୍ଷିତ ଓ ଉଚ୍ଚ ବର୍ଗ ସମ୍ବଲପୁରୀ ସାହିତ୍ୟକୁ 'ତଳ' ଦୃଷ୍ଟିରେ ଦେଖୁଥିଲେ ବୋଲି ତା'ର ପଠନ-ପାଠନକୁ ପ୍ରୋତ୍ସାହନ ଦେଉନଥିଲେ। ବାଲାଜୀ ମେହେର ଏବଂ ଖଗେଶ୍ୱର ଶେଠ, ଆଦି 'ତଳ' ଜାତିର ଲୋକ ହିଁ ସମ୍ବଲପୁରୀ ସାହିତ୍ୟିକ ଆନ୍ଦୋଳନକୁ ଗତିଶୀଳ କଲେ । 'ଗାଉଁଲିଆ ରାମାୟଣ'ର ରଚୟିତା କପିଳ ମହାପାତ୍ର ସମ୍ବଲପୁରୀରେ ଲେଖି ଏକ ରକମର ନିଜର ବ୍ରାହ୍ମଣ ଜାତି ମର୍ଯାଦା ହରାଇଥିଲେ ବୋଲି କୁହାଯାଏ। ଖଗେଶ୍ୱରଙ୍କ ଓଡ଼ିଆ ରଚନା 'ଗ୍ରନ୍ଥାବଳୀ' ଆକାରରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ ସଂଗୀତ ନାଟକ ଏକାଡେମୀର ମିଳିତ ଆନୁକୂଲ୍ୟରେ ୧୯୫୮ରେ ପ୍ରକାଶିତ ହୋଇଥିଲା ସତ; ମାତ୍ର, ତହିଁରେ ମଧ୍ୟ କବିଂକର କୌଣସି ସଂବଲପୁରୀ ରଚନାକୁ ସ୍ଥାନିତ କରାଯାଇନଥିଲା। ଓଡିଆ ରୂପାଂତରଣ ପରେ ଯାଇ ତାଂକର ବହୁ ଚର୍ଚ୍ଚିତ କାବ୍ୟ 'ପଏର୍ଛା ସତୀ'ର ଗ୍ରଂଥାବଳୀରେ ସ୍ଥାନ ନିଶ୍ଚିତ ହୋଇଥିଲା। ୨୦୧୭ରେ ନୂଆଁ ଭାବେ ବରଗଡ଼ରୁ ତାଂକ ଗ୍ରନ୍ଥାବଳୀ ପ୍ରକାଶିତ।

**୧୯୮୦ ଦଶକରୁ ଭାଷା – ସାହିତ୍ୟର ବିକାଶ**

୧୯୬୦ ଦଶକରେ ସମ୍ବଲପୁରରେ ଆକାଶବାଣୀ କେନ୍ଦ୍ରର ସ୍ଥାପନ କୋଶଲି ସାହିତ୍ୟର ବିକାଶରେ ଖୁବ ସହାୟକ ହେଲା । ଗୀତି କବିତାର ମଧୁରତା ସମ୍ବଲପୁରୀକୁ ସମଗ୍ର ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ମଧ ପରିଚିତ କରାଇଲା । ସେତେବେଳର ଜନପ୍ରିୟ କବିଙ୍କ ମଧରେ ଥିଲେ: ଲାଲ ରତ୍ନାକର ସିଂ, ରାମପ୍ରସାଦ ପୁରୋହିତ, ମିତ୍ରଭାନୁ ଗୌନ୍ତିଆ, ମଙ୍ଗଲୁ ଚରଣ ବିଶ୍ୱାଳ ତଥା ମୁରାରୀ ପ୍ରସାଦ ମିଶ୍ର । ଅନ୍ୟ ଚର୍ଚ୍ଚିତ କବି-ଲେଖକଙ୍କ ମଧରେ ଥିଲେ ; ଶଶିଭୂଷଣ ମିଶ୍ରଶର୍ମା, ସତ୍ୟ ନାରାୟଣ ବହିଦାର (ସମ୍ବଲପୁରୀ ବ୍ୟାକରଣ), ଅଟଳବିହାରୀ ପଣ୍ଡା (ନାଟକ- 'ଟା କପାଲ), ଆଦି । ମାତ୍ର, ଏହି ସମୟରେ ବି ସମ୍ବଲପୁରୀରେ କୌଣସି ପତ୍ର-ପତ୍ରିକା ନ ଥିଲା । ଗୀତ ଓ ନାଟକର ପରିବେଷଣ ତଥା ସ୍ଥାନୀୟ ଭାଷା-ସଂସ୍କୃତି ବିଷୟକ ଚର୍ଚ୍ଚା ପାଇଁ ଆକାଶବାଣୀକୁ ହିଁ ପ୍ରମୁଖ ମଂଚ ମନେ କରାଯାଉଥିଲା । ତା' ଛଡ଼ା ନାଟକ ଓ 'ସଂଚାର' ଆଦି ଲୋକ କଳା ମାଧମରେ ସମ୍ବଲପୁରୀର ଲୋକ ସ୍ତରରେ ପ୍ରଚାର ପ୍ରସାର ହେଉଥିଲା । ଏଦିଗରେ ଆଶାନୁରୂପ ଉଦ୍ୟମ କରିଥିବା ବ୍ୟକ୍ତିଂକ ମଧ୍ୟରେ ଆକାଶବାଣୀର ମାନଭଂଜନ ହୋତା, ଅଭୟ ପାଢୀ ଏବଂ ଗ୍ରାମ୍ୟମଂଚର ନାଟ୍ୟକାର ଭଗବାନ ସାହୁ, ଶିଶୁପାଳ ସାହୁ ଓ ସଂଚାର କଳାକାର ଗଜେଂଦ୍ର ପସାୟତ, ଅଲେଖ ସାହୁ, ଦୁଃଖନାଶନ ସାହୁ, ମହିଳା କଳାକାର

ରାଧା, ଚଂନ୍ଦ୍ରମା, ଆଦି ଅନ୍ୟତମ। ଏସବୁ ମାଧ୍ୟମ ବିଶେଷ କରି ଗୀତି-କବିତାର ପ୍ରସାରଣରେ ସାହାଯ୍ୟ କରିଥିଲା; ୧୯୮୦ ଦଶକ ଯାଏଁ ସମ୍ବଲପୁରୀରେ ଗଦ୍ୟ ସାହିତ୍ୟର ଆଶାନୁରୂପ ବିକାଶ ହୋଇ ନ ଥିଲା ବୋଲି କହିବା ଠିକ ହେବ ।

ବିଂଶ ଶତାବ୍ଦୀର ଅଶୀ ଓ ନବେ ଦଶକକୁ ସମ୍ବଲପୁରୀର ଏକ ବିଶିଷ୍ଟ କାଳଖଣ୍ଡ ବୋଲି କୁହାଯାଇପାରିବ । ପ୍ରଥମ ଚଳଚିତ୍ର'ଭୁଖା' (ନିର୍ଦ୍ଦେଶକ ସବ୍ୟସାଚି ମହାପାତ୍ର), ପ୍ରଥମ ଉପନ୍ୟାସ 'ବିଲାସିନୀ' (ଧନପତି ମହାପାତ୍ର, ୧୯୯୦), କୋଶଳି ଭାଷାର ସଂକ୍ଷିପ୍ତ ପରିଚୟ (ପ୍ରୟାଗଦତ୍ତ ଯୋଷୀ, ୧୯୯୧), ଟିଟିଲାଗଡ଼ରେ ଦୋଳଗୋବିନ୍ଦ ବିଶିଙ୍କ ଉଦ୍ୟମରେ 'କୋଶଳ ସାହିତ୍ୟ ଏକାଡ଼େମୀ' ର ସ୍ଥାପନା, ପ୍ରଫୁଲ୍ଲ ତ୍ରିପାଠୀଙ୍କ 'ସମ୍ବଲପୁରୀ-ଓଡ଼ିଆ ଭାଷାକୋଷ', ନୀଳମାଧବ ପାଣିଗ୍ରହୀଙ୍କ 'ମହାଭାରତ କଥା' ଓ ପତ୍ରିକା 'ନିସାନ' ର ପ୍ରକାଶନ, ହେମଚନ୍ଦ୍ର ଆଚାର୍ଯଙ୍କ ସାତଖଣ୍ଡରେ ଲିଖିତ ରାମାୟଣ 'ରାମରାହା', ଓ କାବ୍ୟ 'ନୁନୀ' ଓ 'ସତରସତୀ ବୃନ୍ଦବତୀ' ତଥା ଗଳ୍ପ ସଙ୍କଳନ'କଥାନି ଲେଖେଁ ଲାଗସି' ଏବଂ 'କଥାନି ସତସତାନି', ପ୍ରହଲ୍ଲାଦ ଦାସଙ୍କ ସମ୍ପାଦନାରେ ସମ୍ବଲପୁରରୁ ପ୍ରକାଶିତ ପତ୍ରିକା 'ଆର୍ଟ ଓ ଆର୍ଟିଷ୍ଟ', ଉତ୍ପନ୍ନ ଭୋଇଙ୍କ ସମ୍ପାଦନାରେ ବରଗଡ଼ରୁ ପ୍ରକାଶିତ 'କଥା ଆର କଥାନି', ମଙ୍ଗଲୁ ଚରଣ ବିଶ୍ୱାଳ ଓ ଦ୍ୱାରିକା ନାୟକଙ୍କ ମିଳିତ ଉଦ୍ୟମରେ ସମ୍ପାଦିତ 'ଭରନି' ତଥା ହଳଧର ନାଗଙ୍କ ଗ୍ରନ୍ଥାବଳୀ ଲଗଭଗ ଏହି ସମୟର ସୃଷ୍ଟି । ଅନ୍ୟ ଶବ୍ଦରେ କହିଲେ, ସଂଖ୍ୟା ବେଶି ନ ହେଲେ ବି, ୧୯୮୦ ଦଶକରୁ ନିୟମିତ ଭାବେ ସମ୍ବଲପୁରୀରେ ନାଟକ, କାବ୍ୟ, ଆଲୋଚନା, ଗଳ୍ପ, ଗୀତ-କବିତା, ଭାଷାକୋଷ ଓ ବ୍ୟାକରଣ ଆଦି ଲେଖା ଚାଲିଛି । ସଭା ସମିତିରେ ସ୍ଥାନୀୟ ବକ୍ତା କୋଶଳିରେ କହିବା ଲାଗି ଆଗ୍ରହ ଦେଖାଉଛନ୍ତି। ସମ୍ବଲପୁରୀ ନାଟକ, କବିତା ପାଠୋତ୍ସବ ଓ କ୍ୟାସେଟ ଗୀତର ଲୋକପ୍ରିୟତା ସମଗ୍ର ଓଡ଼ିଶାକୁ ବ୍ୟାପିଛି । ଏକ ଭାଷା ଆନ୍ଦୋଳନକୁ ଗଢିବାରେ ଏ ସବୁ ଉଦ୍ୟମ ଯେ ମହତ୍ୱପୂର୍ଣ୍ଣ – ତାହା ଅନସ୍ୱୀକାର୍ଯ୍ୟ ।

## କୋଶଳି-ସଂବଲପୁରୀ ସାହିତ୍ୟର ସଂବୃଦ୍ଧି ପଛର କାରଣ

ସମକାଳୀନ ସମୟରେ ସାରା ଭାରତରେ ଆଂଚଳିକ ସ୍ୱାଭିମାନ ଓ ସ୍ୱାୟତ୍ତତା ଏକ ପ୍ରମୁଖ ପ୍ରସଙ୍ଗ । ଓଡ଼ିଶାରେ ମଧ ଏହା ଏକ ପ୍ରସଂଗ । ଲୋକଙ୍କ ପାଇଁ ଯେମିତି ରାଷ୍ଟ୍ରୀୟତା, ସେମିତି ଆଂଚଳିକତା ମଧ କେବେ ଉପେକ୍ଷଣୀୟ ପ୍ରଶ୍ନ ହୋଇ ନ ପାରେ । ଦ୍ୱିତୀୟତଃ, ରାଷ୍ଟ୍ରୀୟତା କିମ୍ବା ଆଂଚଳିକତା ଯଦି କେବଳ ପ୍ରଦର୍ଶନୀୟ ସ୍ତରରେ ସୀମିତ ନ ରହେ, କେବଳ ସ୍ଲୋଗାନ ସ୍ତରକୁ ସଙ୍କୁଚିତ ନହୋଇ ସମାବେଷ୍ଟୀ (Inclusive) ହୁଏ, ଘୃଣାକୁ ଅସ୍ତ୍ର ନକରେ, ତେବେ ଉଭୟ ପ୍ରଶ୍ନ ସମ୍ପୂର୍ଣ୍ଣ ରୂପେ ପରସ୍ପରର ପରିପୂରକ । କେବଳ ସେତିକି ନୁହେଁ, ତାହା ବିଶ୍ୱମୈତ୍ରୀ ପାଇଁ ମଧ ଅନ୍ତରାୟ ନୁହେଁ । ସେହି ଆଧାରରେ

ଦେଖିଲେ କୋଶଳି ଭାଷା ଆନ୍ଦୋଳନ ନା ଭାରତୀୟତାର ବିରୋଧୀ, ନା ଓଡ଼ିଆ ପ୍ରାନ୍ତୀୟତାର ପରିପନ୍ଥୀ । ଆଂଚଳିକ ସ୍ୱାଭିମାନ ରକ୍ଷାର୍ଥେ ଏହା ଏକ ଉଦ୍ୟମ ମାତ୍ର । ସ୍ୱାଭିମାନ ଓ ଅସ୍ମିତା ବ୍ୟକ୍ତିର ଏକ ମୌଳିକ ଆବଶ୍ୟକତା। ତହିଁରୁ ବ୍ୟକ୍ତିକୁ ବଂଚିତ କରାଯାଇନପାରେ। ଯେଉଁମାନେ ଭିନ୍ନ ଉଦ୍ଦେଶ୍ୟ ନେଇ ଏଥିରେ ସାମିଲ ହୋଇଛନ୍ତି, ସେମାନେ ମ୍ଭ ଏହାର ସୃଜନଶୀଳ ଦିଗକୁ ହୃଦୟଙ୍ଗମ କରିବା ସର୍ବାଦୌ ବିଧେୟ ।

କିଛି ଲୋକ ଓଡ଼ିଆ ଏବଂ କୋଶଳିକୁ ପରସ୍ପରର ପ୍ରତିଯୋଗୀ ଭାଷା ମନେ କରନ୍ତି । କୋଶଳିର ପକ୍ଷଧରମାନଙ୍କ ଯୁକ୍ତି ଯେ, ଏହା ଓଡ଼ିଆର ଉପଭାଷା ନୁହେଁ, ଏକ ସ୍ୱତନ୍ତ୍ର ଭାଷା; ଏହାର ଶବ୍ଦାବଳୀ ମୂଳ ସଂସ୍କୃତରୁ ଆନୀତ । ସମ୍ବଲପୁରୀ ଭାଷା-ଭଂଡାର ମ୍ଭ ଓଡ଼ିଆ ପରି ଦୃଢ଼ ଓ ବଳିଷ୍ଠ । ଠିକ ସେହିଭଳି, କେତେକ ଓଡ଼ିଆର ପକ୍ଷଧର, କୋଶଳିକୁ ଏକ ସ୍ୱତନ୍ତ୍ର ଭାଷା ବୋଲି ତର୍କ ଦିଆଗଲେ, ତାକୁ ସହ୍ୟ କରି ପାରନ୍ତି ନାହିଁ । ଏହି ସନ୍ଦର୍ଭରେ ପଣ୍ଡିତ ପ୍ରୟାଗଦତ୍ତ ଯୋଷୀଙ୍କ ଉଲ୍ଲେଖ ପ୍ରଣିଧାନ ଯୋଗ୍ୟ । ୧୯୮୬ ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଏକ ସମ୍ମାନରେ କୋଶଳି ପକ୍ଷରେ ଯୁକ୍ତି ବାଢ଼ିବାରୁ ସେଠାରେ ଉପସ୍ଥିତ ଓଡ଼ିଆ ସାହିତ୍ୟିକମାନେ ଏତେ ମାତ୍ରାରେ ତାଂକ ପ୍ରତି କଟୂକ୍ତି ପ୍ରକାଶ କଲେ ଯେ ଅନନ୍ୟୋପାୟ ହୋଇ ଆୟୋଜକଙ୍କୁ ସଭା ଅଧାରୁ ଭାଙ୍ଗିବାକୁ ପଡ଼ିଲା । (ପ୍ରୟାଗଦତ୍ତ ଯୋଷୀ, କୋଶଳୀ ଭାଷାର ସଂକ୍ଷିପ୍ତ ପରିଚୟ, ଟିଟିଲାଗଡ଼, ୧୯୯୧) ସେହିଭଳି, ୧୯୮୨ ଜୁଲାଇ ସଂଖ୍ୟାର 'ଝଙ୍କାର' ସଂପାଦକୀୟରେ ଲେଖିଥିଲା, 'ଯଦି ଉଦ୍ୟମ କରାହୁଏ ସମ୍ବଲପୁରୀ ଏକ ସ୍ୱତନ୍ତ୍ର ଭାଷା ରୂପେ ଗୃହୀତ ହେଉ, ତେବେ ଏହା ଅବାସ୍ତବ ଏବଂ ବିଚ୍ଛିନ୍ନତା ଭାବ ବ୍ୟଞ୍ଜକ – ଏଥିରେ ସନ୍ଦେହ ନାହିଁ ।' ଏହି ଧରଣର ଅସୂୟା ଭାବ ସାଧାରଣ କଥାବାର୍ତ୍ତାରେ ଅଧିକ ଉଗ୍ର ଭାବରେ ଶୁଣିବାକୁ ମିଳିଥାଏ । ଅବଶୋଷର କଥା ଯେ ଅନୁରୂପ ଓଡ଼ିଆ ବିରୋଧୀ ମନୋଭାବ ଅନେକ ସମ୍ବଲପୁରୀର ପକ୍ଷଧର ମ୍ଭ ପ୍ରଦର୍ଶିତ କରିଥାନ୍ତି ।

**ଉପସଂହାର**

ଭାଷାତାତ୍ତ୍ୱିକ ଦୃଷ୍ଟିରୁ କୋଶଳି ଏକ ସ୍ୱତନ୍ତ୍ର ଭାଷା ନା ନୁହେଁ, ତାହା ଯୁକ୍ତି କରିବା ଅବଶ୍ୟ ଭାଷାତତ୍ତ୍ୱବିଦଂକ କାମ। ମାତ୍ର ସାଧାରଣ ସ୍ଥୁଳ ଦୃଷ୍ଟିରେ ମଧ ପ୍ରସଙ୍ଗଟିକୁ ବିଚାର କରାଯାଇପାରେ । ଯଦି କିଛି ଲୋକ ନିଜ କଥିତ ଭାଷାକୁ ସାହିତ୍ୟିକ ଭାଷାରେ ରୂପାନ୍ତରିତ କରିବେ, ତହିଁରେ ସାହିତ୍ୟ ଲେଖିବେ, ତାକୁ ନେଇ ଆପତ୍ତି ହେବ ବା କାହିଁକି ? ଏହା ସେମାନଂକ ସ୍ୱାଭିମାନ ଓ ଅସ୍ମିତାକୁ ଆହତ କରିବ ନାହିଁ କି ? ଓଡ଼ିଆ ଭାଷା- ସାହିତ୍ୟ ଆବଶ୍ୟକ ମାତ୍ରାରେ ଉଦାର ଓ ନମନୀୟ ହୋଇଥିଲେ କଣ ସଂବଲପୁରୀ ଭାଷା ଆଂଦୋଳନର ଉନ୍ମେଷ ଘଟିଥାନ୍ତା ? ଏହା ବି ଏକ ବିଚାର୍ଯ୍ୟ ପ୍ରଶ୍ନ।

ମାତ୍ର, ସେହି ଅନୁକୂଳ ସ୍ଥିତିରେ ମଧ୍ୟ ଭାଷା ଆଂଦୋଳନ ସ୍ୱାଗତଯୋଗ୍ୟ। ପ୍ରଥମ କଥା, ଓଡ଼ିଶା ନାମକ ଭୂଗୌଳିକ କ୍ଷେତ୍ରରେ ବିକଶିତ ସମସ୍ତ କଥିତ ଭାଷାକୁ ସମାବେଷ୍ଟୀ (Inclusive) ଭାବ ନେଇ ଓଡିଆ ନିଜ ଭିତରେ ସମାହିତ କରି ପାରିବା କଥା। ଅନ୍ୟଥା ଏହା ଓଡିଆ ପଦବାଚ୍ୟ ହେବ କେମିତି ? ଏହା କ'ଣ ବିଡ଼ମ୍ବନା ନୁହେଁ ଯେ ଓଡ଼ିଶା ଭୂଗୌଳିକ କ୍ଷେତ୍ରର ସମସ୍ତ ଅଧିବାସୀ ପରିଚୟରେ ଓଡ଼ିଆ, ମାତ୍ର ସେମାନଙ୍କ ମଧରେ ଅନେକଙ୍କର ଶବ୍ଦ, ଉପମା ଓ ଅଳଙ୍କାରକୁ ଓଡ଼ିଆ ସାହିତ୍ୟ ଗ୍ରହଣୀୟ ମନେ କରେ ନାହିଁ ? କଣ ଏଭଳି ଅନୁଦାର ମନୋଭାବ ଯୋଗୁଁ ଓଡିଶାର ଜଣେ ବି ଆଦିବାସୀ ଆଜିଯାଏଁ ଓଡିଆରେ ଉପନ୍ୟାସଟିଏ ଲେଖିପାରି ନାହାଂତି ? ବାସ୍ତବିକତା ହେଲା ଯେ ଓଡ଼ିଆର କଥିତ ପ୍ରାରୂପ ଗୋଟାଏ ନୁହେଁ ; ତହିଁରେ ଅନକେ କିସମ। ତନ୍ମଧ୍ୟରୁ କେତୋଟି କିସମ ଅନ୍ୟଠାରୁ ଏତେ ଅଲଗ ଯେ ସେମାନେ ସ୍ୱତନ୍ତ୍ର ଭାଷା ଓ ସାହିତ୍ୟର ମର୍ଯ୍ୟାଦା ଦାବି କରନ୍ତି। ସାଧାରଣ ଦୃଷ୍ଟିରେ ଏହା ଆଦୌ ବିସଙ୍ଗତିପୂର୍ଣ୍ଣ ମନେ ହୁଏ ନାହିଁ। ବରଂ ତାହା ଓଡ଼ିଆର ପରିପୂରକ। ପଶ୍ଚିମ ଓଡ଼ିଶା, ଦକ୍ଷିଣ ଓଡ଼ିଶା, ଆଦିବାସୀ ଓଡ଼ିଶା ତଥା ଓଡ଼ିଶା ଭିତରେ ଥିବା ଅନ୍ୟାନ୍ୟ ଭାଷା ସଂଖ୍ୟାଲଘୁ ଗୋଷ୍ଠୀର ଆଂଚଳିକ ଶବ୍ଦ, ତଥା ଉପମା, ଅଳଙ୍କାରର ଓଡ଼ିଆ ଭାଷା-ସାହିତ୍ୟରେ ସମାହିତ ହେବାରେ ହିଁ ଓଡ଼ିଆ ଓ ଓଡ଼ିଶାର ଭବିଷ୍ୟତ ସୁରକ୍ଷିତ।

ଅନ୍ୟ ପକ୍ଷରେ, ସେସବୁ ଭାଷା-ସାହିତ୍ୟର ସ୍ୱତଂତ୍ର ଆନ୍ଦୋଳନ ସାଧାରଣ ଲୋକଙ୍କୁ ସାହିତ୍ୟ ଅନୁରାଗୀ ହେବାରେ ସାହାଯ୍ୟ କରିବ। କୋଶଳି ସାହିତ୍ୟର ଜଣେ ଜଣା ଶୁଣା କବି ହେଲେ ହଳଧର ନାଗ(ଜନ୍ମ ୧୯୫୦)। ପଶ୍ଚିମ ଓଡ଼ିଶାର ଯାହିଁ ଯେଉଁଠି ସେ କବିତା ପାଠ କରନ୍ତି, ଶହ ନୁହେଁ ହଜାର ହଜାର ଲୋକ ଆକୃଷ୍ଟ ହୋଇ କବିତା ଶୁଣିବାକୁ ଆସଂତି। ବାସ୍ତବିକତା ହେଲା ଯେ ହଳଧରଂକ ଔପଚାରିକ ଶିକ୍ଷା ନାହିଁ। ଆଜି ମଧ ସମ୍ବଲପୁରୀକୁ ବାଦ ଦେଲେ ଅନ୍ୟ ଭାଷାରେ ସେ କଥା କହିପାରିବେ ନାହିଁ। ଲେଖିବା ତ ଦୂରର କଥା। କୋଶଳି ଭାଷା ଆନ୍ଦୋଳନ ନ ଥିଲେ କ'ଣ ହଳଧର ନାଗ ଭଳି ଲୋକ ଗୀତ-କବିତା ଲେଖି ପାରିଥାନ୍ତେ ? ୧୯୩୦ ଦଶକରେ ଖଗେଶ୍ୱର ଶେଠଙ୍କ ପାଇଁ ସମ୍ବଲପୁରୀରେ ଲେଖିବା ଏକ ଦୁଃସାହସପୂର୍ଣ୍ଣ କାର୍ଯ୍ୟ ଥିଲା, ପଶ୍ଚିମ ଓଡ଼ିଶାର ଗ୍ରାମୀଣ ସମାଜରେ ମଧ ସମ୍ବଲପୁରୀ ଲେଖକଙ୍କୁ ବିଦୃପର ଶିକାର ହେବାକୁ ପଡୁଥିଲା। ଆଜି ଏକବିଂଶ ଶତାବ୍ଦୀରେ କୋଶଳି ସାହିତ୍ୟ ଚର୍ଚ୍ଚା ଏକ ମର୍ଯ୍ୟାଦାପୂର୍ଣ୍ଣ କାର୍ଯ୍ୟ; ଏକ ସ୍ୱାଭିମାନ ଏବଂ ଅସ୍ମିତାର ସୂଚକ। ଅନ୍ୟଥା ସାହିତ୍ୟ ଚର୍ଚ୍ଚାରୁ ବଂଚିତ ଅନୁଭବ କରୁଥିବା ବର୍ଗ ବି କୋଶଳି ସାହିତ୍ୟର ଆଗ ଧାଡ଼ିରେ। ଓଡ଼ିଆ ବିରୋଧତାକୁ ସମୟକ୍ରମେ କୋଶଳି ସାହିତ୍ୟିକ ବି ଛାଡିବାକୁ ଲାଗିଲେଣି। ନାଟକ, କବିତା

ପାଠୋତ୍ସବ ଓ ସମ୍ବଲପୁରୀ ଗୀତ ଆଦି ସାଧାରଣ ଲୋକଙ୍କୁ ମଧ୍ୟ ସାହିତ୍ୟ ଓ ସଂସ୍କୃତି ଅନୁରାଗୀ କରିବାର ସଂଭାବନା ରହିଛି । ସବୁଟାରୁ ବଡ଼ କଥା, ଲୋକ ସାହିତ୍ୟର ନିକଟତର ହୋଇଥିବାରୁ କୋଶଲି-ସଂବଲପୁରୀ 'ଉଚ୍ଚ' ଓ 'ତଳ' ଜାତି ' ତଥା ଦଳିତ ବର୍ଗକୁ ମଧ୍ୟ ସହଜରେ ପରିବ୍ୟାପ୍ତ ହେଉଛି ।

ଏଠାରେ ଏକଥା ମଧ୍ୟ ସ୍ପଷ୍ଟ ହେବା ଦରକାର ଯେ କୋଶଳି ସାହିତ୍ୟ ଭଣ୍ଡାର ଆଦୌ ଭରପୂର ନୁହେଁ । ଗଦ୍ୟ ସାହିତ୍ୟ କ୍ଷେତ୍ରରେ ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଅଭିବୃଦ୍ଧି ଲୋଡ଼ା । କୋଶଳି କେବଳ ସାହିତ୍ୟ ଯାଏଁ ସୀମିତ ନ ରହି ଇତିହାସ, ବିଜ୍ଞାନ, ଦର୍ଶନ, କଳା, ଗଣିତ, ଅନୁବାଦ ଆଦି ଆହୁରି ଅନେକ ବିଭାଗରେ ସାମଗ୍ରୀ ତିଆରିବା କଥା । ଦ୍ୱିତୀୟତଃ, ଓଡ଼ିଆରେ ସମାବେଶୀ ମନୋଭାବର ଅଭାବ ଯଦି କୋଶଳି ଭାଷା ଆନ୍ଦୋଳନ ପଛର ଅନ୍ୟତମ କାରଣ ହେଲା, ସେହି ଭାବର ଅଭାବ କୋଶଳିରେ ମ୍ଭ ଦୃଶ୍ୟମାନ ହେବା କଥା ନୁହେଁ । ଉଦାହରଣ ସ୍ୱରୂପ, କୋଶଳିର ବିଭିନ୍ନ କିସମର ଆଦୌ ଅନାଦର ହେବା କଥା ନୁହେଁ। କୋଶଳିର ଆଦିବାସୀ ମୂଳକୁ ଅଣଦେଖା କରାଯିବା କଥା ନୁହେଁ । ଆଦିବାସୀ ଭାଷା ଭାରତରେ ସଂସ୍କୃତଠାରୁ ମ୍ଭ ପୁରୁଣା । ଓଡ଼ିଆରେ ମଧ୍ୟ ଅନ୍ତତଃ ୨୮ ପ୍ରତିଶତ ଶବ୍ଦ ଆଦିବାସୀ ଭାଷାରୁ ବୋଲି ଅନୁମାନ। କୋଶଳି-ସଂବଲପୁରୀରେ ଆଦିବାସୀ ଭାଷାର ପ୍ରଭାବ ଅଧିକ ହୋଇପାରେ । ସେହିଭଳି, କୋଶଳିରେ ଓଡ଼ିଆର ମଧ୍ୟ ପ୍ରଭାବକୁ ଯଥୋଚିତ ମହତ୍ତ୍ୱ ଦିଆଯିବା କଥା । ଏହି ପରିପ୍ରେକ୍ଷୀରେ ଖଗେଶ୍ୱର ଶେଠଙ୍କ ରଚନା ଆଜିର ଲେଖକକୁ ମାର୍ଗ ଦେଖାଇପାରେ । ଖଗେଶ୍ୱର ଓଡ଼ିଆ ଲେଖାରେ ସମ୍ବଲପୁରୀ ଶବ୍ଦର ଏବଂ ସମ୍ବଲପୁରୀ ଲେଖାରେ ଓଡ଼ିଆ ଶବ୍ଦର ବ୍ୟବହାର ବେଳେ ଆଦୌ କାର୍ପଣ୍ୟ କରନ୍ତି ନାହିଁ । ତାଙ୍କ ଲିଖିତ ନାଟକରେ ମିଶ୍ରିତ ଭାଷାର ପ୍ରୟୋଗ ଦେଖିବାକୁ ମିଳେ । ହେମଚନ୍ଦ୍ର ଆଚାର୍ଯ୍ୟ (୧୯୨୬-୨୦୦୯)ଙ୍କ 'କୃଷ୍ଣକେଳି'ରେ (ରଚନା କାଳ ୧୯୭୩; ପ୍ରକାଶନ ୨୦୧୨, ହେମଚନ୍ଦ୍ର ଚୟନ) ମ୍ଭ ଉଭୟ ସମ୍ବଲପୁରୀ ଓ ଓଡ଼ିଆର ପ୍ରୟୋଗ ରହିଛି । ସବୁଠାରୁ ବଡ଼କଥା, ଏହି ଧରଣର ନାଟକ-ନାଟିକାରେ ସେହି ଏକା ଚରିତ୍ର, ଉଭୟ ଭାଷାର ବ୍ୟବହାର କରିପାରେ, ଯାହା ଭାଷାକୁ 'ଉଚ୍ଚ' କୀ 'ନୀଚ' ହେବାକୁ ଦିଏ ନାହିଁ । ଅର୍ଥାତ୍, 'ପାତ୍ରୋଚିତ ଭାଷା'ର ଅବଧାରଣା ତହିଁରେ ନାହିଁ।

ଏକଥା ସତ ଯେ, ଆଜି ମଧ୍ୟ କୋଶଳି ଶବ୍ଦକୁ ଓଡ଼ିଆ ସାହିତ୍ୟରେ ପ୍ରବେଶ ଲାଗି ରିତିମତ ସଂଘର୍ଷ କରିବାକୁ ପଡ଼େ । ଏହା ଓଡ଼ିଆ ଭାଷା-ସାହିତ୍ୟର ଅନମନୀୟତାକୁ ଦର୍ଶାଏ । ଗଙ୍ଗାଧର ମେହେର (୧୮୬୨-୧୯୨୪) ଥିଲେ ଓଡ଼ିଆରେ ଲେଖୁଥିବା ପଶ୍ଚିମ ଓଡ଼ିଶାର ବ୍ୟକ୍ତି । ତାଙ୍କ ଓ ତାଙ୍କ ଭଳି 'ସୀମାନ୍ତ ପ୍ରହରୀ' କବି-ଲେଖକଙ୍କ ଓଡ଼ିଆ

ସାହିତ୍ୟକୁ ଯୋଗଦାନ ଯୋଗୁଁ ଏକଦା ଓଡ଼ିଶା ବାହାରେ ରହିଥିବା ପଶ୍ଚିମ ଓଡ଼ିଶା କ୍ଷେତ୍ର ଓଡ଼ିଶାରେ ୧୯୦୫ରେ ସମ୍ମିଶ୍ରିତ ହେଲା । ମାତ୍ର, ସାଙ୍ଗରେ ଏକଥା ବି ସତ ଯେ ଉଦାର ଓ ଅକୁଣ୍ଠ ଭାବରେ ସେ ଯଦି ନିଜ କାବ୍ୟ–କବିତାରେ ପଶ୍ଚିମ ଓଡ଼ିଶାର ସାହିତ୍ୟ ଭଣ୍ଡାରରୁ ଶବ୍ଦ ଆଦି ବ୍ୟବହାର କରିଥାନ୍ତେ, ତେବେ ହୁଏତ ଉକ୍ତ ଶବ୍ଦ ଆଦିକୁ ଆଜି ଓଡ଼ିଆରେ ପ୍ରବେଶ ଲାଗି ସଂଘର୍ଷ କରିବାକୁ ପଡୁନଥାନ୍ତା । ସଂବଲପୁର ହିତୈଷିଣୀର ପ୍ରୋତ୍ସାହନ ଥିଲେ ୧୮୮୦-୯୦ ଦଶକରେ ସଂବଲପୁରୀରେ ସାହିତ୍ୟ ଭଂଡାର କଣ ଧନୀ ହୋଇନଥାଂତା ? ସେହି ସ୍ଥିତିରେ ହିନ୍ଦୀ ଓ ହିନ୍ଦୀତେର ଭାଷା (ଯେମିତି ରାଜସ୍ଥାନୀ, ଅବଧି, ଭୋଜପୁରୀ, ମୈଥିଳି ବା ମରାଠି, ଗୁଜରାଟି ଆଦି) ଭଳି ଓଡ଼ିଆ ଓ କୋଶଲି ପରସ୍ପରର ପରିପୂରକ ଭାଷା ହେବାର ବାଟ ସୁଗମ ହୋଇଥାନ୍ତା ! ଏହି ଦୃଷ୍ଟିରୁ ଦରିଦ୍ର, ଔପଚାରିକ ଶିକ୍ଷାରୁ ବଂଚିତ, ଶ୍ରମଜୀବୀ, ସମାଜ ସଂସ୍କାରକ, ଆଚରଣ ଓ ଉଚ୍ଚାରଣରେ ପାର୍ଥକ୍ୟ ରଖୁନଥିବାରୁ ବାରଂବାର ସାମାଜିକ ବାସଂଦ ଭୋଗିଥିବା ଦଳିତ ଜାତିର କବି ଖଗେଶ୍ୱର ଶେଠ କ'ଣ ଉଭୟ କୋଶଳି ଓ ଓଡ଼ିଆରେ ନିରନ୍ତର ଲେଖି ସାହିତ୍ୟ ସେବୀଙ୍କ ଲାଗି ଆଦର୍ଶ ମନେହୁଅନ୍ତି ନାହିଁ ? ଏହା ବି ଏକ ବିଚାର୍ଯ୍ୟ ପଶ୍ନ ।

-ପ୍ରୀତୀଶ ଆଚାର୍ଯ୍ୟ

# Historical Development of Koshali as an Endangered Language and Its Marginalization

Prof. Pritish Acharya, Professor of History, Regional Institute of Education (NCERT) at Bhubaneswar, Odisha Email: pritishacharya0123@yahoo.co.in. & Shri Krishan, professor of History in the Indira Gandhi University, Rewari, Haryana. ( Email: embu.indo@gmail.com)

**Some Musings on History of Languages:**

This article began with our initial pondering over the idea whether the process of development of a standard for written and/ or oral language has occurred for Koshali or not? Every language starts life as a spoken language. For many generations knowledge and culture could be passed on by word of mouth. When society is less complex, the initial concerns of language are also undemanding. Often it is about how to hunt or tend livestock, how to cultivate the land, what to be afraid of, what to protect, how to worship natural forces etc.

As civilisations sprang up, social structures gradually became increasingly complex, and the need was felt to set down some rules, and to give those who needed it access to them. It also became clear that it was not enough to transmit knowledge and feelings only to one's most intimate circle. It was necessary to record business transactions, pacts and important decisions. Verbal agreements were no longer adequate for this, and so writing came into being. Then came the 'birth of writing.' It began in Mesopotamia primarily as an adjunct to the bureaucratic needs of state-level civilization: recordkeeping, taxation, and accounting. Images or logographic picture-writing were used in an *arbitrary* or abstract way to record and describe information. The early logographic systems (such as Sumerian cuneiform or Egyptian hieroglyphs) were highly complex and required years of scribal training to master; thus they were only accessible to elites rather than the majority of the population. Second, they were non-phonetic, and so had only a completely arbitrary relationship to the phonemes that made up oral language, although the

pictographs might connect to certain concepts or objects.[1] This also presupposed existence of a sizeable amount of social surplus to sustain persons who were not directly involved in production process. However, in many cases, a given alphabet was introduced as a part of a particular culture imposed on a people, in a similar way to other elements such as a given coinage or a particular religious conviction in the process of creation of empires and imperial expansion. Nearly all languages had a area of their own, but states often established settlements and achieved control of lands beyond the boundaries of their natural language. Unless there is a relation of equality between language communities, the language of one group, the dominating one, tends to take over from the others, usurping the other languages' functions. However, even when courtly and official language flourished more, the other languages did not perish completely at local ground level.

Reading and writing, thus, existed in the European Middle Ages and Asian Empires but they remained restricted activities, largely limited to the clergy and the medieval scribes' who tirelessly copied and re-copied. The peasantry and most of the populace still lived by orality, although they did have what Illich calls "lay literacy,"[2] which was an awareness of the existence and importance of books and deference to the authority of written documents, even if they themselves could not read them. Literacy remained an elite privilege, and until 1500 CE, most likely not more than 10% of the world population could read or write.

What changed then, of course, was the arrival of Gutenberg's printing press and movable type. Until Gutenberg's invention, the only way to reproduce text was copying by hand, a laborious task. The printing press made books a mass commodity, and for precisely that reason, literacy became a mass phenomenon. Standardized typefaces made reading an easier activity, because readers no longer had to deal with the idiosyncrasies of another person's handwriting. The errors so frequently made by scribal copyists were eliminated, and thus thousands of people could have access to the same, presumably error-free "standard edition" of a text.[3]

Jack Goody analyzed changes in mental and social structures incidental to the use of writing. While Goody rejected the view that anthropologists have as their objective the study of primitive man, who is characterized by a "primitive mind", while sociologists, on the other hand, concern themselves with civilized man, whose activities are guided by "rational thought" and tested by "logico-empirical procedures". But while rejecting this ethnocentric views, he maintained the distinction between non-literate and literate society.(Jack Goody and Ian Watt, 1963: p. 305) Jack Goody subsequent works *The Domestication of the Savage Mind*( 1977) and *The Interface Between the Written and the Oral*(1987) elaborated this basic hypothesis about writing technology. According to Walter J. Ong, writing enlarged the potentiality of language to a great extent, restructured the thought process of human beings and in the process converted a certain few dialects into 'grapholects' or transdialect languages with enhanced vocabulary and permitting more abstract, sequential and classificatory thinking.[4] Even if we are not willing to accept Goody's dichotomy between societies that have no written language and those that wield one, the modalities of passage into a written culture and the conquest of literary and print culture in European societies after Gutenberg's invention of printing machine cannot be denied. This introduced new modes of production, transmission and reception of written word. It also brought into life new categories of 'author', 'book' or 'work' and helped to create 'communities of readers' and 'libraries'. Although measuring literacy in pre-industrial societies and early modern Europe is a daunting task, but spread of literacy cannot be doubted although the same 'text' could have been appropriated and understood differently by different social groups. The geography of literacy indicate higher literacy in North and North-West Europe, however, there were inequalities across gender, occupations and estates. literacy was predominantly linked to a person's work and status. Another salient feature of growing literacy was that study became private and silent.[5] When the communicative needs of modern society and state increased, the need for a standard form of language also emerged and many modern languages in present form evolved.

Here in India, The modernity came through colonialism which impacted natural evolution of societies and cultures. So we have a varieties of linguistic developments with English assuming a dominant role in socio-political and academic realms. Then there are regional languages at bottom the tribal languages and so- called dialects. The hierarchical relationship between them is often messy and a condensation of prolonged historical process. The fusion of different dialects into one standard form and development of corpus of vocabulary etc. imply a complicated general or combined effort which has to deal with nuanced philosophical, political and technical issues. How do varieties of dialects become a standard language? Bourdieu (1990) has argued that "the relations of communication par excellence – linguistic exchanges – are also relations of symbolic power in which the power relations between speakers or their respective groups are actualized". This form of power is present as relationships between those persons or groups exercising power and those realizing the same power take place.[6]

**The Demand of Koshal as a Separate State and Underpinning Linguistic Identity:**

The demand for 'Koshal State' in Orissa has in recent times become passionate following

the formation of three new Indian states namely Chhatisgarh, Uttaranchal and Jharkhand.

The news headlines frequently capture the budding popular support for Koshal movement in Orissa. This popular sentiment in Koshal for a separate state is in complete contrast to the role earlier played by the Koshal people in the organization of Orissa as a separate linguistic state way back in 1936. Will history 'repeat' itself as happened in the case with Telengana's role in formation of Telugu-language based Andhra state and subsequent disillusionment and rise of demand for a separate state of Telangna. The qualitative shift in the thinking about the territoriality of a region is visible in the way demand for a 'homeland of one's own' has become a 'permissible' issue for party agendas creating a new 'field of

opportunities' for regions demanding statehood.[7] Debates over territorial reorganization have re-entered 'mainstream' political discussion after remaining a taboo for a long period, especially during the centralizing and personalizing leadership that took over after Nehru when assertions of regional identity were essentially viewed with suspicion and were stigmatized as parochial, chauvinist and even anti-national. Significantly Ambedkar, one of the architects of the Indian Constitution, had long argued in favour of the creation of present day Uttarakhand, Jharkhand and Chhattisgarh in his writings. Ambedkar's consistent support for the creation of new states emanated from 'his democratic impulse to accord political and cultural recognition to the term region, otherwise defined predominantly in a geographical spatial sense'.[8] Keiko has shown in a recent article how the "linguistic principle" following the States Reorganisation Act of 1956 was framed as a cultural bond and administrative facilitator for socio-economic prosperity. It has not only been challenged intermittently, but also contested as a unifying concept. From the historical point of view, the emergence of the current separate Telangana movement of Andhra Pradesh is testimony to the failure or even death of regional historiography or history consciousness, out of which the Telugu people's identity once sought to evolve. The historical understanding of a small group of Telugu intellectuals under colonialism finally developed into an imagined common historiography of the Telugus as Andhras. Giving the name "Andhra" to the Telugu region in the 20th century was arbitrary and was due to the intervention of a new historical consciousness emerging among Telugu intellectuals. From the end of the 19th century to the beginning of the 20th century, describing the Telugu people as Andhras and the Telugu region as the Andhra region was not a simple matter of nomenclature. It was an example of a particular historical interpretation that was rooted in colonialism and modernisation. Subsequently, in all the debates on Telangana, the main focus is on socio-economic issues like the backwardness of the region, the coastal people's dominance in employment, and overall indifference towards development on the part of politicians and administrators ever since the birth of the state.[9]

Under the British rule the Koshal region loosely called Sambalpur region, which was under the Chhota Nagpur Division of the Central Provinces, had seen replacement of Oriya by Hindi as the official language in 1895. This has led to long drawn popular movements in the region for the cause of Oriya language and culture. The Koshali people led by Dharanidhar Mishra, Madan Mohan Mishra, Braja Mohan Patnaik, Balabhadra Supakar, Bihari Das and others had spearheaded the movement for restoration of the Oriya as the official language and transfer of the Sambalpur region including Patna, Kalahandi, Sonepur, Bamara and Rairakhol to the Orissa Division of the Bengal Province. The vernacular press, particularly *Sambalpur Hitaisini*, published from Bamra has played an important role in sustaining and encouraging the movement. As a result of prolonged struggle by the Koshali people supported by the Coastal people, on 16 October 1905 Sambalpur region was amalgamated with the Orissa division. This was the first historical step in the struggle of the Oriya people for the formation of a separate Orissa Province later in 1936.[10] As the Oriya language consists of Koshali dialect (also called Sambalpuri) and Coastal dialect, the creation of Orissa province has seen greatest sacrifice made by the Koshali people to accept coastal dialect as the official language even though Koshali remain as the sole language of their daily existence and communication. Many Koshali people like Gangadhar Meher, Bhima Bhoi had contributed significantly towards Oriya literature based on the coastal dialect.[1111]

Sahu, N. K., P. K. Mishra and J. K. Sahu (2001)

*History of Orissa*

, Nalanda, Binod

The Koshali people had not only played a pivotal role in constructing the modern identity of Orissa state but also had made significant contribution towards the development and progress of the state. The economic and educational deprivation and large scale migration due to poverty are considered by Koshali intellectuals as the major reason behind the demand of a separate Koshal state

